# ସ୍ମରଣାଞ୍ଜଳି

## ମହାତ୍ମା ଗାନ୍ଧୀଙ୍କ ଶତାବ୍ଦ ସ୍ମୃତିରେ ସମର୍ପିତ



"ମୁଁ ତୁମକୁ କବଚଟିଏ ଦେବି। ତୁମେ ସଂଶୟୀ କିମ୍ବା ଅହଂ-ଭାବାପନ୍ନ ହେଲେ, ଆଗରୁ ଦେଖିଥିବା ଦରିଦ୍ରତମ ଓ ଦୁର୍ବଳତମ ଲୋକର ମୁହଁକୁ ଥରେ ମନେ ପକାଅ । ନିଜକୁ ପଚାର — 'ତୁମେ ଯେଉଁ କାର୍ଯ୍ୟଟି କରିବାକୁ ଯାଉଛ, ତାଦ୍ୱାରା ସେହି ଲୋକଟିର କୌଣସି ଲାଭ ହେବ କି ?'

ଏହାପରେ ତୁମେ ଅନୁଭବ କରିବ ଯେ ତୁମର ସଂଶୟ ଓ ଅହଂଭାବ ସ୍ୱତଃ ଅପସରି ଯାଉଛି ।"

ଜୟଜଗତ

ସର୍ବୋଦୟ ମେଳା, ପୁରୀ, ୨୬.୬.୧୯୬୯

মহাত্মাগান্ধীঙ্ক চিতাভস্ম বিসর্জন স্মৃতিরে সমর্পিত

# ସ୍ମରଣାଞ୍ଜଳି

| | |
|---|---|
| ସମ୍ପାଦନା | ଶ୍ରୀ ଗଣେଶ୍ୱର ମହାପାତ୍ର.......ଅଧ୍ୟକ୍ଷ |
| | ଗୌରୀମଣି ଦେବୀ |
| | ଶ୍ରୀ ଗଙ୍ଗାଧର ମିଶ୍ର |
| | ସୁଶ୍ରୀହରପ୍ରିୟା ସାହୁ |
| ସଙ୍କଳକ | ଶ୍ରୀ ଚନ୍ଦ୍ରଶେଖର ନାୟକ |
| ସହଯୋଗୀ | ଶ୍ରୀ ସାରଦାଚରଣ ମହାନ୍ତି |
| ପ୍ରତୀକାତ୍ମକ ଉନ୍ମୋଚନ | ସର୍ବୋଦୟ ମେଳା, ୧୨.୦୨.୯୯ |
| | ଗାନ୍ଧୀଘାଟ, ପୁରୀ |
| ଉନ୍ମୋଚକ | ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଜୟକୃଷ୍ଣ ମହାନ୍ତି |
| ପୂର୍ଣ୍ଣାଙ୍ଗ ପ୍ରକାଶ | ସତ୍ୟବାଦୀ ପଞ୍ଚସଖାଙ୍କ ପ୍ରମୁଖ ଉତ୍କଳମଣି ପଣ୍ଡିତ |
| | ଗୋପବନ୍ଧୁଙ୍କ ମହାପ୍ରୟାଣ ତିଥି ନେତ୍ରୋତ୍ସବ |
| | ଜୁଲାଇ ୧୩. ୧୯୯୯ |
| ମୁଦ୍ରଣ | ଏକ ହଜାର |
| ମୁଦ୍ରାକର | ରମା ପ୍ରେସ, ମୋଚିସାହି ଛକ, ପୁରୀ |
| ପ୍ରକାଶକ | ସର୍ବୋଦୟ ମେଳା, କମିଟି, ପୁରୀ |

# କୃତଜ୍ଞତା

ଏହି ସ୍ମରଣିକାରେ ପ୍ରକାଶିତ ଲେଖା କୌଣସିଟି ଆମ ନିଜର ନୁହେଁ । ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ କେତେକ ଲେଖା ସର୍ବୋଦୟ ଦୃଷ୍ଟି କୋଣରୁ ଉପାଦେୟ ମନେ କରି ଆମେ ଏଥିରେ ସନ୍ନିବେଶ କରିଛୁ ।

ସ୍ୱାଧୀନତା ସଂଗ୍ରାମକାଳରେ ଓ ପରବର୍ତ୍ତୀ ନବଭାରତ ନିର୍ମାଣ କଳ୍ପେ ବହୁ ପ୍ରେରଣା ଦାୟକ ଉଦ୍‌ବୋଧନୀ ଆମ ଜାତୀୟ କବିମାନଙ୍କ ଲେଖନୀରୁ ନିଃସୃତ ହେଉଥିଲା । କବିମାନଙ୍କର ନାମ ନଜାଣି ମଧ ଶତ ସହସ୍ର କଣ୍ଠରେ ଏହା ଝଙ୍କୃତ ହୋଇ ସୁପ୍ତ ପ୍ରାଣରେ ଭରିଦେଉଥିଲା ଶତ ସିଂହର ପରାକ୍ରମ । ସ୍ୱାଧୀନତାର ପାଞ୍ଚଗୋଟି ଦଶନ୍ଧି ପୂରିଯାଉଥିଲେ ମଧ ମନେହେଉଛି, ସତେଯେପରି ଏବେ ବି ସ୍ୱାଧୀନତା ସଂଗ୍ରାମ ଚାଲିଛି ଓ ଗୀତଗୁଡ଼ିକ ଆମକୁ ଅନୁପ୍ରାଣିତ କରାଉଛି । ସେଥିରୁ କେତୋଟି ଆମେ ଏହି ସ୍ମରଣିକାରେ ସ୍ଥାନିତ କରାଇଛୁ । ସଂପୃକ୍ତ କବିମାନଙ୍କୁ ଆମର ହାର୍ଦ୍ଦିକ କୃତଜ୍ଞତା । ଆଶା, ମହାତ୍ମାଗାନ୍ଧୀଙ୍କ ଚିତାଭସ୍ମକୁ ସମ୍ମାନ ଜଣାଇ ଏହି ସ୍ମରଣିକାକୁ ସେମାନେ ସ୍ୱାଗତ କରିବେ । ଅନୁସୃତ ବିଧିବିଧାନକୁ ଧରିବେ ନାହିଁ ।

ଏକଦା ବ୍ରିଟିଶ ଭାରତରେ 'କିସମତ' ଚଳଚ୍ଚିତ୍ରରେ ଗାନ କରାଯାଇ ଜାତୀୟ ଜାଗରଣ ସୃଷ୍ଟି କରିଥିବା ନିଷିଦ୍ଧ ଘୋଷିତ ଏକ ଉଦ୍‌ବୋଧନୀ 'ସମାଜ' ଆନୁକୂଲ୍ୟରେ ସଂଗ୍ରହ କରି ପୁରୋଭାଗରେ ସ୍ଥାନିତ କରାଇଛୁ ।

ବହୁ ସଶ୍ରଦ୍ଧ ସଜ୍ଜନ ଓ ସଂସ୍ଥା ଏହି ସ୍ମରଣିକାର ମୁଦ୍ରଣ ପାଇଁ ଆର୍ଥିକ ସହାୟତା ଦାନ କରିଛନ୍ତି । ଉତ୍କଳ ଗାନ୍ଧୀ ସ୍ମାରକ ନିଧି ସବୁତକ ପ୍ରଚ୍ଛଦପଟ ଛାପି ଯୋଗାଇଛନ୍ତି । ପୁରୀର **ରମା ପ୍ରେସ** ନିଜର ପରି ସ୍ମରଣିକାକୁ ମୁଦ୍ରଣ କରିଛନ୍ତି ।

ଏହି ଅବସରରେ ଆମେ ସମସ୍ତଙ୍କୁ ସାଧୁବାଦ ସହ କୃତଜ୍ଞତା ଜ୍ଞାପନ କରୁଅଛୁ ।

**ସର୍ବୋଦୟ ମେଳା, କମିଟି ,ପୁରୀ**

# ଆର୍ଥିକ ସହାୟତା

ଯେଉଁ ସଶ୍ରଦ୍ଧ ମିତ୍ର ଓ ସଂସ୍ଥା ସର୍ବୋଦୟ ମେଳା କମିଟିର ସଦସ୍ୟ ମାନଙ୍କ ବ୍ୟତୀତ ସ୍ମରଣିକା ପାଇଁ ଆର୍ଥଦାନ କରିଛନ୍ତି ସେମାନେ ହେଲେ ସର୍ବଶ୍ରୀ/ଶ୍ରୀମତୀ ରବିରାୟ, କୁମାର ହାଇଦାର, ନାରାୟଣ ପ୍ରସାଦ ମହାନ୍ତି, ଗଙ୍ଗାଧର ମହାପାତ୍ର, ପ୍ରଧାପକ ସୁରେଶ ଚନ୍ଦ୍ର ମିଶ୍ର, ସ୍ୱାଧୀନତା ସଂଗ୍ରାମୀ ସୁରେଶ ଚନ୍ଦ୍ର ମିଶ୍ର, ରାମକୃଷ୍ଣ ନନ୍ଦ, ଭ୍ରମରବର ଦାସ, ବାମନଚରଣ ସ୍ୱାଇଁ, ବିନାୟକ ମହାପାତ୍ର, ବ୍ରଜବନ୍ଧୁ ଦାସ, ବୈକୁଣ୍ଠନାଥ ପ୍ରତିହାରୀ ନତ୍ୟାନନ୍ଦ ମିଶ୍ର, ରଘୁନାଥ ଦାଶ, ଶୁକଦେବ ସାହୁ, କବିରାଜ ହରେକୃଷ୍ଣ ମହାପାତ୍ର, ଜଗନ୍ନାଥ ସାହୁ, ବଂଶୀଧର କାଳିଆ, ଗୋପୀନାଥ ଦାସ, ଅମରନାଥ ଚଟ୍ଟୋପାଧ୍ୟାୟ, ଶକ୍ତିଶେଖର ଦାସ, ଶକୁନ୍ତଳା ଦାସ, ଭବାନୀ ଚରଣ ପଟ୍ଟନାୟକ, ଜୟକୃଷ୍ଣ ମହାନ୍ତି ଓ ଭଗବାନ ପ୍ରତିହାରୀ, ସ୍ୱାଧୀନତା ସଂଗ୍ରାମୀ ଦାୟାଦ ନଳିନୀବାଳା ଦାସ, ସରୋଜିନୀ ନାୟକ, ବିଦ୍ୟୁତ୍‌ଲତା ରଥ, କାଳିପ୍ରସାଦ ମିଶ୍ର, ଦେଶବନ୍ଧୁ ସ୍ୱାଇଁ, ସରଳା ଦାସ, ୰ରାମଚନ୍ଦ୍ରସାହୁଙ୍କ ପତ୍ନୀ (ଗୋପ), ହରିବନ୍ଧୁ ସାହୁ ଓ ରବୀନ୍ଦ୍ରନାଥ ବେହେରା, ଅଧ୍ୟାପକ ବିଶ୍ୱରଞ୍ଜନ, ଡ଼ଃ ବିବୁଧରଞ୍ଜନ, ବିବେକାନନ୍ଦ ମିଶ୍ର, ଗୌରାଙ୍ଗଚରଣ ମହାପାତ୍ର, ଦର୍ପନାରାୟଣ ଦାସ, ଡ଼ଃ ଶ୍ରୀମତୀ ନିରୂପମା ମିଶ୍ର, ଗାୟତ୍ରୀ ଦାଶ, ରଜନୀ ସାହୁ, ଗୋପବନ୍ଧୁ ଜେନା, ସ୍ୱର୍ଣ୍ଣଲତା ମିଶ୍ର, ଦେବପ୍ରସାଦ ମହାପାତ୍ର, ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ, ଡ଼ଃ ବରେନ୍ ପଟ୍ଟନାୟକ, ରମାକାନ୍ତ ପଟ୍ଟନାୟକ, ଶରତ ଚନ୍ଦ୍ର ରାଉତରାୟ, ଡ଼ଃ ବାମଦେବ ମହାନ୍ତି, ଗଙ୍ଗାଧର ମିଶ୍ର, ଅଜୟକୁମାର ଜେନା, ବ୍ରଜକିଶୋର ତ୍ରିପାଠୀ (ସାଂସଦ), ଜଳଧର ରଣସିଂହ, ଡଂ. ଧର୍ମ୍ମ ପ୍ରସାଦ ମିଶ୍ର, ସର୍ବେଶ୍ୱର ନାୟକ, ଶ୍ରୀକାନ୍ତ କୁମାର ବେହୁରା, ନାରାୟଣ ମିଶ୍ର, ରାମକୃଷ୍ଣ ଦାସ ମହାପାତ୍ର (ଟିକିପୁଅ) ଜିଲ୍ଲା ଗ୍ରାମ୍ୟ ଉର୍ନ୍ନୟନ ସଂସ୍ଥା ପୁରୀ, ଗ୍ରୀଡ଼କୋକର୍ପୋରେସନ୍, ସମ୍ମିଳିତ ପୁରୀ ନିମାପଡ଼ା କେନ୍ଦ୍ର ସମବାୟ ବ୍ୟାଙ୍କ, ସମବାୟ ହସ୍ତ ଶିଳ୍ପ ନିଗମ, ରାଜ୍ୟ ଗୃହନିର୍ମାଣ ସଂସ୍ଥା, ପୁରୀ ପୌରସଂସ୍ଥା, ଜନ ସାକ୍ଷରତା ସମିତି, ପୁରୀ, ଖୋରଧା କେନ୍ଦ୍ର ସମବାୟ ବ୍ୟାଙ୍କ, ଖୋରଧା ପୌରସଂସ୍ଥା, ସୂଚନା ଓ ଲୋକସଂପର୍କ ବିଭାଗ, ରାଜ୍ୟଜନସଂଖ୍ୟା ସାଧନ କେନ୍ଦ୍ର ଓଡ଼ିଶା, ହୋଟେଲ ମେଫେୟାର ପୁରୀ, ଜିଲ୍ଲା ମତ୍ସ୍ୟ ବିଭାଗ ପୁରୀ, ପୁରୀ କୋଣାର୍କ ଉନ୍ନୟନ ସଂସ୍ଥା, ଲଜିଂ ହାଉସ ଫଣ୍ଡ କମିଟି ପୁରୀ, କାଜୁ ଉନ୍ନୟନ ନିଗମ ଓ ଖଦୀ ଗ୍ରାମୋଦ୍ୟୋଗ ବୋର୍ଡ ।

ବହୁ ସଶ୍ରଦ୍ଧ ମିତ୍ର ଅର୍ଥଦାନ ପାଇଁ ଆଗ୍ରହୀ ଥିଲେ ମଧ ସେମାନଙ୍କ ପାଖକୁ ଯାଇ ନ ପାରି ଆମେ ଦୁଃଖିତ । ଯଥା ସମୟ ସହଯୋଗୀ ବନ୍ଧୁମାନଙ୍କ ହାତରେ "**ସ୍ମରଣାଞ୍ଜଳି**"ର ଖଣ୍ଡିଏ ଅର୍ପଣ କରିବାର ବାସନା ରଖିଛୁ ।

**ସମସ୍ତଙ୍କୁ କୃତଜ୍ଞତା ।**

# ସୂଚୀପତ୍ର



(ଏତଦବ୍ୟତୀତ ବିଭିନ୍ନ ପୃଷ୍ଠାରେ ବହୁ ଜାତୀୟ ଗୀତି, ତଥ୍ୟ ଓ ଉଦବୋଧନୀ ସ୍ଥାନିତ ହୋଇଛି ।)

## ପ୍ରଭାତ ପ୍ରାର୍ଥନା

ପ୍ରଭାତୁ ଉଠିଣ ପ୍ରଭୁ କରୁଛି ଜଣାଣ
ଦିଅ ମୋତେ ଶୁଭ ବୁଦ୍ଧି ଦିଅ ଦିବ୍ୟ ଜ୍ଞାନ ।।୧।।

କାହାରି ଅନିଷ୍ଟ ଚିନ୍ତା ନ ପଶୁ ମୋ ମନେ
କାହାରି ନିନ୍ଦା ଯେପରେ ନ କରେ ମୁଁ କ୍ଷଣେ ।।୨।।

ତୁଣ୍ଡ ମୋର କହୁ ଆଜି ସଦା ସତ୍ୟ ବାଣୀ
କର୍ଣ୍ଣ ମୋର ଶୁଣୁ ସଦା ସତ୍ୟର କାହାଣୀ ।।୩।।

ସତ୍ୟ ରକ୍ଷା ପାଇଁ ଯାଉ ଏ କ୍ଷୁଦ୍ର ଜୀବନ
ସତ୍-ଚିତ୍-ଆନନ୍ଦରେ ରହୁ ମୋର ମନ ।।୪।।

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ମହେଶ୍ୱର
ଗରୁ ସାକ୍ଷାତ ପରମ ବ୍ରହ୍ମ ଆଗ୍ରେ ନମସ୍କାର ।।୫।।

ଚକ୍ଷୁ ମୋର ଦେଖୁ ଆଜି ସୁନ୍ଦର ପଦାର୍ଥ
ମନ ମୋର ଘେନୁ ସଦା ସୁନ୍ଦର ସୁ ଅର୍ଥ ।।୬।।

ତୁଟି ଯାଉ ଭୟ ମୋର ଦୃଢ ହେଉ ଚିତ୍ତ
ପ୍ରାଣେ ବାଜି ଉଠୁ ସଦା ମଙ୍ଗଳ ସଂଗୀତ ।।୭।।

ତୁମରି ଶରଣ ମାନି ହୃଦେ ଦମ୍ଭ ଧରି
କର୍ମପଥେ ଚାଲିଯାଏ ଆଜି ବୀର ପରି ।।୮।।

ଶକ୍ତି ଦିଅ ଶକ୍ତିମୟ ପ୍ରଭୁ ଭଗବାନ
କଥାରେ କାର୍ଯ୍ୟରେ ରଖେ ନିଜର ସମ୍ମାନ ।।୯।।

ନିଜ ଦୁଃଖେ ନୟନୁ ମୋ ନଗଳୁ ଲୋତକ
ପର ଦୁଃଖେ କାନ୍ଦିହେଉ ଜୀବନ ସାର୍ଥକ ।।୧୦।।

ବଳ ଦିଅ ମହାପ୍ରଭୁ କର ଚରଣରେ
ତୁମ କାର୍ଯ୍ୟ ସାଧିଯାଏ ମହା ହରଷରେ ।।୧୧।।

ବିଫଳେ ନ ଯାଉ ଆଜ ଦିନଟି ମୋହର
ତୁମ ଶ୍ରୀ ଚରଣେ ପ୍ରଭୁ ମାଗେ ଏହି ବର ।।୧୨।।

## ଧର୍ମ-ଧନ

ବାଲ୍ୟକାଳୁ ଧର୍ମ ଧନ ମୁଁ ସଞ୍ଚିବି
ଏ ଜୀବନ ଅନିଶ୍ଚିତ
କେଜାଣେ କାହାର ଆଜି ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ
କ୍ଷୁଦ୍ର କୀଟ ଉଇ ଅଳ୍ପ ଅଳ୍ପ କରି
ରଚଇ ବଲ୍ମୀକ ଘର
ମୁହିଁ ସେହିପରି ସଞ୍ଚିବି ଯତନେ
ପୁଣ୍ୟ ଧନ ନିରନ୍ତର
ବାକ୍ୟରେ ମନରେ କି ଅବା କର୍ମରେ
ନ କରିବି ପାପାଚାର
ତେଜିବି ଅସତ୍ୟ ହିଂସା କପଟତା
ଲୋଭ କ୍ରୋଧ ଅହଙ୍କାର
ସତ୍ୟ ମନରଖି ସତ୍ୟକୁ ବୁଝିବି
ଗାଇବି ସତ୍ୟର ଜୟ
ମଙ୍ଗଳ କାର୍ଯ୍ୟରେ ଲାଗିଥିବି ସଦା
ତେଜିଣ ସକଳଭୟ

## ସର୍ବ ଭୁବନ ବିଧାତା

ଏହି ମହାକାଶେ ଏ ମୋର ଆତ୍ମାରେ
ବିରାଜିତ ମହେଶ୍ୱର
ସେ ମୋତେ କଦାପି ତେଜିତ ନାହାନ୍ତି
ପ୍ରାଣେ ଛନ୍ତି ନିରନ୍ତର ।
ଜୀବନେ ମରଣେ ସମ୍ପଦେ ବିପଦେ
ରୋଗେ ଶୋକେ କେତେବେଳେ
କେଭେଁ ନଛାଡ଼ିବି ସେ ପ୍ରାଣ ସଖାଙ୍କୁ
ସେ ମୋତେ ତାରିବେ ହେଳେ
ସର୍ବ ଅଧିପତି ସର୍ବ ଅନ୍ତର୍ଯ୍ୟାମୀ
ସର୍ବ ଶୁଭ ବୁଦ୍ଧିଦାତା
ଧର୍ମର ଆକର ଅଟନ୍ତି ଈଶ୍ୱର
ସର୍ବ ଭୁବନ ବିଧାତା ।

# ଉତ୍ସର୍ଗ

୰ ପଦ୍ମ ଚରଣ ସାମନ୍ତ ସିଂହାର, ୰ କସ୍ତୁରି ଚରଣ ନାୟକ, ୰ ରାମ ଚନ୍ଦ୍ର ଗୋଛିକାର ........ ଓ ୰ ରଘୁ ନାଥ ବାରିକ....... ଙ୍କର ସର୍ବୋଦୟ ମେଳାକୁ ଆଦ୍ୟରୁ ସୁପ୍ରତିଷ୍ଠିତ କରାଇବାରେ ମହନୀୟ ଅବଦାନ ରହିଛି ।

ରାଉରକେଲା ସ୍ଥିତ ଗୋପବନ୍ଧୁ ବେଲ ଫେୟାର ଟ୍ରଷ୍ଟର ସଦସ୍ୟ ୰ ଜଗବନ୍ଧୁ ହେମ୍ବରମ ନିଚ୍ଛକ ମାନବବାଦୀ ଜନସେବକ ଥିଲେ । ସୁନ୍ଦରଗଡ଼ ଜିଲ୍ଲା ଉସମା ଥାନା କୁଲଟା ଗ୍ରାମ ପଞ୍ଚାୟତର ସଦସ୍ୟା ନିଶା ନିବାରଣ ଆନ୍ଦୋଳନର ନେତ୍ରୀ ଉର୍ମୀଳା କୁଅଁର ମଦ ବ୍ୟବସାୟୀଙ୍କ ଦ୍ୱାରା ଅତି ନିର୍ମମ ଭାବରେ ନିହତ ହୋଇଛନ୍ତି ।

ସମ୍ବଲପୁରର ବର୍ଷିୟସୀ ସ୍ୱାଧୀନତା ସଂଗ୍ରାମୀ ୰ପ୍ରଭାମୟୀ ଦେବୀ କସ୍ତୁରବା ମହିଳା ଆଶ୍ରମ, ମାତୃ ମଙ୍ଗଳ କେନ୍ଦ୍ର ଓ ଅନାଥ - ବାଳ - ନିକେତନ ସ୍ଥାପନ ମାଧ୍ୟମରେ ଆଜୀବନ ସେବା ପରାୟଣାଥିଲେ ।

ସେହିମାନଙ୍କ ପବିତ୍ର ସ୍ମୃତିରେ ଏହି ସ୍ମରଣିକାକୁ ଆମେ ଉତ୍ସର୍ଗ କରୁଅଛୁ ।

❑ ସର୍ବୋଦୟ ମେଳା - ପୁରୀ,

# ସଦିଚ୍ଛା

ଏଥର ସର୍ବୋଦୟ ମେଳାର ବିଶେଷ ସମାରୋହ ଉପଲକ୍ଷେ ପ୍ରସ୍ତାବିତ ସ୍ମରଣିକା ପାଇଁ ଲେଖାଟିଏ ପଠାଇବାକୁ ଚିଠିପାଇଛି । ନିଜ କଥା ଲେଖିବାକୁ ମୋତେ ସଙ୍କୋଚ ଲାଗେ । ମୁଁ ଜଣେ ସାଧାରଣ କର୍ମୀ । ମୁଁ ବା କ'ଣ କରୁଛି ଯେ, ଜଣାଇ ବି ? ସ୍ମରଣିକା ପ୍ରକାଶୋଦ୍ୟମ ଅତ୍ୟନ୍ତ ଗୌରବର କଥା । ଏହା ଦ୍ୱାରାସର୍ବୋଦୟ ମେଳା ପରିଚାଳନା ସଂସ୍ଥାର ମହାନତା, କର୍ମୀମାନଙ୍କ ପ୍ରତି ସହୃଦୟତା, ଓ ଚିନ୍ତନର ପରିଚୟ ମିଳିବ ।

ଯେଉଁମାନେ ଜୀବନନୋତ୍ସର୍ଗ କରି ମୋ ଠାରୁ ସମଧିକ ଉତ୍ସାହ ସହିତ କର୍ତ୍ତବ୍ୟରତ ସେମାନଙ୍କ ଜୀବନ ଓ କାମ ସମ୍ପର୍କରେ ସ୍ମରଣିକାରୁ ମୁଁ ପ୍ରେରଣା ପାଇବି ଓ ଅନ୍ୟମାନେ ମଧ୍ୟ ପ୍ରେରଣା ପାଇବେ । ସେହି ଆଶାରେ ରହିଲି ।

❑ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ବନବାସୀ ସେବା ସମିତି, ବାଳିଗୁଡ଼ା, ୩.୧୧.୯୭

ପୁରୀରେ ଏବର୍ଷ ସର୍ବୋଦୟ ମେଳାର ବିଶେଷ ସମାରୋହରେ ଭାଗ ନେବା ପାଇଁ ପତ୍ର ପାଇଛି । ଅତୀତରେ ମୁଁ ସସ୍ତ୍ରୀକ ମେଳାକୁ ଯିବାକୁ ବ୍ରତ ରୂପେ ଗ୍ରହଣ କରିଥିଲି । କିନ୍ତୁ ଏବେ ଆଉ ବଳ ପାଉନାହିଁ, ଆଖିକୁ ଆଉ ଭଲ ଦିଶୁନାହିଁ । ସ୍ମରଣିକା ପାଇଁ ମନ ସ୍ଥିରକରି କିଛି ଲେଖିବାକୁ ସାହସ ପାଉନାହିଁ ।ସମସ୍ତଙ୍କୁ ମୋର ପ୍ରୀତି ଓ ଶୁଭେଚ୍ଛା

❑ ଶ୍ରୀ ଅମର ନାଥ ଚଟ୍ଟୋପାଧ୍ୟାୟ, କଲିକତା, ୨୨.୧୨.୯୭

ଯେ ସ୍ୱେଚ୍ଛାରେ ନିଜର ଦୋଷ ସବୁ ଅନ୍ୟ ଆଗରେ ପରିଷ୍କାର କହି ଦିଏ ଏବଂ ଆଉ କରିବ ନାହିଁ ବୋଲି ପ୍ରତିଜ୍ଞା କରେ, ସେ ସବୁଠାରୁ ବଳି ପବିତ୍ର ପ୍ରାୟଶ୍ଚିତ କରେ ।

# ଉଦ୍‌ବୋଧନୀ

ମନମୋହନ୍ ଚୌଧୁରୀ

କଳା କଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ
କରନ୍ତି ମଥୁରା ବିଜୟ ଦାଣ୍ଡେ ଦେଖ ସଙ୍ଗାତ ॥୧॥
କଂସ ମାରି କୃଷ୍ଣ ମଥୁରା ଭାରି କଲେ ଉଶ୍ୱାସ
ଗୋପୀ ଗୋପାଳଙ୍କ ପ୍ରାଣରେ ଦେଖ ମହା ଉଲ୍ଲାସ ॥୨॥
ସ୍ନେହ ପ୍ରୀତି ଧାରା ବହିଲା ଗୋପ ବୃନ୍ଦାବନରେ
କୃଷ୍ଣ ପ୍ରେମେ ଗାଇ ନାଚିଲେ ଜନେ ତୋଷ ମନରେ ॥୩॥
ଯୁଗ ଯୁଗ ଧରି ଭାରତେ କୃଷ୍ଣ ପାଇଲେ ପୂଜା
ଜଗତ ଯାକରେ ଉଡିଲା ତାଙ୍କ କୀରତି ଧ୍ୱଜା ॥୪॥
ଦ୍ୱାପରର ଜ୍ୟୋତି ଲିଭିଲା କଳି ହେଲା ପ୍ରବେଶ
ନୂଆ ନୂଆ ପାପ ଭାରାରେ ପୃଥୀ ଅଣନିଂଶ୍ୱାସ ॥୫॥
ପ୍ରଜାଙ୍କ ଜଣାଣେ ଟଳିଲା ଖଗପତି ଆସନ,
ଗାନ୍ଧୀଙ୍କୁ ଭାରତେ ପେଷିଲେ ହରିବାକୁ କଷଣ ।
ଚାଷୀ ମୂଲିଆଙ୍କ ମେଳରେ ଭାଗି ଅସୁର - ନୀତି,
ଜଗତେ ମହାତ୍ମା ବାଢିଲେ ନୂଆ ସଂଗ୍ରାମ ରୀତି ।
ଭାରତ ହୋଇଲା ସ୍ୱାଧୀନ ପ୍ରଜା ହେଲେ ହରଷ ।
ଭେଦିସୁରା ଶରାଘାତରେ ଗାନ୍ଧୀ ଛାଡିଲେ ଶ୍ୱାସ ।
ନବଯୁଗ ସୂର୍ଯ୍ୟ ବୁଡିଲା ପ୍ରଜା ହେଲେ ହତାଶ
କ୍ଷମତା ଲୋଭରେ ହେବେ କି ଯଦୁକୁଳ ବିନାଶ ?
ଦେଖ କି ବିଚିତ୍ର ଉଆଁ ସେ ଉଠେ ପୂନେଇ ଚାନ୍ଦ
ନୂଆ ବଳ ଆଶା ଉହାହେ ବିଶ୍ୱବାସୀ ଆନନ୍ଦ ।
ବିନୋବା ଉଦ୍ଧବ ପରାଏ ଗାଇ କୃଷ୍ଣଙ୍କ ନାମ,
ଡାକନ୍ତି ଆସ କେ ଗଢିବ ନବ ଗୋଲକ ଧାମ ।
କ୍ଷୁଦ୍ର ସ୍ୱାର୍ଥ ଭେଦ ଅଜ୍ଞାନ ନର ହୃଦରେ ଥାଇ,
ବୁଦ୍ଧି ବଣା ହେଲେ ଧରମ ବାଟ ଦିଶଇ ନାହିଁ ।
ପ୍ରେମ ଜ୍ଞାନ ଦୀପ ଜାଳିବା ଯିବ ପାପ ଅନ୍ଧାର
ବସୁଧା ନିର୍ମଳ ହବଟି ଆତ୍ମା ହେଲେ ସୁଧାର ।
ବାଣ୍ଟି ଜୁଣ୍ଟି ଧନ ଭୋଗିବା ଗ୍ରାମେ ବଢିବ ପ୍ରୀତି,
ମିଳିମିଶି ସର୍ବେ ଖଟିବା ବଢୁଥିବ ସଂପତ୍ତି ।
ମାଲିକାନା ଭେଦ ଅସୁର ତାକୁ କରିବା ଦୂର,
ପୁଲିସି ହାକିମ ଦାଉ ତ ଗ୍ରାମୁଁ ହୋଇବ ଦୂର ।
ଗ୍ରାମସଭା, ଗଢି ଗ୍ରାମରେ ଯେତେ ଭାଇଭଉଣୀ,
ଏକ ମନେ ବୁଦ୍ଧି ପାଞ୍ଚିବା ହୃଦେ ହରିଙ୍କୁ ଗୁଣି
ଗ୍ରାମପାଂଠି ହେବ ଥାପନା ସର୍ବେ ଦେବେଟି ବାଂଟ,
ଭାଂଗିବ ନାହିଁଟି ବିପତ୍ତି ବେଳେ ଗ୍ରାମର ଆଂଟ ।
ପ୍ରଜା ବାହୁବଳେ ରଖିବେ କୂଅ ବଂଧ ପୋଖରୀ,
ଲକ୍ଷ୍ମୀ କ୍ଷେତ ସଦା ହସିବ ଧରି ଶ୍ୟାମଳ ଶିରୀ ।
ନୂଆ ନୂଆ ଧନ୍ଦାଚାଲିବ ଘରେ ଘରେ ଆବର,
ଅରଟ ତନ୍ତର ଗୁଂଜନେ ଗ୍ରାମ ହେବ ମୁଖର ।
ଏକର ଶ୍ରମକୁ ଛଡାଇ ଆନ ଖାଇବ ନାହିଁ,
ଶ୍ରମ ଶିଳ୍ପ କଉଶଳରେ ହସ ଉଠିବ ମହୀ ।
ଗ୍ରାମର ଗୋକୁଳ ଲଭିବ ସ୍ନିଗ୍ଧ କୋମଳ କାନ୍ତି,
କ୍ଷୀର ସର ଦହୀ ଲବଣୀ ବାଳେ ଭୁଂଜିବେ ନୀତି ।
ବେଣୁ ବାଇ ଧେନୁ ଚରାଇ ଯିବେ କଦମ୍ବ ମୂଳେ,
ଅରଜିବେ ସେବା କୀରତି ଦେଶମାତୃକା ତୁଳେ ।
ବସୁଧାର ଜ୍ଞାନବିଜ୍ଞାନ ଗ୍ରାମ ଯୁବଯୁବତୀ,
ଆୟତ୍ତ କରିଣ ରଖିବେ ବିଶ୍ୱ ଅକ୍ଷୟକୀର୍ତ୍ତି ।
ବିଶ୍ୱ ଦରବାରେ ସୁଧୀଙ୍କ ମେଳେ ହୋଇଣ ଠିଆ,
ସାହିତ୍ୟ ବିଜ୍ଞାନ କଳାରେ ସଦା ହେବେ ଆଗୁଆ ।
ହିମାଚଳ ଶିରେ ଚଢିବେ ସାଗରରେ ବୁଡିବେ ।
ଚନ୍ଦ୍ରମାରେ ଥାପି ପତାକା ଗ୍ରହାନ୍ତରେ ଉଡ଼ିବେ ।
ପରମାଣୁ ଶକ୍ତି ରହସ୍ୟ କରି କର ଆୟତ୍ତ,
ମାନବ ସେବାରେ ଲାଗିବେ କେବେ ନୋହିଁ ପ୍ରମତ୍ତ ।
ବିଶ୍ୱେ ସ୍ନେହ ଶାନ୍ତି ରହିବ ନ ରହିବ କଷଣ,
ରାମକୃଷ୍ଣ ନାମ ସୁମରି ଜନେ କାଟିବେ ଦିନ ।
ଜନତାର ଯୁଗ ଆସିଛି ଶୁଣ ଭାଇଭଉଣୀ,
ଗୋବର୍ଦ୍ଧନ ଗିରି ଧାରଣ ଲୀଳା ରଚିବା ପୁଣି ।
ଗ୍ରାମର ସ୍ୱରାଜ୍ୟ ସାଧନେ ସମସ୍ତଙ୍କର ହାତ,
ଲାଗିଲେ ବିଭୁଙ୍କ ଆଶିଷେ ଗିରି ହେବ ଉନ୍ନତ ।

(୧୫ ଅପ୍ରେଲ ୧୯୬୯ ସଂଖ୍ୟା "ଗ୍ରାମସେବକ"ରୁ ଗୃହୀତ) □

# ସର୍ବଧର୍ମ - ସ୍ମରଣ

ଓଁ ତତ୍ ସତ୍ ଶ୍ରୀ ନାରାୟଣ ତୁ ପୁରୁଷୋତ୍ତମ ଗୁ ଗୁ ତୁ, ସିଦ୍ଧ ବୁଦ୍ଧ ତୁ ସ୍କନ୍ଦ ବିନାୟକ ସବିତା ପାବକ ତୁ, ବ୍ରହ୍ମ ମଜଦ୍ ତୁ ଯହ୍ୱ ଶକ୍ତି ତୁ, ଈଶୁ ପିତା ପ୍ରଭୁ ତୁ, ରୁଦ୍ର ବିଷ୍ଣୁ ତୁ ରାମକୃଷ୍ଣ ତୁ ରହିମ ତାଓ ତୁ ବାସୁଦେବ ଗୋ - ବିଶ୍ୱରୂପ ତୁ, ଚିଦାନନ୍ଦ ହରି ତୁ ଅଦ୍ୱିତୀୟ ତୁ ଅକାଳ ନିର୍ଭୟ ଆତ୍ମଲିଙ୍ଗ ଶିବ ତୁ ।



# ବୈଷ୍ଣବ ଜନ

## (ବାପୁଜୀଙ୍କର ପ୍ରିୟ ଭଜନ)

ବୈଷ୍ଣବ ଜନ ତୋ ତେନେ କହିୟେ
ଯେ ପୀଡ ପରାଈ ଜାଣେ ରେ ।
ପର ଦୁଃଖେ ଉପକାର କରେ ତୋୟେ,
ମନ ଅଭିମାନ ନ ଆଣେ ରେ ॥୦॥
ସକଲ ଲୋକମା ସହୁନେ ବନ୍ଦେ,
ନିନ୍ଦା ନ କରେ କେନୀରେ,
ବାଚ କାଛ ମନ ନିଶ୍ଚଳ ରାଖେ,
ଧନ ଧନ ଜନନୀ ତେନୀ ରେ ॥୧॥
ସମଦୃଷ୍ଟି ନେ ତୃଷ୍ଣ ତ୍ୟାଗୀ,
ପର - ସ୍ତ୍ରୀ ଯେନେ ମାତରେ
ଜିହ୍ୱା ଥକୀ ଅସତ୍ୟ ନ ବୋଲେ,
ପରଧନ ନବଝାଲେ ହାଥରେ ॥୨॥
ମୋହ ମାୟା ବ୍ୟାପେ ନ ହି ଯେନେ,
ଦୃଢ ବୈରାଗ୍ୟ ଯେନା ମନ ମାଁରେ,
ରାମ ନାମଶୁଁ ତାଲୀ ଲାଗି,
ସକଲ ତୀରଥ ତେନା ତନ ମାଁ ରେ ॥୩॥
ବଣ ଲୋଭୀନେ କପଟ ରହିତ ଛେ,
କାମ କ୍ରୋଧ ନିବାର୍ୟାରେ,
ଭଣେ ନରସିଁ ୟୋଁ ତେନୁଁ ଦରଶନ,
କରତା କୁଲ ଏକୋତେର ତ୍ୟାରରେ ॥୪॥

# ରାମଧୂନ



ରଘୁପତି ରାଘବ ରାଜାରାମ, ପତିତପାବନ ସୀତାରାମ ।
ଶୁଭଶାନ୍ତି ବିଧାୟକ ରାଜାରାମ, ପତିତପାବନ ସୀତାରାମ ।
ନିର୍ଭୟ କର ପ୍ରଭୁ ରାଜାରାମ, ପତିତପାବନ ସୀତାରାମ ।
ମଙ୍ଗଳ ପରଶନ ରାଜାରାମ, ପତିତପାବନ ସୀତାରାମ ।
ବରାଭୟ ଦାନରତ ରାଜାରାମ ପତିତପାବନ ସୀତାରାମ ।
ଦୀନ ଦୟାଲ ପ୍ରଭୁ ରାଜାରାମ ପତିତପାବନ ସୀତାରାମ ।
ଈଶ୍ୱର ଆଲ୍ଲା ତେରେ ନାମ୍, ସବ୍‌କୋ ସନ୍‌ମତି ଦେଭଗବାନ୍ । ଆଲ୍ଲା ମଜଦା ଜିହୋବା ରାମ ଏକ୍ ହୀ ମାଲିକ ତୁଝେ ପ୍ରଣାମ ।
ରାମ ରହୀମ୍ ତେରେ ନାମ୍, ସବ୍‌କୋ ସନ୍‌ମତି ଦେ ଭଗବାନ୍ । କୃଷ୍ଣ କରିମ୍ ତେରେ ନାମ୍, ସବ୍‌କୋ ସନ୍‌ମତି ଦେ ଭଗବାନ୍ । ❑

# ସ୍ୱସ୍ତି ବାଚନ

ବିପତ୍ତୌ ନୈବ ବିପଦଃ, ସମ୍ପଦୋ ନୈବ ସମ୍ପଦଃ ; ବିପଦ୍‌ବି ସ୍ମରଣଂ ବିଷ୍ଣୋ ସମ୍ପନ୍ ନାରାୟଣ ସ୍ମୃତିଃ ।
ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ । ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିଦ୍ ଦୁଃଖ ଭାଗ୍‌ଭବେତ୍ ।
ହରି ଓଁ ତଦ୍‌ସଦ୍ ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ । ❑

# ଆହାର କାଳୀନ ପ୍ରାର୍ଥନା

ଓଁ ସହନାବବତୁ । ସହନୌ ଭୁନକ୍ତୁ । ସହବୀର୍ଯ୍ୟଂ କରବା ବହୈ । ତେଜସ୍ୱୀ ନାବଧୀତ ମସ୍ତୁ । ମା ବିଦ୍ୱିଷା ବହୈ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ସେ (ପରମାତ୍ମା) ଆମକୁ ରକ୍ଷା କରନ୍ତୁ, ଆମର ଉପଯୋଗ କରନ୍ତୁ । ଆମେ ସାଥୀ ହୋଇ ପୁରୁଷାର୍ଥ କରିବା । ଆମ ବିଦ୍ୟା ତେଜସ୍ୱୀ ହେଉ । ଆମେ କଳି କରିବା ନାହିଁ । ❑

# ସ୍ମରଣିକା ପ୍ରସଙ୍ଗ

ପୁରୀ ମହୋଦଧିରେ ମହାତ୍ମାଗାନ୍ଧୀଙ୍କ ପବିତ୍ର ଚିତାଭସ୍ମ ବିସର୍ଜନର ଅର୍ଦ୍ଧଶତାବ୍ଦୀ ପୂର୍ତ୍ତି ଉପଲକ୍ଷେ ଏକ ତଥ୍ୟାତ୍ମକ ସ୍ମରଣିକା ପ୍ରକାଶ ପାଇଁ ଆମ୍ଭେମାନେ ମନ କଲୁଁ । ସ୍ମରଣିକାଟିକୁ ପାଠକମାନେ ଘରେ ସାଇତି ରଖିଲା ଭଳି ସଂକଳନ କରିବାକୁ ମନ ନେଇ ଉପଯୋଗୀ ଲେଖା ସଂଗ୍ରହ ପାଇଁ ବିଶେଷ ଧ୍ୟାନ ଦେଇଛୁଁ ।

ଏହି ସ୍ମରଣିକାରେ ଯେଉଁସବୁ ପରିଚ୍ଛେଦ ରହିଛି । ତନ୍ମଧ୍ୟରୁ "ସମୁଦ୍ର ମନ୍ଥନ" ପରିଚ୍ଛେଦଟି ବିଶେଷ ମହତ୍ତ୍ୱପୂର୍ଣ୍ଣ । ମହାତ୍ମାଗାନ୍ଧୀ ଦେଶ ଓ ଜାତିକୁ ଉଦ୍‌ବୁଦ୍ଧ କରାଇବା ଲକ୍ଷ୍ୟରେ ଯେଉଁ ରତ୍ନଗର୍ଭ ସାଗର ସୃଷ୍ଟି କରିଯାଇଛନ୍ତି, ତହିଁରୁ କେତୋଟି ରତ୍ନ ଆମେ ଏ ସ୍ମରଣିକାରେ ସନ୍ନିବେଶ କରିଛୁ । ସନ୍ଥ ବିନୋବା, ବିଶିଷ୍ଟ ଗାନ୍ଧୀ ଅର୍ଥନୀତିଜ୍ଞ ୰ ପ୍ରଫେସର କୁମାରପ୍ପାଙ୍କର କେତୋଟି ବିଚାର ଏଥିରେ ସ୍ଥାନ ପାଇଛି । ସଂପ୍ରତି ଜନ ବିସ୍ଫୋରଣକୁ ପ୍ରତିହତ କରାଇବା ଲକ୍ଷ୍ୟରେ ଯେଉଁ ଯାନ୍ତ୍ରିକ ପ୍ରୟୋଗର ବହୁଳ ପ୍ରଚାର ହେଉଛି, ଖ୍ରୀଷ୍ଟ ଜଗତର ଧର୍ମଗୁରୁ ପୋପ୍ ପଲ୍ ୧୯୬୪ ମସିହାରେ ଭାରତ ଗସ୍ତରେ ଆସିଥିଲା ବେଳେ ତାହା ଉପରେ ଦେଇଥିବା ମନ୍ତବ୍ୟର ଆଭା ପାଠକମାନେ ଏହି ସ୍ମରଣିକାରୁ ପାଇବେ । ବିଶିଷ୍ଟ ଗାନ୍ଧୀବାଦୀ ପ୍ରଫେସର ଠାକୁର ଦାସ ବଙ୍ଗ, ଶ୍ରୀ ମନମୋହନ ଚୌଧୁରୀ, ଅନ୍ନପୂର୍ଣ୍ଣା ମହାରାଣାଙ୍କ ଲେଖା ଏହି ସ୍ମରଣିକାକୁ ସମୃଦ୍ଧ କରିଛି । ଭାରତର ମୁକ୍ତି ସଂଗ୍ରାମରେ ସେନାପତିତ୍ୱ କରିବାର ଗୁରୁଦାୟିତ୍ୱ ବହନ କରିଥିବା ଗାନ୍ଧୀ କୌଣସି ଶିଶୁ ଠାରୁ ଗ୍ରହଣ କରିଥିବା ସାମାନ୍ୟ ଟିକି ପେନ୍‌ସିଲ୍‌ଟିକୁ ମଧ ଭୁଲି ପାରିନ ଥିବା ଭଳି କେତୋଟି କଥା "ମନଲାଖିକଥା" ପର୍ଯ୍ୟାୟରେ ସ୍ଥାନ ପାଇଛି । ଉତ୍କଳ ଗାନ୍ଧୀ ସ୍ମାରକ ନିଧି, କସ୍ତୁରବା ଗାନ୍ଧୀ ଜାତୀୟ ସ୍ମାରକ ଟ୍ରଷ୍ଟ, ଉତ୍କଳ ନବ ଜୀବନ ମଣ୍ଡଳ, ସର୍ବୋଦୟ ମଣ୍ଡଳ, ସର୍ବୋଦୟ ସମିତି ଭଳି ରଚନାତ୍ମକ ସଂସ୍ଥା ମାନଙ୍କର ପରିଚିତି ଏଥିରେ ରହିଛି । ବିଦେଶୀଙ୍କ ଦୃଷ୍ଟିରେ ମହାତ୍ମାଗାନ୍ଧୀ, ଅନ୍ତିମ ଜୟନ୍ତୀ ବାସରରେ ଗାନ୍ଧିଜୀଙ୍କ ବିଚାର, ଗାନ୍ଧୀବାଣୀ, ଇସ୍‌ଲାମ୍‌ରେ ମଦ୍ୟ ନିଷେଧ, ଉଦାରୀକରଣ ଅର୍ଥନୀତିରେ ବିପଦ ଉପରେ ଶ୍ରୀ ରବିରାୟ, ଡକ୍ଟର ବୈଦ୍ୟନାଥ ମିଶ୍ର ଓ ଶ୍ରୀ ଅନୀଲ ପ୍ରକାଶ ଙ୍କ ବିଚାର ସ୍ମରଣିକାର ମହତ୍ତ୍ୱ ବଢ଼ାଇଛି । ଗ୍ରାମ ସ୍ୱରାଜ୍ୟ ପ୍ରତିଷ୍ଠା କଳ୍ପେ ବଣ ପାହାଡ଼ ଘେରା ଅଗମ୍ୟ ଅଞ୍ଚଳରେ କର୍ମରତ ୧୭ ଜଣ ଉତ୍ସର୍ଗୀକୃତ କର୍ମୀ ନିଜ ନିଜର ଅନୁଭୂତି ପଠାଇ ସ୍ମରଣିକାକୁ ଜୀବନ୍ତ କରିଛନ୍ତି । ସ୍ୱୟଂ ସେବକ ଡାଃ. ଯୁଧିଷ୍ଠିର ଦୀକ୍ଷିତ ଓ ଡ଼ାଃ ଗୌରାଙ୍ଗ ଚରଣ ମହାପାତ୍ର ବିସର୍ଜନ ଦିବସର ସ୍ମୃତି ଚାରଣ କରିଛନ୍ତି ।

ସର୍ବୋଦୟ ମେଳା ଆନୁକୂଲ୍ୟରେ ବର୍ଷସାରା ଆମେମାନେ ଯେଉଁ ଜାତୀୟପର୍ବ ପାଳନ କରୁଛୁ, ତତ୍‌ସମ୍ବନ୍ଧୀୟ ବିବରଣୀ, ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଇନ୍ଦୁ ଭୂଷଣ ମିଶ୍ର ଓ ଶରତ ଚନ୍ଦ୍ର ମହାରଣାଙ୍କ ନଇ ତାଲିମ ଅନୁଭୂତି, ବୋଧିପ୍ରିୟ ରାଧାକୃଷ୍ଣ ସାହୁଙ୍କର "ସର୍ବୋଦୟରେ ବୌଦ୍ଧ ଦର୍ଶନ", ପଞ୍ଚାୟତ ରାଜ ଓ

ନିଶାମୁକ୍ତି ପାଇଁ ସମ୍ବିଧାନର ନିର୍ଦ୍ଦେଶ, ଗ୍ରାମ ସ୍ୱରାଜ୍ୟ ଗାଡିକା ଓ ସୁବର୍ଣ୍ଣ ସ୍ୱାଧୀନତା ଗହନ ରୂପ ବର୍ଣ୍ଣନା କରି ବିଦଗ୍ଧ କବୟତ୍ରୀ ଅନ୍ନପୂର୍ଣ୍ଣା ଦାସଙ୍କ ଉଦ୍‌ବୋଧନୀ ଏହି ସ୍ମରଣିକାରୁ ପଢିବାକୁ ପାଇ ପାଠକମାନେ ଅଭିଭୂତ ହେବେ । ବାଲିଗୁଡାରେ କର୍ତ୍ତବ୍ୟରତ 'ଆଣ୍ଣା' ନାମରେ ବିଦିତ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ କଲିକତାରେ ରହୁଥିବା ସର୍ବୋଦୟ କର୍ମୀ ଶ୍ରୀ ଅମର ନାଥ ଚଟ୍ଟୋପାଧ୍ୟାୟଙ୍କ ଶୁଭେଚ୍ଛା ସ୍ମରଣିକା ପାଇଁ ଶୁଭାଶିଷ ହୋଇଛି ।

ପାଣ୍ଡୁଲିପି ପ୍ରଣୟନରେ ସର୍ବୋଦୟ ମେଳା ସଦସ୍ୟମାନଙ୍କ ବ୍ୟତୀତ ରକ୍ଷକ କୁମାର ନାୟକ, ଜ୍ୟୋସ୍ନା ନାୟକ, ଗାୟତ୍ରୀ ଦେବୀ, ମୀରା ନାୟକ ପ୍ରମୁଖ ସର୍ବୋଦୟ ମେଳାର ସହଯୋଗୀବୃନ୍ଦ ସ୍ୱୟଂସେବା ଦାନ କରିଛନ୍ତି ।

ଏହି ଅବସରରେ ଆମେମାନେ ସମସ୍ତଙ୍କ ପ୍ରତି ସାଧୁବାଦ ଓ କୃତଜ୍ଞତା ଜ୍ଞାପନ କରୁଛୁଁ । ଆଶା, ଜାତିର ଜନକ ପୂଜ୍ୟ ବାପୁଜୀଙ୍କ ଶୁଭାଶିଷ ଦେବଲୋକରୁ ଲାଭ କରି ସେମାନେ କୃତାର୍ଥ ହେବେ ।

❑ **ସର୍ବୋଦୟ ମେଳା କମିଟି, ପୁରୀ ।**

# हमारा मिशन

**हम किसी भी देश – विशेष के आग्रही नहीं। किसी भी धर्म विशेष के आग्रही नहीं। किसी भी संप्रदाय में या जाति – विशेष में बद्ध नहीं। विश्व में उपलब्ध सद्विचारों के उद्यान में विहार करना यह हमारा स्वाध्याय। सद्विचारों को आत्मसात् करना यह हमारा धर्मा विविध विशेषता ओं में सामंजस्य प्रसथापित करता, विश्व – वृत्ति का विकास करना यह हमारी वैचारिक साधना।**

**– विनोबा**

# ସମୁଦ୍ର ମନ୍ଥନ

## ଆର୍ଥିକ ସମାନତା

ଏହା ହେଉଛି ଅହିଂସାତ୍ମକ ସ୍ୱାଧୀନତାର ଚାବିକାଠି । ଆର୍ଥିକ ସମାନତା ପାଇଁ କାମକରିବାର ଉଦ୍ଦେଶ୍ୟ ହେଉଛି ପୁଞ୍ଜି ଓ ଶ୍ରମ ଭିତରେ ଥିବା ଚିରନ୍ତନ ସଂଘର୍ଷକୁ ଲୋପକରିବା । ଏହାର ଅର୍ଥ ହେଉଛି ଗୋଟିଏ ପକ୍ଷରେ ଯେଉଁ କେତେକ ଧନୀ ଲୋକଙ୍କ ହାତରେ ରାଷ୍ଟ୍ରର ସମ୍ପତ୍ତିର ବେଶିଭାଗ ଠୁଳ ହୋଇ ରହିଛି, ସେମାନଙ୍କୁ ତଳକୁ ଖସାଇ ଦେବା ଏବଂ ଅନ୍ୟ ପକ୍ଷରେ ଯେଉଁ କୋଟି କୋଟି ଲୋକ ଅର୍ଦ୍ଧ ଅନଶନରେ ଓ ଲଙ୍ଗଳା ଅବସ୍ଥାରେ ଅଛନ୍ତି ସେମାନଙ୍କୁ ଉପରକୁ ଉଠାଇବା । ଧନୀ ଲୋକ ଓ କୋଟି କୋଟି ଭୋକିଲା ଲୋକଙ୍କ ଭିତରେ ବିରାଟ ବ୍ୟବଧାନ ରହିଥିବାଯାଏଁ ଅହିଂସା ମୂଳକ ଶାସନ ବ୍ୟବସ୍ଥା ସ୍ପଷ୍ଟ ରୂପେ ଅସମ୍ଭବ । ଯେଉଁ ସ୍ୱାଧୀନ ଭାରତରେ ସବୁଠାରୁ ବଡ ଧନୀ ଲୋକେ ଯେଉଁ କ୍ଷମତା ଭୋଗ କରିବେ, ଗରିବ ଲୋକେ ମଧ୍ୟ ସେହି କ୍ଷମତା ଉପଭୋଗ କରିବେ । ସେହି ଭାରତରେ ନୂଆଦିଲ୍ଲୀର ପ୍ରାସାଦ ଓ ତାହା ନିକଟରେ ଥିବା ଗରିବ ଶ୍ରମିକ ମାନଙ୍କର ଭଙ୍ଗାଟୁଟା କୁଡିଆ ମଧ୍ୟରେ ବୈସାଦୃଶ୍ୟ ବା ବିଷମତା ଅନ୍ତତଃ ଦିନକ ପାଇଁ ବି ତିଷ୍ଠି ପାରିବ ନାହିଁ ।

ଯଦି ଧନୀଲୋକେ ନିଜର ଧନ ସମ୍ପତ୍ତିକୁ ଓ ସେଥିରୁ ଉତ୍ପନ୍ନ କ୍ଷମତାକୁ ସ୍ୱେଚ୍ଛାରେ ଛାଡି ନଦିଅନ୍ତି, ଏବଂ ସର୍ବସାଧାରଣଙ୍କ କଲ୍ୟାଣ ପାଇଁ ମିଳି ମିଶି ଭୋଗ ନ କରନ୍ତି ତେବେ ଦିନେ ନା ଦିନେ ଏ ଦେଶରେ ହିଂସା ପୂର୍ଣ୍ଣ ରକ୍ତାକ୍ତ ବିପ୍ଳବ ହେବା ନିଶ୍ଚିତ।

ମୋର ନ୍ୟାସିବାଦ (ଟ୍ରଷ୍ଟିସିପ୍) ସିଦ୍ଧାନ୍ତକୁ ବିଦ୍ରୂପ କରାଯାଉଥିଲେ ସୁଦ୍ଧା ମୁଁ ତାକୁ ଦୃଢକରି ଧରିଛି। ଏକଥା ସତ ଯେ ତାକୁ କାର୍ଯ୍ୟକାରୀ କରିବା କଷ୍ଟକର। ଅହିଂସା ବି ସେମିତି କଷ୍ଟକର। ମାତ୍ର ଆମେ ୧୯୨୦ରେ ସେହି ଦୁଷ୍କର ସଂକଳ୍ପ କରିଥିଲୁ। ସେ ଦିଗରେ ଆମର ପ୍ରୟାସ ଉଚିତ୍ ବୋଲି ଭାବିପାରିଛୁ। ସେ ଦିଗରେ ଉଚିତ୍ ବୋଲି ବୁଝିପାରିଛୁ। ଅହିଂସା କିପରି କାର୍ଯ୍ୟ କରେ, ତାହାର ଉତ୍ତରୋତ୍ତର ଦୈନନ୍ଦିନ ମୂଲ୍ୟ ବୋଧ ସେଥିରେ ନିହିତ ଅଛି। ଆଶାକରାଯାଏ ଯେ ଅହିଂସା ନୀତି କାହିଁକି ବ୍ୟବହାର କରାଯିବ। ତାହାର କାରଣ କଂଗ୍ରେସ ଲୋକେ ନିଜେ ଅଧ୍ୟବସାୟ ସହକାରେ ଅନୁସନ୍ଧାନ କରି ବାହାର କରିବେ। ବର୍ତ୍ତମାନ ବିଦ୍ୟମାନ ବୈଷମ୍ୟଗୁଡ଼ିକୁ ହିଂସାତ୍ମକ ଉପାୟରେ କିପରି ଦୂର ହୋଇପାରିବ, ତାହା ସେମାନଙ୍କର ନିଜକୁ ପଚାରିବା ଉଚିତ୍। ମୁଁ ଭାବୁଛି, ଆମେ ହିଂସାତ୍ମକ ବାଟଟି ଜାଣୁ। କୌଣସି ସ୍ଥାନରେ ଏହା ସଫଳ ହୋଇନାହିଁ।

ଅହିଂସାତ୍ମକ ପ୍ରୟୋଗ ଏବେବି ଶୈଶବାବସ୍ଥାରେ ଅଛି। ଏ ପ୍ରୟୋଗରେ ସେମିତି କୌଣସି ଆଖିଦୃଶିଆ କାମ ଆମେ କରି ନାହୁଁ। ତଥାପି ଏକଥା ନିଶ୍ଚିତ ଯେ ଗତି ଯେତେ ଧିର ମନ୍ଥର ହେଉପଛେ, ଅର୍ଥନୀତିକ ସମାନତା ଦିଗରେ ଏହି ଅହିଂସକ ପଦ୍ଧତି ଆରମ୍ଭ ହୋଇସାରିଲାଣି। ପୁଣି ଅହିଂସାର ପଦ୍ଧତି ହୃଦୟ ପରିବର୍ତ୍ତନ ପ୍ରକ୍ରିୟା ହୋଇଥିବାରୁ ଯଦି ଏହି ହୃଦୟ ପରିବର୍ତ୍ତନ ହୁଏ, ତେବେ ତାହା ସ୍ଥାୟୀ ହେବା ଉଚିତ୍। କୌଣସି ସମାଜ ବା ରାଷ୍ଟ୍ର ଅହିଂସକ ପଦ୍ଧତିରେ ଗଢାହୋଇଥିଲେ ତାହା ଉପରେ ଭିତରୁ ବା ବାହାରୁ ଯେତେ ଆକ୍ରମଣ ହେବ, ସେ ସବୁର ପ୍ରତିରୋଧ କରିବାକୁ ସମର୍ଥ ହେବା ଉଚିତ୍। ଆମ ସଂଗଠନରେ ଧନୀ କଂଗ୍ରେସଲୋକେ ଅଛନ୍ତି। ସେମାନେ ବାଟ ଦେଖାଇବା ଉଚିତ୍। ଏ ଲଢେଇ ପ୍ରତ୍ୟେକ କଂଗ୍ରେସ ଲୋକଙ୍କୁ ଗଭୀରତମ ଆତ୍ମନିରୀକ୍ଷଣର ସୁଯୋଗଦେଉଛି। ଯଦି କେବେ ଆମେ ସମାନତା ପ୍ରତିଷ୍ଠା କରିବାକୁ ଚାହୁଁ, ତେବେ ତାହାର ମୂଳଦୁଆ ବର୍ତ୍ତମାନ ପଡିବା ଉଚିତ୍। ଯେଉଁ ମାନେ ଭାବୁଛନ୍ତି ଯେ, ସ୍ୱରାଜ୍ୟ ହେବା ପରେ ଯାଇ ବଡ ବଡ ସଂସ୍କାର ହେବ, ଅହିଂସକ ସ୍ୱରାଜ୍ୟର କାମ କିପରି ହୁଏ - ଏହି ପ୍ରାଥମିକ କଥାଟି ବୁଝିବାରେ ସେମାନେ ନିଜକୁ ପ୍ରତାରିତ କରୁଛନ୍ତି। ଦିନେ ଏକ ସୁନ୍ଦର ଚମତ୍କାର ସକାଳେ ଅହଂସକ ସ୍ୱରାଜ୍ୟ ଅକସ୍ମାତ୍ ଆକାଶରୁ ଗଳିପଡିବ ନାହିଁ। ଖଣ୍ଡଏ ଇଟା ଉପରେ ଆଉ ଖଣ୍ଡିଏ ଇଟା ବସାଇ କୋଠାଘର ଗଢିବା ଭଳି ସମସ୍ତଙ୍କୁ ମିଳି ମିଶି ଏହି ସ୍ୱରାଜ୍ୟ ସୌଧ ଗଢିବାକୁ ହେବ। ସେ ଦିଗରେ ଆମେ ଅନେକ ବାଟ ଆଗେଇ ଆସିଲୁଣି। କିନ୍ତୁ ସ୍ୱରାଜ୍ୟର ଗୌରବମୟ ଶୋଭା ଦେଖିବା ପୂର୍ବରୁ ଆମକୁ ଏହାଠାରୁ ଅଧିକ ଦୀର୍ଘ ଓ କ୍ଲାନ୍ତିଦାୟକ ପଥ ଅତିକ୍ରମ କରିବାକୁ ପଡିବ। ପ୍ରତ୍ୟେକ କଂଗ୍ରେସ ଲୋକ ନିଜକୁ ପଚାରନ୍ତୁ ଯେ, ଆର୍ଥିକ ସମାନତା ସ୍ଥାପନା କରିବା ଲାଗି ସେ ନିଜେ କ'ଣ କରିଛନ୍ତି।

❑ ରଚନାତ୍ମକ କାର୍ଯ୍ୟକ୍ରମ, ପୃଷ୍ଠା ୩୩-୩୪

ଅହିଂସା ଦୁର୍ବଳର ଅସ୍ତ୍ର ନୁହେଁ - ସର୍ବାପେକ୍ଷା ଶକ୍ତିମାନ ଲୋକର ହତିଆର, ଅହିଂସକ ଲୋକପକ୍ଷରେ ମାଂସ ପେଶୀ ବଳର ପ୍ରୟୋଜନ ନାହିଁ। ଆତ୍ମାର ବଳତା ପକ୍ଷରେ ଅପରିହାର୍ଯ୍ୟ।

# ପୁରୁଷାର୍ଥ ଲୋଡ଼ା .. (ବିନୋବା)

ସରକାରଙ୍କର ପରିବାର ନିୟନ୍ତ୍ରଣ ଯୋଜନା ସଂପର୍କରେ ଆପଣଙ୍କର ମତ କ'ଣ ବୋଲି ଜଣେ ପ୍ରଶ୍ନ କରିଥିଲେ । ଉତ୍ତରରେ ବିନୋବାଜୀ ଯାହା କହିଥିଲେ ତାହାର ସାରମର୍ମ ନିମ୍ନରେ ପ୍ରଦତ୍ତ ହେଲା ।

ପରିବାର ନିୟନ୍ତ୍ରଣ ଯୋଜନାର ଅନେକ ଗୁଡିଏ ଦିଗ ଅଛି । ଆଧ୍ୟାତ୍ମିକ, ସାମାଜିକ ଓ ଐହିକ ଦୃଷ୍ଟିରୁ ଏହାଗୁରୁତ୍ୱ ପୂର୍ଣ୍ଣ ।ସେଥିପାଇଁ ଏ ଯୋଜନା ବିଷୟରେ କିଛି ନିର୍ଣ୍ଣୟ କରିବା ଅଧିକାର ଜନସାଧାରଣଙ୍କୁ ଦେଇ ହେବନାହିଁ । ଚିନ୍ତା ଶୀଳ ବ୍ୟକ୍ତିମାନଙ୍କର ଏବିଷୟରେ ଚିନ୍ତା କରିବା କର୍ତ୍ତବ୍ୟ । ପରିବାର ନିୟନ୍ତ୍ରଣ ଅର୍ଥ ହେଉଛି ଆତ୍ମସଂଯମ ବା ନିଜକୁ ଆୟତ୍ତରେ ରଖିବା । ଏହା କିଛି ଅସମ୍ଭବ ବ୍ୟାପାର ନୁହେଁ । ଏ ବିଜ୍ଞାନ ଯୁଗରେ ନିଜକୁ ଆୟତ୍ତ ରଖିବାଟା ପ୍ରାଚୀନ ଯୁଗ ଅପେକ୍ଷା ଅଧିକ ସହଜ ସାଧ୍ୟ ହେବା ଉଚିତ୍ । ଏ ପରିବାର ନିୟନ୍ତ୍ରଣର ସ୍ୱରୂପ କ'ଣ, ପରିବାରର ଉଦ୍ଦେଶ୍ୟ କ'ଣ ବ୍ରହ୍ମଚର୍ଯ୍ୟ ସାଧନା କହିଲେ କ'ଣ ବୁଝାଏ, ସେଥିରେ କିଶକ୍ତି ନିହିତ ଆଦି ବିଷୟରେ ଜନସାଧାରଣ ଏ ବିଜ୍ଞାନ ଯୁଗରେ ବହୁତ ଜ୍ଞାନ ଅର୍ଜିପାରିବେ ଯାହାକି ପୂର୍ବେ ଏତେଜଣା ନଥିଲା ।

ଅଧ୍ୟାତ୍ମିକ ଦୃଷ୍ଟିରୁ 'ଫାମିଲି ପ୍ଲାନିଙ୍ଗର ଅର୍ଥ ହୋଇପାରେ' ''ଆମର ଦୁଇଟିରୁ ଅଧିକ ସନ୍ତାନ ଲୋଡ଼ାନାହିଁ'' । ଏହି ବିଚାର ଅନୁସାରେ ମଣିଷ ନିଜ ଜୀବନରେ ସଂଯମ ଯୋଜନା କରିପାରିବ । ଏଇଟା ଗୋଟିଏ ପ୍ରକାର ବାଟ । ଅନ୍ୟ ବାଟ ହେଉଛି- ନିଜକୁ ଆୟତ୍ତରେ ରଖିବା କିଛି ଦରକାର ନାହିଁ ଓ ଆୟତ୍ତରେ ରଖିବା ମଧ୍ୟ ସାଧ୍ୟାତୀତ । ତେଣୁ କୃତ୍ରିମ ଉପାୟରେ ଜନ୍ମ ନିୟନ୍ତ୍ରଣ କରିବାକୁ ହେବ । ଅର୍ଥାତ୍ ବୀଜ ବୁଣାଯିବ କିନ୍ତୁ ଫସଲ ଯେପରି ନ ହେବ - ତାହାରି ଯୋଜନା !! ଗୋଟିଏ ସାଧାରଣ ଶସ୍ୟ ବୀଜ ଯଦି ଅଯଥାରେ ନଷ୍ଟ ହୋଇଯିବ ତେବେ ତାହା ରାଷ୍ଟ୍ରୀୟ କ୍ଷତି ବୋଲି ଆପଣ ସ୍ୱୀକାର କରିବେ । ତା'ହେଲେ ଯେଉଁ ଶକ୍ତିଦ୍ୱାରା ମନୁଷ୍ୟ ନିର୍ମାଣ ହୁଏ ସେହି ଶକ୍ତିର ଅପଚୟ କେଡ଼େ ବଡ଼ ମୂର୍ଖତା ! ଏସବୁ ବୁଝିବା ଓ ବୁଝାଇବା ଦରକାର ।

ଆମ ମଧ୍ୟରେ ଯେଉଁ ଶକ୍ତି ଅଛି ତାକୁ ବହୁତ ଉପରକୁ ଉଠାଇବା ହେବ । ଦୀପ ବା ଲଣ୍ଠନର ଶିଖାକୁ ଠିକ୍‌ପଟ୍ ତେଲ ଯୋଗାଇଦେଲେ ତାହାର ପ୍ରଭା ଜ୍ୟୋତି ବିଚ୍ଛୁରିତ ହୁଏ । ମଣିଷ ପାଇଁ ବ୍ରହ୍ମଚର୍ଯ୍ୟ ହେଉଛି ତେଲ । ବୁଦ୍ଧି ମତା ହେଉଛି ସେହି ତେଲ ବଳରେ ଜଳୁଥିବା ଆଲୁଅ । ବ୍ରହ୍ମଚର୍ଯ୍ୟରୂପୀ ତେଲ ଯଦି ବରାବର ସପ୍ଲାଇ ହେବ ତେବେ ବୁଦ୍ଧି ମତା ତେଜସ୍ୱୀ ହେବ । ନଚେତ୍ ବୁଦ୍ଧି କ୍ଷୀଣ ହେବ, ପ୍ରତିଭା ଊଣା ହୋଇଯିବ ।

କୃତ୍ରିମ ଉପାୟ ଅବଲମ୍ବନ ଫଳରେ କେବଳ ଯେ ସନ୍ତାନ ସଂଖ୍ୟା କମିବ ନାହିଁ, ବୁଦ୍ଧି ମତା ମଧ୍ୟ କମିବ. ଏହା - ହୃଦୟଙ୍ଗମ ହେବା ଆବଶ୍ୟକ । କୃତ୍ରିମ ଜନ୍ମନିୟନ୍ତ୍ରଣ ଫଳରେ ପତିପତ୍ନୀ ଉଭୟଙ୍କର ବୁଦ୍ଧି ମତାକ୍ଷୀଣ ହେବ । ଉଭୟେ ବୁଦ୍ଧିର ଭାରସାମ୍ୟ ହାରାଇବେ ତ ନିସ୍ତେଜ ହୋଇଯିବେ । ଏ ଯେଉଁ ସୃଜନାତ୍ମକ ଶକ୍ତି - (Creative energy), ଯାହାକୁ ଆମେ ବୀର୍ଯ୍ୟ କହୁ, ଯେଉଁଥିରୁ ବାଲ୍ମୀକି ଭଳି ମହାକବି, ହନୁମାନ ପରି ମହାବୀର ଜନ୍ମଗ୍ରହଣ କରିଛନ୍ତି, ପ୍ରତିଭାବନ ଓ ତତ୍ତ୍ୱଜ୍ଞାନୀପୁରୁଷ ବାହାରିଛନ୍ତି, ସେହି ନିର୍ମାଣ - ଶକ୍ତିର ଅପବ୍ୟବହାର ହେଉଛି । ଅର୍ଥାତ୍ ସଂଖ୍ୟା ନିୟନ୍ତ୍ରଣ କରି ସନ୍ତାନ ହେବାକୁ ନଦେଇ ସେ ଶକ୍ତିର ଯେ ଅନ୍ୟବିନିଯୋଗ ହୁଅନ୍ତା ତାହା ନ କରି କେବଳ ବିଷୟ ଉପଭୋଗରେ ତାହା ଖରଚ ହୋଇଯାଉଛି । ବିଷୟ ବାସନ ଉପରେ ଯେଉଁ ଅଙ୍କୁଶ ରହୁଥିଲା, କୃତ୍ରିମ ଜନ୍ମ ନିୟନ୍ତ୍ରଣ ଫଳରେ ତାହା ଆଉ ରହିବ ନାହିଁ । ସନ୍ତାନ ଉତ୍ପାଦନ ନ ହେବାର ବ୍ୟବସ୍ଥା କରି ପତିପତ୍ନୀ ବିଷୟ ବାସନାରେ ବ୍ୟସ୍ତ ରହିଲେ

ପତିପତ୍ନୀଙ୍କ ବୁଦ୍ଧି ତ ଭାରସାମ୍ୟ ହରାଇବ, ଫଳରେ ଦେଶ ମଧ୍ୟ ତେଜୋହୀନ ହୋଇଯିବ । ସନ୍ତାନ ସଂଖ୍ୟା ଅଳ୍ପ ହେଲେ ଭଲ ବିଚାରି ଏ ଉପାୟ ଗ୍ରହଣ କରିବାକୁ ସମାଜରେ ଉତ୍ସାହ ସୃଷ୍ଟି କରାଯିବ; କିନ୍ତୁ ତଦ୍ଦ୍ୱାରା କେବଳ ସନ୍ତାନ କମିବେ ନାହିଁ ତତ୍‌ସହିତ ଜ୍ଞାନପ୍ରଭା କମିବ, ପ୍ରଜ୍ଞା କମିବ, ତେଜସ୍ୱିତା ମଧ୍ୟ କମିବ ।

ମୁଁ ଆପଣଙ୍କ ଆଗରେ ଖୋଲା ଖୋଲି ଭାବରେ ସବୁ କହିଦେଉଛି । ଏପରି ସ୍ଥଳେ କେବଳ ବିବାହିତ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ସହବାସର ଆବଶ୍ୟକତା ଆଉ କଅଣ ରହିଲା ? ଆପଣ ତ ଏପରି ବ୍ୟବସ୍ଥା କରିଦେଲେ ଯେପରି ସନ୍ତାନ ଉତ୍ପାଦନ ନ ହେବ । ତା ହେଲେ ପତିପତ୍ନୀ ସମାଗମ ହେବ କେଉଁ ଉଦ୍ଦେଶ୍ୟରେ ? ଅନ୍ୟର ପତି ବା ଅନ୍ୟର ପତ୍ନୀ ସହିତ ସମାଗମ ନ ହେବ ବା କାହିଁକି ? କେବଳ ସ୍ୱାସ୍ଥ୍ୟହାନି ଦୃଷ୍ଟିରୁ ଏ ପ୍ରକାର ସମ୍ପର୍କ ବାରଣ କରିବା ଛଡା ଅନ୍ୟ କୌଣସି ଦୃଷ୍ଟି କୋଣରୁ ଆଉ କିଛି କ୍ଷତି ଅଛି ବୋଲି କେହି ଯୁକ୍ତି କରିପାରିବେ ନାହିଁ ? ଏ ବିଷୟରେ ଗଭୀର ଭାବରେ ଚିନ୍ତା କଲେ ଏହା ଯେ କେଡ଼େ ଜଟିଳ ସମସ୍ୟା, ତାହା ଆପଣ ଜାଣି ପାରିବେ ।

ଏହାଛଡ଼ା ଏହାର ଏକ ସାମାଜିକ ଦିଗ ମଧ୍ୟ ଅଛି । ତେଣେ ଚୀନ ସହିତ ଆପଣଙ୍କର ମୁକାବିଲା ଚାଲିଛି । ସେ ଦେଶରେ ସେମାନେ ସନ୍ତାନ ଉତ୍ପାଦନକୁ ଉତ୍ସାହିତ କରୁଛନ୍ତି । ଏହାର ପରିଣତି କ'ଣ ହେବ ଟିକିଏ ଭାବନ୍ତୁ ତ ! ଏତ ଅତି ସ୍ଥୂଳ ବିଷୟ ।

ଏସବୁ ଚିନ୍ତାକଲେ ଆପଣ ଦେଖିବେ ଯେ ଆମ ପୂର୍ବପୁରୁଷ ଯେଉଁ ବ୍ରହ୍ମଚର୍ଯ୍ୟାଶ୍ରମ ଗୃହସ୍ଥାଶ୍ରମ, ବାନପ୍ରସ୍ଥାଶ୍ରମ ଓ ସନ୍ନ୍ୟାସାଶ୍ରମର ଯୋଜନା ଗଢିଥିଲେ, ତାହାହିଁ ଠିକ୍ ପନ୍ଥା । ଏହି ପ୍ରକାର ମର୍ଯ୍ୟାଦା ପାଳିପାରିଲେ ତଦ୍ଦ୍ୱାରା ଆମର ଲାଭ ହେବ । ଗୃହସ୍ଥାଶ୍ରମରେ ରହିବା ସମୟ ପଚିଶ ବର୍ଷ ବୟସରୁ ପଇଁଚାଳିଶ ବର୍ଷ ପର୍ଯ୍ୟନ୍ତ କୋଡ଼ିଏ ବର୍ଷ ରହିଲେ ଏବଂ ଗୃହସ୍ଥାଶ୍ରମରେ ସଂଯମ ଦ୍ୱାରା ସନ୍ତାନ ନିୟନ୍ତ୍ରିତ ହେଲେ ଗୃହସ୍ଥ ଲାଭବାନ ତ [illegible]ମିକ ଶକ୍ତି ମଧ୍ୟ ଅର୍ଜନ କରିବେ ।

ଯେଉଁ ମାଟିରୁ ଜୀବଜନ୍ତୁ, ପ୍ରାଣୀ ଜନ୍ମଲାଭ କରୁଛନ୍ତି, ସେହି ପ୍ରାଣୀଙ୍କ ବୋଝ ବୋହିବାକୁ ମାଟି ଅସମର୍ଥ ହେବା କଦାପି ସମ୍ଭବ ନୁହେଁ । ସେଥିପାଇଁ ସଂଖ୍ୟାବଢିଲେ ପୁଷ୍ଟି ମିଳିବ ନାହିଁ ବୋଲି ଡରିବା ଅନାବଶ୍ୟକ । ଅବଶ୍ୟ ଏଥିପାଇଁ ମୋର ଗୋଟିଏ ସିଦ୍ଧାନ୍ତ ଆପଣଙ୍କୁ ମାନିନେବାକୁ ପଡ଼ିବ । ସେ ସିଦ୍ଧାନ୍ତଟି ହେଉଛି- ଆପଣ ମାଟିଠାରୁ ଯାହା ନେବେ, ତାହା ତାକୁ ଫେରାଇ ଦେବେ । ଆମେମାନେ ବର୍ତ୍ତମାନ ତାହା କରୁନାହିଁ । ମଳମୂତ୍ର ହାଡ଼ମାଂସରେ କେତେ ସାର, କେତେ ବଳ ଅଛି ସେସବୁ ମାଟିକୁ ଫେରାଇଦେବା ଉଚିତ୍ । ମାଟିରୁ ଯେଉଁ ହାଡ଼ ତିଆରି ହେଉଛି, ସେ ହାଡ଼କୁ ଆମେ ବୃଥାଟାରେ ଗଙ୍ଗାରେ ଭସାଇ ଦେଉଛୁ । ପଶୁପକ୍ଷୀ ମାଟିରୁ ଜନ୍ମ ଲଭିଛନ୍ତି । ସେମାନଙ୍କ ହାଡ଼ ମାଂସ ମାଟିରେ ମିଶିବ ।

ଏହିରୂପେ ଯଦି ମାଟିରେ ଏସବୁ ମିଶାଇ ଯିଆଯିବ ତେବେ ମୁଁ ଆପଣଙ୍କୁ କହିଦେଉଛି ମାଟିରୁ ଯେତେ ପ୍ରାଣୀ ଜନ୍ମିବେ, ସେ ସମସ୍ତଙ୍କୁ ପୋଷିବାକୁ ମାଟି ନିଶ୍ଚୟ ସମର୍ଥ ହେବ । ଏଇଟା ମୋର ସ୍ୱୟଂ ସିଦ୍ଧ (Axiomatic) ବଚନ ।

ଏ ଜଗତରେ ପରମେଶ୍ୱର ଅଛନ୍ତି । ସବୁ ବ୍ୟବସ୍ଥା ତାଙ୍କ ହାତରେ ଅଛି । ସେ ଚିନ୍ତା ତାଙ୍କୁ ଲାଗିଛି । ସେ ଯେତେବେଳେ ଦେଖିବେ ଯେ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ପରେ ସନ୍ତାନ ଆଉ ଅଧିକ ନ ହେବା ଉଚିତ୍ ସେତେବେଳେ ସେ ଆପଣଙ୍କୁ ସଂଯମ ବୁଦ୍ଧି ଦେବେ । ସେଥିପାଇଁ ମୁଁ ଆଜିକାଲି ଅତି ସରଳ ସାଦାସିଧା କଥାଟିଏ କହି ବୁଲୁଛି - ସହରର କାନ୍ଥବାଡ଼ ସଫାକର । ସହରର ପାଚେରୀ ଓ କାନ୍ଥରେ ଅଶ୍ଳୀଳ ଅଶୋଭନୀୟ ଚିତ୍ର ଓ ବିଜ୍ଞାପନ ମାରିବାଟା କ'ଣ ଅତ୍ୟାବଶ୍ୟକ କାର୍ଯ୍ୟ ? ବୁଦ୍ଧିକୁ ଦୂଷିତ କରୁଥିବା ଏ ଚିତ୍ର ଓ ବିଜ୍ଞାପନକୁ ସଫା କରିଦିଅ । ସାହିତ୍ୟଠାରୁ ବିଜ୍ଞାନ ଓ ଗଣିତ ବେଶୀ ଶିଖାଅ । ତୁଳସୀ ରାମାୟଣ, ଜ୍ଞାନେଶ୍ୱରୀ ପଢାଅ । ଲୋକଙ୍କୁ ସଂଯମ ଆଡ଼କୁ ଘେନିଯିବା ପାଇଁ ଯେଉଁପ୍ରକାର ବାୟୁମଣ୍ଡଳ ଆବଶ୍ୟକ, ସେହି ପ୍ରକାର ବାୟୁମଣ୍ଡଳ ସୃଷ୍ଟି

କର । ଟିକିଏ ପୁରୁଷାର୍ଥ ଶିଖାଅ । ସାଧାରଣତଃ ଯେଉଁ ପ୍ରାଣୀଠାରେ ପରାକ୍ରମ ଯେତେ କମ ତାହାର ସନ୍ତାନ ସଂଖ୍ୟା ସେତେ ବେଶୀ ହୁଏ । ସିଂହର ଅଳ୍ପ ଛୁଆ ହୁଅନ୍ତି, ଛେଳିର ବହୁତ ଛୁଆ । ଅତଏବ ସଂଯମାନୁକୂଳ ବାୟୁମଣ୍ଡଳ ସୃଷ୍ଟି ହେଉ । ମନୁ ଲେଖିଛନ୍ତି "ପୁତ୍ରଂ ଅନୁଶିଷ୍ଟଂ ଲୋକଂମାହୁଃ" ଉତ୍ତମ ପୁତ୍ର ପରଲୋକରେ ସୁଦ୍ଧା ପିତାଙ୍କ କାର୍ଯ୍ୟରେ ଲାଗେ । ସନ୍ତାନକୁ ଶକ୍ଷା ଦେବା, ତାହା ସହିତ ବସାଉଠା ହେବ, ସନ୍ତାନ ପାଖରେ ଶୋଇବାଦ୍ୱାରା ନିଜ ଉପରେ ଅଙ୍କୁଶ ରହେ । ସନ୍ତାନ ମା ବାପାଙ୍କ ପାଖରେ ରହିଲେ ତାକୁ ଲାଳନପାଳନ କରିବାରେ ବାପା ମାକୁ ସନ୍ତୋଷ ମିଳେ । ସଂଯମ ରକ୍ଷା କରିବାରେ ମଧ୍ୟ ଏହା ସହାୟକ ହୁଏ । ପତିପତ୍ନୀ ଯେଉଁ ପ୍ରକୋଷ୍ଠରେ ରହନ୍ତି ସେହି ପ୍ରକୋଷ୍ଠରେ ସେମାନଙ୍କର ଶିଶୁ ଶୋଇଲେ, ବାପା ମାଆ ତାକୁ କୋଳରେ ଧରି ଆଦର କଲେ ସେମାନଙ୍କ ଚିତ୍ତ ଉପରେ ଅଙ୍କୁଶ ରହେ । କୃତ୍ରିମ ଉପାୟ ଅପେକ୍ଷା ଏ ଉପାୟ ସଂଯମ ପାଇଁ ଅଧିକ ସାହାଯ୍ୟ କରେ । ପିଲାକୁ ଅନ୍ୟତ୍ର ରଖିଲେ ବାପା ମାଆ ଏକାକୀ ରହନ୍ତି । ଏଥିରେ ବିପଦ ଅଛି ।

ପୁତ୍ର ନିର୍ମାଣ କାର୍ଯ୍ୟଟି ଗୋଟିଏ ସମାଜସେବା । ଆପଣ ଯଦି ସମାଜକୁ ସୁ ସନ୍ତାନ ଦେଇପାରିବେ ତେବେ ତାହା ହିଁ ସମାଜସେବା ହେବ ।

ଅନୁବାଦ :- ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା (୧୧.୯.୬୫ 'ସମାଜ'ରୁ ଗୃହୀତ)

# ହିନ୍ଦୁ ଓ ହିନ୍ଦୁଧର୍ମ

ହିନ୍ଦୁଧର୍ମର ସର୍ବଶ୍ରେଷ୍ଠ ସଂସ୍କାରକ ସ୍ୱାମୀ ବିବେକାନନ୍ଦ, ପଣ୍ଡା ପୁରୋହିତଙ୍କ ଉତ୍ପାତରେ ବ୍ୟଥିତ ହୋଇ କହିଥିଲେ-

"Root out Priest craft from Hinduism and it is the best religion in the world."

ମହାତ୍ମାଗାନ୍ଧୀଙ୍କ ପଟ୍ଟଶିଷ୍ୟ ସନ୍ଥ ବିନୋବା ହିନ୍ଦୁ ସ୍ୱଧର୍ମ ବୁଝାଇବାକୁ ଯାଇ କହିଛନ୍ତି-

"ଯୋ ବର୍ଣ୍ଣାଶ୍ରମ ନିଷ୍ଠାବାନ୍ ଗୋଭକ୍ତଃ ଶ୍ରୁତି ମାତୃକଃ
ମୂର୍ତିଂଚ ନାବଜାନାତି ସର୍ବଧର୍ମ ସମାଦରଃ ॥
ଉତ୍ପ୍ରେକ୍ଷତେ ପୁନର୍ଜନ୍ମ ତସ୍ମାତ୍ ମୋକ୍ଷଣମୀହତେ
ଭୂତାନୁକୂଲ୍ୟଂ ଭଜତେ ସ ବୈ ହିନ୍ଦୁରିତି ସ୍ମୃତଃ
ହିଂସୟା ଦୂୟତେ ଚିତ୍ତମ୍ ତେନ ହିନ୍ଦୁରିତିରିତଃ ॥

ଯେ ବର୍ଣ୍ଣାଶ୍ରମ ଧର୍ମ ନିଷ୍ଠାପର ଭାବରେ ପାଳନ କରନ୍ତି, ଗୋ ସେବକ ଓ ଭକ୍ତ, ଶ୍ରୁତି - ସ୍ମୃତି ଉପାସକ, ମୂର୍ତ୍ତି ପୂଜକ ଅଥଚ ସର୍ବଧର୍ମ ସମାଦୃକ, ପୁନର୍ଜନ୍ମରେ ମୋକ୍ଷ ବିଶ୍ୱାସୀ,ଭୂତ ବା ଜୀବେଦୟା ପ୍ରଦର୍ଶକ ଓ ଅହିଂସ ଚିତ୍ତ ସେମାନେ ହିନ୍ଦୁ ପଦବାଚ୍ୟ ।

❑ **"ଉତ୍କଳପ୍ରସଙ୍ଗ" - ଅକ୍ଟୋବର ୧୯୮୩**

# ହିନ୍ଦୁଧର୍ମ ଅତ୍ୟନ୍ତ ଉଦାର

୧୯୪୭ ନଭେମ୍ବର ୨୨ ତାରିଖର

ପ୍ରାର୍ଥନା ସଭାରେ ଉଦ୍‌ବୋଧନ ଦେଇ ବାପୁ କହିଥିଲେ ଯେ ଦେଶ ଗଠନରେ ସାଂପ୍ରଦାୟିକ ସଦ୍‌ବ୍ୟବହାରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ କହିଲେ, "ମୁଁ ଇତିହାସ ଶାସ୍ତ୍ରରେ ବିଶେଷ ପାଣ୍ଡିତ୍ୟ ହାସଲ କରି ନାହିଁ । ମୁଁ ଜଣେ ବିଦ୍ୱାନ୍ ବ୍ୟକ୍ତି ବୋଲି କହୁ ନାହିଁ । କିନ୍ତୁ ହିନ୍ଦୁ ଧର୍ମ ସଂପର୍କରେ ମୁଁ କିଛି ବହି ପଢିଛି । ବେଦର କୌଣସି ଧାଡିରେ ହିନ୍ଦୁ ଶବ୍ଦର ପ୍ରୟୋଗ କରାଯାଇଛି । ମହାନ ବୀର ଆଲେକଜାଣ୍ଡର ଭାରତ ଆକ୍ରମଣ କଲାବେଳେ ସିନ୍ଧୁନଦୀର ପୂର୍ବରେ ଯେଉଁମାନେ ବାସ କରୁଥିଲେ ସେମାନଙ୍କୁ ଇଣ୍ଡସ ବୋଲି କୁହାଯାଉଥିଲା । ପରେ ଏହାର ଅପଭ୍ରଂଶ ହୋଇ ହିନ୍ଦୁ ହେଲା । ଏହି

ଅଞ୍ଚଳରେ ବାସ କରୁଥିବା ଲୋକମାନେ ଯେଉଁ ଧର୍ମ ପାଳନ କରୁଥିଲେ ତାହାକୁ ହିନ୍ଦୁଧର୍ମ କୁହାଗଲା । ଆପଣମାନେ ଜାଣନ୍ତି ସବୁ ଧର୍ମ ମଧ୍ୟରେ ହିନ୍ଦୁ ଧର୍ମ ଅତ୍ୟନ୍ତ ଉଦାର ଓ ସହନଶୀଳ । ଅନ୍ୟଧର୍ମ ଦ୍ୱାରା ଅତ୍ୟାଚାରିତ ହୋଇଥିବା ଖ୍ରୀଷ୍ଟିଆନ୍ ଏହି ଧର୍ମର ଆଶ୍ରୟ ନେଇଛି । ସବୁ ଧର୍ମର ଭଲଗୁଣର ସମାହାର ହେଉଛି ହିନ୍ଦୁ ଧର୍ମ । ଏ ଧର୍ମରେ ମୋର ଜନ୍ମ ହୋଇଥବବାରୁ ମୁଁ ଗର୍ବଅନୁଭବ କରୁଛି । ହିନ୍ଦୁ ବା ଶିଖ୍ ଧର୍ମ ନାମରେ ମସଜିଦ୍‌କୁ ଯଦି ଭଙ୍ଗା ଯାଏ । ତେବେ ଉଭୟ ଧର୍ମ ପ୍ରତି ଅପମାନ ହେବ । ପାକିସ୍ଥାନରେ ମୁସଲମାନମାନେ ହିନ୍ଦୁ ମନ୍ଦିରକୁ ଭାଙ୍ଗିଦେଉଛନ୍ତି, ଅପବିତ୍ର କରୁଛନ୍ତି ବା ତାହାକୁ ମସଜିଦ୍‌ରେ ପ୍ରରିଣତ କରୁଥିବାରୁ ଭାରତରେ ମସଜଦ୍ ପ୍ରତି ଯେଉଁ ଆକ୍ରମଣ ହେଉଛି ତାହା ଯଥାର୍ଥ ବୋଲି କହିଦେଲେ ଅପମାନ ଧୋଇ ହୋଇଯିବନାହିଁ । ଭାରତରେ ନିଜଧର୍ମ ପାଳନ ପାଇଁ ଖ୍ରୀଷ୍ଟିଆନ୍ ମାନଙ୍କୁ ମଧ୍ୟ ସୁଯୋଗଦିଆଯାଉଛି । ସେମାନଙ୍କ କାର୍ଯ୍ୟରେ ବାଧାସୃଷ୍ଟି କରାଯାଉନାହିଁ । (''ସମାଜ'' ୧୧.୧୨.୯୭) ☐

# ଗୋପବନ୍ଧୁଙ୍କ ମର୍ମ ବେଦନା (୧୯୨୧)

କେତେ କେତେ ଚାଷୀ ଭଲଭଲ ଲୋକ
ନପାନ୍ତି ଦି ବେଳା ପେଟ ପୂରା ଢ଼ୋକ ।
ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର ।
ଲଜ୍ଜା ଢ଼ାଙ୍କିବାକୁ ନପାନ୍ତି ବସନ ।
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।
ଚିକିତ୍ସାନ ପାଇ ଘର କଣେ ପଡ଼ି
ରୋଗ, ଅନାହାରେ କେବା ମରେ ଗଡ଼ି ।
ଉଦର ଜ୍ୱାଳାରେ କେତେ ନରନାରୀ
ଛାଡ଼ି ଘର ଦ୍ୱାର ଯାଆନ୍ତି ବାହାରି ।
ପଡ଼ିଅଛି ଡ଼ିହ କାହିଁବା ଚାଲିଆ
ଶ୍ମଶାନ ପରାଯେ ଦିଶେ ନିଛାଟିଆ
ପର ପ୍ରବଞ୍ଚନା କଚେରୀ - ବିଚାର
ଗ୍ରାମ ମୁଖିଆଙ୍କ ନିତ୍ୟକାରବାର ।
ଆତ୍ମୀୟ ସୋଦର ପ୍ରତିବେଶୀ ସହ
ନୀଚ ସ୍ୱାର୍ଥ ଲାଗି ଲଗାନ୍ତି କଳହ ।
ଶାସନ - କୁହୁକେ ସର୍ବେ ଅବସନ୍ନ
ବ୍ୟାଧ ଜାଲେ ପଡ଼ି କପୋତ ଯେ ସନ
ଜାଲେ ହଣାହଣି ସ୍ୱଦଶା ନଜାଣି
ଫଳେ ସର୍ବ ନାଶ ଧର୍ମ ଅର୍ଥ ହାନି ।।

**(ବନ୍ଦୀର ଆତ୍ମ କଥା)**

ଏହାର ଦୀର୍ଘ ୭୬ ବର୍ଷପରେ ଲୋକସଭାର ବାଚସ୍ପତି ଶ୍ରୀ ପି. ଏ. ସାଙ୍ଗମା ସ୍ୱାଧୀନତାର ସ୍ୱର୍ଣ୍ଣ ଜୟନ୍ତୀ ଅବସରରେ ଆହୂତ ଓଡ଼ିଶା ବିଧାନ ସଭା ସଦସ୍ୟମାନଙ୍କୁ ଉଦ୍‌ବୋଧନ ପ୍ରସଂଗରେ କହିଥିଲେ -

''ଶିଶୁ ମୃତ୍ୟୁହାର ଯଥେଷ୍ଟ ଅଧିକ । ରାଜ୍ୟର ପାଞ୍ଚ ଲକ୍ଷ ପିଲା ସ୍କୁଲକୁ ଯିବା ବଦଳରେ ଏଣେ ତେଣେ କାମଧନ୍ଦା କରୁଛନ୍ତି । ୭୬ ପ୍ରତିଶତ ପରିବାର ମାତ୍ର ଦୁଇବେଳା ଖାଇବାକୁ ସମର୍ଥ । ୪୯ ପ୍ରତିଶତ ଦାରିଦ୍ର୍ୟ ସୀମାରେଖାତଳେ ଅଛନ୍ତି ।

(''ସମାଜ''-୧୮.୧୧. ୯୭)☐

**ମୁଣ୍ଡଝାଳ ତୁଣ୍ଡରେ ମାରି ଜୀବନ ବିତାଉଥିବା ଗ୍ରାମବାସୀମାନେ ଯେଉଁ ଗଡ଼ିଆରେ ସ୍ନାନ କରନ୍ତି, ବାସନ ଧୂଅନ୍ତି, ସେମାନଙ୍କ ଗୋରୁଗାଈମାନେ ପଶି ପାଣି ପିଅନ୍ତି, ଗାଧୁଅନ୍ତି ସେହି ଗଡିଆ ପାଣି ଆମେ ପିଇ ପାରୁଛୁ କି ନାହିଁ, ଦେଖିଲେ ଆମେ ଜନଗଣଙ୍କର ପ୍ରକୃତ ପ୍ରତିନିଧି ହୋଇ ପାରିବା ।**

# ଇସ୍‌ଲାମରେ ମଦ କିପରି ନିଷଦ୍ଧ (ହରାମ) ହେଲା

ଡାକ୍ତର ଏସ୍. ଏ. ତାହେର

ଆଜକୁ ପ୍ରାୟ ୧୫୦୦ ବର୍ଷର କଥା । ମହାପୁରୁଷ ମହମ୍ମଦଙ୍କ ଆବିର୍ଭାବର ପୂର୍ବରୁ ଜନ୍ମ ୫୭୧ ଖ୍ରୀ: ଅ: ଆରବ ଦେଶରେ ମଦ ଏବଂ 'ଜୁଆ'ର ବ୍ୟବହାର ବ୍ୟପକ ଥିଲା । ଇସ୍‌ଲାମ ଧର୍ମର ପ୍ରଚାର ପରେ ମଦ ସଂପୂର୍ଣ୍ଣ ଭାବରେ ନିଷିଦ୍ଧ (ହରାମ) ହେଲା । ସେହିଦିନଠାରୁ ଆଜି ପଯ୍ୟନ୍ତ ମହାପୁରୁଷ ମହମ୍ମଦଙ୍କ ଦେଶରେ ମଦ ପଶିନାହିଁ ।ଆମ ଦେଶରେ କୋଟି କୋଟି ଟଙ୍କା ଖର୍ଚ୍ଚ କରି ଏବଂ ଅନେକ ପ୍ରଚାର ପରେ ମଧ ମଦ ବନ୍ଦ ହେଉ ନାହିଁ । ଇସ୍‌ଲାମରେ ଏହା କିପରି ହୋଇପାରିଲା ତାହା ଆମ୍ଭମାନଙ୍କ ଜାଣିବା ଉଚିତ । ଏହା ଦ୍ୱାରା ଆମ୍ଭେମାନେ କିଛି ଶିକ୍ଷା କରିବାର ଅଛି ।

ହଜରତ୍ ମହମ୍ମଦ ୬୧୦ ଖ୍ରୀ: ଅ: ରେ ଜ୍ଞାନ ଲାଭ (Prophethood) କଲେ । ତାହା ପରେ ସେ ୨୩ ବର୍ଷ ବଞ୍ଚିଲେ ଏବଂ ଇସ୍‌ଲାମ ଧର୍ମ ପ୍ରଚାର କଲେ । ଏହି ସମୟ ମଧରେ ପବିତ୍ର କୋରାନ ନାଜିଲ୍ (ଆବିର୍ଭାବ) ହେଲା । ମହାପୁରୁଷ ମହମ୍ମଦ ନିରକ୍ଷର ଥିଲେ । ଈଶ୍ୱରଙ୍କ ଦୂତ ଆସି ତାଙ୍କୁ ଶିକ୍ଷା ଦାନ କରୁଥିଲେ । ତାପରେ ମହମ୍ମଦ ଲୋକମାନଙ୍କୁ ଶିକ୍ଷା ଦେଉଥିଲେ । ତାଙ୍କର ସ୍ମରଣ ଶକ୍ତି ପ୍ରଖର ଥିଲା । ସେ ଯାହା ଶିକ୍ଷା ପାଉଥିଲେ, ତାହା ଅବିକଳ ମନେରଖି ଲୋକମାନଙ୍କୁ ଶିକ୍ଷା ଦେଉଥିଲେ । ତାହା ହେଉଛି ପବିତ୍ର କୋରାନ ।

ପୈଗମ୍ବର (ଧର୍ମ ଗୁରୁ) ହେବାର ପ୍ରଥମ ୧୩ ବର୍ଷ ସେ ତାଙ୍କ ଜନ୍ମସ୍ଥଳୀ ମକ୍‌କାରେ ରହି ତାଙ୍କର ପ୍ରଚାର ଆରମ୍ଭ କଲେ । ଏକ ଈଶ୍ୱରବାଦ ଏବଂ ଏକ ମନୁଷ୍ୟବାଦ ହେଉଛି ତାଙ୍କ ବାଣୀର ପ୍ରଧାନ ଅଂଶ । ସେ ମୂର୍ତ୍ତିପୂଜା ବିରୁଦ୍ଧରେ ପ୍ରଚାର କରିବାରୁ ମକ୍-କା ବାସୀମାନେ ତାଙ୍କୁ ଓ ତାଙ୍କର ସହ ଯୋଗୀମାନଙ୍କ ପ୍ରତି ଅତ୍ୟାଚାର ଆରମ୍ଭ କଲେ । ନିର୍ଯ୍ୟାତନାରୁ ରକ୍ଷା ପାଇବା ପାଇଁ ୬୨୨ ଖ୍ରୀ: ଅ : ରେ ହଜରତ୍ ମହମ୍ମଦ ମଦିନା ସହରକୁ ପଳାଇଲେ । ମଦିନାର ଲୋକମାନେ ତାଙ୍କୁ ଆଶ୍ରୟ ଦେଲେ ଏବଂ ସାହାଯ୍ୟ କଲେ । ମଦିନାର ରହଣି ସମୟରେ ଇସଲାମ୍ ଧର୍ମରେ ମଦ ନିଷିଦ୍ଧ ହେଲା । ଏହା କୋରାନର ୪ଟି ଶ୍ଳୋକ ଦ୍ୱାରା ନିଷିଦ୍ଧ ହେଲା ।

ମଦିନାର ଲୋକମାନେ ମଦ ଓ ଜୁଆରେ ବହୁତ ଅଭ୍ୟସ୍ତ ଥିଲେ ଏବଂ ମଦ ଜନିତ ଅପକାର ଭୋଗୁଥିଲେ । ମଦ ବିଷୟରେ କିଛି ଆଜ୍ଞା ଦେବାକୁ ମହାପୁରୁଷ ମହମ୍ମଦଙ୍କୁ ପଚାରିଲେ । ଈଶ୍ୱରଙ୍କୁ ପ୍ରର୍ଥନା ପରେ ମହମ୍ମଦ ଈଶ୍ୱରଙ୍କର ପ୍ରଥମ ଆଦେଶ ଜାରି ହେଲା-

"(ହେ ପଇଗମ୍ବର), ତୁମ୍ଭଙ୍କୁ ମଦ ଓ ଜୁଆ ବିଷୟରେ ଲୋକେ ପଚାରୁଛନ୍ତି । ତାଙ୍କୁ କହି ଦିଅ ଯେ ଏ ଦୁଇଟି କର୍ମ ଅତି ପାପପୂର୍ଣ୍ଣ, ଯଦି ଓ ସେଥିରେ କିଛି ଲାଭ ଅଛି ।"

ଈଶ୍ୱରଙ୍କ ଏ ଆଦେଶ ପରେ ଅନେକ ଲୋକ ମଦ ଛାଡ଼ି ଦେଲେ ଏବଂ କେତେକ ଛାଡ଼ିଲେ ନାହିଁ କାରଣ ଏଥିରେ ମଦ ନିଷିଦ୍ଧର ଆଦେଶ ନ ଥିଲେ ।

ଏହାପରେ ଦେଖାଗଲା ଯେ ନିଶା ଅବସ୍ଥାରେ ଅନେକ ନମାଜ (ପ୍ରାର୍ଥନା) ପଢୁଛନ୍ତି- ସେମାନେ କଅଣ ପଢୁଛନ୍ତି ଜାଣନ୍ତି ନାହିଁ । ମଦ ନିଷିଦ୍ଧ ସମ୍ବନ୍ଧରେ ୨ୟ ଶ୍ଳୋକ ନାଜିଲ୍ ହେଲା-

"ହେ ଅନୁଗତ ଭକ୍ତ । ନିଶା ଅବସ୍ଥାରେ ନମାଜ ପାଖକୁ ଯାଅ ନାହିଁ । ଅର୍ଥାତ ନମାଜ ପଢ ନାହିଁ" ।

ଏ ଆଦେଶ ଆସିବା ପରେ ଲୋକେ ନମାଜ ସମୟ ଛାଡ଼ି ଅନ୍ୟ ସମୟରେ ମଦ ପିଇଲେ ।

ଉପର ଦୁଇ ଆଦେଶ ଦ୍ୱାରା ସଂପୂର୍ଣ୍ଣ ମଦ ନିବାରଣ ହେଲାନାହିଁ । ହଜରତ୍ ମହମ୍ମଦ ପୁଣି ପ୍ରାର୍ଥନା କଲେ । ଶେଷରେ ଆଉ ଦୁଇଟି ଶ୍ଳୋକ ନାଜିଲ୍ ହେଲା- ଯାହାଦ୍ୱାରା ମଦ ଓ ଜୁଆ ସଂପୂର୍ଣ୍ଣ ନିଷିଦ୍ଧ (ହରାମ) ହେଲା ।

''ହେ ବିଶ୍ୱାସକାରୀ ! ଏହା ଜାଣିରଖ ଯେ ମଦ, ଜୁଆ ଏବଂ ମୂର୍ତ୍ତିପୂଜା ଅତି ଖରାପ ଏବଂ ସଇତାନର କାମ । ଏସବୁ କାର୍ଯ୍ୟରୁ ସର୍ବଦା ବିରତ ରୁହ । ଏହାଦ୍ୱାରା ତୁମର ସ୍ୱର୍ଗପ୍ରାପ୍ତି ହେବ । ସଇତାନ ସବୁବେଳେ ତୁମମାନଙ୍କୁ ଈଶ୍ୱରଙ୍କ ପ୍ରାର୍ଥନା ଏବଂ ସ୍ମରଣରୁ ନିବୃତ କରିବାକୁ ଚାହୁଁଛି ଯେ ମଦ ଓ ଜୁଆ ଦ୍ୱାରା ନିଜ ଭିତରେ ଝଗଡ଼ା ଓ କଳହ ସୃଷ୍ଟି ହେଉ । ଏବେ ବି ସମୟ ଅଛି, ତୁମେ ନିଜେ ନିଜକୁ ରକ୍ଷା କରି ପାରିବ ।''

ଈଶ୍ୱର ଏ ଦୁଇଟି ଶ୍ଳୋକ ଦ୍ୱାରା ମଦ, ଜୁଆଖେଳ ଓ ମୂର୍ତ୍ତିପୂଜାକୁ ସମ୍ପୂର୍ଣ୍ଣରୂପେ ନିଷିଦ୍ଧ କଲେ । ଏହି ଈଶ୍ୱର ଆଜ୍ଞା ବଳରେ ହଜରତ୍ ମହମ୍ମଦ ମଦ ପିଇବା ସଂପୂର୍ଣ୍ଣ 'ହରାମ' (ନିଷିଦ୍ଧ) ବୋଲି ଘୋଷଣା କଲେ । ମଦିନା ସହରର ରାସ୍ତାଘାଟରେ ମଦ ନିଷିଦ୍ଧ ହେବାର ପ୍ରଚାର ହେଲା । ଠିକ୍ ସେହି ସମୟରେ ଅନେକ ଲୋକ ମଦ ପିଉଥିଲେ । ଏ ବାଣୀ ଶୁଣି ମଦପିଉଥିବା ଲୋକେ ଗିଲାସକୁ ତତ୍‌କ୍ଷଣାତ୍ ଫୋପାଡ଼ି ଥିଲେ ଏବଂ ବିକ୍ରିପାଇଁ ଏବଂ ନିଜର ବ୍ୟବହାର ପାଇଁ ଯେଉଁ ମଦ ନିଜପାଖରେ ଗଚ୍ଛିତ ଥିଲା ତାକୁ ମଧ ନଷ୍ଟ କରିଦେଲେ । କୁହାଯାଏ ଯେ ଏହାଫଳରେ ମଦିନାର ରାସ୍ତାରେ ମଦର ସୁଅ ଚାଲିଥିଲା ଏବଂ ବର୍ଷା ହେବାପର୍ଯ୍ୟନ୍ତ ମଦର ଗନ୍ଧ ରହିଥିଲା । ଲୋକେ ଶହ ଶହ ବର୍ଷର ଅଭ୍ୟାସ ଛାଡ଼ିଦେଲେ । ସେହିଦିନଠାରୁ ମଦିନା ଏବଂ ମକ୍‌କା ସହର ଏବଂ ସାରା ଆରବ ଦେଶରେ ମଦ ପ୍ରଚଳନ ବନ୍ଦ ହୋଇଗଲା ।

ସେହି ସମୟରେ ମଦିନାର ଜଣେ ମଦ ବେପାରୀ ସିରିଆ ଦେଶରୁ ଅନେକ ମଦ ଆଣି ମଦିନାରେ ପହଞ୍ଚି ଶୁଣିଲା ଯେ ମଦ ନିଷିଦ୍ଧ ହେଉଛି । ମଦିନା ସହରର ବାହାରେ ମଦ ରଖି ହଜରତ୍ ମହମ୍ମଦଙ୍କ ପାଖକୁ ଆସିଲା ଏବଂ କହିଲା ଅନେକ ଟଙ୍କା ଖର୍ଚ୍ଚ କରିଛି, କଅଣ କରିବି ? ମହାପୁରୁଷ ମହମ୍ମଦ ଉତ୍ତର ଦେଲେ ଯେହେତୁ ମଦ ନିଷିଦ୍ଧ (ହରାମ) ହେଉଛି- ତେଣୁ ସବୁଯାକ ମଦକୁ ଫୋପାଡ଼ି ଦିଅ । ଏହାଶୁଣି ବେପାରୀଟି ଯାଇ ସବୁଯାକ ମଦ ନଷ୍ଟ କରିଦେଲା । ବହୁତ ଟଙ୍କା କ୍ଷତିହେଲା । ଆରବ ଦେଶର ଅନ୍ୟ ସହରମାନଙ୍କରେ ମଦ ନିଷିଦ୍ଧ ହେବାର ଜାଣିପାରି ଲୋକେ ମଦ ପିଇବା ବନ୍ଦ କଲେ ଏବଂ ଗଚ୍ଛିତ ମଦ ସବୁ ନଷ୍ଟ କରିଦେଲେ ।

ହଜରତ ମହମ୍ମଦ ମଦ କାରବାର ସହିତ ସଂପୃକ୍ତ ଦଶ ପ୍ରକାର ଲୋକଙ୍କୁ ଅଭିଶାପ ଦେଇଥିଲେ । ସେମାନେ ହେଉଛନ୍ତି- ୧. ଫଳରୁ ଚିପୁଡ଼ି ଯେ ମଦ ବାହାର କରେ (ଅଙ୍ଗୁର ମଦ), ୨. ଅନ୍ୟ ଯେ କୌଣସି ପ୍ରକାର ମଦ ତିଆରି ଯେ କରେ, ୩. ମଦ ପିଇବାବାଲା, ୪. ମଦ ଅନ୍ୟକୁ ଯେ ପିଇବାପାଇଁ ଦିଏ, ୫. ଯେ ନିଜଘରେ ମଦ ଗଚ୍ଛିତ ରଖେ, ୬. ମଦବେପାରୀ, ୭. ମଦ ପଇସାରୁ ଯେ ନିଜର ଏବଂ ନିଜ ପରିବାର ପାଇଁ ଖର୍ଚ୍ଚ କରେ. ୮. ଯିଏ ଏକ ଯାଗାରୁ ଅନ୍ୟ ଯାଗାକୁ ମଦ ଆଣିବା କାମ କରେ, ୯. ମଦ ବ୍ୟାପାର ବନ୍ଧକ ନିଲାମ କରିବା ବାଲା, ୧୦. ମଦ ସହିତ ସମ୍ପର୍କ ରଖିବା ବାଲା ।

ଏପରିକି କେତେକ ଧାର୍ମିକ ମୁସଲମାନ ଅଙ୍ଗୁରକୁ ଚିପି ରସବାହାର କରି ପିଅନ୍ତି ନାହିଁ । କାରଣ ଏହିଭଳି ଅଙ୍ଗୁର ରସରୁ ମଦ ତିଆରି କରାଯାଉଥିଲା । କୌଣସି ଧର୍ମରେ ଏପରି କଡ଼ାକଡ଼ି ମଦ ନିଷେଧ ନାହିଁ ।

ଧାର୍ମିକ ମୁସଲମାନ ଲୋକେ ଯେଉଁ ଔଷଧରେ ମଦ ଅଛି ତାହା ବ୍ୟବହାର କରନ୍ତି ନାହିଁ ।

ହଜରତ ମହମ୍ମଦଙ୍କ ବାଣୀ ଅନୁସାରେ ମଦ ଦ୍ୱାରା ମନୁଷ୍ୟ ବିବେକ ଓ ବୁଦ୍ଧି ହରାଏ ଏବଂ ପଶୁ ପାଲଟିଯାଏ । ନାନା ଅତ୍ୟାଚାର ଓ ହତ୍ୟା ଆଦି ଦୁଷ୍କର୍ମରେ ଲିପ୍ତ ହୋଇଯାଏ- ପରିବାର ସର୍ବସ୍ୱାନ୍ତ ହୋଇଯାନ୍ତି । ଅଭ୍ୟାସ

ଯେତେବେଳେ ହୋଇଯାଏ ମନୁଷ୍ୟ ନିଜର ମନୁଷତ୍ୱ ହରାଏ ।

ଆଜିକାଲି ମଧ ଆମ ଦେଶରେ ଏହା ଘଟୁଅଛି । ଆନ୍ଧ୍ରରେ ମହିଳାମାନେ ମଦ ବିରୁଦ୍ଧରେ ଅଭିଯାନ ଚଳେଇ କୃତକାର୍ଯ୍ୟ ହୋଇଥିଲେ । ଅନ୍ୟ ସଂସ୍ଥାମାନେ ମଧ ମଦ ବିରୁଦ୍ଧରେ ଅଭିଯାନ ଚଳାଉଛନ୍ତି- ସରକାର ରାଜସ୍ୱ କମି ଯିବ ବୋଲି ମଦ ବେପାରକୁ ସହାୟତା କରୁଛନ୍ତି । ପବିତ୍ର କୋରାନ୍ କହୁଛି ଯେ କିଛି ପରିମାଣ ଏଥିରେ ଲୋକଙ୍କ ଲାଭଅଛି । କିନ୍ତୁ ଲାଭ ଅପେକ୍ଷା କ୍ଷତି ବହୁତ ଅଧିକ । ୧୫୦୦ ବର୍ଷ ପୂର୍ବରୁ ଏଥିପାଇଁ ମଦ ଇସଲାମରେ ନିଷିଦ୍ଧ ହୋଇଅଛି । ବର୍ତ୍ତମାନ ଯୁଗରେ ଆମକୁ ଏଥିରୁ କିଛି ଶିକ୍ଷା କରିବା ଉଚିତ୍ ।

**(୧୫ ଡିସେମ୍ବର ୧୯୯୬ "ସର୍ବୋଦୟ"ରୁ ଗୃହୀତ)** ❑

# ଅଯଜ୍ଞକୁ ଅଭିଶାପ

**-ମହାତ୍ମା ଗାନ୍ଧୀ**

ପ୍ରତ୍ୟେକ ମନୁଷ୍ୟ ପାଇଁ ଶରୀର ଶ୍ରମ ଯେ ଅନିବାର୍ଯ୍ୟ ଏକଥା ସର୍ବ ପ୍ରଥମେ ଟଲଷ୍ଟୟଙ୍କର ଗୋଟିଏ ରଚନାରୁ ମୋର ହଦ୍‌ବୋଧ ହେଲା ଏହାକୁ ଏପରି ସ୍ପଷ୍ଟରୂପେ ଜାଣିବା ପୂର୍ବରୁ ରସ୍କିନ୍‌ଙ୍କ (ଅନ୍‌ଟୁ ଦିସ୍ ଲାଷ୍ଟ' ପଢିବା ପରେ ମୁଁ ତୁରନ୍ତ ତାକୁ କାର୍ଯ୍ୟରେ ପରିଣତ କରିବାରେ ଲାଗିଗଲି । ଶରୀର ଶ୍ରମ ଇଂରେଜୀ ଶବ୍ଦ (Bread labour) 'ବ୍ରେଡ୍ ଲେବର୍'ର ଅନୁବାଦ । ବ୍ରେଡ୍ ଲେବରର ଆକ୍ଷରିକ ଅନୁବାଦ ହେଉଛି ରୁଟି (ନିମନ୍ତେ) ଶ୍ରମ । ରୁଟି ପାଇଁ ପ୍ରତ୍ୟେକ ଲୋକର ପରିଶ୍ରମ କରିବା, ହାତ ଗୋଡ଼ ହଲାଇବା ଈଶ୍ୱରୀୟ ନିୟମ । ଏ ମୌଳିକ ଆବିଷ୍କାର ଟଲଷ୍ଟୟଙ୍କର ନୁହେଁ ମାତ୍ର ତାଙ୍କ ଅପେକ୍ଷା କମ ଖ୍ୟାତନାମା ଋଷୀୟ ଲେଖକ ବୁର୍‌ନୋଫ୍‌ଙ୍କର । ଟଲଷ୍ଟୟ ଏହାକୁ ପ୍ରସିଦ୍ଧ କଲେ ଓ ନିଜେ ଗ୍ରହଣ କଲେ । ମୋ ଦୃଷ୍ଟିରେ ଏହାର ଅଭାସ ଭାଗବତ ଗୀତାର ତୃତୀୟ ଅଧ୍ୟାୟରେ ରହିଛି । ଯଜ୍ଞ ନ କରି ଯେ ଖାଉଛନ୍ତି ସେ ଚୋରୀ ଅନ୍ନ ଖାଉଛନ୍ତି । ଅଯଜ୍ଞକୁ ଏ କଠିନ ଅଭିଶାପ ଦିଅ ଯାଇଛି । ଏଠାରେ ଯଜ୍ଞର ଅର୍ଥ କାୟିକ ପରିଶ୍ରମ ବା ରୁଟି ଶ୍ରମ ହେଲେ ହିଁ ଶୋଭା ଦେବ ଏବଂ ମୋ ମତାନୁସାରେ ଏହି ଅର୍ଥ ମଧ ସେଥିରୁ ବାହାରୁଛି । ଯାହା ହେଉ, ଆମର ଏ ବ୍ରତର ଉତ୍ପତ୍ତି ଏହିଭଳି ହୋଇଛି । ବୁଦ୍ଧି ମଧ ଏହି ବିଷୟ ଦିଗକୁ ଆମକୁ ଘେନି ଯାଉଛି । ମୂଲ ନ ଲାଗୁଥିବା ଲୋକର ଖାଇବାର କି ଅଧିକାର ଥାଇ ପାରେ ? ବାଇବେଲ କହୁଛି "ନିଜର ରୁଟି ନିଜ ଝାଳ ବୁହାଇ କମାଅ ଓ ଖାଅ ।" କୋଟିପତି ସୁଦ୍ଧା ଯଦି ପଲଙ୍କରେ ପଡ଼ି ରହିବ ଓ କେହି ତାକୁ ଖୁଆଇ ଦେଲେ ଖାଇବ, ତାହାହେଲେ ସେ ବେଶୀ ଦିନ ଯାଏ ଖାଇ ପାରିବ ନାହିଁ । ତହିଁରୁ ସେ ଆନନ୍ଦ ମଧ ଲାଭ କରି ପାରିବ ନାହିଁ । ସେଥିପାଇଁ ସେ ବ୍ୟାୟାମ ଆଦି କରି କ୍ଷୁଧା ଜନ୍ମାଏ ଏବଂ ଆପଣା ମୁଁହ ହାତ ହଲେଇ ଖାଏ । ତାହା ହେଲେ ପୁଣି ଏ ପ୍ରଶ୍ନ ଆପେ ଉଠୁଛି ଯେ ଯଦି ରାଜା ବା ସମସ୍ତଙ୍କୁ କୌଣସି ନା କୌଣସି ପ୍ରକାରେ ଅଙ୍ଗ ସଞ୍ଚାଳନ କରିବାକୁ ପଡୁଥାଏ ତେବେ ରୁଟି ଉତ୍ପାଦନ କରିବାର ବ୍ୟାୟାମ ସମସ୍ତେ ନ କରିବେ କାହିଁକି ? ଚାଷୀକୁ ବାୟୁ ସେବନ କରିବାପାଇଁ ବା କସରତ୍ କରିବାପାଇଁ କେହି କହନ୍ତି ନାହିଁ । ପୃଥିବୀରେ ଶତକଡ଼ା ନବେରୁ ଅଧିକ ଲୋକ ଚାଷଦ୍ୱାରା ଜୀବିକା ନିର୍ବାହ କରନ୍ତି । ବାକି ଶତକଡ଼ା ଦଶ ଲୋକ ଯଦି ଏମାନଙ୍କର ଅନୁକରଣ କରନ୍ତେ ତେବେ ସଂସାରରେ୍ କେତେ ସୁଖ, ଶାନ୍ତି ଓ ସ୍ୱାସ୍ଥ୍ୟ ନ ବ୍ୟାପନ୍ତା ? ଯଦି ଚାଷ ସଙ୍ଗେ ବୁଦ୍ଧି ମେଳଖାଆନ୍ତା, ତାହାହେଲେ ଚାଷ କାମର ବହୁତ ଅସୁବିଧା ସହଜରେ ଦୂର ହୋଇ ଯାଆନ୍ତା । ଏହାଛଡ଼ା ଶରୀର - ଶ୍ରମର ଏ ଅବିସମ୍ବାଦୀ ନିୟମକୁ ଯଦି ସମସ୍ତେ ମାନି ନିଅନ୍ତେ ତାହାହେଲେ ଉଚ୍ଚ ନୀଚ ଭେଦ ଦୂର ହୋଇ ଯାଆନ୍ତା । ବର୍ତ୍ତମାନ ତ ଯେଉଁଠି ଉଚ୍ଚତାର ନାମ ଗନ୍ଧ ନ

ଥିଲା ସେଠାରେ ସୁଦ୍ଧାଅର୍ଥାତ୍ ବର୍ଣ୍ଣ ବ୍ୟବସ୍ଥାରେ ସୁଦ୍ଧା ତାହା ପଶିଗଲାଣି । ମାଲିକ-ମଜୁରିଆଙ୍କ ଭେଦ ସର୍ବବ୍ୟାପୀ ହେଲାଣି ଓ ଦରିଦ୍ର ଧନୀକୁ ଈର୍ଷା କଲେଣି । ସମସ୍ତେ ଯଦି ନିଜେ ନିଜର ଦାନା ଗଣ୍ଡାକ ପାଇଁ ମିହନ୍ତ କରନ୍ତେ, ତାହାହେଲେ ଉଚ୍ଚନୀଚ ଭେଦ ଦୂର ହୋଇ ଯାଆନ୍ତା । ପୁଣି ଯେଉଁ ଧନୀକ ଶ୍ରେଣୀ ରହିଯାଆନ୍ତେ, ସେମାନେ ନିଜକୁ ମାଲିକସ୍ୱରୂପ ନ ମଣି କେବଳ ରକ୍ଷକ ବା ଟ୍ରଷ୍ଟୀସ୍ୱରୂପ ମନେ କରନ୍ତେ ଏବଂ କେବଳ ଲୋକ ସେବାରେ ସେ ଧନର ବିନିଯୋଗ କରନ୍ତେ । ଯାହାଙ୍କର ଅହିଂସା ପାଳନ କରିବାର କଥା, ତାଙ୍କ ନିମନ୍ତେ ତ କାୟିକଶ୍ରମ ଅମୋଘ ଉପାୟସ୍ୱରୂପ ହୋଇଥାଏ । ବାସ୍ତବରେ ଦେଖିବାକୁ ଗଲେ ଏପରି ଶ୍ରମ କେବଳ ଚାଷ ହିଁ ହୋଇପାରେ । ମାତ୍ର ବର୍ତ୍ତମାନର ପରିସ୍ଥିତିରେ ସମସ୍ତେ ସେ କାମ କରିପାରିବେ ନାହିଁ । ସେଥିପାଇଁ ଚାଷକୁ ଆଦର୍ଶରୂପେ ଲକ୍ଷ୍ୟରେ ରଖି ତତ୍‌ପରିବର୍ତ୍ତେ ମଣିଷ ସୂତାକଟା ଲୁଗାବୁଣା, ବଢେଇ କାମ, କମାର କାମ ଆଦି କରିପାରେ । ସମସ୍ତେ ନିଜ ନିଜର ମେହେନ୍ତର ତ ହେବାହିଁ ଉଚିତ୍ । ଯେ ଖାଏ ତାହାକୁ ମଳତ୍ୟାଗ ତ କରିବାକୁ ହିଁ ପଡ଼େ । ଯେ ମଳତ୍ୟାଗ କରେ ସେ ନିଜ ମଳକୁ ପୋତି ପକାଇବା ସବୁଠାରୁ ଭଲ । ଏହା ହୋଇ ନ ପାରିଲେ ପରିବାର ସାରା ମିଳିମିଶି ଏ କର୍ତ୍ତବ୍ୟ ପାଳନ କରିବେ । ମୋତେ ଏ ବହୁବର୍ଷ ହେଲା ଜଣାପଡୁଛି ଯେ ଯେଉଁଠି ମେହେନ୍ତର କାମ ଗୋଟିଏ ଅଲଗା ଧନ୍ଦା ବୋଲି ସ୍ୱୀକାର କରି ନିଆହୋଇଛି, ସେଠାରେ ଗୋଟିଏ ମହାଦୋଷ ପ୍ରବେଶ ଲାଭ କରିଛି । ଏ ଆବଶ୍ୟକୀୟ ସ୍ୱାସ୍ଥ୍ୟ-ରକ୍ଷକ କାର୍ଯ୍ୟକୁ ନୀଚାତିନୀଚ ବୋଲି କିଏ ପ୍ରଥମେ ନିର୍ଦ୍ଦେଶ ଦେଲା, ତାହାର କୌଣସି ଇତିହାସ ଆମ ନିକଟରେ ନାହିଁ । ଏ ନିର୍ଦ୍ଦେଶକ ଆମର କୌଣସି ଉପକାର ତ ଆଦୌଂ କରିନାହାନ୍ତି । ଆମେ ସମସ୍ତେ ଯେ ମେହେନ୍ତର, ଏ ଭାବ ପିଲାଦିନରୁ ଆମ ମନରେ ଦୃଢ଼ ହୋଇଯିବା ଉଚିତ୍ ଏବଂ ଏ ଭାବ ଜନ୍ମାଇବାର ସବୁଠାରୁ ମହତ ଉପାୟ ହେଉଛି ଯେଉଁମାନେ ଏହାକୁ ବୁଝି ପାରିଲେଣି ସେମାନେ ପାଇଖାନା ସଫା କରିବା କାମରୁ ତାଙ୍କ ଶରୀର ଶ୍ରମ କରିବା ଆରମ୍ଭ କରିବେ । ଯେ ଜ୍ଞାନପୂର୍ବକ ଏହା କରିବେ ସେ ତତ୍ କ୍ଷଣାତ୍ ଧର୍ମକୁ ଭିନ୍ନ ଓ ପ୍ରକୃତ ରୂପରେ ଦେଖି ପାରିବେ । ଶିଶୁ ବୃଦ୍ଧ ଓ ରୋଗ ହେତୁ ଅକର୍ମଣ୍ୟ ହୋଇ ଯାଇଥିବା ଲୋକେ ଯଦି ପରିଶ୍ରମ ନ କରନ୍ତି ତେବେ ତାହାକୁ ଯେପରି କେହି ନିୟମର ବ୍ୟତିକ୍ରମ ହେଲା ବୋଲି ମନେ ନ କରନ୍ତି । ଶିଶୁର ସମାବେଶ ତ ମାଆ ମଧ୍ୟରେ ହୋଇଥାଏ । ଯଦି ପ୍ରାକୃତିକ ନିୟମ ଭଙ୍ଗ ନ କରାଯାଏ । ତାହାହେଲେ ବୃଦ୍ଧ ଅକର୍ମଣ୍ୟ ହେବେ ନାହିଁ, ପୁଣି ରୋଗର ପ୍ରଶ୍ନ ଉଠିବ କିଆଁ ?

**(ମଙ୍ଗଳ ପ୍ରଭାତ, ପ୍ରକରଣ -୯ )**

# 'ଅସତୋ ମା ସଦ୍‌ଗମୟ'

ବମ୍ବେ, ୬। ୩. ୧୨. ୬୪ରେ କାଥଲିକ୍ ଖ୍ରୀଷ୍ଟିୟାନ ଧର୍ମଗୁରୁ ପୋପ ପଲ୍ ବମ୍ବେରେ ଖ୍ରୀଷ୍ଟିୟାନ ଓ ଅଣଖ୍ରୀଷ୍ଟିୟାନ ମାନଙ୍କୁ ଉପଦେଶ ଦେଇ ସମସ୍ତେ ଏକତାବଦ୍ଧ ହୋଇ ସମୂହ ମାନବସଂସ୍କୃତିର ବିକାଶ ପାଇଁ କାର୍ଯ୍ୟ କରିବାକୁ ଉଦ୍‌ବୋଧନ ଦେଇଥିଲେ ।

ଖ୍ରୀଷ୍ଟଜନ୍ମର ବହୁ ଶତାବ୍ଦୀ ପୂର୍ବେ ରଚିତ ହିନ୍ଦୁଶାସ୍ତ୍ରର କେତେକ ଶ୍ଳୋକ ଉଦ୍ଧାର କରି ସେ ପ୍ରାର୍ଥନା କରିଥିଲେ- ''ଅସତୋ ମା ସଦ୍‌ଗମୟ, ତମସୋ ମା ଜ୍ୟୋତିର୍ଗମୟ, ମୃତ୍ୟୋ ମାଽମୃତୋଗମୟ'' ଆମର ଏ ଯୁଗରେ ମଧ୍ୟ ତାହାହିଁ ପ୍ରାର୍ଥନା ।

ଦୁଇଥର 'ଜୟହିନ୍ଦ୍' ଉଚ୍ଚାରଣ କରି ପୋପ୍ ତାଙ୍କର ବକ୍ତବ୍ୟ ଶେଷ କରିଥିଲେ । (ପି.ଟି)

ତା ୪. ୧୦. ୬୪ରେ ଜାତିସଙ୍ଘରେ ଜନ୍ମନିରୋଧ ବିଷୟରେ ଧର୍ମ ଗୁରୁ ପୋପ୍‌ଙ୍କ ଉପଦେଶ ହେଲା -

''ଆପଣମାନେ ଏଠାରେ ସବୁ ସମସ୍ୟାଠାରୁ ବଳି ଗୁରୁତର ସମସ୍ୟା ମାନ ଜୀବନକୁ ନେଇ ବିଚାର କରୁଛନ୍ତି । ମନୁଷ୍ୟର ଜୀବନ ଅତି ପବିତ୍ର ଓ ମହତ୍ ମନୁଷ୍ୟର ଜନ୍ମ ଓ ଜୀବନ ଉପରେ ମନୁଷ୍ୟ ଆକ୍ରମଣ କରି ନ ପାରେ । କୃତ୍ରିମ ଉପାୟରେ ଜନ୍ମ ନିରୋଧ କରି ମନୁଷ୍ୟ ଜୀବନ ଉପରେ ଆଘାତ ନ ଦେଇ ଆହାରାର୍ଥୀ ମନୁଷ୍ୟ ସମାଜ ମୁଖରେ ଅନ୍ନ ଦେବାପାଇଁ ଅଧିକ ଉତ୍ପାଦନ ଦିଗରେ ଆପଣମାନେ ଦୃଷ୍ଟି ଦିଅନ୍ତୁ ।''

( ୪. ୧୨ ୬୪ 'ସମାଜ'ରୁ ଗୃହୀତ) ❑

# ଦେଶ ଓ ଜାତିକୁ ବାପୁଙ୍କ ଅନ୍ତିମ ବାର୍ତ୍ତା

ମହାତ୍ମାଗାନ୍ଧୀ ମୃତ୍ୟୁର ପୂର୍ବଦିନ କଂଗ୍ରେସର ଶାସନ ବିଧାନ ରୂପେ ଯାହାଲେଖିଥିଲେ ନିମ୍ନରେ ତାହାପ୍ରଦତ୍ତ ହେଲା । ମହାତ୍ମା ଶହୀଦ ହେବାର ପୂର୍ବଦିନ ଶେଷଥର ପାଇଁ ଏହା ଲେଖିଥିବାରୁ ଦେଶ ଓ ଜାତି ପାଇଁ ଏହା ହେଲା ଅନ୍ତିମ ଓ ପବିତ୍ର ବାଣୀ - ଭାରତୀୟ ଜାତୀୟ କଂଗ୍ରେସର ନୀତି ଅନୁସାରେ ଦୁଇ ଭାଗ ହୋଇ ସୁଦ୍ଧା ଭାରତ ତାର ରାଜନୈତିକ ସ୍ୱାଧୀନତା ହାସଲ କରିଛି । କିନ୍ତୁ ଭାରତର ସାତ ଲକ୍ଷ ଗ୍ରାମ ପାଇଁ ସାମାଜିକ ନୈତିକ ଓ ଅର୍ଥନୈତିକ ସ୍ୱାଧୀନତା ହାସଲ କରିବା କାର୍ଯ୍ୟ ଏପର୍ଯ୍ୟନ୍ତ ବାକିଅଛି । ଭାରତ ନିଜର ଗଣତାନ୍ତ୍ରିକ ଉଦ୍ଦେଶ୍ୟ ସାଧନପାଇଁ ଅଗ୍ରସର ହେଲାବେଳେ ଗଣ ଶକ୍ତି ସାମରିକ ଶକ୍ତି ଉପରେ ନିଶ୍ଚୟ ପ୍ରଭାବ ବିସ୍ତାର କରିବାକୁ ଆନ୍ଦୋଳନକରାଯିବ । ସଂପ୍ରଦାୟିକ ବା ରାଜନୈତିକ ଦଳ ସହିତ ଏହି ଆନ୍ଦୋଳନର କୌଣସି ସମ୍ପର୍କ ରହିବ ନାହିଁ ।

ଏହି ସବୁ କାରଣରୁ ନିଖିଳ ଭାରତ କଂଗ୍ରେସ କମିଟି ପ୍ରତିଜ୍ଞା କରୁଛି ଯେ ନିମ୍ନଲିଖିତ ନିୟମ ଅନୁସାରେ ''ଲୋକସେବକ ସଂଘ'' ଗଠନ କରିବାକୁ ବର୍ତ୍ତମାନ କଂଗ୍ରେସକୁ ଭାଙ୍ଗିଦେବା ଉଚିତ୍ । ଅବସ୍ଥା ଅନୁସାରେ ଏହି ନିୟମ ବଦଳାଇବାକୁ ମଧ୍ୟ କ୍ଷମତା ରହିବ ।

ଗ୍ରାମର ବା ଗ୍ରାମ୍ୟ ଜୀବନ ସମର୍ଥକ ୫ ଜଣ ସ୍ତ୍ରୀ ବା ପୁରୁଷଙ୍କୁ ନେଇ ଗୋଟିଏ ପଞ୍ଚାୟତ ଗଠନ କରାହେବ । ବଡ଼ ଅନୁଷ୍ଠାନର ଏହି ହେବ ସର୍ବନିମ୍ନ ଶାଖା ବା ଗୋଟିଏ ୟୁନିଟ୍ । ଏହିପରି ୨ଟି ୟୁନିଟ୍ ମିଶି ଗୋଟିଏ ''କାର୍ଯ୍ୟକାରୀ ସଂଘ'' ଗଠନ କରିବ । ଏହି କର୍ମୀ ସଂଘର ଜଣେ ନେତା ନିର୍ବାଚିତ ହେବେ ।

ଏହିପରି ଶହଟି ପଞ୍ଚାୟତ ଗଠିତ ହେବା ପରେ ୫୦ ଜଣ ''କାର୍ଯ୍ୟକାରୀ ସଂଘ''ର ପ୍ରଥମ ଶ୍ରେଣୀର ନେତା ନିର୍ବାଚିତ ହୋଇ ସାରିଥିବେ । ଏହିପରି ପ୍ରତି ୫ ୧ ଜଣ ନେତା ମିଶି ଜଣେ ଲେଖାଏଁ ୨ୟ ଶ୍ରେଣୀ ନେତା ନିର୍ବାଚନ କରିବେ । ପ୍ରଥମ ଶ୍ରେଣୀ ନେତା ୨ୟ ଶ୍ରେଣୀ ନେତାଙ୍କ ଅଧୀନରେ କାର୍ଯ୍ୟ କରିବେ । ଏହିପରି ଭାବରେ ସାରା ଭାରତରେ ୨୦୦ଟି ପଞ୍ଚାୟତ ବିଶିଷ୍ଟ ଗୋଟିଏ ଲେଖାଏଁ ଦଳ ଗଠିତ ହେବ ।ସମସ୍ତ ୨ୟ ଶ୍ରେଣୀର ନେତା ସମଗ୍ର ଭାରତ ପାଇଁ ଏକତାବଦ୍ଧ ହୋଇ କାର୍ଯ୍ୟ କରିବେ ଏବଂ ନିଜ ନିଜ ଅଞ୍ଚଳ ପାଇଁ ପୃଥକ ଭାବରେ କାର୍ଯ୍ୟ କରିବେ । ସମସ୍ତ ଦଳ ଗୁଡ଼ିକୁ ନିର୍ଦ୍ଦେଶ ଅନୁସାରେ ପରିଚାଳନା କରିବାକୁ ୨ୟ ଶ୍ରେଣୀ ନେତାମାନେ ଯଦି ଇଚ୍ଛା କରନ୍ତି, ତା' ହେଲେ ନିଜ ଭିତରୁ ଜଣଙ୍କୁ ''ଦଳପତି'' ହସାବରେ ବାଛି ପାରନ୍ତି ।

ପ୍ରଦେଶ ଓ ଜିଲାର ଗଠନ ଏପର୍ଯ୍ୟନ୍ତ ଠିକ ହୋଇ ନଥିବାରୁ ଏହି ସେବକମାନଙ୍କୁ ପ୍ରଦେଶ ବା ଜିଲାଓ୍ୱାରି ବିଭକ୍ତ କରାଯାଇ ନ ପାରେ । ସମଗ୍ର ଦେଶ ହିଁ ପାଇଁ ବିଜ୍ଞତାର ସହିତ ଏହି ସେବକ ଦଳ କାର୍ଯ୍ୟ କରିବେ ଏବଂ ଦେଶହିଁ ଏମାନଙ୍କର ପ୍ରଭୁ । ପ୍ରଭୁର ନିଃସ୍ୱାର୍ଥ ସେବାରୁହିଁ ଏମାନେ ନିଜର କ୍ଷମତା ଆହରଣ କରିବେ ।

୧. ପ୍ରତ୍ୟେକ କର୍ମୀ ଖଦଡ଼ ପିନ୍ଧିବେ । ଉକ୍ତ ଖଦଡ଼ ନିଜ ହାତକଟା ସୂତାରେ ବୁଣା ହୋଇଥିବ କିମ୍ବା ନିଖିଳ ଭାରତ କଟାଳୀ ସଂଘ ଦ୍ୱାରା ଅନୁମୋଦିତ ହୋଇଥିବ ।

ପ୍ରତ୍ୟେକ କର୍ମୀ କୌଣସି ମାଦକଦ୍ରବ୍ୟ ସେବନ କରୁ ନଥିବେ । କର୍ମୀ ଯଦି ହିନ୍ଦୁ ହୋଇ ଥାନ୍ତି ତା ହେଲେ ସେ ନିଜେ ଓ ନିଜ କୁଟୁମ୍ବ ମଧରେ ଅସ୍ପୃଶ୍ୟତା ବର୍ଜନର ଉଦାହରଣ ଦେଖାଇଥିବେ । ସେ ସାମ୍ପ୍ରଦାୟିକ ଏକତାରେ ବିଶ୍ୱାସ କରୁଥିବେ । ସେ ସବୁ ଧର୍ମ ପ୍ରତି ସମ୍ମାନ ଦେଖାଉଥିବେ ଏବଂ ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଅଧିକାର ଦେବାର ସମର୍ଥକ ହୋଇଥିବେ ।

୨. ନିଜ ଅଞ୍ଚଳରେ ସେ ଗ୍ରାମର ପ୍ରତି ଲୋକ ସହିତ ବ୍ୟକ୍ତିଗତ ଭାବେ ସମ୍ପର୍କ ପ୍ରତିଷ୍ଠା କରିବେ ।

୩. ସେ ଗ୍ରାମର ଲୋକମାନଙ୍କ ଭିତରୁ ଶିକ୍ଷା ଦେଇ ସଭ୍ୟ ବାଛିବେ ।

୪. ସେ ତାଙ୍କ ନିଜ କାର୍ଯ୍ୟର ଦୈନିକ ବିବରଣୀ ଲେଖି ରଖିବେ ।

୫. ଗ୍ରାମବାସୀମାନେ କୃଷି ଓ ନିଜର ଗୃହଶିଳ୍ପ ଦ୍ୱାରା ଯେପରି ସ୍ୱାବଲମ୍ବୀ ହୋଇ ପାରିବେ, ସେଥିପାଇଁ ସେ ଗ୍ରାମବାସୀମାନଙ୍କୁ ସଙ୍ଗଠିତ କରିବେ ।

୬. ସ୍ୱାସ୍ଥ୍ୟରକ୍ଷା ପାଇଁ ସେ ଗ୍ରାମବାସୀମାନଙ୍କୁ ଶିକ୍ଷା ଦେବେ ଏବଂ ଗ୍ରାମରେ ରୋଗ ଯେପରି ନ ବ୍ୟାପେ ସେଥିପାଇଁ ପ୍ରତିଷେଧକ ବ୍ୟବସ୍ଥା ଅବଲମ୍ବନ କରିବେ ।

୭. ହିନ୍ଦୁସ୍ଥାନୀ ତାଲିମ ସଂଘର ନୀତି ଅନୁସାରେ ଗ୍ରାମ ବାସୀମାନଙ୍କୁ (ପିଲାଠୁଁ ବୁଢା ପର୍ଯ୍ୟନ୍ତ) ଶିକ୍ଷା ଦେବାପାଇଁ ବ୍ୟବସ୍ଥା କରିବେ ।

୮. ଭୋଟର ତାଲିକାରେ ଯେଉଁମାନଙ୍କ ନାମ ନଥିବ, ସେ ତାଲିକାରେ ନାମ ଲେଖାଇ ଦେବେ ।

୯. ନିଜ ଭୋଟ ଅଧିକାର ହାସଲ କରିବାକୁ ଯେଉଁ ମାନଙ୍କର ଆଇନଗତ ଯୋଗ୍ୟତା ନାହିଁ ଉକ୍ତ ଯୋଗ୍ୟତା ହାସଲ କରିବାରେ ସେ ସାହାଯ୍ୟ କରିବେ ।

୧୦. ଏହି ସବୁ ନିୟମ ବା ଏହା ପରେ ପରେ ଅବସ୍ଥା ଅନୁସାରେ 'ସଂଘ' ଦ୍ୱାରା ଯେଉଁ ନିୟମ ହେବ, ଉକ୍ତ ନିୟମ ଅନୁସାରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବାକୁ ସେବକମାନେ ନିଜକୁ ପ୍ରସ୍ତୁତ କରିବେ ।

ସଙ୍ଘ ନିମ୍ନଲିଖିତ ସ୍ୱାବଲମ୍ବୀ ଅନୁଷ୍ଠାନ ମାନଙ୍କୁ ଅନ୍ତର୍ଭୁକ୍ତ କରିବେ ।

୧. ନିଖିଳଭାରତ ଚରଖା ସଙ୍ଘ ।

୨. ନିଖିଳ ଭାରତ ଗ୍ରାମୋଦ୍ୟୋଗ ସଙ୍ଘ ।

୩. ହିନ୍ଦୁ ସ୍ଥାନୀ ତାଲିମ ସଙ୍ଘ ।

୪. ହରିଜନ ସେବକ ସଙ୍ଘ ।

୫. ଗୋସେବା ସଙ୍ଘ ।



# ମନ୍ତ୍ରୀଙ୍କ କର୍ତ୍ତବ୍ୟ

(ଗାନ୍ଧିଜୀ)

ବର୍ତ୍ତମାନ ଯେତେବେଳେ କଂଗ୍ରେସ ମନ୍ତ୍ରୀମାନଙ୍କ ହାତକୁ ଶାସନଭାର ଆସିଲାଣି, ସେତେବେଳେ ସେମାନେ ଖଦୀ ଓ ଅନ୍ୟାନ୍ୟ ଗ୍ରାମୋଦ୍ୟୋଗ ପାଇଁ କ'ଣ କରିବେ, ଏ କଥା ପଚାରିବା ନ୍ୟାୟସଙ୍ଗତ । ମୁଁ ପ୍ରଶ୍ନଟିଏ ଟିକିଏ ବଢେଇ ଦେଇ ଭାରତର ସବୁ ପ୍ରାଦେଶିକ ସରକାରମାନଙ୍କ ପ୍ରତି ଲାଗୁକରିବ । ସବୁ ପ୍ରଦେଶରେ ଏକା ଦାରିଦ୍ର୍ୟ ଓ ତାକୁ ଦୂର କରିବାର ପନ୍ଥା ମଧ ଏକ । ଚରଖା ସଂଘ ଓ ଗ୍ରାମୋଦ୍ୟୋଗ ସଂଘ, ଉଭୟଙ୍କର ଏହି ଅଭିଜ୍ଞତା । ଗୋଟିଏ ସୂଚନା ମିଳିଛି ଯେ, ଏ କାମପାଇଁ ଜଣେ ସ୍ୱତନ୍ତ୍ର ମନ୍ତ୍ରୀ ଲୋଡ଼ା; କାରଣ ଏ କାମ ଠିକ୍ ସଂଗଠିତ କରିବାକୁ ହେଲେ ଜଣେ ମନ୍ତ୍ରୀର ପୂରା ସମୟ ନେଇନେବ । ଏ ପ୍ରସ୍ତାବ କରିବାକୁ ମୋର ଭୟ ହେଉଛି; କାରଣ ଏ ପର୍ଯ୍ୟନ୍ତ ଆମେ ଟଙ୍କା ଖର୍ଚ୍ଚ କରିବାର ଇଂରେଜୀ ମାପଟାକୁ ଛାଡିପାରିନାହୁଁ । ଜଣେ ସ୍ୱତନ୍ତ୍ର ମନ୍ତ୍ରୀ ନିଯୁକ୍ତ ହୁଅନ୍ତୁ ବା ନାହିଁ, ଏଥିପାଇଁ ଗୋଟିଏ ସ୍ୱତନ୍ତ୍ର ବିଭାଗ ନିଶ୍ଚୟ ଦରକାର । ବର୍ତ୍ତମାନ ଖାଦ୍ୟ ଓ ବସ୍ତ୍ରାଭାବ ସମୟରେ ଏ ବିଭାଗ ସବୁଠାରୁ ବଳି ସାହାଯ୍ୟ ଦେଇ ପାରିବ । ଚରଖା ସଂଘ ଓ ଗ୍ରାମୋଦ୍ୟୋଗ ସଂଘ

ଢରିଆରେ ମନ୍ତ୍ରୀମାନଙ୍କୁ ବିଶେଷଜ୍ଞ ମିଳିବେ । ବର୍ତ୍ତମାନ ଅତ୍ୟନ୍ତ କମ୍ ସମୟରେ ଓ ଖୁବ୍ କମ୍ ଖର୍ଚ୍ଚରେ ସାରା ଭାରତକୁ ଖଦୀ ପିନ୍ଧେଇଦେବା ସମ୍ଭବ । ପ୍ରତ୍ୟେକ ପ୍ରାଦେଶିକ ସରକାର ଗାଁବାଲାମାନଙ୍କୁ କହିଦେବାକୁ ପଡ଼ିବ ଯେ, ତମକୁ ତମ ନିଜ ବ୍ୟବହାର ପାଇଁ ଖଦୀ କରିବାକୁ ପଡ଼ିବ । ଏହା ଫଳରେ ଆପେ ଆପେ ଠାକୁ ଠାଖଦୀ ଉତ୍ପାଦନ ଓ ବଣ୍ଟନ ହୋଇଯିବ । ତା ଛଡ଼ା ସହରମାନଙ୍କ ପାଇଁ କିଛି ହେଲେ ଅଧିକା ଲୁଗା ନିଶ୍ଚେ ବଳିବ । ଏହା ସ୍ଥାନୀୟ ମିଲ୍‌ମାନଙ୍କ ଉପରଚାପ କମେଇ ଦେବ । ସେମାନେ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ଲୁଗା ଅଭାବ ଦୂର କରିବାରେ ସାହାଯ୍ୟ କରିବେ ।

ଏହା ହେବ କିପରି ? ସରକାରମାନେ ଗାଁବାଲାଙ୍କୁ ଜଣେଇଦେବେ ଯେ ସେମାନଙ୍କର ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ ଭିତରେ ନିଜ ଗାଁର ଆବଶ୍ୟକତା ପାଇଁ ଖଦଡ଼ ନିଜେ କରିନେବେ ବୋଲି ଆଶା କରାଯାଉଛି । ତା'ପରେ ଆଉ ତାଙ୍କୁ ଲୁଗା (ବାହାରୁ) ଦିଆଯିବ ନାହିଁ । ସରକାର ଲୋକଙ୍କୁ ଯେଉଁଠି ଦରକାର କପାମଞ୍ଜି କପା, ସରଞ୍ଜାମ ମଧ୍ୟ ଋଣ ସୂତ୍ରରେ ଦେବେ, ଯାହା ଖୁବ୍ ସୁବିଧାଜନକ କିସ୍ତିରେ ଧର ପାଞ୍ଚବର୍ଷରେ ଅସୁଲ ହେବ । ଯେଉଁଠି ଦରକାର, ଶିକ୍ଷକ ଯୋଗାଇବେ ଓ ଯଦି କୌଣସି ଗାଁର ଲୋକେ ନିଜ ଦରକାର ମୁତାବକ ଖଦୀ ନିଜେ କରିସାରିଥାନ୍ତି, ତେବେ ଅଧିକା ଖଦୀଲୁଗା କିଣିଲେ ବୋଲି ଜବାବ ଦେବେ । ଏପରି ଭାବରେ ଖୁବ୍ ଅଳ୍ପ ଆୟାସରେ ଓ ସାମାନ୍ୟ ଖର୍ଚ୍ଚରେ ଲୁଗା ଅଭାବ ମେଣ୍ଟିଯିବ ।

ଗାଁଗୁଡ଼ିକ ସମ୍ପର୍କରେ ସମସ୍ତ ତଥ୍ୟ ସଂଗ୍ରହ କରିବାକୁ ହେବ । ଗାଁରେ ବ୍ୟବହାରୋପଯୋଗୀ ବା ବାହାରେ ବିକ୍ରିହେବା ଭଳି ଯେସବୁ ଜିନିଷ ସ୍ଥାନୀୟ ଭାବରେ ଖୁବ୍ ଅଳ୍ପ ବା ବିନା ସାହାଯ୍ୟରେ ତିଆରି ହୋଇ ପାରିବ, ତାହା ତାଲିକା କରିବାକୁ ହେବ, ଯଥା- ଘଣାତେଲ ଓ ପିଡ଼ିଆ, ଜାଳିବାପାଇଁ ଘଣାତେଲ, ଢିଙ୍କିକୁଟା ଚାଉଳ, ତାଳ ଗୁଡ଼, ମହୁ, ଖେଳଣା, ହାତ କାଗଜ, ଗାଁ ତିଆରୀ ସାବୁନ ଇତ୍ୟାଦି । ଯଦି ଯଥେଷ୍ଟ ଯତ୍ନ କରାଯାଏ, ତେବେ ଆଜି ଯେ ଗାଁ ଗୁଡ଼ିକରୁ ଅଧିକାଂଶ ଏକରକମ ମଲେଣି ବା ମରିବାକୁ ବସିଲେଣି, ସେଗୁଡ଼ିକ ପୁଣି ଜୀବନ୍ତ ହୋଇ ଉଠିବେ ଓ ତାଙ୍କର ନିଜର ଅଧିକାଂଶ ଅଭାବ ପୂରଣ କରି ଭାରତର ସହର ମାନଙ୍କୁ ମାଲ ଯୋଗାଇବାର ଯେ ବିରାଟ ଶକ୍ତି ତାଙ୍କ ଭିତରେ ରହିଛି, ତାହା ଦେଖାଇ ଦେବେ ।

ତା' ପରେ ଭାରତର ଅସୁମାରୀ ଗୋଧନ ତ ଆଜି ଜଘନ୍ୟ ଅଯତ୍ନରୁ କଷ୍ଟ ପାଉଛି । ଗୋସେବା ସଂଘ ଏ ପର୍ଯ୍ୟନ୍ତ ଯଥେଷ୍ଟ ଅଭିଜ୍ଞତା ସଞ୍ଚୟ ନକରି ପାରିଥିଲେ ମଧ୍ୟ ଖୁବ୍ ମୂଲ୍ୟବାନ ସାହାଯ୍ୟ ଦେଇ ପାରିବେ ।

ମୌଳିକ ଶିକ୍ଷା ବିନା ଗାଁ ବାଲାମାନେ ଶିକ୍ଷାରୁ ବଞ୍ଚିତ ହେଉଛନ୍ତି । ତାଲିମୀ ସଂଘ ଏଅଭାବ ପୂରଣ କରିବ । ଏ ପ୍ରୟୋଗ କଂଗ୍ରେସ ସରକାରମାନେ ଆରମ୍ଭ କରିଥିଲେ; କିନ୍ତୁ ମନ୍ତ୍ରିମଣ୍ଡଳମାନେ ଇସ୍ତଫା ଦେବାରୁ ସେଥିରେ ବାଧା ପଡ଼ିଲା । ତା' ଏବେ ପୁଣି ସହଜରେ ଆରମ୍ଭ କରା ଯାଇପାରେ । ହରିଜନ ୨୮. ୪. ୪୬



Eonomic independence means to me the economic uplift of every individual male and female by his or her own conscious effort, Under that System all men and women will have enough clothing not the mere loin cloth but what we understand by the term necessary articles of clothing and enough food including mik and butter which are to-day denied to millions.

# ବନସ୍ପତି ଘିଅ

**ଶ୍ରୀ କୁମାରପ୍ପା**

ସାନ ପିଲାର ଲୋଭୀ ପ୍ରକୃତିକୁ ସନ୍ତୁଷ୍ଟ କରିବା ପାଇଁ ଅନେକ ସମୟରେ ମା ତାକୁ ଗୋଟିଏ ଚୁଚୁମା ଧରେଇ ଦିଏ । ଚୁଚୁମାରୁ ପିଲାକୁ କୌଣସି ପୁଷ୍ଟି ମିଳେ ନାହିଁ, କେବଳ ଖାଇବାକୁ ମିଳିଛି ବୋଲି ଗୋଟିଏ ବୃଥା ସାନ୍ତ୍ୱନା ମିଳେ । ସେମିତି, ଯେଉଁମାନେ ବନସ୍ପତି ଘିଅ (ଭେଜିଟେବୁଲ୍) ବ୍ୟବହାର କରନ୍ତି, ଘିଅ ଭଳି ଦିଶୁଥିବା ଗୋଟିଏ କିଛି ଜିନିଷ ବ୍ୟବହାର କରିବାର ତାଙ୍କର ଆକାଙ୍କ୍ଷା ଥାଏ ଓ ବନସ୍ପତି ଘିଅ ତିଆରି କଲାବାଲା ମଧ୍ୟ ଘିଅ ଭଳି ଦେଖା ଯାଉଥିବା, କିନ୍ତୁ ଘିଅର ପୁଷ୍ଟି କାରିତା ନା ଥିବା, ଅଥଚ ସାଙ୍ଗେ ସାଙ୍ଗେ ଗରାଖର ଅହଂକାରକୁ ସନ୍ତୁଷ୍ଟ କରୁଥିବା ଏକ ଜିନିଷ ଯୋଗାଇ ତାର ଅହଙ୍କାରକୁ ସନ୍ତୁଷ୍ଟ କରେ । କିନ୍ତୁ ମା' ପିଲା ମୁହଁରେ ଚୁଚୁମା ଧରେଇ ଦେଇ ପଇସା ନିଅନ୍ତି ନାହିଁ, ବନସ୍ପତି ଘିଅବାଲା ଗରାଖଙ୍କଠୁଁ ଲାଭ ଉଠାନ୍ତି ।

ଘିଅରେ ଯେଉଁ ଭିଟାମିନି 'ଏ'ଥାଏ ତା' ସମାନ ଯଦି କିଛି ସେଥିରେ ନଥାଏ, ତେବେ ବନସ୍ପତି ଘିଅ ଘିଅଇ ନୁହେଁ, ଯଦି ତାହା ଏପରି ଭାବରେ ତିଆରି କରା ହୋଇଥାଏ ଯେ, ତାହା ଠିକ୍ ବସିଲା ଘିଅ ଭଳି ଟାଣ ଦେଖାଯିବ, ତେବେ ତାକୁ ଅତି ବଡ଼ରେ 'ଅପାଚ୍ୟ ବନସ୍ପତି ତେଲ'ର ସମାନ ଜିନିଷ ବୋଲି କୁହାଯାଇପାରେ । ବିଶୁଦ୍ଧ ନିରାମିଷ ବା ବନସ୍ପତି ତେଲକୁ ବନସ୍ପତି ଘିଅ କରିବା ପକ୍ରିୟା ଦ୍ୱାରା କେବଳ ତାହା ଘିଅ ସଙ୍ଗରେ ଭଲ ରୂପରେ ମିଶେଇବା ସୁବିଧା ଛଡ଼ା ଅନ୍ୟକୌଣସି ଗୁଣ ସେଥିରେ ବଢ଼େ ନାହିଁ । ଘିଅ ଆଉ ବନସ୍ପତି ତେଲ ମଧରେ ପ୍ରଭେଦ ହେଉଛି ଯେ, ଘିଅଟା ଯାନ୍ତବ ପଦାର୍ଥ ଓ ସେଥିରେ ଥିବା ଭିଟାମିନ୍ 'ଏ' ଯାହା ତେଲରେ ନଥାଏ, ମଧ ଏକରକମ ପୂରାପୂରି ଜାନ୍ତବ । ତେଣୁ ଯେଉଁ ବନସ୍ପତି ଘିଅରେ ଭିଟାମିନ ଅଛି ବୋଲି କୁହାଯାଏ, ସେଥିରେ, କଡ଼ ମାଙ୍ଗର ପ୍ରଭୃତି ବହୁତ ଭିଟାମିନି 'ଏ' ଥିବା ମାଛ ତେଲରୁ ସଂଗ୍ରହ କରି ମିଶାଯାଇଥାଏ । ଆମର ଏ ନିରାମିଷାଶୀ ଦେଶରେ ଅନେକ ଲୋକଙ୍କର ଘିଅ, ଦୁଧ ଆଦି ଛଡ଼ା ଅନ୍ୟ ଜାନ୍ତବ ବା ଆମିଷ ଖାଦ୍ୟ ଖାଇବାରେ ଆପତ୍ତି ଥାଏ । ବନସ୍ପତି ଘିଅରେ ଯେଉଁ ଭିଟାମିନ 'ଏ' ମିଶିଛି, ତାହା ଆମିଷରୁ ସଂଗ୍ରହ କରା ହେଇଥିବା କଥା ପ୍ରକାଶ ନକରି ତାକୁ ବିକିବା ଅର୍ଥ ସାଧାରଣ ଲୋକଙ୍କୁ ଠକେଇବା ।

ତା'ଛଡ଼ା ଆମେରିକାରେ ଯେଉଁ ପୁଷ୍ଟି ସମ୍ମିଳନୀ' ହୋଇଥିଲା, ସେଥିରେ ଏ କଥା ଦର୍ଶା ହୋଇଥିଲା ଯେ, ଅତି ଘନୀଭୂତ ଭିଟାମିନ ବ୍ୟବହାର କରିବା କ୍ଷତିକାରକ । ତେଣୁ ଯଦି ମାଛ ତେଲରୁ ଘନୀଭୂତ ଭିଟାମିନ ନେଇ ବନସ୍ପତିରେ ମିଶାଯାଏ ତାହା ମଧ କ୍ଷତିକାରକ ହେବ । ପୁଣି ତେଲକୁ ବନସ୍ପତି ଘିଅ କରିବା ପକ୍ରିୟାରେ (catalysis) ସାଧାରଣତଃ ନିକେଲ ଧାତୁ ବ୍ୟବହାର କରାଯାଏ, ବନସ୍ପତିଘିଅରେ ସାମାନ୍ୟ ପରିମାଣରେ ନିକେଲ ଥିବାର ଦେଖାଯାଉଛି । ମଣିଷ ଶରୀରରେ ନିକେଲର କୌଣସି ଆବଶ୍ୟକତା ନାହିଁ, ତେଣୁ ତାହା ଖୁବ୍ ସାମାନ୍ୟ ପରିମାଣରେ ଦେହ ଭିତରକୁ ଗଲେ ମଧ ଶେଷକୁ ଅନିଷ୍ଟ କରିବାର ସମ୍ଭାବନା ଅଛି । 'କୁନୁରର ପୁଷ୍ଟି - ଗବେଷଣାଗାର'ର ପରିଚାଳକ ଡ଼ାକ୍ତର ପଟବର୍ଦ୍ଧନ ଗତ ମାସରେ ଭାରତୀୟ ବିଜ୍ଞାନ କଂଗ୍ରେସ ସେ କହିଥିଲେ ଯେ, ତାଙ୍କର ଗବେଷଣାରୁ ଜଣାପଡୁଛି ଯେ, ଜନ୍ତୁମାନଙ୍କର ଶରୀରର ବୃଦ୍ଧି ଓ ଛୁଆ ଜନ୍ମ କରିବା ଶକ୍ତି ଉପରେ ବନସ୍ପତି ଘିଅର ଅନିଷ୍ଟକର ପରିଣାମ ହୁଏ । ଦେଶର ବିଭିନ୍ନ ଅଞ୍ଚଳରେ ଲୋକେ ସୋରିଷ, ରାଶି ନଡ଼ିଆ ପ୍ରଭୃତି ଭିନେ ଭିନେ ତେଲ ବ୍ୟବହାର କରିଥାନ୍ତି ଓ ଆୟୁର୍ବେଦ ଅନୁସାରେ ସବୁ ତେଲ ଶରୀର ପକ୍ଷରେ ସମାନ ଉପକାରୀ ନୁହେଁ । ଭିନେ ଭିନେ ତେଲର ଭିନେ ଭିନେ ଗୁଣ । ଉଦାହରଣ ସ୍ୱରୂପ ବାଦାମ ତେଲ ମସ୍ତିଷ୍କକୁ

ପୁଷ୍ଟ କରେ ଓ ଦେହକୁ ମଧ କରେ ବୋଲି କୁହାଯାଏ; କିନ୍ତୁ ଚିନାବାଦାମ ତେଲରେ ବେଶୀ ସ୍ନେହ ଅଂଶ ଥିଲେ ବି ତାହା ମସ୍ତିଷ୍କର କ୍ଷତି କରେ ବୋଲି କୁହାଯାଏ । ଚିନାବାଦାମ ତେଲ ଅପେକ୍ଷା ସୋରିଷ, ରାଶି ଓ ନଡ଼ିଆ ତେଲ ଏ ଦୃଷ୍ଟିରୁ ବହୁ ଗୁଣ ଭଲ । ଅଧିକାଂଶ ବନସ୍ପତି କାରାଖାନାରେ ଚିନାବାଦାମ ତେଲ ବା କପାମଞ୍ଜି ତେଲବ୍ୟବହାର ହୁଏ । ଏଗୁଡ଼ିକ ନିକୃଷ୍ଟଧରଣର ତେଲ ଓ ଘିଅ ନ ପାଇବା ସ୍ଥଳେ ସାଧାରଣ ତେଲକୁ ସ୍ନେହଜାତୀୟ ଖାଦ୍ୟ ପାଇବା ଦୃଷ୍ଟିରୁ ମଧ ବନସ୍ପତି ଘିଅ ବ୍ୟବହରକାରୀମାନେ ଉତ୍କୃଷ୍ଟ ତେଲ ପାନ୍ତି ନାହିଁ । ଗରାଖମାନଙ୍କୁ ବିଶୁଦ୍ଧ ଖାଦ୍ୟ ଯୋଗେଇବା ଦୃଷ୍ଟିରୁ ତାହା କେଉଁ ତେଲରୁ ତିଆରି ଓ ସେଥିରେ ଥିବା ଭିଟାମିନ କେଉଁଥିରୁ ନିଆଯାଇଛି, ଏ କଥା ବନସ୍ପତି ଘିଅ ଟିଣର ଲେବୁଲ ଉପ୍ରେ ସ୍ପଷ୍ଟକରି ଲେଖିବା ପାଇଁ ବନସ୍ପତି ଘିଅ ତିଆରି କଲାବାଲାଙ୍କୁ ବାଧ କରିବା ଦରକାର ।

ଏସବୁ ତଥ୍ୟ ଦୃଷ୍ଟିରୁ ସାବୁନ ତିଆରି ଓ ଅନ୍ୟ ଶିଳ୍ପପାଇଁ ସୁବିଧାଜନକ ରୂପରେ ତେଲକୁ ଯୋଗାଇବା ଛଡ଼ା ବନସ୍ପତି ଘିଅ ମୂଳରୁ ତିଆରି କାହିଁକି କରାଯିବ, ତାହା ଆମେ ବୁଝିପାରୁ ନାହିଁ ।

ଘଣାପେଡ଼ା ତେଲ ହଜମ ହେବା ଓ ବିଶୁଦ୍ଧତା ଦୃଷ୍ଟିରୁ ବନସ୍ପତିଠାରୁ ଢେର ଭଲ, ଆଉ ସ୍ୱାଭାବିକ ଘିଅ ସାଙ୍ଗରେ ତ ତାର ତୁଳନାହିଁ ହୋଇପାରିବ ନାହିଁ । ଅଥଚ ପୁଞ୍ଜିପତିମାନେ ଆମ ଲୋକଙ୍କର ଗୋଟିଏ ଛୋଟ ଅଂଶ, ବିଶେଷ କରି ସହରବାସୀଙ୍କର ଢ଼ମପଣିଆରୁ ଲାଭ ଉଠେଇବାପାଇଁ ବିଦେଶରୁ କଳ ଅଣେଇବାରେ ୪/୫ ଲକ୍ଷଟଙ୍କା ଖଟାଉଛନ୍ତି ।

ଆମେ ଶୁଣୁଛୁ ଯେ, କେନ୍ଦ୍ର ସରକାର ପ୍ରାୟ ସତେଇଶଟି ନୂଆ ବନସ୍ପତି କଳ ଖୋଲିବା ପାଇଁ ଅନୁମତି ଦେଉଛନ୍ତି । ଏଥିରୁ ଅଧିକାଂଶ ବମ୍ବେ ଓ ମାଡ୍ରାଜରେ ବସିବ । ଲୋକଙ୍କର ମଙ୍ଗଳକୁ ପରବାୟ ନକରି ଶୋଷଣକାରୀଙ୍କ ପ୍ରତି ଏଇଟା କଣ କେନ୍ଦ୍ର ସରକାରଙ୍କ ଶୁଭେଚ୍ଛା, ନା ଦେଶରେ ଚଞ୍ଚଳ କଳ କାରଖାନା ବଢେଇଦେବା ଉତ୍ସାହରେ ସେ ଅଥଳ ପାଣିକି ଗୋଡ଼ ଖସଉଛନ୍ତି, ନା ଇଂରେଜଙ୍କର 'ଭାରତ ଲୁଟ' ନୀତିଟାହିଁ ଚାଲିଛି ? କାରଣ ଏ ସତେଇଶଟା କାରଖାନା ଖୋଲିଲେ ବିଲାତକୁ କୋଟିଏ ଟଙ୍କା ଉପରର ବେପାର ମିଳିଯିବ ।

ଆମର ସୂଚନା ଯେ, ଯେଉଁ ସରକାର ଲୋକଙ୍କର ମଙ୍ଗଳ ଚାହେ, ତାହା ଲୋକଙ୍କର ସ୍ୱାସ୍ଥ୍ୟ ଓ ଭାବପ୍ରବଣତାର କ୍ଷତି କରୁଥିବା ଏପରି ଶୋଷଣକୁ ଏକଦମ ନିଷେଧକରି ଦେବାକୁ ଉଣା କିଛି କଲେ ଚଳିବ ନାହିଁ । କଳକାରଖାନା ବଢେଇବା ନାରେ ଏ ଦେଶକୁ, ବିଶେଷତଃ ଯେଉଁଠିକାର ଲୋକ ପୁଷ୍ଟିର ଅଭାବ ଭୋଗୁଛନ୍ତି, ଆଉ ଧ୍ୱଂସ କରିବା ଉଚିତ ନୁହେଁ । ବନସ୍ପତି ଘିଅ ପ୍ରସ୍ତୁତ କାରୀମାନଙ୍କ ପ୍ରତି ଦେଶଦ୍ରୋହୀରୂପେ ବ୍ୟବହାର କରିବାକୁ ଲୋକମତ ଶିକ୍ଷିତ ହେବା ଚାହିଁ ଓ ଯଦି ସରକାର ଜନମତର ପ୍ରତୀକ ହେଉଥାଏ, ତେବେ ଲୋକଙ୍କ ସହିତ ଏ ଧପ୍ ପାବାଜୀ ଶୀଘ୍ର ବନ୍ଦ ହେବ ।

(୧୯୪୭ ଫେବ୍ରୁୟାରୀ ସଂଖ୍ୟା 'ଗ୍ରାମସେବକ'ରୁ ଗୃହୀତ ।)



By Political independence I do not mean an imitation of the British House of Commons or the Soviet rule of Russia, or the facist rule of Italy or the Nazi rule of Germany. They have systems suited to their genius. We must have ours suited to ours. I have described it as Ramraj. Sovereignty of the people based on pure moral outhority.

# ସାମ୍ୟବାଦୀ କିଏ ?

ଗାନ୍ଧୀଜୀ

ସାମ୍ୟବାଦ ଗୋଟିଏ ସୁନ୍ଦର ଶବ୍ଦ । ମୁଁ ଯେତେଦୂର ଜାଣେ, ସାମ୍ୟବାଦରେ ସାମାଜ୍ୱର ସବୁ ଲୋକ ସମାନ - କେହି ନୀଚ ନୁହେଁ, କେହି ଉଚ୍ଚ ନୁହେଁ । ମଣିଷ ଦେହରେ ମୁଣ୍ଡଟା ଉପରେ ଅଛି ବୋଲି ଉଚ୍ଚନୁହେଁ, ପାଦ ତଳେ ଲାଗୁଛି ବୋଲି ନୀଚ ନୁହେଁ । ମଣିଷ ଶରୀର ଅଙ୍ଗ ପ୍ରତ୍ୟଙ୍ଗ ଯେମିତି ସମାନ, ସେମିତି ସମାଜର ସବୁ ଅଙ୍ଗ ସମାନ । ଏହାହିଁ ସାମ୍ୟବାଦ ।

ଏଥିରେ ରାଜା ପ୍ରଜା, ଧନୀ ଦରିଦ୍ର, ମାଲିକ ମୂଲିଆ ସମସ୍ତେ ସମାନ ସ୍ତରରେ ଥିବେ । ଧର୍ମଭାଷାରେ କହିଲେ-ସାମ୍ୟବାଦରେ ଦ୍ୱୈତ ନାହିଁ । ଏଥିରେ ସବୁ ଅଦ୍ୱୈତ । ଦୁନିଆର ଚାରିଆଡ଼ର ସମାଜ ଆଡ଼କୁ ଆଖିପକାଅ - ଦେଖିବ ସବୁ ସେଇ ଦ୍ୱୈତ, ସବୁଠେଇଁ ବିଭେଦ ଛଡ଼ା ଆଉ କିଛି ଦେଖାଯିବ ନାହିଁ । ଅଦ୍ୱୈତ ବା ଏକତା ଟା ନଥିବା ଯୋଗୁଁହିଁ ଆଖିରେ ପଡ଼ିବ- ଏ ଜଣକ ଉଚ୍ଚ, ସେ ଜଣକ ନୀଚ, ଜଣେ ହିନ୍ଦୁ, ଆଉ ଜଣେ ମୁସଲମାନ, ତୃତୀୟ ଜଣକ ଖ୍ରୀଷ୍ଟାନ, ଚତୁର୍ଥ ଜଣକ ପାର୍ଶୀ, ପଞ୍ଚମଟି ଶିଖ, ଷଷ୍ଠ ୟୁହୁଦୀ । ଏମାନଙ୍କ ଭିତରେ ପୁଣି ଉପବିଭାଗ ଅଛି । ଏକତାର ମୁଁ ଯେଉଁ କଳ୍ପନା କରିଥାଏ ସେଥିରେ ବିଚିତ୍ରତା ଭିତରେ ପୂର୍ଣ୍ଣ ଏକତା ରହିଥିବ ।

ଏ ଅବସ୍ଥାରେ ପହଞ୍ଚିବାକୁ ହେଲେ ଆମ କେବଳ ଦୁନିଆକୁ ଦାର୍ଶନିକ ଦୃଷ୍ଟିରେ ଦେଖି ଚୁପ ହୋଇ ବସି ରହିଲେ ଓ ଏ କଥା କହିଲେ ଚଳିବ ନାହିଁ ଯେ ସମସ୍ତେ ସାମ୍ୟବାଦ ଗ୍ରହଣ ନ କରିବା ପର୍ଯ୍ୟନ୍ତ ଆମର କିଛି କରିବାର ନାହିଁ । ଆମ ନିଜର ଜୀବନକୁ ନ ବଦଳେଇ ଆମେ ବକ୍ତୃତା ଦେଇପାରୁ, ଦଳ ଗଢ଼ିପାରୁ ଓ ବାଘ ପଡ଼ିଲେ ଛଞ୍ଚାଣଭଳି ଶିକାରକୁ ଝାମ୍ପିପାରୁ । ଏହା ସାମ୍ୟବାଦ ନୁହେଁ । ଆମେ ଯେତିକି ତାକୁ ଶିକାର ଭଳି ଝାମ୍ପି ମାରି ଆଣିବା ଜିନିଷ ମନେ କରୁଥିବା ତାହା ସେତିକି ଆମଠାରୁ ଦୂରକୁ ଯାଉଥିବ ।

ଯେ ପ୍ରଥମ ସାମ୍ୟବାଦ ଗ୍ରହଣ କଲା, ତାରିଠୁଁ ସାମ୍ୟବାଦର ଆରମ୍ଭ । ଜଣେ ସେମିତି 'ଏକ' ହେଲେ, ସେଥିରେ ଗୋଟିଏ ଶୂନ ବସେଇଲେ ଦଶ ହେବ ଓ ପ୍ରତ୍ୟେକ ଅଧିକା ଶୂନ ପୂର୍ବ ସଂଖ୍ୟାର ଦଶ ଗୁଣ ବୁଝେଇବ । କିନ୍ତୁ ଆରମ୍ଭ କଲାବାଲା ଯଦି ଶୂନ ହୁଏ, ଅର୍ଥାତ୍ କେହି ମୋଟେ ଉଦ୍ୟମ ଆରମ୍ଭ ନ କରନ୍ତି, ତେବେ ଯେତେ ଶୂନ ବଢ଼ିଲେ ବି ମୋଟ ମୂଲ୍ୟ ଶୂନ ହିଁ ହେବ । ଶୂନ ଲେଖିବାରେ ଯେତକ ସମୟ ଓ କାଗଜ ଖର୍ଚ୍ଚ ହେବ ସେତକ ମାଟି ହେବ ।

ଏ ସାମ୍ୟବାଦ ସ୍ଫଟିକଭଳି ପବିତ୍ର । ତେଣୁ, ଏହାକୁ ହାସଲ କରିବା ପାଇଁ ସେହିପରି ପବିତ୍ର ସାଧନ ଦରକାର । ଅପବିତ୍ର ସାଧନର ପରିଣାମରେ ଅପବିତ୍ର ଲକ୍ଷ୍ୟହିଁ ହାସଲ ହେବ । ତେଣୁ ରଜାର ମୁଣ୍ଡ କାଟି ପକାଇଲେ ରଜା ପ୍ରଜା ସମାନ ହେବେ ନାହିଁ । ଅସତ୍ୟ ଦ୍ୱାରା ସତ୍ୟ ହାସଲ କରିହେବ ନାହିଁ; ସତ୍ୟ ଆଚରଣ ଦ୍ୱାରାହିଁ ସତ୍ୟକୁ ଲଭ କରି ହେବ । ସତ୍ୟ ଓ ଅହିଂସା ଭିତରେ ସତ୍ୟ ଅଛି । ସେଇଥିପାଇଁ ତ କୁହାହେଇଛି ଯେ ଏ ଦୁଇଟି ହେଉଛନ୍ତି ଏକା ଟଙ୍କାର ଏ ପାଖ ସେ ପାଖ । ଗୋଟିକରୁ ଅନ୍ୟକୁ ଭିନେ କରିହେବ ନାହିଁ । ଟଙ୍କାର ଉପରର ଲେଖାକୁ ଯୋଉ ପାଖରୁ ପଢ, ଶବ୍ଦର ବନାନ ଭିନ୍ନେ ହେବ, କିନ୍ତୁ ଟଙ୍କାଟିର ମୂଲ୍ୟ ଏକ । ପୂର୍ଣ୍ଣ ଶୁଦ୍ଧତା ବିନା ଏ ଦିବ୍ୟ ଅବସ୍ଥା ଲାଭ କରି ହେବ ନାହିଁ । ମନ ବା ଦେହର ଅପବିତ୍ରତାକୁ ପ୍ରଶ୍ରୟ ଦେଲେ ତମଠେଇଁ ଅସତ୍ୟ ଓ ହିଂସା ସ୍ଥାନ ପାଇବ ।

ତେଣୁ, କେବଳ ସତ୍ୟାଶ୍ରୟୀ, ଅହିଂସ ଓ ପବିତ୍ରମନା ସାମ୍ୟବାଦୀମାନେହିଁ ଭାରତରେ ଓ ଜଗତରେ ସାମ୍ୟବାଦୀ ସମାଜ ପ୍ରତିଷ୍ଠା କରିପାରିବେ । ମୋ ଜାଣିବାରେ ପୃଥିବୀରେ କୌଣସି ଶୁଦ୍ଧ ସାମ୍ୟବାଦୀ ଦେଶ ନାହିଁ । ଉପରେ ଯେଉଁ ଉପାୟ କଥା କୁହାଗଲା ତା ବିନା ଏପରି ସମାଜ ସ୍ଥାପନ ଅସମ୍ଭବ ।

ସାମ୍ୟବାଦ ସତ୍ୟ ଓ ଅହିଂସାର ଜୀବନ୍ତ ମୂର୍ତ୍ତି ହେବ । ସେଥିପାଇଁ ସାମ୍ୟବାଦୀର ଭଗବାନଙ୍କଠାରେ ଜୀବନ୍ତ ଶ୍ରଦ୍ଧାଥିବା ଆବଶ୍ୟକ । ସତ୍ୟ ଓ ଅହିଂସାର କେବଳ ଯନ୍ତ୍ରବତ୍ ପାଳନ ସଙ୍କଟ ସମୟରେ ଅକାମୀ ହେଇଯିବ । ସେଥିଯୋଗୁଁ ତ ମୁଁ କହିଛି ଯେ ସତ୍ୟହିଁ ଭଗବାନ । ଏ ଭଗବାନ ଏକ ଜୀବନ୍ତ ଶକ୍ତି । ଆମ ଜୀବନ ଏହି ଶକ୍ତିରେ ଗଢା । ଏ ଶକ୍ତି ଆମ ଦେହରେ ବାସ କରେ, କିନ୍ତୁ ଏହା ଦେହ ନୁହେଁ । ଯେ ଏ ମହାନ୍ ଶକ୍ତିର ଅସ୍ତିତ୍ୱ ଅସ୍ୱୀକାର କରେ ସେ ନିଜକୁ ଏ ଅକ୍ଷୟ ଶକ୍ତିର ଉପଯୋଗରୁ ବଞ୍ଚିତ କରେ । ଫଳରେ ସେ ଶକ୍ତିହୀନ ହେଇ ରହେ । ମଙ୍ଗ ନଥିବା ଜାହାଜ ଭଳି ସେ କୌଣସି, ନିର୍ଦ୍ଦିଷ୍ଟ ବାଟରେ ନ ଯାଇ ଏଣେ ତେଣେ ବାଡ଼େଇ ହେଇ ନଷ୍ଟ ହୁଏ । ଏଭଳି ଲୋକଙ୍କର ସାମ୍ୟବାଦ ଦ୍ୱାରା ତାଙ୍କର ଆପଣାରହିଁ କିଛି ପ୍ରଗତି ହେବ ନାହିଁ, ସେ ଯେଉଁ ସମାଜରେ ରହନ୍ତି ତାକୁ ବାଟ କଢେଇ ନେବାତ ଦୂରର କଥା ।

ଘଟଣା ଯଦି ଯା ହୁଏ ତେବେ କଣ କହିବା ଯେ କୌଣସି ସାମ୍ୟବାଦୀ ଭଗବାନଙ୍କୁ ବିଶ୍ୱାସ କରନ୍ତି ନାହିଁ ? ଯଦି ଇଶ୍ୱର ବିଶ୍ୱାସୀ ସାମ୍ୟବାଦୀ କେହିଥାନ୍ତି ସେ କାହିଁକି ଆଖି ଦୁରୁଶିଆ ପ୍ରଗତି କରିନାହାନ୍ତି ? ତା' ପରେ ପୁଣି, ଯା' ପୂର୍ବରୁ ତ ବହୁତ ଧାର୍ମିକ ଲୋକ ଥିଲେ, ସେମାନେ କାହିଁକି ଏକ ସାମ୍ୟବାଦୀ ରାଜ୍ୟ ପ୍ରତିଷ୍ଠା କରିବାରେ ସଫଳ ନ ହେଇଛନ୍ତି ?

ଏ ଦୁଇଟି ସନ୍ଦେହର ପୂରାପୂରି ସମାଧାନ କରିବା କଠିନ । ତଥାପି, ଏ କଥା କୁହାଯାଇ ପାରେ ଯେ ତାଙ୍କର ଭଗବତ୍ ବିଶ୍ୱାସ ଓ ସାମ୍ୟବାଦ ଭିତରେ ଯେ କିଛି ସଂପର୍କ ଅଛି ଏ କଥାଟା ଈଶ୍ୱର ବି ଶ୍ୱାସୀ ସାମ୍ୟବାଦୀଙ୍କ ଖିଆଲକୁ ଆସିନାହିଁ । ଏକଥା କହିବା ହୁଏତ ସମାନ ନିରାପଦ ହେବ ଯେ ଧାର୍ମିକ ଲୋକେ ଜନସାଧାରଣଙ୍କୁ ସାମ୍ୟବାଦ ବାଟ ସାଧାରଣତଃ ବତେଇ ନାହାନ୍ତି ।

ଧାର୍ମିକ ନରନାରୀଙ୍କ ସତ୍ତ୍ୱେ ଦୁନିଆରେ ନାନା କୁସଂସ୍କାର ପ୍ରସାର ଲାଭ କରିଛି । ହିନ୍ଦୁ ଧର୍ମ ଭିତରେ ତ ପୁଣି ଏ ପର୍ଯ୍ୟନ୍ତ ଅସ୍ପୃଶ୍ୟତାର ନିଃସନ୍ଦିଗ୍ଧ ପ୍ରଭାବ ରହିଥିଲା ।

କଥା ହେଉଛି ଯେ ଏ ମହାନ୍ ଶକ୍ତି ବିଷୟରେ ଓ ତା ଭିତରେ ଯେ କି ଅଜଣା ସମ୍ଭାବନା ନିହିତ ରହିଛି ତାହା ଜାଣିବାପାଇଁ ହେଲେ ଖୁବ କଠିନ ଗବେଷଣା ଦରକାର ।

ମୋର ଦାବୀ ହେଉଛି ଯେ ଏହି ଗବେଷଣାରେହିଁ ସତ୍ୟାଗ୍ରହର ଆବିଷ୍କାର ହୋଇଛି । ଅବଶ୍ୟ ଏକଥା ଦାବୀ କରା ହେଉ ନାହିଁ ଯେ ସତ୍ୟାଗ୍ରହର ସବୁ ନିୟମ ଗୁଡିକ ଜଣା ପଡ଼ି ଗଲାଣି । ଏକଥା ମୁଁ ନିର୍ଭୟରେ ଓ ଦୃଢଭାବରେ ଅବଶ୍ୟ କହୁଛି ଯେ, ସତ୍ୟାଗ୍ରହ ଦ୍ୱାରା ପ୍ରତ୍ୟେକ ଯୋଗ୍ୟ ଲକ୍ଷ୍ୟହାସଲ କରାଯାଇ ପାରିବ । ଏହା ହେଉଛି ଶ୍ରେଷ୍ଠତମ ଓ ଅମୋଘ ସାଧନ, ମହତ୍ତମ ଶକ୍ତି । ଅନ୍ୟ କୌଣସି ଉପାୟରେ ସାମ୍ୟବାଦ ହାସଲ କରିହେବ ନାହିଁ । ସତ୍ୟାଗ୍ରହ ଦ୍ୱାରା ସମାଜର ରାଜନୈତିକ, ଅର୍ଥନୈତିକ - ସବୁ ପ୍ରକାରର ଦୋଷ ଦୂର କରାଯାଇପାରେ । ୧୩, ୭. ୪୭

❑(୧୯୪୭ ଅଗଷ୍ଟ ସଂଖ୍ୟା ଗ୍ରାମସେବକରୁ ଗୃହୀତ)

# ଛାତ୍ରମାନଙ୍କର ଅସୁବିଧା - ଗାନ୍ଧୀଜୀ

''ବର୍ତ୍ତମାନ ଯେତେ ଛାତ୍ର ସଂଗଠନ ଅଛି ସେସବୁକୁ ଗୋଟିଏ ଜାତୀୟ ସମ୍ମେଳନରେ ଏକତାବଦ୍ଧ କରିବା ପାଇଁ ଏବେ ଏକ ଉଦ୍ୟମ ହେଉଛି । ଛାତ୍ର ଆନ୍ଦୋଳନକୁ ନୂଆ ଭିତ୍ତିରେ ଗଢିବା ପାଇଁ ଓ ଛାତ୍ରମାନଙ୍କର ଏକ ମିଳିତ ଜାତୀୟ ଅନୁଷ୍ଠାନର ବିକାଶ କରିବା ପାଇଁ ଏତଦ୍ୱାରା ଚେଷ୍ଟା କରାଯିବ । ଆପଣଙ୍କ ମତରେ ଏ ନୂଆ ଆନୁଷ୍ଠାନର ମର୍ଯ୍ୟାଦା କଣ ହେବା ଉଚିତ ? ଦେଶର ନୂଆ ପରିସ୍ଥିତିରେ ଏ ଛାତ୍ର ସଂଗଠନ କିଭଳି କାମ ମୁଣ୍ଡେଇବା ଚାହି ?''

ହିନ୍ଦୁ, ମୁସଲମାନ ଓ ଅନ୍ୟ ସମସ୍ତଙ୍କୁ ମିଶାଇ ଗୋଟିଏ ଜାତୀୟ ଅନୁଷ୍ଠାନ ରହିବା ଉଚିତ, ଏଥିରେ କୌଣସି ସନ୍ଦେହ ନାହିଁ । ଭବିଷ୍ୟତ ଛାତ୍ରମାନଙ୍କ ହାତରେ । ସେମାନଙ୍କୁ ଭାଗ ଭାଗ କରି ହେବ ନାହିଁ । ମତେ ଏକଥା ଦେଖି ଦୁଃଖ ଲାଗୁଛି ଯେ ଛାତ୍ରମାନେ ବି ନିଜ ପାଇଁ ଚିନ୍ତା କରିନାହାନ୍ତି କି ସେମାନେ ଯେ ପାଠପଢି ଭଲ ନାଗରିକ ହେବେ ସେଥିପାଇଁ ନେତାମାନେ ବି ତାଙ୍କୁ ଛାଡ଼ି ଦେଇ ନାହାନ୍ତି । ବିଦେଶୀ ସରକାର ଅମଳରେ ରୋଗ ଆରମ୍ଭ ହେଲା । ଆମେ ଯେ ତାଙ୍କ ଅନ୍ତେ ଉତ୍ତରାଧିକାରୀ ହେଲୁ, ଅତୀତର ଭୁଲକୁ ସୁଧାରିବା କଷ୍ଟ ସ୍ୱୀକାର କଲୁନାହିଁ । ତା'ପରେ, ବିଭିନ୍ନ ରାଜନୈତିକ ଦଳଗୁଡିକ ଛାତ୍ରଙ୍କ ଉପରେ ଜାଲ ପକେଇବାକୁ ଚେଷ୍ଟା କରିଛନ୍ତି, ଯେମିତି କି ସେଗୁଡ଼ାକ ମାଛ ଭେଳା । ଆଉ ଛାତ୍ରମାନେ ବି ବୋକାଙ୍କ ଭଳି ତାଙ୍କପାଇଁ ବିଛା ହୋଇଥିବା ଜାଲ ଭିତରକୁ ଦୌଡ଼ିଯାଇଛନ୍ତି ।

ତେଣୁ, କୌଣସି ଛାତ୍ର ସଂଗଠନ ପକ୍ଷରେ ଏ ଏକ ଘୋର କଠିନ କାମ । କିନ୍ତୁ ତାଙ୍କ ଭିତରେ ଏକ ବୀରତ୍ୱପୂର୍ଣ୍ଣ ମନୋଭାବ ଥିବା ଚାହି, ଯେପରି ସେମାନେ କାମକୁ ଦେଖି ପଛେଇଯିବେ ନାହିଁ । ସେମାନଙ୍କୁ ଏକତା ସୂତ୍ରରେ ଗୁନ୍ଥିବା ହେଉଛି କାମର ମର୍ଯ୍ୟାଦା । ସେମାନେ କ୍ରିୟାତ୍ମକ ରାଜନୀତିରୁ ନିଜକୁ ଅଲଗା ରଖିବା ନ ଶିଖିଲେ ଏ କଥା କରି ପାରିବେ ନାହିଁ । ଯେଉଁସବୁ ସମସ୍ୟାର ସମାଧାନ ଲୋଡ଼ା ହେଉଛି ସେ ସବୁର ଅଧ୍ୟୟନ କରିବା ହେଉଛି ଛାତ୍ରର କର୍ତ୍ତବ୍ୟ । ଅଧ୍ୟୟନ ଶେଷ ହେଲେ ଯାଇଁ ତାର କାମ କରିବା ବେଳ ଆସେ ।

ପ୍ରଶ୍ନ - "ଆଜିକାଲି ଛାତ୍ର ଅନୁଷ୍ଠାନମାନେ ଜାତୀୟ ପୁନଃଗଠନ କାମରେ ଆପଣା ଶକ୍ତି ନିୟୋଜିତ କରିବା ଅପେକ୍ଷା ରାଜନୈତିକ ବ୍ୟାପାରରେ ପ୍ରସ୍ତାବ ମାନ [illegible] ବେଶୀ ବ୍ୟସ୍ତ । ରାଜନୈତିକଦଳମାନେ ଆପଣା ଦଳଗତ ଉଦ୍ଦେଶ୍ୟ ସାଧନ ପାଇଁ ଛାତ୍ର ଅନୁଷ୍ଠାନ ଗୁଡ଼ିକ ଦଖଲକରିବା ପାଇଁ ଯେଉଁ ଉଦ୍ୟମ କରୁଛନ୍ତି ତାହା ଆଂଶିକଭାବରେ ଏଥିପାଇଁ ଦାୟୀ । ଆମର ବର୍ତ୍ତମାନର ଅନୈକ୍ୟ ମୂଳରେ ମଧ୍ୟ ଏଇ ଦଳଗତ ରାଜନୀତି ଥିବାର ଦେଖାଯିବ । ତେଣୁ, ପ୍ରସ୍ତାବିତ ଜାତୀୟ ଛାତ୍ରସଙ୍ଘ ଭିତରେ ଏସବୁ ଦଳାଦଳି ଓ ଅନୈକ୍ୟର ପୁନରାବୃତ୍ତି ରୋଧକରିବାର ଗୋଟିଏ କିଛି ଉପାୟ ଆମେ ବାହାର କରିବାକୁ ଚାହୁଁ । ଛାତ୍ର ଅନୁଷ୍ଠାନମାନେ ରାଜନୀତିକୁ ପୂରାପୂରି ବର୍ଜନକରିବା ସମ୍ଭବ ବୋଲି କଣ ଆପଣ ମନେ କରୁଛନ୍ତି ? ନ ହେଲେ, ଛାତ୍ର ଅନୁଷ୍ଠାନମାନେ ରାଜନୀତିରେ କେତେ ଦୂର ସ୍ପୃହା ରଖିବା ଆପଣ ବାଞ୍ଛନୀୟ ମନେକରନ୍ତି ?"

ଉପରେ ଏ ପ୍ରଶ୍ନର ଆଂଶିକ ଜବାବ ଦିଆଯାଇଛି । ସେମାନେ ପ୍ରତ୍ୟକ୍ଷ ରାଜନୀତିରୁ ଅବଶ୍ୟ ଅଲଗା ରହିବେ । ସବୁଦଳମାନେ ଯେ ଛାତ୍ର ସାମାଜକୁ ଆପଣା ଉଦ୍ଦେଶ୍ୟ ସାଧିବା ପାଇଁ ବ୍ୟବହାର କରିଛନ୍ତି ଏଇଟା ଏକ ତରଫା ବିକାଶର ଲକ୍ଷଣ । ଯେତେବେଳେ ଆପଣା ଦାସତ୍ୱକୁ କୁଣ୍ଢେଇ ଧରିଥିବା ଏକ ଦାସ ଜାତି ସୃଷ୍ଟିକରିବା ଶିକ୍ଷାର ଉଦ୍ଦେଶ୍ୟ ଥିଲା ସେତେବେଳେ ସମ୍ଭବତଃ ଏହା ଘଟିବା ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । କିନ୍ତୁ ସେ କଥା ତ ସରିଲାଣି ବୋଲି ମୋର ଆଶା । ଗୋଟିଏ ସ୍ୱାଧୀନରାଷ୍ଟ୍ରର ପିଲାମାନେ କି ଭଳି ଶିକ୍ଷାପାଇବା ଦରକାର ତାହା ବିଚାରି ଠିକକରିବା ଛାତ୍ରମାନଙ୍କର ପ୍ରଥମ । କାମ ଆଜିକାଲିକାର ଶିକ୍ଷା ସ୍ପଷ୍ଟତଃ ତାହା ନୁହେଁ । କିପରିହେବା ଉଚିତ ସେକଥା ମୁଁ ଏଠି ଆଲୋଚନା କରିବି ନାହିଁ । ମାତ୍ର, ଏଇଟା କେବଳ ବିଶ୍ୱବିଦ୍ୟାଳୟ ସିନେଟ୍‌ସଭାର ବଡ଼ବଡ଼ିଆଙ୍କ କାମ ବୋଲି ମନେକରିବାର ଭୁଲଧାରଣାରେ ଛାତ୍ରମାନେ ଆପଣାକୁ ନ ପକେଇବା

ଚାହିଁ । ସେମାନେ ଚିନ୍ତାଶକ୍ତିକୁ ଉଦ୍‌ବୁଦ୍ଧ କରିବା ଚାହିଁ । ଛାତ୍ରମାନେ ଧର୍ମଘଟ, ଆଦି କରି ଦ୍ରୁତ ପରିବର୍ତ୍ତନ ଆଣିବାକୁ ଚାପଦେଇ ପାରିବେ ବୋଲି ମୁଁ ଘୃଣା ଚକ୍ଷୁରେ ସୂଦ୍ଧା ସୂଚନା ଦେଉନାହିଁ । ଗଠନମୂଳକ ଓ ବିଜ୍ଞ ସମାଲୋଚନା ଦ୍ୱାରା ସେମାନଙ୍କୁ ଜନମତ ସୃଷ୍ଟି କରିବାକୁ ହେବ । ସିନେଟ୍‌ର ସଭ୍ୟମାନେ ପୁରୁଣାଢଙ୍ଗର ମଣିଷ ହେଇଛନ୍ତି । ସେଥିପାଇଁ ସେମାନେ ଚଞ୍ଚଳ ଚାଲିପାରିବେ ନାହିଁ । ନୂଆ ଜ୍ଞାନର ଆଲୋକପାତହିଁ ପ୍ରକୃତରେ ସେମାନଙ୍କୁ ପ୍ରଭାବିତ କରିବ ।

ପ୍ରଶ୍ନ - ''ଆଜି ତ ଅଧିକାଂଶ ଛାତ୍ରଜାତୀୟ ସେବା ପ୍ରତି ସ୍ପୃହା ଦେଖାଉ ନାହାନ୍ତି । ତାଙ୍କ ଭିତରୁ ଅନେକେ ଫେସନଦୋରସ୍ତ ପାଶ୍ଚାତ୍ୟ ଚାଲିଚଳନ ମନେକରି କେତେଗୁଡାଏ କଥା ଅଭ୍ୟାସ କରୁଛନ୍ତି । ଆମେ ଏସବୁ ସମସ୍ୟା ହାତକୁ ନେବାକୁ ଚାହୁଁ ଓ ଯୁବକମାନଙ୍କ ଭିତରେ ଚରିତ୍ର, ଶୃଙ୍ଖଳା ଓ ଦକ୍ଷତା ଗଢିବାକୁ ଚାହୁଁ । ଆମେ ଏହା କିପରି କରିପାରିବା ବୋଲି ଆପଣ ମନେ କରୁଛନ୍ତି ?''

ଏଥିରେ ବର୍ତ୍ତମାନ ରୋଗର ଆଲୋଚନା କରାଯାଇଛି । ଗୋଟିଏ ଶାନ୍ତ ବାତାବରଣ ସୃଷ୍ଟି ହେଲେ, ଛାତ୍ରମାନେ ଆନ୍ଦୋଳନକାରୀ ନ ହୋଇ ଅଧ୍ୟୟନ ପ୍ରତି ମନ ଦେଲେ, ଏହା ଦୂର ହୋଇଯିବ । ଛାତ୍ରର ଜୀବନକୁ ସନ୍ନ୍ୟାସୀର ଜୀବନ ସହ ତୁଳନା କରାହୋଇଛି ଓ ତାହା ଠିକ୍ । ସେ ସରଳ ଜୀବନ ଓ ଉଚ୍ଚ ଚିନ୍ତାର ଜୀବନ୍ତ ପ୍ରତୀକ ହେବା ଚାହିଁ । ସେ ସଂଯମର ଅବତାର ହେବା ଚାହି । ତାର ଅଧ୍ୟୟନରୁହିଁ ତାର ଆମୋଦ ମିଳିବା ଚାହି । ଯେତେବେଳେ ଅଧ୍ୟୟନଟା ଛାତ୍ରର ଦେୟ ଗୋଟିଏ ଖଜଣା ଭଳି ହୋଇ ରହେ ନାହିଁ, ସେତେବେଳେ ସେଥିରୁ ପ୍ରକୃତ ଆନନ୍ଦ ମିଳେ । ଛାତ୍ର ପକ୍ଷରେ ଅଧିକରୁ ଅଧିକ ଜ୍ଞାନ ହାସଲକରି ଚାଲିଥିବା ଠାରୁ ବଳି ବଡ଼ ଆନନ୍ଦ ଆଉ କଣ ଅଛି ?

(୧୯୪୭ ସେପ୍ଟେମ୍ବର ସଂଖ୍ୟା ''ଗ୍ରାମସେବକ''ରୁ ଗୃହୀତ'')



# ସର୍ବେଷାଂ ଅବିରୋଧେନ

**ବିନୋବା**

(ଅଗଷ୍ଟ ପନ୍ଦର ସ୍ୱାଧୀନତା ଦିବସରେ ଖଦୀ ବିଦ୍ୟାଳୟ ସେବାଗ୍ରାମରେ ପ୍ରଦତ୍ତ ଭାଷଣ)

ଦୁଇ ବର୍ଷ ତଳେ ମହାଦେବ ଭାଇଙ୍କ ପୁଣ୍ୟତିଥି ଉପଲକ୍ଷରେ ମତେ ଏଠି କହିବାକୁ ସୁଯୋଗ ମିଳିଥିଲା । ସେ ଦିନ ଆମେ ଈଶାବାସ୍ୟ - ଉପନିଷଦ୍ ଗାଇଥିଲୁ । ସେହି ଅବସରରେ ଆମେ ପୁଣି ଏକାଠି ହେଉଛୁ । ଆଜି ଆମେ ସ୍ୱତନ୍ତ୍ରତା ପ୍ରାପ୍ତି ଉତ୍ସବ ପାଳନ କରୁଛୁ ! ସ୍ୱତନ୍ତ୍ରତା ପାଇଁ ବହୁଲୋକ ଆପଣା ଜୀବନ ବଳୀ ଦେଇଛନ୍ତି । ମହାଦେବ ଭାଇ ଜାଣି ସେ ସମସ୍ତଙ୍କର ପ୍ରତିନିଧିତ୍ୱ କରୁଛନ୍ତି । ଆଜିକାର ମଙ୍ଗଳ ଦିନରେ ଆମେ ସେସବୁ ପୁଣ୍ୟାତ୍ମାଙ୍କୁ ସ୍ମରଣ କରୁଛୁ ।

ସମସ୍ତଙ୍କ ମନରେ ଆଜି ଉତ୍ସାହ ଓ ଆନନ୍ଦ । ଗାଁଲୋକେ ଆପଣା ଗାଁସଫା କରିଛନ୍ତି । ପତାକା ଉଡ଼େଇଛନ୍ତି । ପଉନାର ଗାଁକୁ ମୁଁ ଯାଇପାରିଲି ନାହିଁ । ସେଉଠୁ ଲୋକେ ରାତି ଗୋଟାଏ ବେଳକୁ ଗାଁର କାର୍ଯ୍ୟକ୍ରମ ଶେଷକରି ମୋ ପାଖକୁ ପରଂଧାମକୁ ଆସିଲେ । ସେଠିବି ପତାକା ଉଡ଼େଇ ଗୀତ ଗାଇଲେ । ଲୋକେ ରାତିଯାକ ଉତ୍ସବ କଲେ । ଦରିଦ୍ର ଓ ଧନୀ ସମସ୍ତ ଏ ଉତ୍ସବରେ ଯୋଗ ଦେଇଥିଲେ ।

ଗରିବ ଲୋକେ ଆଜି ଆନନ୍ଦ କରିବା କି ଦରକାର ଥିଲା । ଆଜିଠୁଁ କ'ଣ ସେମାନଙ୍କୁ ଦି ପାଇଲି ଜାଗାରେ ଟଙ୍କାକୁ ଆଠ ପାଇଲି ଜୁଆର ମିଳିବ ? ଆମେ ତ ଜାଣୁ

ଯେ ସେମିତି କିଛି ହେଉ ନାହିଁ । ତାଙ୍କ ଦୁଃଖତ ସବୁଯାକ ଯେମିତି ଥିଲା ସେମିତି ଅଛି । ଫେର ସେମାନେ କାହିଁକି ଖୁସୀ ହେଉଉନ୍ତି ? ଏଇଥିପାଇଁ ଯେ, ଏବେ ତାଙ୍କର ଆଶ ଦୃଢ ହେଲାଣି । ସେ ବୁଝିଗଲେଣି ଯେ, ଆଜିଯାଏ ଆମେ ପରାଧୀନ ଥିଲୁ, ଲାଚାର ଥିଲୁ ଓ ସେଥିଯୋଗୁଁ ଦୁଃଖ ନିବାରଣ ବି ହୋଇପାରୁ ନ ଥିଲା ।

ଏବେ ସ୍ୱାଧୀନ ହେଇଗଲାରୁ ଆମ ଅବସ୍ଥା ସୁଧୁରିବ, ଏଇ ଆଶାରେ ସେ ଆଜି ଖୁସି ହେଉଛନ୍ତି ଓ ତାହାକୁ ଯଥାଶୀଘ୍ର ସମ୍ଭବ ପୂରଣ କରିବା ଦାୟିତ୍ୱ ଆମେ ମୁଣ୍ଡାଉଛୁ । କିନ୍ତୁ ଏଥିପାଇଁ ଆମକୁ ଅଧିକ ତ୍ୟାଗ କରିବାକୁ ହେବ । କବି କହିଛନ୍ତି- 'କ୍ଳେଶଃ ଫଳେନ ହି ପୁନର ନବତାଂ ବିଧତ୍ତେ ।' ଅର୍ଥାତ୍ ସତ୍ ଲୋକ ଯେତେବେଳେ ଦେଖନ୍ତି ଯେ ତାଙ୍କର ଗୋଟିଏ ତପସ୍ୟା ସଫଳ ହେଲା ସେମିତି ସେ ତୁରନ୍ତ ନୂଆ ତପସ୍ୟା ଆରମ୍ଭକରି ଦିଅନ୍ତି । ଆଜିଯାଏ ଆମେ ଯେଉଁ ତପସ୍ୟା କଲୁ ତାର ଫଳରେ ଆଜିକାର ଦିନ ଦେଖୁଛୁ, ଆମେ ସ୍ୱାଧୀନ ହେଇଗଲୁଣି । ଏବେ ଆମକୁ ସମୃଦ୍ଧ ହେବାକୁ ହେବ । ଗରିବଙ୍କର କଷ୍ଟ ନିବାରଣ କରିବାକୁ ହେବ । ସେଥିପାଇଁ ପୁଣି ବ୍ରତ - ବଦ୍ଧ ହେବାକୁ ହେବ । କିନ୍ତୁ ଆମେ ଯଦି ବୁଝିବା ନେ ଏବେ ତପଶ୍ଚର୍ଯ୍ୟା ଶେଷ ହେଲା ଆଉ ଆମର ମଉଜ ମଜଲିସ ବେଳ ଆସିଗଲା ତେବେ ଆଜିକାର ଦିନ ଆମର ପୁଣ୍ୟକ୍ଷୟର ଆରମ୍ଭ ଦିନ ହେବ । ପୁଣ୍ୟ ଦ୍ୱାରା ସ୍ୱର୍ଗ ମିଳେ । କିନ୍ତୁ ସୁଖୋପଭୋଗ ଦ୍ୱାରା ପୁଣ୍ୟ କ୍ଷୟହୋଇ ମଣିଷକୁ ପୁଣି ମୃତ୍ୟୁ ଲୋକକୁ ଯିବାକୁ ପଡ଼େ ।

ଲୋକେ କହୁଛନ୍ତି ଯେ, ଆମର ଆନନ୍ଦ ଦୁଃଖମିଶ୍ରିତ । ଆମକୁ ସ୍ୱାଧୀନତା ତ ମିଳିଲା କିନ୍ତୁ ଆମେ ଯେପରି ଚାହୁଁ ଥିଲୁ ସେପରି ମିଠା ନୁହେଁ । ମୁଁ ଏଥିପାଇଁ ଦୁଃଖିତ ହେବାକୁ ଚାହେଁ ନାହିଁ । କୁନ୍ତୀଙ୍କର କାହାଣୀ ପରା ଅଛି ? ଭଗବାନ କୃନ୍ତୀକୁ ପଚାରିଲେ "ତୋର କି ବର ଦରକାର ?" କୁନ୍ତୀ କହିଲେ- 'ଭଗବାନ ! ମତେ ସବୁବେଳେ ବିପଦଦିଅ, ଯେମିତି ଆପଣଙ୍କୁ ସବୁବେଳେ ସୁମରୁଥିବି ।' ମୁଁ ଜାଣେ ଯେ ସମସ୍ତ ଜନସାଧାରଣ କୁନ୍ତୀ ହୋଇପାରିବେ ନାହିଁ । ଜନସାଧାରଣ ତ ଈଶ୍ୱରଙ୍କୁ ଏୟା କହିବେ ଯେ ତୁ ଆମକୁ ସୁଖରେ ରଖ । କିନ୍ତୁ ଜନସାଧାରଣଙ୍କ ପକ୍ଷରୁ ମୁଁ ଈଶ୍ୱରଙ୍କଠୁଁ ଏତକ ତ ମାଗିନେବି ଯେ ତୁ ଆମକୁ ସୁଖରେ ରଖ କିନ୍ତୁ ସେ ସୁଖରେ ଦୁଃଖର ଟିକିଏ ଅଂଶ ତ ନିଶ୍ଚୟ ରଖ । ଆଜିକାର ଆମର ଏ ସୁଖ ଯେ ଦୁଃଖମିଶ୍ରିତ ଏଇଟା ସେ ଦୃଷ୍ଟିରୁ ତ ନିଶ୍ଚୟ ଭଲ । ଯା ଫଳରେ ଆମେ ସାବଧାନ ରହିବୁ । ଆମ ଦୋଷଗୁଡ଼ିକ ପ୍ରତି ଆମର ଖିଆଲ ରହିବ । ସେ ଦୋଷକୁ ଦୂରକଲେ ଆମେ ଆପଣା ଉନ୍ନତି କରିପାରିବା ।

ଭାରତ ବର୍ଷ ଭାଗ ଭାଗ ହେଲା ବୋଲି ଦୁଃଖିତ ହେବା ଦରକାର ନାହିଁ । ଯାହା ବାକୀ ରହିଲା ତାହା ବି କିଛି ସାନ ଦେଶଟିଏ ନୁହେଁ । ଯଦି ଆମ ଭିତରେ ଚାଷୀଭଳି ପୁରୁଷାର୍ଥ ଥିବ, ଯେ ଧୂଳିରୁ ଧାନ ଉପୁଜାଏ, ତେବେ ଏଡ଼େବଡ଼ ଦେଶକୁ ଆମେ ସୁଖୀ, ସମୃଦ୍ଧ ଓ ସମର୍ଥକରି ଗଢି ପାରିବା । ଆଉ ଆମେ ଆପଣା ଦୋଷ ଦୂର କରିପାରିଲେ ଖଣ୍ଡଗୁଡ଼ିକ ବି ଫେର ଯୋଡ଼ି ହେଇଯିବ । ଜଗତ୍ ଏକତା ଆଡ଼କୁ ଯାଉଛି, ତାର ଗତିକୁ କେହି ରୋକି ପାରିବେ ନାହିଁ ।

ଆଉ ଯେଉଁଠି ଆମେ ଏକତା କଥା ବିଚାରୁଛୁ ସେଠି ଆମର ଏକଥା ବି ବୁଝିବା ଚାହି ଯେ ସଂସ୍କୃତିଗତ ଏକତାର ଯେତେ ମହତ୍ୱ ଅଛି, ରାଜନୈତିକ ଏକତାର ସେତେ ନୁହେଁ । ଭାରତର ଇତିହାସରୁ ଆପଣ ଦେଖିବେ ଯେ, ଏଠି ଯେ ସବୁବେଳେ ଗୋଟିଏ ରାଜସତ୍ତା ଚାଲୁଥିଲା ତା ନୁହେଁ । ତଥାପି ଭାରତ ଯଦି ଏକ ଥିଲା ତ ତାହା ସଂସ୍କୃତି ଦୃଷ୍ଟିରୁ । ସେ ଏକତା ତ ଏବେ ବି ରହିପାରେ, ଯଦି ଆମେ ଚାହୁଁ । ଭାରତକୁ ଇଂରେଜମାନେ ଏକତା ଦେଲେ, ଏକଥା ମୁଁ ବିଶ୍ୱାସ କରେନାହିଁ । ଇଂରେଜଙ୍କ ଯୋଗୁଁ ଦେଶରେ ଗୋଟିଏ ଜୁଲୁମ ଚାଲିଲା ଓ ପ୍ରତିକାର ପାଇଁ ଜନସାଧାରଣ ଏକ ହେଇଗଲେ । ଏଥିପାଇଁ ଆମେ ଇଂରେଜଙ୍କୁ କିଛି ବାହାଦୂରୀ ଦେବାତ ସେ ଭିନେ କଥା ।

ସାଂସ୍କୃତିକ ଏକତାହିଁ ଆମର ବାସ୍ତବିକ ଏକତା ଓ ତାହା ବହୁ ପ୍ରାଚୀନ କାଳରୁ ଚଳିଆସୁଛି । ଆମର ଚାରି ଧାମ ତାହାର ସାକ୍ଷୀ । ବେଦରେ ଭାରତକୁ ଯୋଗୀ ସହିତ ତୁଳନା କରାଯାଇଛି ଓ ତାହାର ଶ୍ୱାସ-ନିଶ୍ୱାସ-ସୂଚକ ବର୍ଣ୍ଣନା କରାଯାଇଛି । କୁହାଯାଇଛି-ଏଠି ଦୁଇଆଡ଼ ପବନ ଆସେ ଓ ଯାଏ । ଗୋଟିଏ ସମୁଦ୍ର ଆଡ଼ୁ, ଗୋଟିଏ ପର୍ବତର ଗୁହା ଆଡ଼ୁ । 'ଦ୍ୱୌ ଇମୌବାତୌ ବାତ । ଆସିନ୍ଧୋଃ ଆ ପରାବତଃ ।'' ଆମର ଏକତା ଏପରି ଓ ସେଥିପାଇଁ ତାହା ଖଣ୍ଡିତ ହେଇ ନ ପାରେ । ସେଥିପାଇଁ ଆଜି ଭାରତ ରାଜନୈତିକ ଦୃଷ୍ଟିରୁ ବିଭକ୍ତ ହେଲେ ବି ଯଦି ଆମେ ଭାଇ ଭାଇ ଭଳି ରହୁ ତେବେ ମୁଁ ଦୁଃଖିତ ହେବିନାହିଁ ।

କେତେକ ଦେଶରେ ପ୍ରଥା ଅଛି ଯେ ପୁଅ ବାହା ହେଲେ ଅଲଗା ଘର କରି ରହିବାକୁ ପଡ଼େ । ଭାଇ ଭାଇ ବି ପ୍ରେମର ସହିତ ଭିନେ ହେଇଯାନ୍ତି । ମୁଁ ଜାଣେ ଯେ ଆଜି ଆମ ଦେଶରେ ସେ ବାୟୁମଣ୍ଡଳ ନାହିଁ । ଦ୍ୱେଷଭାବ ବ୍ୟାପିଥିବାର ଦେଖାଯାଉଛି, ତଥାପି ମୋର ଏଥିରେ ସନ୍ଦେହ ନାହିଁ ଯେ ଏହା କେବଳ ଉପରେ ଅଛି । ସମୁଦ୍ରରେ ତୋଫାନ ହୁଏ ଓ ତା ଉପରେ ଲହରୀର ସଂଘର୍ଷ ଚାଲେ; କିନ୍ତୁ ଭିତରେ ତ ସେହି ଏକ ଅଗାଧ ଜଳ ଭରିରହିଥାଏ । ତୋଫାନ ଶାନ୍ତ ହେଇଗଲେ ଲହରୀର ପ୍ରୀତି - ମିଳନ ଆରମ୍ଭ ହୁଏ । ଭାରତର ସେହି ଅବସ୍ଥା । ରାଷ୍ଟ୍ରବିପ୍ଳବ ବେଳେ କେତେ ଯୁଦ୍ଧ ଓ ହାଣକାଟ ହୁଏ । ଭାରତରେ ତ ସେହିସାବରେ ବିଶେଷ କିଛି ହେଇନାହିଁ ବୋଲି କହିବାକୁ ହେବ । ତଥାପି ଆମ ସ୍ୱାଧୀନତା ଯୁଦ୍ଧ କେବଳ ଶାନ୍ତିପୂର୍ଣ୍ଣ ଥିଲା । ସେ ଦୃଷ୍ଟିରୁ ଯାହା ହେଇଛି ତାହା ଲଜ୍ଜାଜନକ ନିଶ୍ଚୟ । କିନ୍ତୁ ଭାବୀ ଇତିହାସକାର ତ ଏକଥା ଦେଖି ଆଶ୍ଚର୍ଯ୍ୟ ହେବେ ଯେ ଏ ସବୁ ଏତେ ଅଳ୍ପରେ କେମିତି ହେଲା !

ଭାରତବର୍ଷକୁ ଭାଗ ଭାଗ ହେବାକୁ ଦେବାଯୋଗୁଁ କେତେକ ଲୋକ ଆମ ନେତାମାନଙ୍କୁ ଦୋଷ ଦେଉଛନ୍ତି । ହେଇପାରେ ଯେ ଏଥିରେ ସେମାନଙ୍କ କିଛି ଭୁଲ ହେଇଛି; କିନ୍ତୁ 'ଭୁଲ କରିବା ଅଧିକାର' ବି ସ୍ୱରାଜ୍ୟର ଗୋଟିଏ ବ୍ୟାଖ୍ୟା ପରା ? ଆଜିଯାଏ ଆମର କୌଣସି ଅଧିକାର ନ ଥିଲା କି ଆମ ଆଡ଼ୁ କୌଣସି ଭୁଲ ବି ହେଉ ନଥିଲା । ଭୁଲ ହେବ ହେବ ବୋଲି ଡ଼ରିଲେ କାମ ହେବନାହିଁ । ଯେ ଘୋଡ଼ାରେ ଚଢ଼ିବ ସେହି ତ ପଡ଼ିବ । ଯେ ନ ଚଢ଼ିବ ସେ ଆଉ ପଡ଼ିବ କେମିତି ? କିନ୍ତୁ ନେତାମାନଙ୍କ ଦୃଷ୍ଟିରୁ ଦେଖିଲେ ଦେଖିବା ଯେ ସେମାନେ ବୋଧହୁଏ ଭୁଲ କରି ନାହାନ୍ତି, ବୁଦ୍ଧିର କାମ କରିଛନ୍ତି । ଯେତେବେଳେ ଆମେ ପ୍ରଜାତନ୍ତ୍ର ନୀତି ମାନିନେଲୁ ସେତେବେଳେ ଆମେ ଜନସାଧାରଣଙ୍କର ଗୋଟିଏ ବଡ଼ ଅଂଶ ଉପରେ ଜବରଦସ୍ତି କରି ନ ପାରୁ । ଅଧିକାଂଶ ମୁସଲିମ ଜନସାଧାରଣ ଲିଗ୍ ପଛରେ ଥିଲେ; ସେଥିପାଇଁ ତାଙ୍କର ଦାବୀ, ତାର୍‌ ସୀମା ଭିତରେ, ସ୍ୱୀକାର କରିବା ଅନୁଚିତ ବୋଲି ଧରାଯିବ ନାହିଁ । ହିଂସା ପ୍ରଦର୍ଶନ ପରେ ତାହା ହେଲା । ଏହା ଦୁର୍ଭାଗ୍ୟର କଥା, କିନ୍ତୁ ଏବେ ଦୁଇ ବିଭାଗ ହୋଇଗଲା ପରେ ତ ହିଂସା ଆଉ କାମ ଦେବନାହିଁ, କାରଣ ଦୁଇଖଣ୍ଡ ଯାକରେ ହିନ୍ଦୁ ମୁସଲମାନ ଦୁହେଁ ରହିବେ ଓ ପରସ୍ପର ସହଯୋଗ ଦ୍ୱାରାହିଁ ଆଗେଇ ପାରିବେ ।

ଏବେ ଆମ ଭଳି ସେବକ, ଯେଉଁମାନେ ଅହିଂସା ଉପରେ ଭରସା ରଖିଛନ୍ତି ସେମାନଙ୍କର କର୍ତ୍ତବ୍ୟ କଣ ? ଆଜିଯାଏ ତ ଆମେ କ୍ଷମତା ବିରୋଧରେ କାମ କରିଆସିଲୁ, କାରଣ ତାହା ବିଦେଶୀଶାସନ ଥିଲା, ଅତ୍ୟାଚାରୀ ଥିଲା । କିନ୍ତୁ ଏବେ ତ ଜନସାଧାରଙ୍କ ହାତକୁ କ୍ଷମତା ଆସିଛି ଓ ସେ କ୍ଷମତାଦ୍ୱାରା ବହୁତ ସେବା କରାଯିବ । ତେବେ କ'ଣ ଆମେ ବି ସେବା ପାଇଁ କ୍ଷମତାର ଆଶ୍ରୟ ନେବା ? ମୁଁ ତ କହିବି- 'ନାହିଁ' । ଯଦି ଆମେ ଅହିଂସାର ବିକାଶ କରିବାକୁ ଚାହୁଁ ଓ ତାର ପୂର୍ଣ୍ଣ ଶକ୍ତି ପ୍ରକଟକରିବାକୁ ଚାହୁଁ ତେବେ ଆମର କ୍ଷମତାର ଆଶ୍ରୟ ଲୋଡାନାହିଁ । ପ୍ରେମର ଆଶ୍ରୟ ଆମପାଇଁ ଯଥେଷ୍ଟ । ଆଜିକାର ଅବସ୍ଥାରେ କ୍ଷମତାଦ୍ୱାରା ଅହିଂସାର ପୂର୍ଣ୍ଣ ପ୍ରଭାବ ପ୍ରକଟ ହେଇପାରିବ ନାହିଁ, କିନ୍ତୁ

ଯେଉଁମାନେ କ୍ଷମତା ଅଧିକାର କରିଛନ୍ତି ଓ କ୍ଷମତା ଦ୍ୱାରା ଜନସେବା କରିବାକୁ ଚାହାନ୍ତି ତାଙ୍କର ସେ କାର୍ଯ୍ୟ ସମ୍ବନ୍ଧରେ ଆମର ମନୋଭାବ କଣ ହେବ, ତାହା ଆମେ ବିଚାରିବା ଚାହି । ଆମଭିତରୁ କେତେକ କହୁଛନ୍ତି 'ଅହିଂସାପାଇଁ ଏବେ ସ୍ଥାନ ହିଁ କାହିଁ ? ଏଣିକି ତ ସାମରିକ ଶିକ୍ଷା ଚଳିବ ।' ମୋ ଦୃଷ୍ଟିରୁ, ଏପରି ବିଚାରିବା ଭୁଲ । ସାମରିକ ଶିକ୍ଷା ଦିଆଯିବା ସମ୍ଭବ, କିନ୍ତୁ କଣ ଆମ ସରକାର ହିଂସାପରାୟଣ ହେଇଯିବ ? ମୁଁ ତ ଏକଥା ବିଚାରେ ନାହିଁ । ଆଉ, ଏବେ ଯଦି ଅହିଂସା ପାଇଁ ସ୍ଥାନ ନାହିଁ ତ କଣ ଯା ପୂର୍ବରୁ, ଅର୍ଥାତ୍ ଇଂରେଜ ସାମ୍ରାଜ୍ୟ ଅମଳରେ ଅହିଂସା ପାଇଁ ସ୍ଥାନ ଥିଲା ? ବସ୍ତୁସ୍ଥିତି ତ ହେଉଛି ଯେ, ଆମର ସରକାର ଅହିଂସା ବଳରେ ସ୍ଥାପିତ ହେଇଛି ଓ ପଣ୍ଡିତ ଜହରଲାଲଙ୍କ ଭଳି ଆମର ନେତା ହୃଦୟରେ ଓ ବୁଦ୍ଧିରେ ଅହିଂସା ହିଁ ଅଟନ୍ତି । ଏହାର ପରୀକ୍ଷା, ସେମାନେ ଆନ୍ତର୍ଜାତିକ କ୍ଷେତ୍ରରେ କିଭଳି କାମ କରିବେ ଓ କରୁଛନ୍ତି, ସେଇଥିରୁ ହେବ । ଦୁନିଆର ନିରସ୍ତ୍ରୀକରଣ ସପକ୍ଷରେ ଆମ ସରକାର ପୂରା ଜୋର ଦେବେ । ହିଂସାପରାୟଣ ରାଷ୍ଟ୍ରନିରସ୍ତ୍ରୀକରଣ କଥା ବିଚାରନ୍ତି ନାହିଁ । କିନ୍ତୁ ଭାରତର ଯେ ସେପରି ଆଗ୍ରହ ରହିବ ସେ ବିଷୟରେ କାହାରି କୌଣସି ସନ୍ଦେହ ରହି ନପାରେ । ଅନ୍ୟ ଦେଶ ଉପରେ ଆକ୍ରମଣ କରିବାକଥା ସେ କଳ୍ପନା ହିଁ କରିନପାରେ । ଭାରତ ଇତିହାସରେ, ସେ କେବେ ଅନ୍ୟଦେଶ ଉପରେ ଆକ୍ରକଣ କରିଥିବାର ଉଦାହରଣ ମିଳେନାହିଁ । ଏହା କିଛି ଆକସ୍ମିକ କଥା ନୁହେଁ, ଏହା ଭାରତୀୟ ସଂସ୍କୃତିର ଲକ୍ଷଣ ।

**ସଂସ୍କୃତି**

ଅନ୍ୟଦେଶ ସହିତ ଆପଣା ସଂସ୍କୃତି ଓ ସମ୍ପତ୍ତିର ଆଦାନ ପ୍ରଦାନ ଭାରତ କରିଛି, କିନ୍ତୁ କ୍ଷମତା ତ ଦୂରର କଥା, ଆପଣା ସଂସ୍କୃତି ମଧ ଅନ୍ୟ ଉପରେ ଜବରଦସ୍ତି ଲଦିବା ଚେଷ୍ଟା ସେ କେବେ କରିନାହାଁନ୍ତି । ସେହି ଉତ୍ତରାଧିକାର ଆମକୁ ଓ ଆମ ନେତାମାନଙ୍କୁ ମିଳିଛି । ଏଥିପାଇଁ ଅନ୍ୟ ଦେଶକୁ ଦଖଲ କରିବାର କୌଣସି ବାସନା ଆମର ବା ଆମ ନେତାମାନଙ୍କର ହେବ ନାହିଁ । ଅବଶ୍ୟ ଅନ୍ୟ ଉପରେ ଆକ୍ରମଣ ହେଲେ ତା ବିରୁଦ୍ଧରେ ଆମର ପ୍ରତିବାଦ ପ୍ରବଳ ହେବ, ଯେପରି ଇଣ୍ଡୋନେସିଆ ବ୍ୟାପାରରେ ଆମେ ଏବେ ଦେଖିଲୁ । ଭାରତ ଇଣ୍ଡୋନେସିଆ ପକ୍ଷ ସମର୍ଥନ କଲା ଓ ତାର ଫଳ ଧ ହେଲା । ସେ ପରିଣାମ କେବଳ ଭାରତ ନୈତିକ ବଳଯୋଗୁଁହେଲା । ଅନ୍ୟ ଶକ୍ତି ତ ଭାରତର କିଛି ନାହିଁ । ଭବିଷ୍ୟତରେ ମଧ ଏହି ନୈତିକ ବଳକୁ ଆଶ୍ରୟ କରି ଭାରତର କାମ ଚଳିବ । ତେଣୁ, ଆମ ସରକାର ଅହିଂସା ପ୍ରତି ବିମୁଖ ବା ଭବିଷ୍ୟତରେ ବିମୁଖ ହେବେ ଏ କଥା ଭାବିବା ଠିକ୍ ନୁହେଁ ।

**ସେନାବ୍ୟବହାର**

ହଁ, ଆଭ୍ୟନ୍ତରୀଣ ଅଶାନ୍ତି ବନ୍ଦ କରିବାପାଇଁ ବେଳ ପଡ଼ିଲେ ସେ ସୈନ୍ୟ ଫୌଜ ଆବଶ୍ୟ ବ୍ୟବହାର କରିପାରେ । ବର୍ତ୍ତମାନ ପରିସ୍ଥିତିରେ ସେଥିପାଇଁ ତାକୁ ଦୋଷ ଦେଇ ହେବ ନାହିଁ । ଆମକୁ ଦଣ୍ଡନୀତି ଓ ହିଂସା ଭିତରେ ପାର୍ଥକ୍ୟ କରିବାକୁ ପଡ଼ିବ । ପ୍ରଜାତନ୍ତ୍ର ଉପରେ ପ୍ରତିଷ୍ଠିତ ସରକାର ଯଦି ଗୁଣ୍ଡାମାନଙ୍କୁ ଦମନ କରିବାପାଇଁ ବାଧ ହୋଇ ଦଣ୍ଡ କ୍ଷମତା ପ୍ରୟୋଗ କରନ୍ତି ତେବେ ତାକୁ ମୁଁ ଅହିଂସା ବିରୋଧୀ କହିବି ନାହିଁ । ଆମ ଭଳି ଶାସନ କ୍ଷମତାରୁ ଅଲଗା ରହୁଥିବା ଅହିଂସାପରାୟଣ ଜନସେବକଙ୍କର କାମ ହେଉଛି ଯେ ସେମାନେ ଅହିଂସାର ଚମତ୍କାରିତା ଦେଖେଇବେ । ନିଜେ ଜୀବନ ଦେବେ ଓ ଆଭ୍ୟନ୍ତରୀଣ ନିରାପତ୍ତା ପ୍ରତିଷ୍ଠିତ କରିବେ, ଯେପରିକି ସରକାରକୁ ଆଉ ଦଣ୍ଡନୀତିର ଆଶ୍ରୟ ନେବାକୁ ନ ପଡ଼ିବ । ସାରକଥା ହେଉଛି ଯେ ଏ ବିଷୟରେ ଆମକୁ ସରକାରର ପରିପୂରକ ହେବାକୁ ହେବ । ସରକାର ଯାହା କରି ନ ପାରିବ ତାହା କରିବାପାଇଁ ଆମେ ଚେଷ୍ଟାକରିବା ଚାହି ଓ ଆମର ସରକାର ଅହିଂସେଚ୍ଛୁ ବୋଲି ନିଶ୍ଚିତ ବୁଝିବା ଚାହି ।

**ଖଦୀ**

ଖଦଡ଼ ସମ୍ବନ୍ଧରେ ମଧ ମୁଁ ଏହି ଭଳି ବିଚାରେ । ନୂଆ ମିଲ୍ ଖୋଲିବାର ସରକାରୀ ନୀତିକୁ ମୁଁ ତିଳେ

ହେଲେ ବୁଝିପାରି ନାହିଁ । ମୋର ବିଶ୍ୱାସ ଯେ ଖଦୀ ଦ୍ୱାରା ଆମର ବସ୍ତ୍ର ସମସ୍ୟା ବହୁତ ଶୀଘ୍ର ସମାଧାନ ହୋଇଯିବ, କିନ୍ତୁ ସେ କଥା ଏପର୍ଯ୍ୟନ୍ତ ଆମ ନେତାମାନଙ୍କ ମନକୁ ପାଉ ନାହିଁ । ଏହା ଦୁଃଖର କଥା । କିନ୍ତୁ ତଥାପି ସେମାନେ ଖଦଡ ଶତ୍ରୁ ବୋଲି ମୁଁ ମନେକରେ ନାହିଁ । ସେମାନେ ନିଜେ ଖଦଡ଼ ପିନ୍ଧନ୍ତି, ଖଦଡ଼ ପ୍ରତି ସେମାନେ ପ୍ରୀତି ଦେଖେଇଛନ୍ତି, କିନ୍ତୁ ଖଦଡ଼ ତୁରନ୍ତ ଦେଶବ୍ୟାପୀ ହେବା କଥା ତାଙ୍କ ମୁଣ୍ଡରେ ନ ପଶୁଛି ତ ସେଥିପାଇଁ ମୁଁ ତାଙ୍କୁ ଦୋଷ ଦେଉନାହିଁ । ଦୋଷ ତ ମୋର ନିଜର ବୋଲି ମୁଁ କହିବି । ଅର୍ଥାତ୍ ମୋ ଭଳି କର୍ମୀଙ୍କର , ଯେଉଁମାନେ ଖଦଡ଼ର ଗବେଷଣା କରୁଛନ୍ତି । ଏହାର ଅର୍ଥ ହେଉଛି ଏତିକି ଯେ ଆମେ ଏ ପର୍ଯ୍ୟନ୍ତ ଖଦଡ଼ର ଦାବି ପ୍ରମାଣ କରିପାରି ନାହୁଁ ଏପର୍ଯ୍ୟନ୍ତ ଦାବୀ ସାବ୍ୟସ୍ତ ନ କରି ପାରିଛୁ ତ ସେଥିପାଇଁ ଅଧିକ ପ୍ରୟୋଗ କରିବା ଚାହି । ସୁ ଧାର କରିବା ଚାହି । ତାତ ଆମେ କରିବା । କିନ୍ତୁ ଆତ୍ମବିଶ୍ୱାସ ଅଭାବରୁ ଆମ ନେତାମାନେ ମିଲ ଖୋଲିବାକୁ ଯାଉଛନ୍ତି ବୋଲି ମୁଁ ତାଙ୍କୁ ଏକଦମ ଶତ୍ରୁ ମଣିବି ନାହିଁ । ସେମାନଙ୍କର ନୀତି କଣ ହେଉଛି ମୁଁ ଦେଖିବି । କଣ ସେମାନେ ମିଲଗୁଡ଼ିକୁ ଦେଶର ସମ୍ପତ୍ତି କରିବାକୁ ଚାହାନ୍ତି ? ଯଦି ଚାହାନ୍ତି, ତେବେ ସେମାନଙ୍କୁ ମୁଁ ମୋ ମିତ୍ର ମଣିବି, ଯଦି ଓ ସେମାନଙ୍କର ପ୍ରୟୋଗ ଆମ ଠାରୁ ଭିନ୍ନ । ଖଦଡ ତ ଆଉ କେବଳ ସୂତା ଖିଅ ନୁହେଁ । ଖଦଡ଼ ଗୋଟିଏ ଚିନ୍ତାଧାରା । ଖଦଡ଼ ଅର୍ଥ ଗରିବଙ୍କର ଅଶୋଷଣ । ଅଶୋଷଣ ଦୃଷ୍ଟିରୁ ଯଦି କେହି ଭିନ୍ନ ଧରଣର ପ୍ରୟୋଗ କରୁଥାଏ ତେବେ ମୁଁ ତାକୁ ଆପଣା ଶତ୍ରୁ ବୋଲି କାହିଁକି ମନେକରିବି ? ଯଦିଓ ମୁଁ ଏ କଥା ଜାଣେ ଯେ, ଖଦଡ଼ ବିନା ଭାରତ ବର୍ଷ ଭଳି ଗ୍ରାମବହୁଳ ଦେଶରେ ଗରିବଙ୍କ ଅଶୋଷଣ ସିଦ୍ଧ ହୋଇପାରିବ ନାହିଁ । ଆଉ ଚାଷୀରାଜ ତ କଦାପି ଏ ବାଟରେ ହେବ ନାହିଁ । ତଥାପି ମୁଁ ଧୈର୍ଯ୍ୟଧରିବା ଚାହି ଓ ନିଷ୍ଠାପୂର୍ବକ ଆପଣା କର୍ତ୍ତବ୍ୟ ନିତ୍ୟ ନୂତନ ସ୍ଫୂର୍ତ୍ତିର ସହିତ କରିଯିବା ଚାହି ।

**ରାଷ୍ଟ୍ରଭାଷା**

ସେହିପରି ରାଷ୍ଟ୍ରଭାଷା ପ୍ରଶ୍ନ । ଜଣେ ମତେ କହିଲେ 'ଏବେ ତ ହିନ୍ଦୁସ୍ଥାନୀ ଗଲା । ଉର୍ଦ୍ଦୁଲିପି ମଧ ଗଲା ।' ମୁଁ ପଚାରିଲି - 'କାହିଁକି' ? ଜବାବ ମିଳିଲା- 'ବିଧାନ ପରିଷଦ ବୋଧହୁଏ ହିନ୍ଦିକୁ ରାଷ୍ଟ୍ରଭାଷା ଓ ଦେବ ନାଗରୀକୁ ରାଷ୍ଟ୍ରଲିପି ରୁପେ ଗ୍ରହଣ କରିବ ।'' ଧରିନିଅ ଏ କଥା ହେଲା, ତ କଣ ହେଲା ? ତା ଫଳରେ ହିନ୍ଦୁସ୍ଥାନୀ କେମିତି ଯିବ ? ଗୋଟିଏ କଥା ଆମକୁ ସାଫ ବୁଝିବାକୁ ହେବ ଯେ ଯଦି ବିଧାନ ପରିଷଦ ହିନ୍ଦୀ ଓ ନାଗରୀକୁ ଗ୍ରହଣ କରିବ, ତେବେ ନାଗରୀକୁ ରାଷ୍ଟ୍ରଲିପି ରୂପେ ଗ୍ରହଣ କରିବ ।'' ତେବେ ତାହା ମୁସଲମାନଙ୍କ ପ୍ରତି ଦ୍ୱେଷ ଯୋଗୁଁ ନୁହେଁ । ମୁଁ ଏପରି ଅନେକ ବନ୍ଧୁଙ୍କୁ ଜାଣେ, ଯାହାଙ୍କ ମନରେ ମୁସଲମାନଙ୍କ ପ୍ରତି ଦ୍ୱେଷ ନାହିଁ ଓ ଯେଉଁମାନେ ହିନ୍ଦୁ ମୁସଲମାନ ଏକତା ଆମେ ଯେତିକି ଚାହୁଁ ସେତିକି ଚାହାନ୍ତି । ତଥାପି ଉର୍ଦ୍ଦୁଲିପି କଥାଟି ତାଙ୍କ ମନକୁ ପାଏ ନାହିଁ । ତାଙ୍କ ପ୍ରତି ମୁସଲମାନ ଦ୍ୱେଷ ଆରୋପ କରିବା ଭୁଲ ହେବ । ତାଙ୍କ ବିଚାର ଧାରା ପଛରେଗୋଟିଏ ଦୃଷ୍ଟିକୋଣ ଅଛି । ମୁଁ ସେ ଦୃଷ୍ଟିକୋଣକୁ ବୁଝିପାରେ । ଆମ ଭଳି ସଂସ୍କୃତି ସମନ୍ୱୟ ଦୃଷ୍ଟିରୁ ଉଦ୍ୟମ କରୁଥିବା କେହି ଲୋକ ଯଦି ଉଭୟ ଲିପି ପ୍ରଚାର କରିବାକୁ ଚାହେଁ ତେବେ ତାକୁ ବାଧା ଦେବାକୁ କେହି ନାହିଁ । ମୁଁ ତ ଦୁଇଟି ଲିପିରେ ବି ସନ୍ତୁଷ୍ଟ ନୁହେଁ । ମୋର ମତ ଯେ ଯଦି ଆମେ ଦକ୍ଷିଣ ଓ ଉତ୍ତରର ଏକତା କାୟମ ରଖିବାକୁ ଚାହୁଁ ତେବେ ଦକ୍ଷିଣର ଗୋଟିଏ ଦି'ଟା ଲିପି ଉତ୍ତରବାଲାଙ୍କର ଶିଖିବା ଚାହି । ଦ୍ରାବିଡ଼ିସ୍ଥାନ ଦୁଆତ ଆଜିଠୁଁ ଉଠିଲାଣି । ତାକୁ ଯଦି ଆମେ ବଢି ବାକୁ ନ ଦେବାକୁ ଚାହୁଁ ତେବେ ଆମକୁ ଏତକ ଉଦ୍ୟମ ତ କରିବାକୁ ହେବ । ଦକ୍ଷିଣର ଭାଷା ବି ଆମକୁ ଶିଖିବାକୁ ହେବ । ଆମ ଦ୍ୱାରା ଯଦି ଏତକ ନ ହେବ ତେବେ ଦକ୍ଷିଣବାଲା ହିନ୍ଦି କାହିଁକି ଶିଖିବେ ? ତାଙ୍କ ଭାଷା ଆମ ପକ୍ଷରେ କଠିନ, ତ କଣ ଆମ ଭାଷା ତାଙ୍କ ପକ୍ଷରେ ସହଜ, ସେମାନେ ତ 'ପଥର' କାହିଁକି ପୁଂଲିଙ୍ଗ ଓ 'ଇଟା' କାହିଁକି ସ୍ତ୍ରୀ ଲିଙ୍ଗ ହେବ (ହିନ୍ଦିରେ) ତାହା

କୌଣସିମତେ ବୁଝିପାରନ୍ତି ନାହିଁ । ତଥାପି ସେମାନେ ରାଷ୍ଟ୍ରଭାଷା ବେଶ ଭଲରୂପେ ଅଭ୍ୟାସ କରୁଛନ୍ତି । ଆମେ ପୁଣି କାହିଁକି ତାଙ୍କ ଭାଷା ନ ଶିଖିବା ? ଆମେ ବୃଥା ଭେଦ ବଢେଇବା ନାହିଁ । କାହାରି ସମ୍ବନ୍ଧରେ ଭୁଲ ଧାରଣା ପୋଷଣ କରିବା ନାହିଁ । ଯେଉଁଠି ମୁଣ୍ଡ ଉପରୁ ଇଂରାଜୀର ବୋଝ ଉତୁରି ଯାଉଛି, ସେଠି ପରସ୍ପରର ଭାଷା ଓ ଅନେକ ଭାଷା ଶିଖିବା ପାଇଁ ଅଧିକ ଉତ୍ସାହ, ସମୟ ଓ ସୁବିଧା ମିଳିବ । ଇଂରାଜି ଭାଷାର ବୋଝ ଯୋଗୁଁ ଆମେ ଅନ୍ୟ ଭାଷା ଶିଖିହିଁ ପାରୁ ନ ଥିଲେ, କିନ୍ତୁ ଏଥର ଆମେ ପଡୋଶୀମାନଙ୍କ ଭାଷା ଉତ୍ସାହର ସହିତ ଶିଖିବା । ଆଜିଯାଏ ଆମେ ଯାହା ଶିଖିଥିଲୁ, ଇଂରେଜୀ ଜରିଆରେ ଶିଖିଥିଲୁ । ଇଂରାଜି ଦ୍ୱାରା ହିଁ ଆମକୁ ସେ ସୁବିଧା ମିଳୁଥିଲା । ତାମିଲ, କନ୍ନଡ ଆଦି ଭାଷା ଅଧ୍ୟୟନ କରିବା ପାଇଁ ମତେ ଇଂରାଜି ଭାଷାରେହିଁ ଆଶ୍ରୟ ନେବାକୁ ପଡିଲା । କିନ୍ତୁ ଏବେ ସେ ଅବସ୍ଥା ରହିବ ନାହିଁ । ଆମ ଭାଷାରେ ବି ଅନ୍ୟାନ୍ୟ ଭାଷା ଶିଖିବାପାଇଁ ଅଭିଧାନ, ବ୍ୟାକରଣ ଆଦି ତିଆରି ହୋଇଯିବ । ପ୍ରକୃତରେ ଆଜିଯାଏ ଇଂରେଜୀ ଯେଉଁଠି ଆମକୁ ଗୋଟାଏ ଆଡେ ସୁବିଧା ଦେଉଥିଲା, ଅନ୍ୟଆଡେ ପୁରୁଷାର୍ଥହୀନ କରି ଦେଉଥିଲା । ଚୀନ ଦେଶ ବିଷୟରେ ଜାଣିବାକୁ ହେଲେ ଚୀନ୍‌ଦେଶଯାଏ କାହାରି ଯିବା ଦରକାର ନାହିଁ ! ଚୀନ୍ ସମ୍ବନ୍ଧରେ ଜଣେ ଦି'ଜଣ ଇଂରେଜଙ୍କର ଇଂରାଜୀ ବହି ପଢିଦେଲେ ଆମର ଚୀନ୍ ଦେଶର ଜ୍ଞାନ ହୋଇଗଲା ! ଏ ପରାଧୀନତା ଏବେ ରହିବ ନାହିଁ । ଏବେ ଆମେ ଆପଣା ଆଖିରେ ଦେଖି ଦୁନିଆର ଜ୍ଞାନ ହାସଲ କରିବା, ଦୁନିଆର ଭାଷାସବୁ ଶିଖିବା । ଏହିଯୋଗୁ ହିନ୍ଦୀ ନାଗରୀ ପ୍ରସ୍ତାବ ଦ୍ୱାରା ଆମର କିଛି ବିଗିଡିଯିବ ନାହିଁ । ଆମ ପାଇଁ ସବୁ ଦିଗ ଖୋଲା ।

ଅହିଂସା, ଖଦୀ ଓ ରାଷ୍ଟ୍ର ଭାଷାର ଉଲ୍ଲେଖ ତ ମୁଁ ଦୃଷ୍ଟାନ୍ତ ସ୍ୱରୂପ କଲି । ମୋ ଦୃଷ୍ଟି କୋଣ ଆପଣ ଏଥିରୁ ବୁଝିନେବେ । ଆମର କାମ ତ ସରକାର ବାହାରେ । ତା ଠୁଁ ବି ଅଧିକ ବ୍ୟାପକ । ତାର ନିର୍ଣ୍ଣୟ ଦ୍ୱାରା ଆମର କିଛି ବାଧା ଆସିବ ନାହିଁ । ମୁଁ ତ ବିଚାରେ ଯେ ତାଙ୍କ ନିର୍ଣ୍ଣୟ ସତ୍ତ୍ୱେ ସେମାନେ ଆମ କାମକୁହିଁ ଆଗେଇ ନେବେ ।

କିନ୍ତୁ ଗୋଟାଏ ବିପଦ ଅବଶ୍ୟ ଦେଖାଯାଉଛି ଓ ତାର ବିରୋଧ ଆମେ ସଭିଏଁ ମିଳି କରିବା ଚାହିଁ । ତାହା ହେଉଛି ଯେ ଆଜି ଲୋକ ଙ୍କ ଭିତରେ ହିଂସାର ହାୱା ଖେଳିଗଲାଣି । ତାହା ଏ ବିଶ୍ୱଯୁଦ୍ଧର ପରିଣାମ ବୋଲି ମୋର ବିଶ୍ୱାସ । ଯାହାର ପରିଣାମ ହେଉପଛେ: ଭୋଗିବାକୁ ତ ଆମକୁ ପଡୁଛି । ଭାରତ ଭଳି ବିଶାଳ ଓ ମିଶ୍ରିତ ଦେଶ ପକ୍ଷରେ ହିଂସାର ମନୋଭାବ ଅତ୍ୟନ୍ତ ହାନୀକର ହେବ । ଆମ ଦେଶରେ ଦଳାଦଳି ରହିବ । ଆମେ ବିଶାଳ ରାଷ୍ଟ୍ରର କଳ୍ପନା କରୁଛୁ ତ ସେଥିରେ ମତ ଭେଦ ନିଶ୍ଚୟ ରହିବ, କିନ୍ତୁ ଆପଣା ଆପଣା ବିଚାର ଓ ଲକ୍ଷ୍ୟକୁ ସାଧନ କରିବା ପାଇଁ ଯଦି ହିଂସାତ୍ମକ ଉପାୟ ମାନ୍ୟ ହୁଏ, ତେବେ ଆମଦେଶ ତିଷ୍ଠି ପାରିବ ନାହିଁ । ହିଂସାରେ ଆସ୍ଥା ରଖିଲେ ତ ଆମେ ସ୍ୱାଧୀନତା ବି ହରେଇ ବସିବା । ସେଥିପାଇଁ ଏ ସମ୍ବନ୍ଧରେ ଆମକୁ ଲୋକମତ ଜାଗ୍ରତ କରି ବାକୁ ହେବ । ଯଦି ଆମେ ଲୋକଙ୍କୁ ଠିକ ବାଟ ଦେଖେଇ ପାରିବା; ତେବେ ଆଜି ଯେ ହିଂସାର ପ୍ରାବଲ୍ୟ ଦେଖାଯାଇଛି ତାହା ଶୀଘ୍ର ଥଣ୍ଡା ପଡିଯିବ, କାରଣ ଆମ ଲୋକଙ୍କର ହୃଦୟ ସେଥିପ୍ରତି ଅନୁକୂଳ ନୁହେଁ ।

**(୧୯୪୭ ସେପ୍ଟେମ୍ବର ଓ ଅକ୍ଟୋବର**
**❑ "ଗ୍ରାମସେବକ" ରୁ ଗୃହୀତ)**

ହିନ୍ଦୁ ଧର୍ମ ଏକ - ଦେଶ ଦର୍ଶୀ ନୁହେଁ । ପୃଥିବୀର ସବୁ ଧର୍ମର ମହାତ୍ମା ମାନଙ୍କର ପୂଜାପାଇଁ ଏଥିରେ ସ୍ଥାନ ଅଛି, ନିଜର ବିଶ୍ୱାସ ବା ଧର୍ମ ଅନୁସାରେ ଭଗବତ - ଉପାସନା କରିବାକୁ ହିନ୍ଦୁ ଧର୍ମ ସମସ୍ତଙ୍କୁ କହେ ଏବଂ ସବୁ ଧର୍ମ ସହିତ ଶାନ୍ତିରେ ସହାବସ୍ଥାନ କରେ ।

# ଗୋହତ୍ୟା

ଶ୍ରୀ କୁମାରାପ୍ପା

ଆଜିକାଲି କଂମେଇ ହାତରୁ ଗୋରୁକୁ ରକ୍ଷା କରିବା କଥା ଖୁବ୍ ଉଠୁଛି । ବେପରୁଆ ଗୋହତ୍ୟା ଫଳରେ ଆମ ଦେଶର ଯେ କି ଘୋର କ୍ଷତି ହେଉଛି ସେଥିପ୍ରତି ଲୋକଙ୍କର ଦୃଷ୍ଟି ପଡୁଛି, ଏଇଟା ଗୋଟାଏ ଭଲ ଲକ୍ଷଣ । ବିଶୁଦ୍ଧ ଅଦୂରଦର୍ଶୀ ଦୃଷ୍ଟିରୁ ମଧ, ନିରାମିଷାଶୀ ଦେଶରେ ଦୁଧର ଆବଶ୍ୟକତା ମହତ୍ତ୍ୱପୂର୍ଣ୍ଣ ହୋଇଥିବା ସ୍ଥଳେ, ଦେଶର ଅନ୍ନଦାତା ରୂପେ ଗାଈକୁ ପ୍ରଥମ ସ୍ଥାନ ମିଳିବା କଥା । ତା' ଛଡା ସେ ଆମକୁ ବଳଦ ଦେଉଛି, ଯାହା ବଳରେ ଚାଷୀ ଜମିରୁ ଫସଲ ଆମଦାନୀ କରୁଛି । ଗାଈକୁ ଦେବତାର ଆସନ ଦେବାରେ ଓ ଗୋହତ୍ୟାକୁ ଧାର୍ମିକ ଗୁରୁତ୍ୱ ଦେବାରେ ସମସ୍ୟାର ଏ ଦିଗଟାର ଗୁରୁତ୍ୱ ପୂର୍ଣ୍ଣମାତ୍ରାରେ ଉପଲବ୍ଧ କରାଯାଇଛି । କିନ୍ତୁ ଧର୍ମାନ୍ଧତା ଯୋଗୁଁ, ଗୋଟାଏ ପକ୍ଷରେ ଆଗ୍ରହାତିଶଯ୍ୟ ଫଳରେ ଅପର ପକ୍ଷରେ ଏକ ଅବୁଝାପଣିଆ ସୃଷ୍ଟି ହେଇଛି ଓ ଫଳରେ ଗୋହତ୍ୟା ସଂକ୍ରାନ୍ତରେ ଜନସାଧାରଣଙ୍କର ବିଭିନ୍ନ ଅଂଶ ଭିତରେ ବିବାଦ ଉପୁଜୁଥିବାର ଆମେ ଦେଖୁଛୁ । ତେଣୁ, ବର୍ତ୍ତମାନ ଭାରତରେ ଗାଈର ସ୍ଥାନ କଣ ତାହା ଠିକ୍ ଠିକ୍ ନିର୍ଣ୍ଣୟ କରିବା ଓ ସମସ୍ୟାଟାକୁ ଯୌକ୍ତିକତା ଦୃଷ୍ଟିରୁ ଉପସ୍ଥାପିତ କରିବା ଆବଶ୍ୟକ ହେଲାଣି

କାରିଗର ଯେଉଁ ହାତହତିଆର ବ୍ୟବହାର କରେ ତାହା ତା ପକ୍ଷରେ ପ୍ରାୟ ପୂଜନୀୟ ହୋଇପଡେ । ପ୍ରକୃତରେ, ଭାରତବର୍ଷରେ ଶସ୍ତ୍ରପୂଜା ବୋଲି ଏଥିପାଇଁ ଗୋଟାଏ ଖାସ ପର୍ବ ଅଛି । ଉତ୍ପାଦନର ସାଧନ ଉପରେ ଆପଣାର ନିର୍ଭରଶୀଳତା ମଣିଷ ସ୍ୱୀକାର କରେ । କାରିଗର ଯେମିତି ତାର ହତିଆର ଉପରେ ନିର୍ଭର କରେ, ସେମିତି ଚାଷୀ ଗାଈ ଉପରେ ନିର୍ଭର କରେ, ଓ ଆମେ ଯଦି ଅର୍ଥନୈତିକ କ୍ଷେତ୍ରର ପରିଧି ବଢେଇ ଦେଉ ତେବେ ଆମେ କହିପାରୁ ଯେ ଗାଈ ଖାଦ୍ୟ ଉତ୍ପାଦନର ସାଧନ ହୋଇଥିବା ଯୋଗୁଁ ମଣିଷର ଅର୍ଥନୈତିକ ସଂଗଠନର କେନ୍ଦ୍ରରେ ତାହାର ସ୍ଥାନ, ବିଶେଷ କରି ଭାରତ ପରି କୃଷି ପ୍ରଧାନ ଦେଶରେ ।

ଏହାଛଡା ମଧ ଗାଈକୁ ବଳଦର ଜନ୍ମଦାତ୍ରୀ ରୂପେ ଦେଖିଲେ ତାହାର ଗୁରୁତ୍ୱ ବଢିଯାଏ । ଏ ଦୃଷ୍ଟିରୁ ସେ ଆମର ଆର୍ଥିକ ବ୍ୟବସ୍ଥାର କେନ୍ଦ୍ରସ୍ଥଳ । ଯେଉଁ ଦୃଷ୍ଟିରୁ, ଅଳ୍ପଦିନ ତଳେ ଇଂଲଣ୍ଡ ଓ ଅନ୍ୟ କେତେକ ୟୁରୋପୀୟ ଦେଶର ଅର୍ଥନୀତି ଅଶ୍ୱ- କେନ୍ଦ୍ରିକ ଥିଲା, ସେହିଭଳି ଆମ ଅର୍ଥନୀତିକୁ ଆମେ 'ଗୋ କେନ୍ଦ୍ରିକ ଅର୍ଥନୀତି' କହିପାରୁ । କାରଣ ଏଠି ଗାଈ ଚାଳନା ଶକ୍ତି, ଯାନବାହାନ, ଖାଦ୍ୟ ଉତ୍ପାଦନ ଆଦି ଦିଗରେ ସାହାଯ୍ୟ କରୁଛି ।

ଗତ ଶତାବ୍ଦୀ ଭିତରେ ଇଂଲଣ୍ଡ ଅଶ୍ୱକେନ୍ଦ୍ରିକ ଅର୍ଥନୀତି ଛାଡି କୋଇଲା କେନ୍ଦ୍ରିକ ଅର୍ଥନୀତି ଆଡକୁ ଗତି କଲା ଓ ସେଥିରୁ ପୁଣି ଖୁବ୍ ଦ୍ରୁତଗତିରେ ତୈଳ କେନ୍ଦ୍ରିକ ଅର୍ଥନୀତି ଆଡକୁ ଚାଲିଛି । ଏ ପର୍ଯ୍ୟାୟ ଗୁଡିକ ଭଲ ଭାବରେ ଲକ୍ଷ୍ୟ କରିବା ଦରକାର । କାରଣ ଆମେ ଆମ କାମପାଇଁ କି ଶକ୍ତି ବ୍ୟବହାର କରିବୁ ତା ଉପରେ ପୃଥିବୀର ଭାଗ୍ୟ ନିର୍ଭର କରେ ।

ଗୋ ଓ ଅଶ୍ୱକେନ୍ଦ୍ର ଅର୍ଥନୀତିରେ ଆମର ଅସୀମ କ୍ଷେତ୍ର ରହିଛି, କାରଣ ଆମେ ଯେତେ ଦରକାର ସେତେ ଘୋଡ଼ା ଓ ବଳଦ ଉପୁଜେଇ ପାରୁ ଓ ତାଙ୍କର ସଂଖ୍ୟା ସୀମାବଦ୍ଧ ନ ହୋଇଥିବାରୁ କାହାରି ଲୋଭ ଈର୍ଷା ଜାଗ୍ରତ ହେବ ନାହିଁ । କିନ୍ତୁ କୋଇଲା ଓ ତେଲର କ୍ଷେତ୍ର ସରିଗଲା ବେଳକୁ ଦେଶ ଦେଶ ଭିତରେ ସଂଘର୍ଷ ଲାଗିଯାଏ । ଏକଥା ବର୍ତ୍ତମାନ ଭଲଭାବରେ ବୁଝା ପଡ଼ିଲାଣି ଯେ, ତେଲ ଖଣି ଗୁଡ଼ିକୁ ହାତ କରିବା ପାଇଁ ବିଭିନ୍ନ ଦେଶମାନଙ୍କର ଚେଷ୍ଟା ବିଶ୍ୱଯୁଦ୍ଧର ଗୋଟିଏ ବଡ଼ କାରଣ । କୋଇଲା ଓ ତେଲକେନ୍ଦ୍ରିକ ଅର୍ଥନୀତି ଯୋଗୁଁ ଦେଶ ଦେଶ ଭିତରେ ବିବାଦ ଲାଗେ । ଅପର ପକ୍ଷରେ

ଗୋ ଓ ଅଶ୍ୱକେନ୍ଦ୍ରିକ ଅର୍ଥନୀତି ଅପେକ୍ଷାକୃତ ଶାନ୍ତିପୂର୍ଣ୍ଣ । ତେଣୁ, ଗୋଟିଏ ବ୍ୟାପକ, ଅର୍ଥରେ ଆମେ କହିପାରୁ ଯେ, ଗୋ-କେନ୍ଦ୍ରିକ ଅର୍ଥନୀତିକୁ ଛାଡ଼ିବାଦ୍ୱାରା ଆମେ ଗୋ ହତ୍ୟା ଘଟାଉଛୁ, ଅର୍ଥାତ୍, ଆମର କାର୍ଯ୍ୟକଳାପ ଯେତେବେଳେ ଗୋ କେନ୍ଦ୍ରିକ ଅର୍ଥନୀତିର ଅସ୍ତିତ୍ୱ ଉପରେ ଆଞ୍ଚ ଆଣୁଛି, ସେତେବେଳେ ଆମେ ଆଉ ଗୋରକ୍ଷକଙ୍କ ଦଳରେ ନାହୁଁ । ଉଦାହରଣ ସ୍ୱରୂପ, ଯନ୍ତ ଚଳେଇବା ପାଇଁ କୋଇଲା ଓ ତେଲ ବ୍ୟବହାର କରିବାଦ୍ୱାରା ଆମେ ପ୍ରକୃତ ପକ୍ଷେ ଆମ ଅର୍ଥନୀତି ଭିତରୁ ଗାଈକୁ ତଡ଼ି ଦେଉଛୁ । ଆମେ ପିଚୁ ରାସ୍ତା ତିଆରି କରୁଛୁ । ଏ ରାସ୍ତା ବଳଦ ବା ଘୋଡ଼ାଙ୍କ ପାଇଁ ଉପଯୁକ୍ତ ନୁହେଁ । (କାରଣ ତାଙ୍କର ଗୋଡ଼ ଏଥିରେ ଖସେ) ଏହାଦ୍ୱାରା ମଧ୍ୟ ଆମେ ଗୋ - କେନ୍ଦ୍ରିକ ସଂଗଠନକୁ ଭାଙ୍ଗିବାରେ ଦୋଷୀ । ଚାରିଗୋଡ଼ ଓ ଦୁଇ ସିଙ୍ଗ ଥିବା ଜନ୍ତୁଟି ଖାଦ୍ୟପାଇଁ ହଣା ହେବା ସମସ୍ୟା ଅପେକ୍ଷା ସମସ୍ୟାର ଏ ଦିଗଟା ଆମପକ୍ଷରେ ବେଶୀ ଗୁରୁତ୍ୱପୂର୍ଣ୍ଣ ।

ଆଜି ଆମର ଯେତେ ବନ୍ଧୁ ଗୋ-ହତ୍ୟା ବିରୁଦ୍ଧରେ ବାହାରିଛନ୍ତି, ଗୋରକ୍ଷାର ଏ ଉଚ୍ଚତର ବ୍ୟାଖ୍ୟା ଦୃଷ୍ଟିରୁ ସେମାନଙ୍କର ଭିତରୁ କେତେ ଆପଣାର ହାତ ଗୋରକ୍ତଦ୍ୱାରା କଳୁଷିତ ନୁହେଁ ବୋଲି କହି ପାରିବେ ? ଖଦୀଭଳି ଗାଈ ଗୋଟିଏ ବିଶିଷ୍ଟ ପ୍ରକାରର ଜୀବନ ଯାତ୍ରାର ପ୍ରତୀକ । ତେଣୁ, ସେଭଳି ଜୀବନ ଯାତ୍ରା ଅସମ୍ଭବ କରିଦେବାର ଅର୍ଥହିଁ ଗୋହତ୍ୟା । ଆମର ଆଶା ଯେ, ଗୋରକ୍ଷାର ସମର୍ଥକଗଣ ଆପଣାର ସମର୍ଥିତ ଆନ୍ଦୋଳନର ବ୍ୟାପକତା ଉପଲବ୍ଧି କରିବେ ଓ ଏ ନୀତିର ବ୍ୟାପକ ପ୍ରୟୋଗକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରିବେ ।

❑ (୧୯୪୭ ନଭେମ୍ବରସଂଖ୍ୟା "ଗ୍ରାମସେବକ"ରୁଗୃହୀତ)

# କଂଟ୍ରୋଲ ଉଠାଅ

**ମହାତ୍ମା ଗାନ୍ଧୀ**

୩ ୧୧.୪୭ ଦିନ ନୂଆଦିଲ୍ଲୀ ପ୍ରାର୍ଥନା ସଭାରେ ଗାନ୍ଧୀଜୀଙ୍କର ଭାଷଣ :- ଶ୍ରୀ ରାଜେନ୍ଦ୍ରପ୍ରସାଦ ପ୍ରାଦେଶିକ ପ୍ରଧାନମନ୍ତ୍ରୀ ବା ସେମାନଙ୍କ ପ୍ରତିନିଧିମାନଙ୍କର ଓ ଅନ୍ୟମାନଙ୍କର ଏକ ସମ୍ମିଳନୀ ତାଙ୍କୁ ଖାଦ୍ୟପଡ଼ି ସମସ୍ୟାରେ ପରାମର୍ଶ ଦେବାକୁ ଓ ସାହାଯ୍ୟ କରିବାକୁ ଡ଼କେଇଛନ୍ତି । ସେଥିପାଇଁ ଆଜି ସନ୍ଧ୍ୟାରେ ମୁଁ ଏ ଅତି ଜରୁରୀ ସମସ୍ୟା ସମ୍ବନ୍ଧରେ ଆଲୋଚନା କରିବା ଉଚିତ ମନେକରୁଛି । ମୁଁ ମୂଳରୁ କହି ଆସୁଛି ଯେ ଯେତେଶୀଘ୍ର ସମ୍ଭବ କଣ୍ଟ୍ରୋଲ ପୁରାପୁରି ଉଠେଇଦେବା ଦରକାର । ଛ'ମାସରୁ ବେଶୀ ଡେ଼ରି ତ କଦାପି ହେବାର ନୁହେଁ । ଯା ଭିତରେ ମୁଁ ଯେତେ କଥା ଶୁଣିଲିଣି ସେଥିରେ ଏ ମତ ବଦଳାଇବାର କୌଣସି କାରଣ ଦେଖୁ ନାହିଁ । ଲୁଗା ଓ ଖାଦ୍ୟ, ଉଭୟ ଜିନିଷ ଉପରୁ କଣ୍ଟ୍ରୋଲ ଅବଶ୍ୟ ଉଠେଇଦେବା ଉଚିତ ବୋଲି କୋଉଦିନ ଯେ ମୋ ପାଖରୁ ଟାଙ୍କ ଚିଠି ନ ଆସୁଛି ଏମିତି ନାହିଁ । କେତେକ ବିଶିଷ୍ଟ ଲୋକଙ୍କଠୁଁ ମଧ୍ୟ ଏହା ଆସିଛି । ବର୍ତ୍ତମାନ ପାଇଁ ମୁଁ ଲୁଗା କଣ୍ଟ୍ରୋଲ କଥା ଛାଡ଼ିଦେଉଛି ।

କଣ୍ଟ୍ରୋଲ ଫଳରେ ଠକାମି ଓ ସତ୍ୟଗୋପନ ଉପୁଜେ, ଚୋରା ବେପାର ବଢେ ଓ ଜିନିସର କୃତ୍ରିମ ଅଭାବ ସୃଷ୍ଟି ହୁଏ । ସବୁଠାରୁ ବଡ଼କଥା ହେଉଛି ଯେ ତାହା ଲୋକଙ୍କୁ ଅମଣିଷ କରିଦେଉଛି ଓ ତାଙ୍କର ପୁରୁଷାର୍ଥ ନଷ୍ଟ କରିଦେଉଛି । ପୁରୁଷେ ହେଲା ଯେଉଁ ସ୍ୱାବଲମ୍ବନଶୀଳତା ସେମାନେ ଶିଖି ଆସୁଛନ୍ତି, ସେ ଶିକ୍ଷାକୁ ପଣ୍ଡ କରିଦେଉଛି । ତାହା ସେମାନଙ୍କୁ ପରାବଲମ୍ବୀ କରିଦେଉଛି । ବର୍ତ୍ତମାନ ଯେଉଁ ଭାଇ ଭାଇ ଲଢେଇ ଲାଗିଛି ଓ ଯେଉଁ ଲୋକ ଅଦଳବଦଳ ଚାଲିଛି, ଯାହା ଫଳରେ ଅଯଥା ମୃତ୍ୟୁ, ଅନଶନ ଓ ଉପଯୁକ୍ତ ଘର ଓ ପୋଷାକର ଅଭାବ ଘଟିଛି, ଶୀତ ପଡ଼ିଲେ ଯାହା ଆହୁରି ତୀବ୍ର ହେବ, କଣ୍ଟ୍ରୋଲ ବ୍ୟବସ୍ଥା ସେତେଦୂର ନ

ହେବ ତ ଏହାର ଠିକ୍ ପଛକୁ ଏହାରିଭଳି ଏକ ନିଦାରୁଣ କଥା । ପ୍ରଥମଟି ବେଶୀ ଆଖିରେ ପଡ଼ିବାଭଳି ଜିନିଷ କଣ୍ଟ୍ରୋଲ ବ୍ୟବସ୍ଥାଟା ସେପରି ଆଖିରେ ପଡ଼ିବା ଜିନିଷ କିନ୍ତୁ ତାହା ବୋଲି ଆମେ ତାହା କଥା ଭୁଲି ନ ଯାଇପାରୁଁ ।

ଗତ ବିଶ୍ୱଯୁଦ୍ଧ ଯେଉଁ ବିଷମୟ ପରିଣାମ ଗୁଡ଼ିକ ରଖିଯାଇଛି, ଖାଦ୍ୟଦ୍ରବ୍ୟ କଣ୍ଟ୍ରୋଲ ବ୍ୟବସ୍ଥା ଟି ହେଉଛି । ତାହା ଭିତରୁ ଗୋଟିଏ । ସେତେବେଳେ ହୁଏତ କଣ୍ଟ୍ରୋଲ ବ୍ୟବସ୍ଥା ଅବଶ୍ୟମ୍ଭାବୀ ଥିଲା, କାରଣ ବହୁତ ଚାଉଳ, ଗହମ ଓ ଅନ୍ୟାନ୍ୟ ଖାଦ୍ୟ ବାହାରକୁ ରପ୍ତାନୀ କରିବାକୁ ପଡୁଥିଲା । ଏ ଅସ୍ୱାଭାବିକ ରପ୍ତାନୀ ଫଳରେ ଏକ ମନୁଷ୍ୟସୃଷ୍ଟି ଅଭାବ ଘଟିବାରହିଁ କଥା ଓ ସେଥିପାଇଁ ପଡ଼ିପ୍ରଥାର ସବୁ ତ୍ରୁଟି ଓ ଅସୁବିଧା ସତ୍ତ୍ୱେ ତାହା ଚଳେଇବାକୁ ପଡ଼ିଲା ।ବର୍ତ୍ତମାନ ଆମେ ଚାହିଁ ବା ତ ଆମକୁ ବାଧ ହେଇ କୌଣସି ଜିନିସ ବିଦେଶକୁ ରପ୍ତାନୀ କରିବାକୁ ପଡ଼ିବ ନାହିଁ । ଆମେ ଯଦି ଭାରତବର୍ଷ ପାଇଁ ଅନ୍ୟ ଦେଶରୁ ଖାଦ୍ୟଦ୍ରବ୍ୟ ସାହାଯ୍ୟ ନଲୋଡୁ ତେବେ ତା ଦ୍ୱାରା ଆମେ ପୃଥିବୀର ଅନ୍ୟାନ୍ୟ ଦୁର୍ଭିକ୍ଷ ଅଞ୍ଚଳକୁ ସାହାଯ୍ୟ କରି ପାରିବା । କାରଣ ଯେଉଁଖାଦ୍ୟ ଭାରତକୁ ଆସୁଛି ତାହାସେ ସବୁ ଅଞ୍ଚଳକୁ ଯିବ ।

ମୁଁ ମୋର ଦୁଇପୁରୁଷ ବ୍ୟାପୀ ଜୀବନକାଳ ଭିତରେ ଅନେକ ଈଶ୍ୱର ପ୍ରେରିତ ଦୁର୍ଭିକ୍ଷ ଦେଖିଛି, କିନ୍ତୁ କେବେ ଖାଦ୍ୟ ପଡ଼ିଦେବା ପ୍ରଶ୍ନ ଉଠିଥିବାର ମୋର ମନେ ପଡୁନାହିଁ ।

ଭଗବାନଙ୍କ କୃପାରୁ ଏଥର ତ ବର୍ଷା ପାଳକ କରିଛି । ତେଣୁ ପ୍ରକୃତରେ ଖାଦ୍ୟ ଅଭାବ ଦେଶରେ ନାହିଁ ଭାରତର ଗାଁମାନଙ୍କରେ ଯଥେଷ୍ଟ ଚାଉଳ, ଗହମ, ଡ଼ାଲି ଓ ତୈଳବୀଜ ରହିଛି । କୃତ୍ରିମ ଭାବରେ ଦର ନିୟନ୍ତ୍ରଣ କରାଯିବାଟା ଚାଷୀ ବୁଦ୍ଧିରେ ପଶୁ ନାହିଁ, ପଶିପାରିବ ନାହିଁ । ତେଣୁ ବଜାରରେ ସେମାନେ ଯେତେ ଦରରେ ଜିନିସ ବିକନ୍ତେ, ତାଠୁଁ ବହୁତ ଶସ୍ତାରେ ସେମାନେ ଜିନିସ ଦେବାକୁ ରାଜି ନୁହନ୍ତି । ଏ ନଗ୍ନ ସତ୍ୟଟା ପ୍ରମାଣ କରି ଦେଖେଇବା ଦରକାର ନାହିଁ । ଦେଶରେ ଜିନିସର ଅଭାବ ଘଟିଛି ଏ କଥା ଦେଖାଇବା ପାଇଁ ବହୁତ ହିସାବ ପତ୍ର ଦେଖେଇବା ଦରକାର ନାହିଁ ବା କାଗଜପତ୍ର କାମରେ ଧୁରନ୍ଧର, ତାଙ୍କ ନାଲି ଫିତା ଫାଇଲରେ ପୋତି ହେଇଥିବା ସିଭିଲିୟାନମାନେ ବିଶଦ ରିପୋର୍ଟମାନ ଲେଖିବା ଦରକାର ନାହିଁ । ଆଉ ଆମ ଦେଶରେ ଲୋକସଂଖ୍ୟା ବେଶୀ ହେଇଗଲାଣି ବୋଲି କହି କେହି ଆମକୁ ଡରେଇବେ ନାହିଁ ।

ଆମ ମନ୍ତ୍ରୀ ମାନେ ସାଧାରଣ ଲୋକଙ୍କ ଭିତରୁ ଆସିଛନ୍ତି । ଯେଉଁ ଅଭିଜ୍ଞ ଲୋକମାନେ ଆଜି ମନ୍ତ୍ରୀଗାଦିରେ ବସି ନାହାନ୍ତି କିନ୍ତୁ ଯେଉଁମାନେ ଶୀଘ୍ର କଣ୍ଟ୍ରୋଲ ଉଠିଯା'ଏ ସେତେ ଭଲ ବୋଲି ଖୁବ୍ ଦୃଢ଼ ମତ ପୋଷଣ କରନ୍ତି, ସେମାନଙ୍କ ଠାରୁ ତାଙ୍କର ବେଶୀ ଜାଣଅଛିବୋଲି ମନ୍ତ୍ରୀମାନେ ଗର୍ବ କରନ୍ତୁ ନାହିଁ । ଜଣେ ଡ଼ାକ୍ତର ଲେଖିଛନ୍ତି ଯେ ଖାଦ୍ୟ କଣ୍ଟ୍ରୋଲ ଯୋଗୁଁ ଯେଉଁମାନଙ୍କୁ ପଡ଼ି ଉପରେ ନିର୍ଭର କରିବାକୁ ପଡୁଛି, ସେମାନେ ଖାଦ୍ୟଯୋଗ୍ୟ ଚାଉଳ, ଅଟା ଓ ଡ଼ାଲି ପାଉ ନାହାନ୍ତି, ଫଳରେ ସଢ଼ା ଖାଦ୍ୟ ଖାଇ ନାନା ବେମାରି ଭୋଗୁଛନ୍ତି ।

କଣ୍ଟ୍ରୋଲ ଖାଦ୍ୟ ପରିବର୍ତ୍ତେ ସରକାର ସେହିସବୁ ଦୋକାନରେ ଖୋଲାବଜାରରୁ କିଣା ଯାଇଥିବା ଭଲ ଚାଉଳ, ଗହମ ଆଦି ବିକି ପାରନ୍ତି । ଏହା ଦ୍ୱାରା ଜିନିସର ଦାମ ଆପେଆପେ ନିୟନ୍ତ୍ରିତ ହୋଇଯିବ ଓ ସେସବୁ ଚାଉଳ, ଗହମ ଡ଼ାଲି ଓ ତୈଳବୀଜ ଯାହାଲୋକେ ଲୁଚାଇ ରଖିଛନ୍ତି ତାହା ଖୋଲା ବଜାରକୁ ଆସିଯିବ । ସରକାର କଣ ଚାଷୀ ଓ ଶସ୍ୟ ବେପାରୀଙ୍କୁ ବିଶ୍ୱାସ କରିବେ ନାହିଁ ? ଗଣତନ୍ତ୍ର ଖାଲି ପଣନ୍ତକାନିକୁ ଆଶ୍ରା କରି ରହିଲେ ତିଷ୍ଠିପାରିବ ନାହିଁ । ତାହା କେବଳ ପରସ୍ପର ବିଶ୍ୱାସ ଉପରେହିଁ ତିଷ୍ଠିପାରେ । ଯଦି ଲୋକେ ପରିଶ୍ରମ ନ କରିବା ବା ପରସ୍ପର ଠକେଇବା ଯୋଗୁଁ ମରନ୍ତି ତେବେ ସେପରି ମୃତ୍ୟୁକାମ୍ୟ । ତା ହେଲେ ଅବଶିଷ୍ଟ ଲୋକେ ସେଥିରୁ ଶିକ୍ଷା ପାଇବେ । ସେମାନେ ଅ...

ଅଳସ ହେବେ ନାହିଁ ବା ନିଷ୍ଠୁର ଭାବରେ ସ୍ୱାର୍ଥପର ହେବେ ନାହିଁ ।''

ପୁଣି ଛ ତାରିଖ ଦିନ ପ୍ରର୍ଥନା ସଭାରେ ଗାନ୍ଧିଜି ସେହି ବିଷୟରେ ନିମ୍ନ ମତେ କହିଥିଲେ ।

ମୁଁ କଣ୍ଟ୍ରୋଲ ବିଷୟରେ ଯେଉଁ ମତ ପୋଷଣ କରୁଛି ତାହା ଠିକ୍ ବୋଲି ମୁଁ ଜାଣୁଛି । ମୁଁ ବରାବର କହିଆସୁଛି ଯେ ସାମ୍ପ୍ରଦାୟିକ ସମସ୍ୟା ବିଷୟରେ ମୋର ମତାମତ ଦେବାକୁ ମୁଁ ପୁରୁଣା ପାଞ୍ଜି ଭଳି ହୋଇଗଲିଣି । କିନ୍ତୁ ଆନନ୍ଦର କଥା ଯେ ଖାଦ୍ୟ ସମସ୍ୟା ବିଷୟରେ ମୋର ମତାମତର ସେ ଅବସ୍ଥା ହେଇନାହିଁ । ବହୁଦିନ ତଳେ ବଙ୍ଗଳାର ସେତେବେଳର ଲାଟ ମିଷ୍ଟର କେସିଙ୍କ ସାଥୀରେ ଅନେକ ଥର ଦେଖା ସାକ୍ଷାତ କଲାବେଳେ ମୁଁ ମତପୋଷଣ କରିଥିଲି ଯେ ଲୁଗା କଣ୍ଟ୍ରୋଲ କି ଖାଦ୍ୟ କଣ୍ଟ୍ରୋଲ ରହିବାର ଉଚିତ୍ ନୁହେଁ । ସେତେବେଳେ ମୋର ସମର୍ଥକ ଥିଲେ କି ନାହିଁ ମୁଁ ଜାଣି ନଥିଲି । କିନ୍ତୁ ବର୍ତ୍ତମାନର ବାଦାନୁବାଦବେଳେ ମତେ ଏ କଥା ଦେଖି ସୁଖକର ଆଶ୍ଚର୍ଯ୍ୟ ଲାଗୁଛି ଯେ ମୋ ପଛରେ ଜନସାଧାରଣଙ୍କ ଆଉ ଅଜଣା ଓ ଭଲ ଜଣାଶୁଣା ଲୋକଙ୍କର ବ୍ୟାପକ ସମର୍ଥନ ରହିଛି । ଏ ବିଷୟରେ ଯେ ବିପୁଳ ପତ୍ର ବ୍ୟବହାର ମୋ ସାଥିରେ ହୋଇଛି ତାହା ଭିତରେ କେହି ଜଣେ ହେଲେ ଲେଖକ ମୋ ସହିତ ଏକମତ ନହେବାର ମୋର ମନେପଡୁ ନାହିଁ । ଶ୍ରୀ ଘନଶ୍ୟାମ ଦାଶ ବିରଳା ଓ ଲାଲା ଶ୍ରୀରାମଙ୍କ ଭଳି ଧନୀକମାନଙ୍କର ମତ କଣ ତାହା ମୋତେ ଜଣା ନଥିଲା ଓ ଡ଼ାକ୍ତର ରାମମନହୋର ଲୋହିୟା ମତେ ଭେଟି ମୋର ମତକୁ ସର୍ବାନ୍ତଃକରଣରେ ସମର୍ଥନ କରୁଛନ୍ତି ବୋଲି ନ କହିବା ପର୍ଯ୍ୟନ୍ତ ମୁଁ ସାମ୍ୟବାଦୀମାନଙ୍କ ଆଡୁ ସମର୍ଥନ ପାଇବି ବୋଲି ଜାଣି ନଥିଲି । ମୋର ଏ ପରାମର୍ଶ ଦେବାରେ ତିଳେ ହେଲେ ଦ୍ୱିଧା ନାହିଁ ଯେ ବର୍ତ୍ତମାନ ଦେଶରେ ଯେଉଁ ଖାଦ୍ୟ ସମସ୍ୟା ଉପୁଜିଛି, ସେଥିରେ ରାଜେନ୍ଦ୍ର ବାବୁ ତାଙ୍କର ସରକାରୀ କର୍ମଚାରୀଙ୍କ ପରାମର୍ଶ ଅପେକ୍ଷା ତାଙ୍କ କମିଟିର ଏକ ବା ଅଧିକ ସଦସ୍ୟଙ୍କ ପରାମର୍ଶ ଦ୍ୱାରା ଚାଳିତ ହେବା ଉଚିତ୍ ।''

ତା'ପରେ ଲୁଗା କଣ୍ଟ୍ରୋଲ କଥା ଉଲ୍ଲେଖ କରି ସେ କହିଲେ - ''ଖାଦ୍ୟ କଣ୍ଟ୍ରୋଲ ଅପେକ୍ଷ ଲୁଗା କଣ୍ଟ୍ରୋଲ ଉଠେଇଦେବା ବିଷୟରେ ବ୍ୟକ୍ତିଗତ ଭାବରେ ମୋର ମତ, କିନ୍ତୁ ମୋର ଆଶଙ୍କା ଯେ ଖାଦ୍ୟ କଣ୍ଟ୍ରୋଲ ଉଠେଇବା ସମ୍ପର୍କରେ ମତେ ଯେପରି ସମର୍ଥନ ମିଳୁଛି ଏ ବିଷୟରେ ସେପରି ମିଳୁନାହିଁ । ମୋର ପ୍ରସ୍ତାବ ଏତେ ସରଳ ଯେ ବିଶ୍ୱାସ କରିହେବ ନାହିଁ । ଖଦୀ ଦେଶୀ ବିଦେଶୀ ସବୁ ପ୍ରକାରର ମିଲ ଲୁଗାର ସ୍ଥାନ ଗ୍ରହଣ କରିବା ଉଚିତ୍ ବୋଲି ମୋର ମତକୁ କଂଗ୍ରେସ ଆଗ୍ରହର ସହିତ ସମର୍ଥନ କରିଥିଲା ଓ ସ୍ୱର୍ଗତଃ ଜମୁନାଲାଲଜୀଙ୍କ ତତ୍ତ୍ୱାବଧାନରେ ଖଦୀବୋର୍ଡ଼ ଗଢ଼ିଥିଲା । ମୁଁ ୟାରାଓ୍ୱାଡ଼ା ଜେଲ୍‌ରୁ ଖଲାସ ହେଲା ପରେ ତାହା ନିଖିଳ ଭାରତ ଚରଖା ସଂଘ ରୂପେ ବ୍ୟାପକ କରି ଗଢ଼ାହେଲା । ଭାରତରେ ୪୦ କୋଟି ଲୋକ ଅଛନ୍ତି । ପାକିସ୍ତାନ ଅଞ୍ଚଳକୁ ବାଦ୍‌ଦେଲେ ମଧ ୩୦ କୋଟିରୁ ବେଶୀ ଲୋକ ଅଛନ୍ତି । ଦେଶରେ ଆମର ଯେତେ ଦରକାର ସେତେ କପା ହେଉଛି । ଏ ତୁଳାରୁ ସୁତା କାଟିବା ପାଇଁ ଯେତେ ଦରକାର ସେତେ କଟାଳୀ ଏ ଦେଶରେ ଅଛନ୍ତି ଓ ସେ ସୁତାକୁ ବୁଣିବା ପାଇଁ ଦରକାର ସେତେ ତନ୍ତି ଏ ଦେଶରେ ଅଛନ୍ତି । ଯେତେ ଅରଟ, ତନ୍ତ ଓ ଅନ୍ୟ ସରଞ୍ଜାମ ଆମର ଦରକାର ହେବ ସେ ସବୁ ଖୁବ୍ ଅଳ୍ପ, ପୁଞ୍ଜି ଖଟେଇ ସହଜରେ ତିଆରି କରିହେବ । ତେଣୁ ଆମର କେବଳ ବଳିଷ୍ଠ ଆତ୍ମ ବିଶ୍ୱାସ ଓ ଖଦୀ ଛଡ଼ା ଆଉ ବ୍ୟବହାର ନ କରିବାର ସଂକଳ୍ପ ଲୋଡ଼ା । ଆମେ ତ ଦେଖିଛୁ ଯେ ଯେତେ ଇଚ୍ଛା ସରୁ ଖଦଡ଼ ଲୁଗା ତିଆରି ହୋଇ ପାରୁଛି । ଏବେ ତ ଭାରତ ବିଦେଶରୁ ଶାସନରୁ ମୁକ୍ତ ହେଲାଣି, ଫଳରେ ବିଦେଶୀ ଶାସକଙ୍କ ଆଡୁ ଯେପରି ବିରୋଧ ଖଦୀକୁ ସହିବାକୁ ପଡୁଥିଲା ତାହା ଆଉନାହିଁ । ତେଣୁ ଏ କଥା ଦେଖି ମତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ଯେ ଆମ ନିଜ ହାତରୁ କ୍ଷମତା ଆସିଲା ବେଳକୁ

ଆଉ କେହି ଖଦୀ କଥା କହୁ ନାହାନ୍ତି; ଖଦୀରେ ଆଉ କାହାରି ବିଶ୍ୱାସ ଥିଲା ପରି ଜଣାପଡୁ ନାହିଁ ଓ ଭାରତକୁ ଲୁଗା ଯୋଗାଇବା ପାଇଁ ମିଲ୍ ଲୁଗାଛଡ଼ା ଆମ ମୁଣ୍ଡକୁ କିଛି ଆସୁନାହିଁ । ମୋର ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ଯେ ଖଦୀ ଅର୍ଥନୀତି ହିଁ ଏକମାତ୍ର ସଚ୍ଚୋଟ ଓ ଖାଣ୍ଟି ଅର୍ଥନୀତି ।''

(୧୯୪୭ ଡ଼ିସେମ୍ବର ସଂଖ୍ୟା ''ଗ୍ରାମ ସେବକ''ରୁ ଗୃହୀତ) ❑

# ପ୍ରଦେଶର ଗଭର୍ଣ୍ଣର କିଏ ହେବ ?

ଗାନ୍ଧୀଜୀ

ଆଚାର୍ଯ୍ୟ ଶ୍ରମନ୍ ନାରାୟଣ ଅଗ୍ରୱାଲା ଲେଖିଛନ୍ତି-

''ଗୋଟିଏ ପ୍ରଶ୍ନ ମୋ ବିଚାରରେ ଗୁରୁତ୍ୱପୂର୍ଣ୍ଣ ଏବଂ ତାହା ବିଷୟରେ ମୁଁ ଆପଣଙ୍କ ମତ ଜାଣିବାକୁ ଚାହୁଁଛି ।,ଭାରତ ପାଇଁ ଯେଉଁ ନୂଆ ବିଧାନ ତିଆରି ହେଉଅଛି, ସେଥିରେ ପ୍ରଦେଶରେ ଗଭର୍ଣ୍ଣର ନିର୍ବାଚନ କରିବାର ନିୟମ ରଖାଯାଇଛି । ପ୍ରଦେଶର ଗଭର୍ଣ୍ଣର, ସେହି ପ୍ରଦେଶର ସାବାଳକ ଭୋଟ ଦ୍ୱାରା ନିର୍ବାଚିତ ହେବେ । ଏଥିରୁ ଏହା ପରିଷ୍କାର ଜଣାଯାଉଛି । ଯେ, ଯାହାକୁ କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ ବାଛିବ, ତାକୁହିଁ ସାଧାରଣତଃ ପ୍ରଦେଶର ଜନସାଧାରଣ ଗଭର୍ଣ୍ଣର ବାଛିନେବେ । ପ୍ରଦେଶର ପ୍ରଧାନମନ୍ତ୍ରୀ ମଧ୍ୟ କଂଗ୍ରେସର ହେବେ । ପ୍ରଦେଶର ଗଭର୍ଣ୍ଣର ଏମିତିକା ଲୋକ ହେବା ଦରକାର, ଯେ କି ସେ ପ୍ରଦେଶର ଦଳାଦଳିରୁ ମୁକ୍ତି ଥିବେ; କିନ୍ତୁ ପ୍ରଦେଶର ଗଭର୍ଣ୍ଣର ସାଧାରଣତ କଂଗ୍ରେସ ହେବେ, ଏବଂ ସେହି ପ୍ରଦେଶର ହେବେ । ଏପରି କ୍ଷେତ୍ରରେ ସେ କଂଗ୍ରେସ ଦଳର ଦଳାଦଳିରୁ ଅଲଗା ରହି ପାରିବେ ନାହିଁ । ହୁଏତ ସେ କଂଗ୍ରେସୀ ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶ ମାନି ଚଳିବେ, ନତୁବା ଗଭର୍ଣ୍ଣର ଓ ପ୍ରଧାନମନ୍ତ୍ରୀଙ୍କ ଭିତରେ କିଛି ନା କିଛି ଭିଡ଼ା ଓଟରା ଲାଗି ରହିବ ।

''ମୋ ବିଚାରରେ ତ ବର୍ତ୍ତମାନ ପ୍ରଦେଶରେ ଗଭର୍ଣ୍ଣରଙ୍କର ଆବଶ୍ୟକତା ନାହିଁ । ପ୍ରଧାନମନ୍ତ୍ରୀ ହିଁ ସେ ସବୁକାମଦାମ ଚଳେଇ ପାରନ୍ତି । ଲୋକଙ୍କର ୫୫୦୦ ଟଙ୍କା ଗଭର୍ଣ୍ଣରଙ୍କର ମାସିକ ବେତନରେ କାହିଁକି ଅଯଥା ଖର୍ଚ୍ଚ କରାଯିବ ? ଯଦ୍ୟପି ଗଭର୍ଣ୍ଣର ରଖିବାକୁ ହିଁ ପଡ଼େ, ତେବେ ସେ ସେହି ପ୍ରଦେଶର ନହେବା ଦରକାର । ସାବାଳକ ଭୋଟରେ ତାଙ୍କୁ ବାଛିବାରେ ଖର୍ଚ୍ଚ ଏବଂ ଶ୍ରମ ନିରର୍ଥକ ହେବ । ଏହା କଲେ ଭଲ ହୁଅନ୍ତା ଯେ, ଯୁକ୍ତରାଷ୍ଟ୍ର ସଂଘର ସଭାପତି ପ୍ରତ୍ୟେକ ପ୍ରଦେଶ ପାଇଁ ଅନ୍ୟ ପ୍ରଦେଶର ଏମିତିକା ସମ୍ମାନିତ କଂଗ୍ରେସୀ ଲୋକଙ୍କୁ ପଠାନ୍ତି ଯେ ସେହି ପ୍ରଦେଶର ଦଳଦଳିରୁ ଅଲଗା ରହି ସେଠିକାର ସାର୍ବଜନୀନ ଏବଂ ରାଜନୈତିକ ଜୀବନକୁ ଉନ୍ନତ କରି ପାରନ୍ତେ । ଆଜି ଯେଉଁ ପ୍ରାଦେଶିକ ଗଭର୍ଣ୍ଣରମାନଙ୍କୁ କେନ୍ଦ୍ରିୟ ସରକାର ନିଯୁକ୍ତି କରିଛନ୍ତି, ସେମାନଙ୍କୁ ପ୍ରାୟ ଏହି ସିଦ୍ଧାନ୍ତ ଅନୁସାରେ ବଛାଯାଇଛି ବୋଲି ଲାଗୁଛି ଏବଂ ସେଥିପାଇଁ ପ୍ରଦେଶର ରାଜନୈତିକ ଜୀବନ ମଧ୍ୟ ଠିକ୍ ଚାଲିଛି । ଯଦି ସ୍ୱାଧୀନ ଭାରତର ଭବିଷ୍ୟତ ନିୟମ ଅନୁସାରେ ସେହି ପ୍ରଦେଶର ଲୋକ ସାବାଳକ ଭୋଟ ଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା ରଖାଯାଏ, ତେବେ ମୋର ଆଶଂକା ଯେ, ପ୍ରଦେଶର ରାଜନୈତିକ ଜୀବନ ଉନ୍ନତ ହୋଇ ରହିପାରିବ ନାହିଁ ।

''ଏ ନୂଆ ଶାସନଖସଡ଼ାରେ ଗାଁ ପଞ୍ଚାୟତ ଏବଂ ରାଜନୈତିକ କ୍ଷମତାକୁ କ୍ଷୁଦ୍ର କ୍ଷୁଦ୍ର ଏକତାରେ ବାଣ୍ଟି ଦେବାର (ବିକେନ୍ଦ୍ରି କରଣ) କୌଣସି ପ୍ରକାର ଉଲ୍ଲେଖ କରାଯାଇ ନାହିଁ । ଆମର ପୂଜ୍ୟ ନେତାମାନଙ୍କୁ ଟିପ୍ପଣି କରିବା ମୋର କେବେ ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଯେଉଁ କଥାରେ ମୋତେ ତାଟକା ଲାଗିଲା, ତା ଉପରେ ଆପଣଙ୍କର ମତ ''ହରିଜନ''ରେ ଆପଣ ଦିଅନ୍ତୁ ବୋଲି ମୁଁ ଚାହୁଁଛି ''।

ଆଚାର୍ଯ୍ୟ ଅଗ୍ରବାଲା ପ୍ରାଦେଶିକ ଗଭର୍ଣ୍ଣରଙ୍କର ବିଷୟରେ ଯାହା କହୁଛନ୍ତି, ତା ସପକ୍ଷରେ କହିବାକୁ ତ ବହୁତ ଅଛି; କିନ୍ତୁ ମୋତେ ମାନିନେବାକୁ ପଡୁଛି ଯେ, ମୁଁ ବିଧାନ ପରିଷଦର ସବୁ ବିବରଣ ଦେଖି ନାହିଁ । ମୋତେ ଏତକ ମଧ ଜଣା ନାହିଁ ଯେ, ଗଭର୍ଣ୍ଣର ନିର୍ବାଚନ କରିବା ପ୍ରସ୍ତାବ କେଉଁବାଟେ କେମିତି ଉଠିଲା । ଏହା ନଜାଣି ମଧ ଆଚାର୍ଯ୍ୟ ଅଗ୍ରବାଲାଙ୍କର ଯୁକ୍ତିଗୁଡ଼ିକ ମୋତେ ଟାଣୁଆ ଲାଗୁଛି । ପ୍ରଜାଙ୍କର ଧନରୁ କଉଡ଼ିଟିଏ ଖର୍ଚ୍ଚ ମଧ ବଞ୍ଚିପାରିଲେ ସେତକ ବଞ୍ଚେଇବା ମତେ ଭଲ ଲଗୁଛି, କିନ୍ତୁ ପ୍ରଧାନମନ୍ତ୍ରୀଙ୍କୁ ହିଁ ଗଭର୍ଣ୍ଣର ରୂପେ ମାନିନେବା ଏବଂ ଅନ୍ୟ କାହାରିକୁ ଗଭର୍ଣ୍ଣର ନ କରିବା କଥା ଯେ ଏ କହୁଛନ୍ତି ତାହା ମୋର ପସନ୍ଦ ହେଉନାହିଁ ।

ପଇସା ବଞ୍ଚେଇବା ପାଇଁ ପ୍ରଦେଶରେ ଗଭର୍ଣ୍ଣର ନ ରଖିବଟା ଭୁଲ ମିତବ୍ୟୟିତା । ଗଭର୍ଣ୍ଣରଙ୍କୁ ଦୈନନ୍ଦିନ ରାଜକାର୍ଯ୍ୟରେ ହସ୍ତକ୍ଷେପ କରିବାର ବହୁତ ଅଧିକାର ଦେବା ଠିକ୍ ନୁହେଁ । ପୁଣି କେବଳ ଶୋଭା ପାଇଁ ଠାକୁର ଭଳି ରଖିବା ମଧ ଠିକ୍ ହେବନାହିଁ । ମନ୍ତ୍ରୀଙ୍କର କାମକୁ ଦୋରସ୍ତ କରିବାର ଅଧିକାର ତାଙ୍କର ରହିବା ଦରକାର । ପ୍ରଦେଶର ଗୋଳମାଳରୁ ଅଲଗା ରହିବା ହେତୁରୁ ସେ ପ୍ରଦେଶର କାରବାର ଠିକ୍ ଢଙ୍ଗରେ ଦେଖିପାରିବେ ଏବଂ ମନ୍ତ୍ରୀମାନଙ୍କୁ ପ୍ରମାଦରୁ ରକ୍ଷା କରିପାରିବେ । ଗଭର୍ଣ୍ଣରମାନେ ନିଜନିଜ ପ୍ରଦେଶର ନୀତି ରକ୍ଷକ ହେବା ଦରକାର । ଅଚାର୍ଯ୍ୟ ଅଗ୍ରବାଲଙ୍କ କହିବା ଅନୁସାରେ ପ୍ରକୃତରେ ଯଦି ଶାସନ ଖସଡ଼ାରେ ଗାଁ ପଞ୍ଚାୟତ ଏବଂ କ୍ଷମତାର ବିକେନ୍ଦ୍ରକରଣ କରିବାରେ କିଛି ଚିହ୍ନବର୍ଣ୍ଣ ନଥାଏ, ତେବେ ସେ ଭୁଲ ଦୂରହେବା । ଚାହିଁ ଯଦିଚ ସାଧାଣଙ୍କ ମତ ଅନୁସାରେହିଁ ଶାସନ ଚାଳିବ ବୋଲି ଆମର ମତ, ତଥାପି ପଞ୍ଚାୟତ ମାନଙ୍କୁ ଯେତିକି ବେଶି ଅଧିକାର ଦିଆଯିବ ଲୋକ ପକ୍ଷରେ ସେତିକି ଭଲ । ପଞ୍ଚାୟତର କାର୍ଯ୍ୟକଳାପ ଏବଂ ପ୍ରଭାବ ଲାଭଦାୟକ ହେବାପାଇଁ ଲୋକଙ୍କର ଶିକ୍ଷା ବହୁତ - ବଢ଼ିବା ଦରକାର । ଏ ଶିକ୍ଷାର ଅର୍ଥ ଲୋକଙ୍କୁ ସାମରିକ ଶିକ୍ଷାଦେଇ ସାମରିକ ଶକ୍ତି ବଢ଼େଇବା ନୁହେଁ; ସେମାନଙ୍କର ନୈତିକ ଶକ୍ତିର ବିକାଶ କରିବାକୁ ହେବ । ତେଣୁ ଶିକ୍ଷା ଶବ୍ଦକୁ ଏଠି ମୌଳିକଶିକ୍ଷା ଅର୍ଥରେ ମୁଁ ବ୍ୟବହାର କରିଛି । ୧୯. ୧୨. ୪୭

(୧୯୪୮ ଜାନୁୟାରୀ ସଂଖ୍ୟା "ଗ୍ରାମସେବକ"ରୁ ଗୃହୀତ) ❏

# ଜାତୀୟ ପତାକା

**ଗାନ୍ଧୀଜୀ**

ପ୍ରତ୍ୟେକ ଦେଶର ଗୋଟିଏ ପତାକା ଦରକାର । ତାପାଇଁ ଲକ୍ଷ ଲକ୍ଷ ପ୍ରାଣ ଦେଇଛନ୍ତି । ଏହା ଅବଶ୍ୟ ଗୋଟିଏ ପ୍ରକାରର ପୌତ୍ତଳିକତା ଯାହାକୁ ନଷ୍ଟକରିବା ପାପ ହେବ । କାରଣ ପତାକା ଗୋଟିଏ ଆଦର୍ଶର ପ୍ରତୀକ । ଇଉନିୟନ ଜ୍ୟାକ ଉଡ଼ାହେଲାବେଳେ ଇଂରେଜ ପ୍ରାଣରେ ଯେ ଭାବୋଚ୍ଛ୍ୱାସ ଉଠେ ତାର ପରିମାପ କରିବା କଠିନ । ଆମେରିକା ବାସୀ ଠାରେ ତାଙ୍କ ପତାକାର ମୂଲ୍ୟ ଅସୀମ । ତାରା ଓ ଚନ୍ଦ୍ର ଚିହ୍ନିତ ପତାକା ମୁସଲମାନଠାରେ ସର୍ବଶ୍ରେଷ୍ଠ ସାହସ ଉଦ୍ରେକ କରିବ ।

ଆମେ ସବୁ ଭାରତୀୟ - ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ, ୟିହୁଦୀ, ପାର୍ଶି ଓ ଅନ୍ୟ ଯେଉଁ ସମସ୍ତଙ୍କର ଘର ଭାରତରେ - ସେମାନଙ୍କର । ଏପରି ଏକ ସର୍ବମାନ୍ୟ ପତାକା ଦରକାର ଯାହାପାଇଁ ସେ ବଞ୍ଚିବେ ଓ ମରିବେ ।

ମସୁଲିପଟମ୍ ଜାତୀୟ କଲେଜର ଶ୍ରୀ ବେଙ୍କାୟା କେତେବର୍ଷ ହେଲା ବିଭିନ୍ନ ଦେଶର ରାଷ୍ଟ୍ରଧ୍ୱଜର ବର୍ଣ୍ଣନା ଦେଇ ଓ ଭାରତପାଇଁ ଏକ ରାଷ୍ଟ୍ରଧ୍ୱଜର ନମୁନା ଦେଇ ଖଣ୍ଡେ ପୁସ୍ତିକା ସାଧାରଣରେ ପ୍ରକାଶ କରିଛନ୍ତି । କିନ୍ତୁ ସେ ଗତ ଚାରିବର୍ଷ ହେଲା କଂଗ୍ରେସର ପ୍ରତ୍ୟେକ ଅଧିବେଶନରେ ଯେପରି ଅଧ୍ୟବସାୟର ସହିତ ଗୋଟିଏ ଜାତୀୟ ପତାକା ପାଇଁ ଉଦ୍ୟମ କରି ଆସିଛନ୍ତି ତାହାର

ମୁଁ ବରାବର ପ୍ରଶଂସା କରୁଥିଲେ ମଧ୍ୟ ସେ ମତେ ସେଥିରେ ଉତ୍ସାହିତ କରିପାରୁ ନ ଥିଲେ, କାରଣ ସେ ଯେଉଁ ନମୁନା ତିଆରି କରିଥିଲେ ସେଥିରେ ମୁଁ ଜାତିର ପ୍ରାଣକୁ ଗଭୀର ଭାବରେ ଆଲୋଡ଼ିତ କରିବା ଭଳି ଦେଖୁ ନ ଥିଲି । ଯେଉଁ ସୂଚନା ସଙ୍ଗେ ସଙ୍ଗେ ଦୃଷ୍ଟି ଆକର୍ଷଣ କରିବ ସେଭଳି ଏକ ସୂଚନା ଜଣେ ପଞ୍ଜାବୀ ଦେଲେ । ଜଳନ୍ଧରର ଲାଲା ହଂସରାଜ ଚର୍‌ଖାର ନାନା ସମ୍ଭାବନା ବିଷୟରେ ଆଲୋଚନା କରୁ କରୁ ଭାରତର ଜାତୀୟ ପତାକାରେ ତାହା ସ୍ଥାନପାଇବା ଉଚିତ୍ ବୋଲି ସୁଚେଇ ଥିଲେ । ମୁଁ ଏ ସୂଚନାର ନୂତନତ୍ୱର ପ୍ରଶଂସା ନ କରି ରହିପାରିଲି ନାହିଁ । ଏକ ଲାଲ (ହିନ୍ଦୁଙ୍କର ବର୍ଣ୍ଣ) ଓ ସବୁଜ (ମୁସଲମାନ ବର୍ଣ୍ଣ) ଭିତ୍ତି ଉପରେ ଚରଖା ଥିବା ନମୁନା ତିଆରି କରିଦେବା ପାଇଁ ଶ୍ରୀ ଵେଙ୍କାୟାଙ୍କୁ ମୁଁ ବେଜୱାଡ଼ାଠାରେ କହିଲି । ତାଙ୍କ ଉତ୍ସାହଯୋଗୁଁ ତିନିଘଣ୍ଟା ଭିତରେ ମତେ ଗୋଟିଏ ପତାକା ମିଳିଗଲା । ଟିକିଏ ବିଳମ୍ବ ଯୋଗୁଁ ତାହା ନିଖିଳ ଭାରତ କଂଗ୍ରେସ କମିଟିରେ ଉପସ୍ଥାପିତ କରାଯାଇ ପାରିଲା ନାହିଁ । ନ ହେଇପାରିଲା ବୋଲି ମୁଁ ଖୁସୀ । ଟିକିଏ ଅଧିକ ପରିଣତ ବିଚାର ପରେ ମୁଁ ଦେଖିଲି ଯେ ପତାକାର ଭିତ୍ତିରେ ଅନ୍ୟ ଧର୍ମର ପ୍ରତୀକ ମଧ୍ୟ ରହିବା ଚାହି । ହିନ୍ଦୁ ମୁସଲମାନ ଏକତା ଅନ୍ୟମାନଙ୍କୁ ଛାଡ଼ି ନୁହେଁ । ଏହା ଏକ ବ୍ୟାପକ ସଂଜ୍ଞା । ଏହା ଭାରତରେ ଥିବା ସବୁ ଧର୍ମର ଏକତାର ପ୍ରତୀକ । ଯଦି ହିନ୍ଦୁ ମୁସଲମାନ ପରସ୍ପର ପ୍ରତି ସହିଷ୍ଣୁ ହେଇପାରିବେ ତେବେ ସେମାନେ ନିଶ୍ଚୟ ଅନ୍ୟ ସବୁ ଧର୍ମ ପ୍ରତି ମଧ୍ୟ ସହିଷ୍ଣୁ ହେବେ । ଏ ଏ କଣ ଭାରତରେ ଥିବା ଅନ୍ୟ ଧର୍ମମାନଙ୍କ ପ୍ରତି ବା ଦୁନିଆ ପ୍ରତି ଏକ ଆତଙ୍କର କାରଣ ହେବ ନାହିଁ । ତେଣୁ ମୋର ସୂଚନା ଯେ ପତାକାରେ ଧଳା, ସବୁଜ ଓ ଲାଲ ରଙ୍ଗ ରହିବ । ଧଳା ଅଂଶଟି ଅନ୍ୟାନ୍ୟ ସବୁ ଧର୍ମର ପ୍ରତୀକ । ସଂଖ୍ୟାରେ ଯେ ସବୁଠାରୁ ଦୁର୍ବଳ ତାଙ୍କର ସ୍ଥାନ ସର୍ବ ପ୍ରଥମରେ, ତା'ପରେ ଇସଲାମର ରଙ୍ଗ ଓ ସବା ଶେଷରେ ହିନ୍ଦୁ ବର୍ଣ୍ଣ ଲାଲ ରହିବ । ଏପରି ହେବାର ଉଦ୍ଦେଶ୍ୟ ହେଉଛି ଯେ ସବୁଠାରୁ ବଳିଷ୍ଠ ସେ ଦୁର୍ବଳର ରକ୍ଷକ ହେବ । ତା'ଛଡ଼ା ଧଳା ରଙ୍ଗଟି ପବିତ୍ରତା ଓ ଶାନ୍ତିର ପ୍ରତୀକ । ଆମ ଜାତୀୟ ପତାକା ଏହାର ପ୍ରତୀକ ନୁହେଁ ତ କିଛି ନୁହେଁ । ଆଉ ଆମ ଭିତରେ ଯେ ସର୍ବଶ୍ରେଷ୍ଠ ସେ ସର୍ବକନିଷ୍ଠ ସହିତ ସମାନ - ଏକଥା ଦେଖେଇବା ପାଇଁ ପତାକାରେ ସବୁ ରଙ୍ଗ ସମାନ ଭାଗରେ ରଖାଯାଉଛି ।

କିନ୍ତୁ ରାଷ୍ଟ୍ର ହିସାବରେ ଭାରତ କେବଳ ଚରଖା ପାଇଁ ହିଁ ବଞ୍ଚି ଓ ମରି ପାରେ । ଜାଣିବାକୁ ଉତ୍ସୁକ ବ୍ୟକ୍ତି ପ୍ରତ୍ୟେକ ସ୍ତ୍ରୀ ଲୋକଠୁଁ ଶୁଣିବ ଯେ ଚରଖା ଯିବା ଦିନୁଁ ଭାରତର ସୁଖ ସମୃଦ୍ଧି ଲୋପ ପାଇଲା । ଭାରତର ନାରୀ ଜାତି ଓ ଜନସାଧାରଣ ଚରଖାର ଆହ୍ୱାନରେ ଯେପରି ଜାଗି ଉଠିଛନ୍ତି ଆଉ ସେପରି କେବେ ଜାଗିନଥିଲେ । ଜନସାଧାରଣ ତାକୁ ଜୀବନ ଦାତା ରୂପେ ଚିହ୍ନୁଛନ୍ତି । ନାରୀ ମାନେ ତାଙ୍କର ସତୀତ୍ୱର ରକ୍ଷକରୂପେ ତାକୁ ଦେଖୁଛନ୍ତି । ମୁଁ ଯେତେ ବିଧବାଙ୍କୁ ଭେଟିଛି ପ୍ରତ୍ୟେକେ ଚରଖାକୁ ଏକ ପ୍ରିୟ ବିସ୍ମୃତ ବନ୍ଧୁରୂପେ ଚିହ୍ନିଛନ୍ତି । ଏହା ପୁଣି ଚଳିଲେ ଯାଇଁ କୋଟି କୋଟି ବୁଭୁକ୍ଷୁ ଲୋକଙ୍କୁ ଅନ୍ନ ଯୋଗେଇହେବ । କୌଣସି କଳ କାରଖାନାର ଯୋଜନା ଏ ୧୯୦୦ ମାଇଲ ଲମ୍ବ ଓ ୧୫୦୦ ମାଇଲ ଓସାର ବିଶାଳ ଦେଶ ଭାରତର କୃଷକକୁଳର ବଢ଼ିଚାଲିଥିବା ଦାରିଦ୍ର୍ୟ ସମସ୍ୟାର ସମାଧାନ କରିପାରିବ ନାହିଁ । ଭାରତ ଗୋଟି ଛୋଟିଆ ଦ୍ୱୀପ ନୁହେଁ । ଏହା ଏକ ବିରାଟ ଦେଶ, ଯାହାକୁ ଇଂଲଣ୍ଡ ଭଳି ଶିଳ୍ପପ୍ରଧାନ ଦେଶରେ ପରିଣତ କରିହେବ ନାହିଁ । ଆଉ ପୃଥିବୀକୁ ଶୋଷଣ କରିବାର କୌଣସି ଯୋଜନାରୁ ଆମେ ଦୃଢ଼ ଭାବରେ ବିରତ ରହିବା । ଦେଶର ସମ୍ପଦ ବଢ଼ାଇବା ପାଇଁ ହେଲେ ରାଷ୍ଟ୍ରର ଅଳସ ସମୟତକୁ କାମରେ ଲଗେଇବା, ଆମ କୁଟୀରରେ ତୁଳାକୁ ଲୁଗାରେ ପରିଣତ କରିବାହିଁ ଆମର ଏକମାତ୍ର ଆଶାର ସ୍ଥଳ । ତେଣୁ ଭାରତର ଜୀବନ ପାଇଁ ଚରଖା ପାଣି ପବନ ଭଳି ଅପରିହାର୍ଯ୍ୟ ।

ତା'ପରେ ହିନ୍ଦୁ ଯେତିକି, ମୁସଲମାନ ମଧ୍ୟ ତାକୁ ସେତିକି ପସନ୍ଦ କରନ୍ତି । ପ୍ରକୃତରେ ହିନ୍ଦୁ ଅପେକ୍ଷା

ଏମାନେହିଁ ଚରଖାକୁ ବେଶୀ ଆଗ୍ରହରେ ଧରୁଛନ୍ତି । କାରଣ ମୁସଲମାନ ସ୍ତ୍ରୀ ଲୋକମାନେ ପର୍ଦାନଶୀନ ଓ ଏବେ ସେ ତାର ସ୍ୱାମୀର ସାମାନ୍ୟ ଆୟ ସାଥିରେ ଆଉ କେତେ ପଇସା ମିଶେଇ ପାରୁଛି । ତେଣୁ ଏ ଚରଖା ଆମ ରାଷ୍ଟ୍ରୀୟଜୀବନର ସବୁଠାରୁ ବେଶୀ ସ୍ୱାଭାବିକ ଓ ମହତ୍ୱପୂର୍ଣ୍ଣ ସାଧାରଣ ଗୁଣନୀୟକ । ଏହା ଜରିଆରେ ଆମେ ସାରା ଦୁନିଆକୁ ଜଣେଇଦେଉଛୁ ଯେ ଅନ୍ତତଃ ଖାଦ୍ୟବସ୍ତ୍ର ବିଷୟରେ ଆମେ ଅନ୍ୟଦେଶଠୁଁ ସଂପୂର୍ଣ୍ଣ ସ୍ୱାଧୀନ ରହିବାକୁ କୃତସଂକଳ୍ପ । ଯେଉଁମାନେ ମୋ ଭଳି ବିଶ୍ୱାସ କରନ୍ତି ସେମାନେ ଆପଣା ଘରେ ଚରଖା ଚଳାଇବାରେ ଓ ମୁଁ ସୂଚେଇଥିବା ନମୁନାର ଖଣ୍ଡେ ଜାତୀୟ ପତାକା ସଂଗ୍ରହ କରିବାରେ ଆଉ ଡେରି କରିବେ ନାହିଁ ।

ତା' ହେଲେ, ଏ ପତାକା ଅବଶ୍ୟ ଖଦଡ଼ରେ ତିଆରୀ ହେବ କାରଣ ମୋଟା ଲୁଗା ଜରିଆରେହିଁ ଭାରତକୁ ଲୁଗାପାଇଁ ବିଦେଶୀ ବଜାରର ନିର୍ଭରତାରୁ ଆମେ ମୁକ୍ତ କରି ପାରିବା । ଯଦି ଧର୍ମଗତ ଅନୁଷ୍ଠାନମାନେ ମୋ ଯୁକ୍ତିକୁ ଗ୍ରହଣ କରନ୍ତି ତେବେ ମୁଁ ସେମାନଙ୍କୁ ତାଙ୍କ ଧର୍ମଗତ ପତାକା, ଯଥା ଖିଲାଫତ ପତାକାର ଉପର ବାଁ ପାଖ କଣରେ ସାନ ଜାତୀୟ ପତାକାଟିଏ ଜୋଡ଼ିହେବା ପାଇଁ ପରାମର୍ଶ ଦେବି । ପ୍ରମାଣ ମାପର ପତାକାରେ ଗୋଟିଏ ପୁରାମାପରେ ଅରଟର ଚିତ୍ର ରହିବ ।

(୧୯୪୭ ଅଗଷ୍ଟ ସଂଖ୍ୟା ''ଗ୍ରାମସେବକ''ରୁ ଗୃହୀତ)

# 'ଅଦାଲତରେ ଆସାମୀ ଗାନ୍ଧୀ'

ପାବକ କାନୁନ୍‌ଗୋ

୧୯୨୨ ମସିହା କଥା । ସ୍ୱାଧୀନତା ଆନ୍ଦୋଳନ ଏକ ଅନିଶ୍ଚିତ ଓ ବିଷାଦଗ୍ରସ୍ତ ପର୍ଯ୍ୟାୟରେ ପହଂଚିଥାଏ ଚୌରୀଚୌରା ହତ୍ୟାକାଣ୍ଡରେ ବ୍ୟଥିତ ହୋଇ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଇଥାନ୍ତି । ତାଙ୍କର ଏଭଳି ପଦକ୍ଷେପକୁ କଂଗ୍ରେସର କେତେଜଣ ନେତା ବିରୋଧ କରୁଥାନ୍ତି । ପରିସ୍ଥିତି ଏପରି ହୋଇଥାଏ ଯେ, କଂଗ୍ରେସ କାର୍ଯ୍ୟକାରୀ କମିଟିରେ ତାଙ୍କ ବିରୋଧରେ ନିନ୍ଦା ପ୍ରସ୍ତାବ ଆଣିବାକୁ ଉଦ୍ୟମ ହୋଇଥାଏ । ଏହାର ସୂଚନା ପାଇ ସେ ନିର୍ଦ୍ଦେଶ ଦେଇଥାନ୍ତି କେହି ଯେପରି ନିନ୍ଦା ପ୍ରସ୍ତାବକୁ ବିରୋଧନକରନ୍ତି । ଇଂଲଣ୍ଡର ରାଜପୁତ୍ରଙ୍କ ଭାରତ ଆଗମ ବିରୋଧରେ ପ୍ରତିବାଦ ଜଣାଇ ହରତାଳ ଆୟୋଜନ ବେଳେ ଘଟିଥିବା ହିଂସାକାଣ୍ଡ ମଧ ବାପୁଜୀଙ୍କ ମନୋବଳକୁ କିଛି ଦୂରକୁ ଦୁର୍ବଳ କରି ଦେଇଥାଏ । ଆଗକୁ ସେ କି ପଦକ୍ଷେପ ନେବେ ଓ ସ୍ୱାଧୀନତା ସଂଗ୍ରାମର ରୂପରେଖ କ'ଣ ହେବ ତାହାର ଅସ୍ପଷ୍ଟ ଚିତ୍ର ଲୋକଙ୍କ ଭିତରେ ନିରାଶାଭାବ ସୃଷ୍ଟି କରିଥାଏ । ଏହି ପରିସ୍ଥିତିରେ ଫାଇଦା ନେବାକୁ ଚତୁର ଇଂରେଜଶାସକମାନେ ବାହାରିପଡ଼ିଲେ । ସେମାନେ ବିଚାରିଲେ, ଏତିକିବେଳେ ଯଦି ଗାନ୍ଧିଜୀଙ୍କୁ ଗିରଫକରି ଜେଲ୍ ଭିତରେ ପୂରାଇ ଦିଆଯିବ ତେବେ ସେଭଳି କିଛି ରକ୍ତ ପାତ, ହିଂସାକାଣ୍ଡ ବା ପ୍ରତିବାଦ ହେବନାହିଁ ।

ହଠାତ୍ ଘୋଷଣା କରିଦିଆଗଲା ଯେ, ରାଜଦ୍ରୋହ ଅପରାଧରେ ଗାନ୍ଧିଜୀଙ୍କୁ ୧୯୨୨ ମାର୍ଚ୍ଚ ୧୦ ତାରିଖ ଦିନ ଗିରଫ କରି ନିଆଯାଇଛି । 'ୟଙ୍ଗ ଇଣ୍ଡିଆ'ରେ ପ୍ରକାଶିତ ତାଙ୍କର ତିନୋଟି ଲେଖା ଯୋଗୁଁ ଏପରି ଗୁରୁତ୍ୱର ଅଭିଯୋଗ ଅଣାଯାଇଛି ବୋଲି କୁହାଗଲା । ଏହାର ପ୍ରକାଶକ ଶଙ୍କରଲାଲ ବାଙ୍କରଙ୍କୁ ମଧ ସହ - ଅଭିଯୁକ୍ତ ଭାବରେ ଗିରଫ କରାଗଲା । 'ୟଙ୍ଗ ଇଣ୍ଡିଆ'ର ତିନୋଟି ଲେଖାର ଶୀର୍ଷକ ଥିଲା - (୧) 'ରାଜଭକ୍ତିକୁ

ବିଗାଡ଼ି ଦେବା', (୨) 'ପ୍ରହେଳିକା ଓ ଏହାର ସମାଧାନ', (୩) 'ସିଂହର କେଶରକୁ ଦୋହଲାଇ ଦେବା' । ରାଜଦ୍ରୋହକୁ ଉତ୍ସାହିତ କରିବାଟାକୁ ସେ ନିଜର କର୍ତ୍ତବ୍ୟ ବୋଲି ମନେ କରୁଛନ୍ତି ଓ ଏହାର ପରିଣତି ବିଷୟରେ ସେ ସଚେତନ ବୋଲି ପ୍ରଥମ ଲେଖାଟିରେ ସ୍ପଷ୍ଟ କରି ଦେଇଥିଲେ । ସରକାର ବା ଅନ୍ୟ କାହାରିଠାରୁ ସେ ଏଥିପାଇଁ ଅନୁଗ୍ରହ ଭିକ୍ଷା କରୁନାହାନ୍ତି ବୋଲି ମଧ୍ୟ ସୂଚନା ଦେଇଥିଲେ । ଦ୍ୱିତୀୟ ଲେଖାଟିରେ ସେ କହିଥିଲେ- ସରକାରକୁ ତଡ଼ିଦେବା ବା ବିପର୍ଯ୍ୟସ୍ତ କରିଦେବା ହେଉଛି ଆମର ଲକ୍ଷ୍ୟ । କ୍ଷମତା ମଦରେ ମତ୍ତ ହୋଇ ଓ ଦୁର୍ବଳ ଜାତିକୁ ଶୋଷଣ କରି କରି କୌଣସି ଶକ୍ତି ପୃଥିବୀରେ ବେଶୀଦିନ ତିଷ୍ଠି ରହିପାରିବ ନାହିଁ । ଯଦି ପ୍ରକୃତରେ ଏ ପୃଥିବୀରେ ଈଶ୍ୱର ବୋଲି କେହି ଥାନ୍ତି, ତେବେ ଭୌତିକ ଦୃଷ୍ଟିରୁ ଦୁର୍ବଳ ଜାତିମାନଙ୍କୁ ସଂଗଠିତ ଭାବରେ ଶୋଷଣ କରି ଓ ପାଶବିକ ଶକ୍ତି ପ୍ରଦର୍ଶନ କରି ଆସୁଥିବା ବ୍ରିଟିଶ ସାମ୍ରାଜ୍ୟ ଦିନକାଳ ମଧ୍ୟ ସରି ଆସିବ ।

୧୯୨୨ ମାର୍ଚ୍ଚ ୧୮ ତାରିଖ ଦିନ ଅହମ୍ମଦାବାଦରେ ବିଚାରପତି ବ୍ରୋମ୍‌ଫିଲ୍ଡଙ୍କ ଇଜଲାସରେ (ଫୌଜଦାରୀ ମକଦ୍ଦମା - ୪୫) ଏହି ଐତିହାସିକ ମକଦ୍ଦମାର ବିଚାର ହେଲା । ୧୯୦୫ରେ ଆଇ. ସି. ଏସ୍. ରେ ଯୋଗ ଦେଲାପରେ ବମ୍ବେ ରାଜ୍ୟରେ ହିଁ ସେ ନିଜର ଚାକିରି ଜୀବନ କଟାଇଥିଲେ । ଜଣେ ଭାରତ ବନ୍ଧୁ ଭାବରେ ତାଙ୍କର ଖ୍ୟାତି ଥିଲା ଓ ବ୍ୟକ୍ତିଗତ ଭାବରେ ମହାତ୍ମାଙ୍କ ପ୍ରତି ତାଙ୍କର ଗଭୀର ସମ୍ମାନ ଥିଲା ।

ରାଜଦ୍ରୋହ ଅଭିଯୋଗରେ ଗାନ୍ଧିଜୀଙ୍କର ବିଚାର ହେବ ବୋଲି ପ୍ରଚାରିତ ହେବା ପରେ ଦେଶସାରା ଉତ୍କଣ୍ଠା ଓ ଉଦ୍‌ବେଗର ବାତାବରଣ ସୃଷ୍ଟି ହୋଇଥାଏ । ଅହମ୍ମଦାବାଦରେ ଅଦାଲତ ବାହାରେ ହଜାର ହଜାର ଲୋକ ଜମା ହୋଇଥାନ୍ତି । ଶାନ୍ତି ଭଙ୍ଗ ଆଶଙ୍କା କରି ବହୁ ସଂଖ୍ୟକ ସାମରିକ ଓ ପୋଲିସ୍‌ବାହିନୀ କୋର୍ଟ ଚାରିପାଖ ଜଗି ରହିଥାନ୍ତି । ମଦନ ମୋହନ ମାଲବ୍ୟ, ପଣ୍ଡିତ ନେହେରୁ ଓ ସରୋଜିନୀ ନାଇଡୁ ଅଦାଲତ ଭିତରେ ରହି ପରିସ୍ଥିତି ଲକ୍ଷ୍ୟ କରୁଥାନ୍ତି । ସେହି ଦିନର ଅପୂର୍ବ ଦୃଶ୍ୟକୁ ବର୍ଣ୍ଣନା କରି ସରୋଜିନୀ ନାଇଡୁ ଲେଖିଛନ୍ତି - ''ଆଇନ କହୁଛି ଏହି ଲୋକ ଅପରାଧୀ ଓ ଅଭିଯୁକ୍ତ କିନ୍ତୁ ଖଣ୍ଡିଏ ଛୋଟ ଓ ମୋଟ ଲୁଗା କୌପୀନ ଭଳି ମାରି କ୍ଷୀଣକାୟ, ଅଦମ୍ୟ ଓ ପ୍ରଶାନ୍ତ ମୂର୍ତ୍ତି ସେହି ମହାତ୍ମା ଗାନ୍ଧି ଯେତେବେଳେ ତାଙ୍କ ସହବନ୍ଦୀ ଶଙ୍କରଲାଲ ବାଙ୍କରଙ୍କ ସହିତ ବିଚାରାଳୟ ଭିତରକୁ ପଶିଆସିଲେ ସେତେବେଳେ ସେହି କୋର୍ଟରେ ଥିବା ସମସ୍ତେ ହଠାତ୍ ନିଜର ସମ୍ମାନ ଜଣାଇବା ପାଇଁ ଏକାବେଳେ ଉଠି ଠିଆ ହୋଇପଡ଼ିଲେ । ନିଜେ ବିଚାରପତି ମଧ୍ୟ ଟିକିଏ ଉଠିପଡ଼ି 'ଜଘନ୍ୟ ଅପରାଧରେ ଅଭିଯୁକ୍ତ ଜଣେ ଆସାମୀ'ଙ୍କୁ ସମ୍ମାନ ଜଣାଇଲେ । ବିଚିତ୍ର ସେ ମଣିଷଟିର ଆକର୍ଷଣ ।

ପୂର୍ବରୁ ନିଜକୁ ଜଣେ 'ବୁଣାକାର ଓ ଚାଷୀ' ଭାବରେ ବର୍ଣ୍ଣନା କରିଥିବା ମୋହନ ଦାସ କରମଚାନ୍ଦ ଗାନ୍ଧିଙ୍କର ବିଚାର ଆରମ୍ଭ ହେଲା । ଦେଶବିଦେଶରୁ ବହୁ ସାମ୍ବାଦିକ ଉପସ୍ଥିତ ଥାନ୍ତି । ଆଡ଼ଭୋକେଟ୍ ଜେନେରାଲ ଯେଉଁସବୁ ଅଭିଯୋଗ ବାଢିଛନ୍ତି ସେ ଦୋଷ ସେ କରିଛନ୍ତି ବୋଲି ଗାନ୍ଧିଜୀ ଧୀର ସ୍ୱରରେ କହିଲେ ଯେ, ''ସରକାରଙ୍କ ବିରୋଧରେ ଅଶ୍ରଦ୍ଧା ପ୍ରଚାର କରିବା କାର୍ଯ୍ୟ 'ୟଙ୍ଗ ଇଣ୍ଡିଆ' ସହିତ ସଂପୃକ୍ତ ହେବାର ବହୁପୂର୍ବରୁ ତ ସେ କରି ଆସିଛନ୍ତି । ଚୌରୀ - ଚୌରା, ମାନ୍ଦ୍ରାଜ ଓ ବମ୍ବେରେ ଯେଉଁସବୁ ଘଟଣା ଘଟିଗଲା (ହିଂସାକାଣ୍ଡ) ସେଥିପାଇଁ ସେ ପୂର୍ଣ୍ଣ ଦାୟିତ୍ୱ ସ୍ୱୀକାର କରୁଛନ୍ତି ବୋଲି ଘୋଷଣା କରି କହିଲେ- 'ମୁଁ ଜାଣିଥିଲି ମୁଁ ହାତରେ ନିଆଁ ଧରି ଖେଳୁଛି । ଏଭଳି କରିବାରେ ଯେଉଁ ବିପଦ ଅଛି, ସେ ବିପଦ ଭିତର ଦେଇ ... କରିବା ପାଇଁ ମୁଁ ସ୍ଥିର କରିଥିଲି । ଆଜି ଯଦି ମୋତେ ମୁକ୍ତକରି ଦିଆଯାଏ, ମୁଁ ପୁଣି ଠିକ୍ ସେହି କାମ କରିବି । ତାହା ଯଦି ନକରେ, ମୋ କର୍ତ୍ତବ୍ୟରେ ମୁଁ ହେଳା ...

ବୋଲି ଜାଣିବି । ମୋର ବିଶ୍ୱାସରେ ଏହା ହିଁ ହେଉଛି ଚରମ ଅନୁଶାସନ । ଯେଉଁ ଶାସନ ମୋ ଦେଶରେ ଅପୂରଣୀୟ କ୍ଷତି କରିଛି ବୋଲି ମୁଁ ବିଚାରୁଛି, ସେ ଶାସନ ଆଗରେ ହୁଏତ ମୁଁ ମୁଣ୍ଡ ନୁଆଁଇଦେବି । ଅନ୍ୟ ପନ୍ଥାଟି ହେଉଛି ମୋ ଠାରୁ ଲୋକେ ସତକଥା ଶୁଣିବେ । ଶୁଣିବା ପରେ କ୍ରୋଧରେ ପାଗଳ ଭଳି ହୋଇଯିବେ । ସେ ପରିସ୍ଥିତିକୁ ମୋତେ ସମ୍ଭାଳିବାକୁ ପଡ଼ିବ । ଏହି ଦୁଇଟିରୁ ଗୋଟିଏ ପନ୍ଥା ବାଛିନେବା ମୋର କର୍ତ୍ତବ୍ୟ ହୋଇପଡ଼ିଲା ।

ଅସହଯୋଗ ଆନ୍ଦୋଳନ ବେଳେ ଅହିଂସା ନୀତିରୁ ଓହରିଯାଇ କେତେକ ସ୍ଥାନରେ ଲୋକେ ଯେଉଁଭଳି ଗଣ୍ଡଗୋଳ କଲେ ତାହାକୁ ଲକ୍ଷ୍ୟ କରି ବାପୁଜୀ କହିଲେ - "ମୁଁ ଜାଣେ, ମୋ ଦେଶବାସୀ ବେଳେ ବେଳେ ପାଗଳ ହୋଇ ଯାଉଛନ୍ତି । ସେଥିପାଇଁ ତ ମୁଁ ଏଠିକି ଆସିଛି କଠିନତମ ଶାସ୍ତି ଭୋଗ କରିବା ପାଇଁ । ସାମାନ୍ୟ ଶାସ୍ତି ହେଉ ବୋଲି ମୁଁ କଦାପି ଇଚ୍ଛା କରୁନାହିଁ । ମୋ ପ୍ରତି ଦୟା ପ୍ରଦର୍ଶନ କରାଯାଉ ବୋଲି ମୁଁ ନିବେଦନ କରୁନାହି । ମୋର ଦୋଷକୁ ଲଘୁ ବୋଲି ବିଚାରି ସାମାନ୍ୟ ଶାସ୍ତି ଦେଇ ମୋତେ ଛାଡି ଦିଆଯାଉ ବୋଲି ମୁଁ କହୁନାହିଁ । ମୁଁ ଏଠିକି ଆସିଛି କଠିନତମ ଶାସ୍ତିବରଣ କରିନେବା ପାଇଁ । ସେ ଶାସ୍ତି ଆଗରେ ମୁଣ୍ଡ ନୁଆଁଇଦେବି ବୋଲି ମୁଁ ସ୍ଥିର କରିଛି । ମୁଁ ଜାଣିଶୁଣି ଅପରାଧ କରିଛି ଓ ମୋ ମତରେ ସେଭଳି ଅପରାଧ କରିବା ଜଣେ ନାଗରିକର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । ତେଣୁ ଆଇନରେ ଯେତେ ଅଧିକ ଶାସ୍ତିର ବ୍ୟବସ୍ଥା ଅଛି ସେ ଶାସ୍ତି ମୋତେ ଦିଆଯାଉ !"

ବ୍ରୋମ୍‌ଫିଲ୍‌ଡ଼ ସାହେବ ଧୈର୍ଯ୍ୟର ସହିତ ଗାନ୍ଧିଜୀଙ୍କ କଥା ଶୁଣୁଥାନ୍ତି । କୋର୍ଟରେ ସଂପୂର୍ଣ୍ଣ ନୀରବତା । ଏହାପରେ ସେ ଯାହା କହିଲେ କୌଣସି ଅପରାଧୀ - ଆସାମୀ ବୋଧହୁଏ ଅଦାଲତରେ ଏପରି କହିନାହିଁ । ଗାନ୍ଧିଜୀ ଉଚ୍ଚ ଅଥଚ ନମ୍ର ସ୍ୱରରେ କହିଲେ "ବିଚାରପତି ମହୋଦୟ, ବର୍ତ୍ତମାନ ତ ମୋ ବିବୃତିରେ ମୁଁ କହିବି ଯେ, ଆପଣଙ୍କ ପାଇଁ ଗୋଟିଏ ମାତ୍ର ପଥ ଉନ୍ମୁକ୍ତ ରହିଛି । ଆପଣ ହୁଏତ ବିଚାରପିତ ପଦରୁ ଇସ୍ତଫା ଦେଇଦେବେ ବା ଆପଣଙ୍କର ଯଦି ବିଶ୍ୱାସ ହେଉଛି ଯେ, ଆପଣ ଯେଉଁ ଆଇନ୍ ପ୍ରୟୋଗ କରିବାକୁ ଯାଉଛନ୍ତି ବା ଏହି ଶାସନ ବ୍ୟବସ୍ଥା ଲୋକଙ୍କର ମଙ୍ଗଳ ପାଇଁ ରହିଛି, ତେବେ ମୋତେ ଆପଣ କଠିନତମ ଶାସ୍ତି ଦେବାର ବ୍ୟବସ୍ଥା କରିବେ । ଆପଣଙ୍କର ସେଭଳି ହୃଦୟ ପରିବର୍ତ୍ତନ ହୋଇଯିବ ବୋଲି ମୁଁ ଆଶା କରୁନାହିଁ, କିନ୍ତୁ ବୋ ବିବୃତି ମୁଁ ଶେଷ କଲାବେଳକୁ ଆପଣ ସୂଚନା ପାଇଥିବେ - ମୋ ଅନ୍ତରରେ କି ନିଆଁ ଜଳିଲାରୁ ଜଣେ ବିଚାର ବୁଦ୍ଧି ସମ୍ପନ୍ନ ଲୋକ ଯେଉଁ ଘୋର ବିପଦବରଣ କରନ୍ତି ମୁଁ ସେହି ବିପଦବରଣ କଲି ।"

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଦକ୍ଷିଣ ଆଫ୍ରିକାରେ ସାଧାରଣ କାର୍ଯ୍ୟ ଆରମ୍ଭ କରି ଭାରତ ଫେରିଆସିବା ଭିତରେ ସେ ଇଂରେଜମାନଙ୍କ ସହିତ ସବୁବେଳେ ସହଯୋଗ କରିଥିଲେ ମଧ ଶେଷରେ କିପରି ନିରାଶ ହେଲେ ତାହା ବର୍ଣ୍ଣନା କରି ବାପୁଜୀ କହିଲେ - "ଜନ ସାଧାରଣଙ୍କୁ ଶୋଷଣ କରିବା ପାଇଁ ହିଁ ଭାରତରେ ଆଇନ ଉପରେ ପ୍ରତିଷ୍ଠିତ ସରକାର ଗଢାଯାଇଛି ବୋଲି ଭାରତର ଲୋକେ ବୁଝିପାରୁ ନାହାନ୍ତି । ଆଖିରେ ଦେଖିଦେଲେ ଜାଣି ହୋଇପଡ଼ିବ ଯେ, ବହୁ ଗାଁରେ ନରକଙ୍କାଳ ହିଁ ବୁଲୁଛନ୍ତି । ବ୍ରିଟିଶ ଶୋଷଣର ସାକ୍ଷ୍ୟ ସେମାନେ ଯେଭଳି ଦେଇଛନ୍ତି ତାକୁ ହିସାବ - କିତାବର ଇନ୍ଦ୍ରଜାଲ ବା ବିତଣ୍ଡା ତର୍କ ଦ୍ୱାରା ଅପ୍ରମାଣିତ କରି ହେବନାହିଁ । ମାନବ ଜାତି ବିରୋଧରେ ଏହି ଯେଉଁ ଅପରାଧ କରାଯାଇଛି ଇତିହାସରେ ବୋଧହୁଏ ତାହାର ତୁଳନା ନାହିଁ । ମୋର ବିଶ୍ୱାସ, ଯଦି ଉପରେ ଭଗବାନ ବୋଲି କେହି ଅଛନ୍ତି ତେବେ ଇଂରେଜମାନେ ଦିନେ ନା ଦିନେ ଏହାର କୈଫିୟତ ଦେବାକୁ ବାଧ ହେବେ ।

ମହାତ୍ମା ଏପରି ପ୍ରଭାବଶାଳୀ ଢଙ୍ଗରେ କହୁଥାନ୍ତି ଯେ, ଜଣାପଡୁଥାଏ, ଯେପରି କି ସେ ହିଁ ଇଂରେଜମାନଙ୍କର ବିଚାର କରୁଛନ୍ତି । ତାଙ୍କ ଲିଖିତ

ବିବୃତି ଶେଷ ହୋଇ ଆସିଲା ବେଳକୁ କୋର୍ଟ ଭିତରେ ସ୍ତବ୍ଧ ନୀରବତା ବିରାଜୁଥାଏ । ଶେଷରେ ସେ କହିଲେ - ଯିଏ ଅନ୍ୟାୟ କରୁଛି ତା ସହିତ ଅସହଯୋଗ କଲା ଫଳରେ ଯେଉଁ ଶାସ୍ତି ଭୋଗ କରିବାକୁ ପଡ଼ିବ ସେହି ଶାସ୍ତିକୁ ସ୍ୱେଚ୍ଛାରେ ବରଣ କରିନେବା ହେଉଛି ପ୍ରକୃତ ଅହିଂସାରେ ବିଶ୍ୱାସ ସ୍ଥାପନ । ତେଣୁ ମୁଁ ଆଜି ଏଠାରେ କଠିନତମ ଶାସ୍ତିବରଣ କରିବା ପାଇଁ ଓ ପ୍ରଫୁଲ୍ଲ ଚିତ୍ତରେ ତାକୁ ଗ୍ରହଣ କରିଯିବା ପାଇଁ ଉପସ୍ଥିତ ହୋଇଛି । ମୋ କାର୍ଯ୍ୟ ଦ୍ୱାରା ଜନସାଧାରଣଙ୍କର କ୍ଷତି ଘଟୁଛି ବୋଲି ଯଦି ଆପଣ ବିଚାରୁଛନ୍ତି ତାହାହେଲେ ମୋତେ କଠିନତମ ଶାସ୍ତି ଦିଅନ୍ତୁ ।''

ଗାନ୍ଧୀଜୀଙ୍କ ବକ୍ତବ୍ୟ ପରେ ବିଚାରପତି ବ୍ରୋମ୍‌ଫିଲ୍‌ଡ଼ କହିଲେ ମୁଁ ଯେତେ ଲୋକଙ୍କ ବିଚାର କରିଛି ବା ଭବିଷ୍ୟତରେ ବିଚାର କରିବି ସେମାନଙ୍କଠାରୁ ଆପଣ ସ୍ୱତନ୍ତ୍ର । ଏ କଥାକୁ ଅବଶ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ, କୋଟି କୋଟି ଦେଶବାସୀଙ୍କ ପାଇଁ ଆପଣ ଜଣେ ମହାନ୍ ଦେଶଭକ୍ତ ଓ ପୂଜ୍ୟ ନେତା । କିନ୍ତୁ ଆଇନତ କୌଣସି ବ୍ୟକ୍ତିବିଶେଷଙ୍କୁ ସ୍ୱୀକାର କରେ ନାହିଁ । ଆପଣ ଏହାକୁ ଅନୁଚିତ ମନେ କରିବେ ନାହିଁ ଯେ, ଆପଣ ମିଷ୍ଟର ତିଳକଙ୍କ ଶ୍ରେଣୀର ମୋଲି ମୁଁ ବିଚାରୁଛି ।'' ଲୋକମାନ୍ୟ ତିଳକଙ୍କୁ ୬ ବର୍ଷ କାରାଦଣ୍ଡ ଦିଆଯାଇ ଥିଲା । ଗାନ୍ଧିଜୀଙ୍କୁ ସେହି ୬ ବର୍ଷ ଜେଲ ଦିଆଗଲା । ଲୋକମାନ୍ୟ ତିଳକଙ୍କ ଭଳି ଦେଶସେବକଙ୍କ ସହିତ ତାଙ୍କ ନାମକୁ ସଂପୃକ୍ତ କରିଥିବାରୁ ଗାନ୍ଧିଜୀ ବିଚାରପତିଙ୍କୁ ଧନ୍ୟବାଦ ଦେଇଥିଲେ ଓ ବିଚାରପତି ତାଙ୍କ ପ୍ରତି ଯେଉଁ ଭଦ୍ର ଆଚରଣ ଦେଖାଇଛନ୍ତି ସେଥିପାଇଁ କୃତଜ୍ଞତା ଜଣାଇଥିଲେ ।

ବିଚାର ଶେଷରେ କୋର୍ଟ ଭିତରେ ଓ ବାହାରେ ସମବେତ ଅଗଣିତ ଜନତା ସତେ ଯେପରି କି ବିଜୟ ଉତ୍ସବ ପାଳନ କରିଥିଲେ । ଗାନ୍ଧିଜୀ ଫୁଲରେ ବୁଡ଼ି ଯାଇଥିଲେ । ଲୋକେ ଖୁସିରେ ମିଠେଇ ବାଣ୍ଟିଲେ ।

ପରାଜୟକୁ ବି ଜୟରେ ପରିଣତ କରିବାରେ ତ ଥିଲା ସେହି ଫକିରର ବାହାଦୁରି !!

(୭୨୧୨୯୭ 'ସମୟ'ରୁ ଗୃହୀତ)

# ଉପାସନା ଓ ଉପବାସର ଦିବସଗାନ୍ଧିଜୀ

୧୯୪୭ ଅଗଷ୍ଟ ୧୪ ଗୁରୁବାର ''ଆସନ୍ତା କାଲି ବିଧିବଦ୍ଧ ଭାବରେ ଆମେ ବିଦେଶୀ ଶାସନ କବଳରୁ ମୁକ୍ତ ହେବା । ଏହା ଆମ ପାଇଁ ଏକ ମହାନ୍ ଦିବସ । ଏହାକୁ ଆମେ ନିଶ୍ଚୟ ପାଳନ କରିବା । ଏ ଦିବସକୁ ପ୍ରାର୍ଥନା ଦିବସ ରୂପେ ପାଳନ କରିବାକୁ ମୁଁ ଅନୁରୋଧ କରୁଛି । ଏହା ସହିତ ଉପବାସ ରହିଲେ ଆହୁରି ଭଲ । ସମଗ୍ର ଭାରତବର୍ଷର ମଙ୍ଗଳ ପାଇଁ ପ୍ରାର୍ଥନା କରିବା ଓ ସୂତା କାଟିବା । ହାତବୁଣା ଖଦୀକୁ ଉଭୟ ଧନୀ ଓ ଦରିଦ୍ର ଆଦରର ସହ ବ୍ୟବହାର କରିବେ । ଖଦୀ ଲକ୍ଷ ଲକ୍ଷ ଲୋକଙ୍କୁ କାମ ଦେବ ନଚେତ୍ ସେମାନେ ଉପାସରେ ଦିନ କାଟିବେ ।'' ଆଜି ବାପୁଜୀଙ୍କ ପରାମର୍ଶ ନେବାକୁ ଆସିଥିବା ପଶ୍ଚିମ ବଙ୍ଗର କେତେକ ମନ୍ତ୍ରୀଙ୍କୁ କହିଲେ - ''ଆଜିଠାରୁ ତୁମ୍ଭେମାନେ କଣ୍ଟାର ମୁକୁଟ ପିନ୍ଧିଲ । ଉଦ୍ୟମ ଜାରିରଖ । ସତ୍ୟ ଓ ଅହିଂସା ମାର୍ଗରେ ଚାଲ । ନମ୍ର ହୁଅ । ବ୍ରିଟିଶ ତୁମକୁ ଏକ ସନ୍ଧିକ୍ଷଣରେ ପକାଇ ଯାଇଛନ୍ତି । ଏବେ ତୁମ୍ଭେମାନେ କଷଟି ପଥରରେ ପରିକ୍ଷିତ ହେବ । କ୍ଷମତା ପ୍ରତି ସତର୍କ ରହିବ । କ୍ଷମତା ଦୁର୍ନୀତିଗ୍ରସ୍ତ କରାଇ ଦିଏ । ଏହାର ଯାକଜମକରେ ଛନ୍ଦି ହେବ ନାହିଁ ।''

ଅଗଷ୍ଟ ୧୫ ପ୍ରାର୍ଥନା ସଭାରେ ହିନ୍ଦୁ ମୁସଲମାନ ମିଶି ପ୍ରାୟ ୩୦ହଜାର ଲୋକ ଥିଲେ । ହିନ୍ଦୁ ମାନେ ମସଜିଦକୁ ଓ ମୁସଲ ମାନ ମାନେ ମନ୍ଦିରକୁ ବନ୍ଧୁପରି ଯାଇଥିବାର ଶୁଣି ଗାନ୍ଧିଜୀ ଅତ୍ୟନ୍ତ ପ୍ରୀତ ହୋଇଥିଲେ ।

"ସରକାର ଓ ସରକାରୀ ସଂପତ୍ତିକୁ ମନଇଚ୍ଛା ବ୍ୟବହାର କରିବାକୁ ଯଦି ଲୋକେ ଚାହିଁବେ ଓ ସ୍ୱାଧୀନତା ପାଇଲେ ବୋଲି ତାକୁ ନଷ୍ଟ କରିବେ, ତାହେଲେ ଦାୟିତ୍ୱହୀନ ବ୍ୟବହାରର ପରିଣତି ଭୟାନକ ହବ । ଲୋକେ ଏବେ ସ୍ୱାଧୀନ ହେଲେ । ସ୍ୱାଧୀନତାକୁ କିପରି ବ୍ୟବହାର କରାଯିବ ତାହା ସେମାନେ ଶିଖିବା ଉଚିତ । କେତେକ ଇଉରୋପୀୟ ନାଗରୀକ ଭାରତରେ ବାସ କରୁଛନ୍ତି । ସେମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରାହେବା ଉଚିତ । ଲୋକେ ଜାଣିବା ଉଚିତ ଯେ ସ୍ୱାଧୀନତାରେ ସେମାନେ ନିଜେ କାହାରି ପ୍ରଭୁ ହୋଇ ପାରିବେ ନାହିଁ । ସେମାନେ ନିଜେ ନିଜର ହିଁ ପ୍ରଭୁ ।

ଗାନ୍ଧିଜୀଙ୍କ ପରେ ସୁରାବର୍ଦ୍ଦି କହିଲେ "ହିନ୍ଦୁ ମୁସଲମାନ ବନ୍ଧୁ ହୋଇ ପାରିବେ ନି ବୋଲି ଧାରଣାକୁ ମହାତ୍ମାଗାନ୍ଧି ଭୁଲି ପ୍ରମାଣିତ କରିଦେଇଛନ୍ତି ।" ସମସ୍ତଙ୍କୁ "ଜୟହିନ୍ଦ୍" କହିବା ପାଇଁ ସୁରାବର୍ଦ୍ଦି ଆହ୍ୱାନ ଦେବାମାତ୍ରେ ୩୦ ହଜାର ଲୋକ ଏକ ସଙ୍ଗେ 'ଜୟହିନ୍ଦ' କହି ଗଗନପବନ ପ୍ରକଂପିତ କରିଥିଲେ । । ଗାନ୍ଧିଜୀ ଙ୍କ ଓଠରେ ଟେନାଏ ହସ ଖେଳିଗଲା ।

("ସମାଜ" - ୩୦. ୮. ୯୭)

# ପରାଧୀନ ଜାତିର ଧର୍ମ ନଥାଏ

**ଶହୀଦ ଅଶଫାଂ କୁଲ୍ଲାଖାଁ**

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଇଂରେଜମାନଙ୍କ ବିରୋଧରେ କ୍ରାନ୍ତିକାରୀ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିବା ସ୍ୱାଧୀନତା ସଂଗ୍ରାମୀ ରାମପ୍ରସାଦ 'ବିସ୍ମିଲ', ଚନ୍ଦ୍ରଶେଖର 'ଆଜାଦ ', ରୌସନ ସିଂହ, ରାଜେନ୍ଦ୍ର ଲାହିଡ଼ି, ବନୱାରୀ ଲାଲ, ଭୂପେନ୍ଦ୍ର ସାନ୍ୟାଲ ପ୍ରମୁଖଙ୍କ ସହିତ ମହମ୍ମଦ ଅଶଫାକୁଲ୍ଲା ଖାଁ ଥିଲେ ଅନ୍ୟତମ । ସେ ଉତ୍ତର ପ୍ରଦେଶର ଶାଜାହାପୁରରେ ୧୯୦୦ ମସିହାରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ୨୭ ବର୍ଷ ବୟସରେ ଡିସେମ୍ବର ୧୯ ତାରିଖ ୧୯୨୭ ମସିହାରେ ତାଙ୍କୁ ଫୈଜାବାଦ ଜେଲରେ ଫାଶି ଖୁଣ୍ଟିରେ ଝୁଲାଇ ଦିଆଗଲା ।

ଫାଶିପ୍ରାପ୍ତିର ତିନିଦିନ ପୂର୍ବରୁ ସେ ଜେଲ କୋଠରୀରୁ ଦେଶବାସୀଙ୍କୁ ସମ୍ବୋଧନ କରି ଏକ ପତ୍ର ଲେଖିଥିଲେ, ଯେଉଁଥିରେ ଲେଖାଅଛି - ସେ ଜାତି ଯାହାର ନିଜର କୌଣସି ଧ୍ୱଜା ନାହିଁ, ସେ ଦେଶ ନିଜର ହୋଇ ମଧ୍ୟ ନିଜର ନୁହେଁ, ସେ ଜାତି ପରର ଦୟା ଓ କରୁଣା ଉ[illegible] ବିଚରିଥି ନିଜ ଦେଶବାସୀଙ୍କ ଉପରେ ଅକଥନୀୟ ଅତ୍ୟାଚାର ଓ ଅବର୍ଣ୍ଣନୀୟ ଅନ୍ୟାୟକୁ ମୁଣ୍ଡପାତି ସହି ନେଉଛି, ସେ ଜାତି, ସେ ଦେଶ ପରାଧୀନ ହୋଇ ରହିବ ନାହିଁତ ଆଉ କିଏ ରହିବ ।

ତେଣୁ ସେ କଂଗ୍ରେସୀ ହୁଅନ୍ତୁ କିମ୍ବା ସ୍ୱରାଜ ଅଭିଳାଷୀ, କମ୍ୟୁନିଷ୍ଟ ହୁଅନ୍ତୁ କିମ୍ବା କ୍ରାନ୍ତିକାରୀ, ମୁଲ୍ଲା ହୁଅନ୍ତୁ କିମ୍ବା ପଣ୍ଡିତ ସମସ୍ତେ ପରସ୍ପର ମଧ୍ୟରେ ଏକତା ଓ ସମନ୍ୱୟ ରକ୍ଷା କରି ଆନ୍ଦୋଳନ ଚଳାନ୍ତୁ ଏବଂ ଇଂରେଜ ଶାସନର ଅବସାନ ଘଟାଇ ମାତୃଭୂମିକୁ ପରାଧୀନତା କବଳରୁ ମୁକ୍ତ କରାନ୍ତୁ ।

ମୁଲ୍ଲା ଓ ପଣ୍ଡିତମାନଙ୍କୁ ବୁଝି ରଖିବା ଉଚିତ ଯେ ପରାଧୀନ ଜାତିର କୌଣସି ଧର୍ମ ନ ଥାଏ । ସେ ହିନ୍ଦୁ ହେଉ କିମ୍ବା ମୁସଲମାନ, ତାକୁ ଏକ ପରାଧୀନ ଦେଶରେ ସେତେ ଧର୍ମଗତ ଅଧିକାର ପ୍ରାପ୍ତ ହୋଇ ନ ଥାଏ ଯେତେ ଏକ ସ୍ୱାଧୀନ ଦେଶରେ ପ୍ରାପ୍ତ ହୁଏ । ସୁତରାଂ ହିନ୍ଦୁ ମୁସଲମାନ ପରସ୍ପର ସହିତ ମିଳିମିଶି ଚଳିବା ଉଚିତ: କାରଣ ପରାଧୀନତା ରୂପୀ ଦୁର୍ଭାଗ୍ୟର କରାଳ ଛାୟା ଉଭୟଙ୍କ ଉପରେ ସମାନ ଭାବରେ ପଡ଼ିରହିଛି ।

ସେ ଏପରି ଏକ ସ୍ୱାଧୀନ ଦେଶର ଆକାଂକ୍ଷା କରିଥିଲେ ଯେଉଁଥିରେ ଗରିବ ଶ୍ରେଣୀର ଲୋକେ ସୁଖ, ସ୍ୱାଚ୍ଛନ୍ଦ୍ୟରେ ଜୀବନ ଯାପନ କରିପାରିବେ । ଏକ ନିର୍ଦ୍ଧନ କୃଷକ ଜଣେ ଧନୀ ଜମିଦାର ନିକଟରେ ଅନାୟାସରେ ବସିପାରିବ । ଉଚ୍ଚ, ନୀଚ, ସବର୍ଣ୍ଣ , ଅସବର୍ଣ୍ଣର ଭେଦଭାବ ରହିବ ନାହିଁ ।''

ସେ ଅବଶେଷରେ ଅତି ମାତ୍ରାରେ ଆନନ୍ଦ ପ୍ରକାଶ କରି ଲେଖିଛନ୍ତି ଯେ ସେ ହେଉଛନ୍ତି ପ୍ରଥମ ମୁସଲମାନ ସଂଗ୍ରାମୀ ଯେ ମାତୃଭୂମିର ସ୍ୱାଧୀନତା ସକାଶେ ସଂଗ୍ରାମ କରି ନିଜ ଜୀବନକୁ ବଳିଦାନ ଦେଲେ ।

ଫାଶି ଦେବାର କିଛି ମୁହୂର୍ତ୍ତ ପୂର୍ବେ ଯେତେବେଳେ ତାଙ୍କୁ ତାଙ୍କର ଅନ୍ତିମ ଇଚ୍ଛା ସଂପର୍କରେ ପଚରାଗଲା, ସେ କେବଳ ଏତିକି କହିଲେ ଯେ ମୋର କୌଣସି ଆକାଂକ୍ଷା ଅଛି ତ' କେବଳ ଏତିକି ଯେ କେହି ଜଣେ ମୋ' ମାତୃଭୂମିର ମୁଠାଏ ମାଟି ମୋ 'କଫିନ' ଉପରେ ପକାଇ ଦେଉ ।

-ଶେର ଅଲ୍ଲିଖାନ, ଶେଖ ବଜାର କଟକଙ୍କ

ଲେଖା ❑ (୧୧.୯. ୯୭ ତାରିଖ ''ସମାଜ''ରୁ ଗୃହୀତ ।)

# ଓଡ଼ିଶାରେ ଗାଂଧୀଜୀ

''ଓଡ଼ିଶା ପ୍ରତି ମୋର ସ୍ୱତନ୍ତ୍ର ଆକର୍ଷଣ ଅଛି, କାରଣ ଓଡ଼ିଶା ଭାରତର ଦରିଦ୍ରତମ ରାଜ୍ୟ । ଓଡ଼ିଶାର ଅସ୍ଥି କଙ୍କାଳ ସାର ଉପାସୀ ପିଲାର ଛବି ଯେତେବେଳେ ମୋ ମାନସପଟକୁ ଆସେ ସେତେବେଳେ ମୋର ପଞ୍ଜରା ହାଡ଼ ଭାଙ୍ଗିଗଲା ପରି ମୁଁ ମନେ କରେ । ସେମାନଙ୍କ ଭବିଷ୍ୟତ କ'ଣ ? ବହୁ ପ୍ରାକୃତିକ ସମ୍ପଦରେ ଭରପୁର ଏ ରାଜ୍ୟର ଅର୍ଥନୀତି ବିପର୍ଯ୍ୟସ୍ତ କାହିଁକି ? ଇତିହାସରେ କଳିଙ୍ଗର ଐଶ୍ୱର୍ଯ୍ୟ କଥା କୁହାଯାଇଛି । ଏ କ'ଣ ସେଇ କଳିଙ୍ଗ ରାଜ୍ୟ ! ତଥାପି ଏଠା ଲୋକଙ୍କର ଲଢିବା ପାଇଁ ତାକତ୍ ଅଛି - ଆଗ୍ରହ ବି ଅଛି । ସେଇ ତାକତ ଓ ଆଗ୍ରହକୁ ଏକଜୁଟ୍ କରିବା ପାଇଁ ଓଡ଼ିଶାକୁ ବାରମ୍ବାର ମୋର ଗସ୍ତ....''

ଓଡ଼ିଶା ପାଇଁ ଦରଦୀ ଓ ସଂଗ୍ରାମୀ ଗାନ୍ଧିଙ୍କର ଆନ୍ତରିକତା କେତେ ତାହା ତାଙ୍କର ଉପରୋକ୍ତ ଉକ୍ତିରୁ ସ୍ପଷ୍ଟ ପ୍ରମାଣିତ ହୁଏ । ତାଙ୍କର ଜୀବନକାଳ ମଧ୍ୟରେ ସେ ଓଡ଼ିଶା ଗସ୍ତରେ ଆସି ବିଭିନ୍ନ ସ୍ଥାନରେ ୬୯ ଦିନ ବିତାଇଛନ୍ତି ।

**ପ୍ରଥମ ଗସ୍ତ ୧୯୨୧ ମସିହା ମାର୍ଚ୍ଚ ମାସ**

୨୩ ତାରିଖ - କଟକ ସ୍ୱରାଜ୍ୟ ଆଶ୍ରମରେ ରହଣୀ ।

୨୪ ତାରିଖ -କଟକରେ ଦୁଇଟି ସାଧାରଣ ସଭାରେ ଭାଷଣ ।

୨୫ ତାରିଖ -ଭଦ୍ରକରେ ଗୋଟିଏ ଦିନ ରହଣୀ ।

୨୬ ତାରିଖ - ସତ୍ୟବାଦୀର ବକୁଳବନ ବିଦ୍ୟାଳୟ ପରିଦର୍ଶନ ଓ ସାଧାରଣ ସଭାରେ ଭାଷଣ ।

୨୭ ତାରିଖ -ପୁରୀଯାତ୍ରା ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ ।

୨୯ ତାରିଖ - ବ୍ରହ୍ମପୁର ଯାତ୍ରା ।

**ଦ୍ୱିତୀୟ ଗସ୍ତ ୧୯୨୫ ମସିହା ଅଗଷ୍ଟ ମାସ**

୧୯ ତାରିଖ - ମଧୁବାବୁଙ୍କ ଉତ୍କଳ ଟେନେରୀ ପରିଦର୍ଶନ । ହରିଜନ ମାନଙ୍କଠାରୁ ମାନପତ୍ର ଗ୍ରହଣ । କଟକ କୁଷ୍ଠାଶ୍ରମ ପରିଦର୍ଶନ ଓ ସାଧାରଣ ସଭାରେ ଭାଷଣ ।

୨୦ ତାରିଖ - ସ୍ୱରାଜ୍ୟ ଆଶ୍ରମରେ ସୂତ୍ର ଯଜ୍ଞରେ ଯୋଗଦାନ । ସନ୍ଧ୍ୟାରେ କଲିକତା ଯାତ୍ରା ।

**ତୃତୀୟ ଗସ୍ତ ୧୯୨୭ ମସିହା ଡ଼ିସେମ୍ବରମାସ**

୩ ତାରିଖ - ବ୍ରହ୍ମପୁରରେ ଅଖିଳ ଭାରତୀୟ କଟାଳୀ ସଂଘର ଓଡ଼ିଶା ଶାଖା ପରିଦର୍ଶନ । ବୋଇରାଣୀ, କୋଦଳା, ଓ ଖଲିକୋଟରେ ସାଧାରଣ ସଭାରେ ଭାଷଣ ।

୬ ତାରିଖ - ହରିଜନମାନଙ୍କ ସହିତ ରଘୁନାଥ ମନ୍ଦିର ପରିଦର୍ଶନ - ପତିତପାବନ ମଣ୍ଡଳୀ ତରଫରୁ ମାନପତ୍ର ଗ୍ରହଣ ।

୯ ତାରିଖ - ଗଞ୍ଜାମ ଜିଲ୍ଲାରେ ଖଦୀକାମ । କଠିନ ପରିଶ୍ରମ ଓ ସ୍ୱାସ୍ଥ୍ୟ ଭଙ୍ଗ ଯୋଗୁଁ ବାଣପୁର ଓ ବୋଲଗଡଠାରେ ତିନିଦିନ ବିଶ୍ରାମ ।

୧୨ ତାରିଖ - ବେଗୁନିଆ ସାଧାରଣ ସଭାରେ ଭାଷଣ । ଖୋର୍ଦ୍ଧାରେ ୧୪୮ ଟଙ୍କାର ଏକ ଥଳୀ ଭେଟି ଗ୍ରହଣ ।

୧୩ ତାରିଖ - ପୁରୀ ସ୍ଥିତ ଶ୍ରୀ ବି,ଏନ୍. ରାୟଙ୍କ ସଂଗ୍ରହାଳୟ ପରିଦର୍ଶନ ଓ ସର୍ବସାଧାରଣଙ୍କ ସମ୍ବର୍ଦ୍ଧନା ସଭାରେ ଯୋଗଦାନ ।

୧୪ ତାରିଖ - ବାଲେଶ୍ୱରର ଦୁଇଟି ସରଧାରଣ ସଭାରେ ଭାଷଣ । ଡାକ୍ତରଙ୍କ ପରାମର୍ଶ କ୍ରମେ ବିଶ୍ରାମ ।

୧୭ ତାରିଖ - ଚାରିବାଟିଆ ବନ୍ୟା ସାହାଯ୍ୟ କେନ୍ଦ୍ର ପରିଦର୍ଶନ । ବିଶ୍ରାମ ଓ ଚମ୍ପାପୁର ଯାତ୍ରା ବାତିଲ ।

**ଚତୁର୍ଥ ଗସ୍ତ ୧୯୨୮ ମସିହା ଡିସେମ୍ବର ମାସ**

୨୨ ତାରିଖ - ଝାରସୁଗୁଡ଼ା ଓ ସମ୍ବଲପୁର ୧୭୯୦ ଟଙ୍କା ଚାନ୍ଦା ଗ୍ରହଣ ।

**ପଞ୍ଚମ ଗସ୍ତ ୧୯୩୪ ମସିହା ମଇମାସ**

୫ ତାରିଖ - ଝାରସୁଗୁଡ଼ା ସଭାରେ ଭାଷଣ ।

୬ ତାରିଖ - ସମ୍ବଲପୁରର ୩ଟି ହରିଜନ ଗଳି ଓ କୃଷ୍ଠ କ୍ଲିନିକ ପରିଦର୍ଶନ । ମହାନଦୀ ଶଯ୍ୟାରେ ଏକ ସାଧାରଣ ସଭାରେ ଭାଷଣ । ବାମୁର ଯାତ୍ରା । ଅନୁଗୁଳ ଠାରେ ଏକ ସଭାରେ ଭାଷଣ ।

୭ ତାରିଖ - ମେରାମୁଣ୍ଡଳୀ ଯାଇ ସେଠାରୁ କଟକ ବାଟେ ଟ୍ରେନରେ ପୁରୀଯାତ୍ରା ।

୮ ତାରିଖ - ପୁରୀରେ ହରିଜନ କର୍ମୀଙ୍କ ସହ ଆଲୋଚନା । ଗୋପବନ୍ଧୁ ଦାସଙ୍କ ପ୍ରତିମୂର୍ତ୍ତୀ ଉନ୍ମୋଚନ ଓ ଏହି ଉପଲକ୍ଷେ ଆୟୋଜିତ ସଭାରେ ଉଦ୍‌ବୋଧନ ।

୯ ତାରିଖ -ପୁରୀରୁ ହରେକୃଷ୍ଣପୁର ହରିଜନ ପଦଯାତ୍ରା, ଚନ୍ଦନ ପୁରରେ ସମବେତ ପ୍ରାର୍ଥନା ଓ ଉଦ୍‌ବୋଧନ ।

୧୦ ତାରିଖ -ଚନ୍ଦନପୁ ର ଠାରୁ ସାକ୍ଷୀଗୋପାଳ ଯାତ୍ରା ,କାଦୁଆ ଆଶ୍ରମରେ ଅବସ୍ଥାନ । ସନ୍ଧ୍ୟାରେ ବୀରପୁରୁଷଉମପୁର ଯାତ୍ରା ।

୧୧ ତାରିଖ - ଦାଣ୍ଡ ମୁକୁନ୍ଦପୁର ଓ ପିପିଲି ।

୧୨ ତାରିଖ - ସିଉଳା ଓ ବାଳକାଟି ଧଉଳି ପାହଡ଼ ପରିଦର୍ଶନ ।

୧୩ ତାରିଖ - ସତ୍ୟଭାମାପୁର ଓ ବାଲିଅନ୍ତା ଯାତ୍ରା ।

୧୫ ତାରିଖ - କୁଞ୍ଜବିହାରି ମନ୍ଦିର ଉଦ୍‌ଘାଟନ, ତେଲଙ୍ଗା ପେଣ୍ଠକୁ ଯାତ୍ରା ।

୧୬ ତାରିଖ - କାଜିପାଟଣା ଓ କଟକ ଦୁଇଟି ସାଧାରଣ ସଭାରେ ଭାଷଣ ।

୨୨ ତାରିଖ - ଚମ୍ପାପୁର ଓ ଭେଡ଼ା ।

୨୩ ତାରିଖ - ଲେଖନପୁର ଓ ସତ୍ୟଭାମାପୁର ।

୨୪ ତାରିଖ - ଗୋପିନାଥ ପୁର ଦେଇ ବହୁକୁଦ ।

୨୫ ତାରିଖ - ପାଟପୁର ନିଶ୍ଚିନ୍ତକୋଇଲି ।

୨୬ ତାରିଖ - କାକଟିଆ ।

୨୭ ତାରିଖ - ସଲାର ।

୨୮ ତାରିଖ - ଭାଗବତ ପୁର ବାଟେ କେନ୍ଦ୍ରାପଡ଼ା ଯାତ୍ରା ଏବଂ ସେଠାରେ ଭାଷଣ ।

୨୯ ତାରିଖ -[illegible] ।

୩୦ ତାରିଖ - [illegible]ପୁର୍ ଓ ଅଙ୍ଗେଶପୁର ।

୩୧ ତାରିଖ - ଯାତ୍ରା ଓ ରହଣୀ ।

୭ନ

ଜୁନମାସ

୧ ତାରିଖ - ପୁରୁଷୋତ୍ତମପୁର ଓ କବୀରପୁର ।

୨ ତାରିଖ - ବୁଢ଼ାଘାଟରୁ ଯାଜପୁର ।

୩ ତାରିଖ - ମଞ୍ଜୁରୀ, ଭଣ୍ଡାରୀ ପୋଖରୀ ଓ ତୋଡ଼ଙ୍ଗ । ୪ ରୁ ୮ ତାରିଖ ପର୍ଯ୍ୟନ୍ତ - ଗରୁଡ଼ପୁରେ ଅବସ୍ଥାନ ।

ଷଷ୍ଠ ଗସ୍ତ ୧୯୩୮ ମସିହା ମଇମାସ ।

୨୫ ଠାରୁ ୩୧ ତାରିଖ ପର୍ଯ୍ୟନ୍ତ - ବେରବୋଇ ଠାରେ ଗାନ୍ଧୀ ଓ କସ୍ତୁରବାଙ୍କ ଅବସ୍ଥାନ । (ଗାନ୍ଧୀ ସେବାସଂଘ ବୈଠକ)

ସପ୍ତମ ଓ ଶେଷ ଗସ୍ତ

୨୦ ତାରିଖ ଜାନୁୟାରୀ ୧୯୪୬ ମସିହାରେ କଟକରେ ଏକ ସଭାରେ ଓଡ଼ିଶାବାସୀଙ୍କୁ ଉଦ୍‌ବୋଧନ ଶେଷ ଭାଷଣ । ପରେ ରେଳଯାତ୍ରା ସମୟରେ ବିଭିନ୍ନ ଷ୍ଟେସନରେ ରହି ଉପସ୍ଥିତ ଜନତାଙ୍କୁ ଉଦ୍‌ବୋଧନ ।

(ଉତ୍କଳ ଗାନ୍ଧୀ ସ୍ମାରକ ନିଧି ସୌଜନ୍ୟରୁ ପ୍ରାପ୍ତ)



## ଆଟମ୍‌ବୋମା ଠାରୁ ଅବିମିଶ୍ର ଅହିଂସା ଅଧିକ ଶକ୍ତିମାନ

ଗାନ୍ଧୀଜୀ

ମେଜର ଜେନେରାଲ କାରିୟାପ୍ପା ନିମ୍ନମତେ କହିଥିବାର କାଗଜରେ ବାହାରିଛି -

‘ଭାରତର ବର୍ତ୍ତମାନ ପରିସ୍ଥିତିରେ ଅହିଂସା କୌଣସି କାମକୁ ପାଇବ ନାହିଁ, କେବଳ ଗୋଟିଏ ଶକ୍ତିଶାଳି ସୈନ୍ୟଦଳ ହିଁ ଭାରତକୁ ପୃଥିବୀର ଅନ୍ୟତମ ଶ୍ରେଷ୍ଠ ରାଷ୍ଟ୍ର କରିପାରିବ ।’

ମୋର ଆଶଙ୍କା ଯେ, ଅନ୍ୟ ଅନେକ ବିଶେଷଜ୍ଞଙ୍କ ଭଳି ସେନାପତି କାରିୟାପ୍ପା ଅଥଳ ପାଣିକୁ ଗୋଡ଼ ଖସେଇ ଦେଇଛନ୍ତି ଓ ଅହିଂସା ସମ୍ବନ୍ଧରେ ଏକ ଗୁରୁତର ଭ୍ରାନ୍ତ ଧାରଣାରେ ପଡ଼ିଯାଇଛନ୍ତି । ଅହିଂସା କିପରି ଭାବରେ  କାର୍ଯ୍ୟ କରେ ସେ ସମ୍ବନ୍ଧରେ ତାଙ୍କର ଜ୍ଞାନ ସ୍ୱଭାବତଃ ଉପରଠାଉରିଆ ହୋଇଥିବାର କଥା । ସେ ବିଷୟରେ ମୁଁ ନିଜକୁ, ଖୁବ୍ ଅସମ୍ପୂର୍ଣ୍ଣ ହେଲେ ମଧ୍ୟ ଜଣେ ବିଶେଷଜ୍ଞ ବୋଲି ମନେକରେ ।ପରମ ତତ୍ତ୍ୱ ଦୃଷ୍ଟିରୁ ଦେଖିବାକୁ ଗଲେ ମୋ ଜୀବନରେ ଅହିଂସାର ପରିପୂର୍ଣ୍ଣ ବିକାଶ ହେବାକୁ କେତେଦୂର ବାକି ଅଛି ତାହା ମୁଁ ଅହିଂସାକୁ ଯେତିକି କାର୍ଯ୍ୟରେ ପ୍ରୟୋଗ କରୁଛି ସେତିକି ବେଶୀ ଅନୁଭବ କରୁଛି । ଜଗତରେ ମନୁଷ୍ୟର ଯାହା ଶ୍ରେଷ୍ଠତମ କର୍ତ୍ତବ୍ୟ ସେ ସମ୍ବନ୍ଧରେ ତାଙ୍କର ଏହି ଅଜ୍ଞତା ଯୋଗୁଁହିଁ ସେ କହିଛନ୍ତି ଯେ ଏ ଯୁଗରେ ହିଂସା ସାମନାରେ ଅହିଂସାର କିଛି ସ୍ଥାନ ନାହିଁ । କିନ୍ତୁ ମୁଁ ଏ କଥା କହିବାକୁ ସାହସ କରୁଛି ଯେ ଏ ଆଟମ୍ ବୋମା ଯୁଗରେ ଅବିମିଶ୍ର ଅହିଂସାହିଁ ଏକମାତ୍ର ଶକ୍ତି ଯାହା ହିଂସାର ସବୁ କାରସାଦି ବ୍ୟର୍ଥ କରି ପାରିବ । ସେନାପତି ମହାଶୟ ଏଇକ୍ଷଣି ସାମରିକ ବିଜ୍ଞାନ ଓ କୌଶଳରେ ତାଙ୍କର ଗୁରୁ ଇଂରେଜଙ୍କ ଠାରୁ କୌଣସି ସହାୟତା ପାଉ ନାହାନ୍ତି ଓ ନ ପାଇବାର କଥା । ଏ ଅବସ୍ଥାରେ ସେ ଆପଣା ସାମର୍ଥ୍ୟର ସୀମା ଟପି ନ ଥିଲେ ସୁନ୍ଦର ହୋଇଥାନ୍ତା । ସେନାପତି କାରିୟାପ୍ପାଙ୍କଠାରୁ ମଧ୍ୟ ବଡ଼ ବଡ଼ ସେନାପତି ମାନେ ଏ କଥା ଖୋଲାଖୋଲି ଭାବରେ ମାନିନିବାର ବିଜ୍ଞତା ଓ ବିନୟ ଦେଖେଇଛନ୍ତି ଯେ ଅହିଂସା ଶକ୍ତିର ସାମର୍ଥ୍ୟ ବିଷୟରେ କହିବାର ଅଧିକାର ତାଙ୍କର ନାହିଁ । ସାମରିକ ବିଜ୍ଞାନ ଓ କୌଶଳ ତ ତାର ଆପଣା ଜନ୍ମମାଟି ରେ କିପରି ଦେଉଳିଆ ହେଇଗଲାଣି ତାର ଦୁଃଖଦାୟକ ଦୃଶ୍ୟ ଆମେ ଦେଖୁଛୁ । ଯେ ଶେୟାର ମାର୍କେଟରେ ଜୁଆ ଖେଳି ଦେଉଳିଆ ହେଇଛି, ସେ ସେହି ପ୍ରକାରର ଜୁଆ ଖେଳର ପ୍ରଶଂସା ଗାନ କରିବା ଠିକ୍ କି ?

❑ ୭. ୧୧. ୪୭

(ଏ ଶିରୋନାମାଟି ଆମର ୧୯୪୭ ଡିସେମ୍ବର ସଂଖ୍ୟା “ଗ୍ରାମସେବକ”ରୁ ଗୃହୀତ)

# ଗାନ୍ଧିଯୁଗର ସାମ୍ବାଦିକତା

ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମରେ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକ୍ରମ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଆଇନ ଅମାନ୍ୟ ଆନ୍ଦୋଳନ ପରେ ବାପୁଜୀ ସ୍ଥିର କଲେ ଯେ ହିନ୍ଦୁ ଧର୍ମର ଏହି କଳଙ୍କ ବିରୋଧରେ ଜନମତ ସୃଷ୍ଟି ପାଇଁ ସେ ଦେଶସାରା ଗସ୍ତ କରିବେ । ୧୯୩୩ ନଭେମ୍ବରରୁ ୱାର୍ଦ୍ଧାଠାରୁ ଆରମ୍ଭ ହୋଇଥିବା ଏହି ଯାତ୍ରା ୧୯୩୪ ଅଗଷ୍ଟ ମାସରେ ଶେଷ ହେଲା । ଏହି ଦଶମାସ ଭିତରେ ୧୨ ଶହ ମାଇଲ (ସେଥିରୁ ୧୫୬ ମମାଇଲ ପାଦରେ ଚାଲି ଚାଲି) ବୁଲି ହଜାର ହଜାର ନରନାରୀଙ୍କୁ ତାଙ୍କର ବାର୍ତ୍ତା ଶୁଣାଇଥିଲେ ଓ ହରିଜନ ପାଣ୍ଠି ପାଇଁ ଦଶଲକ୍ଷରୁ ଅଧିକ ଟଙ୍କା ସଂଗ୍ରହ କରିଥିଲେ ।

ଏହି ହରିଜନ ଯାତ୍ରାବେଳେ ଓଡ଼ିଶାର ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ତାଙ୍କର ପଦଯାତ୍ରାକୁ ସେ ପ୍ରଚଣ୍ଡ ପଦଯାତ୍ରାର ନାମ ଦେଇଥିଲେ । ୧୯୩୪ ମଇ ୫ ତାରିଖରେ ସମ୍ବଲପୁରରେ ପହଞ୍ଚି ସେଠାରୁ ଅନୁଗୁଳ ଓ ମେରାମଣ୍ଡଳୀ ଦେଇ ପୁରୀରେ ପହଞ୍ଚିଥିଲେ ଓ ସେହିଠାରେ ଘୋଷଣା କରିଥିଲେଯେ ଏଣିକି ସେ ପାଦରେ ଚାଲି ଚାଲି ବୁଲିବେ ।

ସେତିକିବେଳେ ଅସ୍ପୃଶ୍ୟତା କଳଙ୍କ ଦୂର କରିବା ପାଇଁ ସବୁଠାରୁ ବଳି ଆବେଗମୟ ନିବେଦନ ସେ ଉତ୍କଳ ଭୂମିରୁ ହିଁ କରିଥିଲେ ।

ଏହି ଐତିହାସିକ ପଦଯାତ୍ରା ବିଷୟରେ ଜାଣିବା ପାଇଁ ଦେଶ ବିଦେଶରେ ପ୍ରବଳ ଆଗ୍ରହ ସୃଷ୍ଟି ହୋଇଥିଲା । ଓଡ଼ିଶାରେ ଗଣମାଧ୍ୟମ କହିଲେ ସେତେବେଳେ 'ସମାଜ' ହିଁ ବୁଝାଉଥାଏ । ପଦଯାତ୍ରାର ଟିକି ନିକି ବିବରଣୀ ସଂଗ୍ରହ କରି ପ୍ରକାଶ କରିବାର ଦାୟିତ୍ୱ 'ସମାଜ' ସଂପାଦକ ପଣ୍ଡିତ ଲିଙ୍ଗରାଗ ମିଶ୍ର ଅର୍ପଣ କଲେ ବିନୋଦ କାନୁନଗୋଙ୍କ ଉପରେ । ବୃତ୍ତି ପାଇ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଦଶମ ଶ୍ରେଣୀରେ ପଢୁଥିବାବେଳେ ୪ ବର୍ଷ ତଳେ ସେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ସେ ହେଲେ 'ସମାଜ'ର ସ୍ୱତନ୍ତ୍ର ସମ୍ବାଦଦାତା । ଏହା ସାଙ୍ଗକୁ ବାପୁଙ୍କ ପାଖେ ପାଖେ ରହି ତାଙ୍କର 'ଦେହ ରକ୍ଷଣ' ଦାୟିତ୍ୱ ତୁଲାଇବା ପାଇଁ ଗୋପବନ୍ଧୁ ଚୌଧୁରୀ ତାଙ୍କୁ ନିର୍ଦ୍ଦେଶ ଦେଲେ । ଗାନ୍ଧିଜୀଙ୍କୁ ଅତି ନିକଟରୁ ଦେଖୁଥିବାରୁ ତାଙ୍କ ସହିତ ବହୁ ବିଶିଷ୍ଟ ବ୍ୟକ୍ତି ଦେଖା କରି ଯେଉଁ ଆଲୋଚନା କରିଥିଲେ ତାହାର ବିବରଣୀ ବିନୋଦ ବାବୁ ସମାଜକୁ ପଠାଉ ଥାଆନ୍ତି । ଏପରି ହେଲା ଯେ ଗୋଟିଏ ସମ୍ବାଦ ସରବରାହ ସଂସ୍ଥାର ସମ୍ବାଦିକ ଗାନ୍ଧିଜୀଙ୍କ ପାଖରେ ଆପତ୍ତି କଲେ ବିନୋଦ ଆପଣଙ୍କଠାରୁ ସବୁକଥା ଜାଣି ''ସମାଜ''କୁ ପଠାଇ ଦେଉଛି, ଆମେ କିଛି ଜାଣି ପାରୁନାହୁଁ । ଗାନ୍ଧିଜୀ ଠୋ ଠୋ ହୋଇ ହସିଦେଇ କହିଲେ ମୁଁ ବିନୋଦକୁ କହିବି ସେ ତୁମକୁ ମଧ୍ୟ କିଛି ଖବର ଦେବ ।

୧୯୩୪ ମଇ ମାସର କଥା । ଗାନ୍ଧିଜୀ ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ହରିଜନ ପଦଯାତ୍ରାରେ ଚାଲି ଥାଆନ୍ତି । ସମାଜକୁ ପଦଯାତ୍ରାର ଟିକିନିକି ବିବରଣୀ ପଠାଇବାର ଦାୟିତ୍ୱ ଥାଏ ବିନୋଦ କାନୁନଗୋଙ୍କ ଉପରେ । ବାଟରେ କେତେଜଣ ପଣ୍ଡିତ ବାପୁଜିଙ୍କ ସହିତ ହିନ୍ଦୁ ଧର୍ମର ଅସ୍ପୃଶ୍ୟତା ଓ ଗୋମାଂସ ଭକ୍ଷଣ ସଂପର୍କରେ ଆଲୋଚନା କରୁଥାନ୍ତି । ଜଣେ ବିଶିଷ୍ଟ ହିନ୍ଦୁ ନେତାଙ୍କ ସଂପର୍କରେ ଗାନ୍ଧୀ ଯାହା କହିଲେ ବିନୋଦ ବାବୁ ତାହାକୁ 'ସମାଜ'କୁ ପଠାଇଦେଲେ । ସମ୍ବାଦଟି ଉପରେ 'ସମାଜ' ସଂପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଦୃଷ୍ଟି ପଡ଼ିଲାବେଳେ ଆପତ୍ତିଜନକ ହେବ ବୋଲି ଭାବି ହିନ୍ଦୁ ନେତାଙ୍କ ନାମଟି ସେ ରିପୋର୍ଟରୁ ଉଠାଇ ଦେଇଥିଲେ । ପଦ ଯାତ୍ରାବରୀରେ ପହଞ୍ଚିଲାବେଳେ ପଣ୍ଡିତ ମିଶ୍ର ବାପୁଜୀଙ୍କୁ ସାକ୍ଷାତ କରି କହିଲେ - ''ବିନୋଦ ବୋଧହୁଏ ଆପଣଙ୍କ କଥା ଭୁଲ ଶୁଣିଦେଲେ'' । ବାପୁଜୀ କହିଲେ - ନା ସେ ଠିକ୍ ଲେଖିଛି । ମୁଁ ସେହି ନାମ କହିଥିଲି । ମୁଁ

ତା ଜାଣି ନଥିଲି ଯେ ମୋ କଥାଟି ଶୀଘ୍ର କାଗଜକୁ ଚାଲିଯିବ । ସଂପୂର୍ଣ୍ଣ ଘରୋଇ ପରିବେଶ ଭିତରେ କହିଥିଲି । ବହୁ ଲୋକଙ୍କ ଉପସ୍ଥିତିରେ ଯେତେବେଳେ କହିଲେ ବିନୋଦ ବିଚାରିଲା ନାଟା ଦେଇଦେବା କିଛି ଦୋଷ ନାହିଁ । ଏଣିକି ସେ ଯେତେବେଳେ ସମ୍ବାଦ ପଠାହେବ ସେ ସାବଧାନ ହେବ । ଦରକାର ହେଲେ ମୋତେ ପଚାରିଦେବ । ଏହା ହିଁ ଥିଲା ଗାନ୍ଧି ଯୁଗୀୟ ସାମ୍ବାଦିକତା । (୨୧. ୬. ୯୭ ''ସମାଜ'')



# ମହୋଦଧିରେ ମହାତ୍ମାଙ୍କ ପୂତ ଚିତାଭସ୍ମ ବିସର୍ଜନ

## ସମୁଦ୍ର କୂଳରେ ବିରାଟ ଲୋକସମାଗମ ଓ ମହାତ୍ମାଙ୍କ ପ୍ରତି ଶେଷ ଶ୍ରଦ୍ଧାଞ୍ଜଳି

## ଲାଟସାହେବ ଡକ୍ଟର କାଟଜୁ ଭସ୍ମନେଇ ସମୁଦ୍ରରେ ପକାଇଲେ

### ପୁରୀରେ ଅଭୂତପୂର୍ବପଟୁଆର ଓ ଜନସମାଗମ

ପୁରୀ, ତା ୧୨. ୨. - ମହାତ୍ମାଗାନ୍ଧିଙ୍କ ପୂତ ଚିତାଭସ୍ମ ଆଜି ଉପରବେଳା ୫ଟା ବେଳେ ପ୍ରୟାଗର ତ୍ରିବେଣୀ ସଙ୍ଗମରେ ବିସର୍ଜନ ହେବା ସଙ୍ଗେ ସଙ୍ଗେ ଭାରତର ସମସ୍ତ ତୀର୍ଥ କ୍ଷେତ୍ର, ପୁଣ୍ୟତୋୟା ନଦୀ ଓ ମହୋଦଧିରେ ମଧ ସେହିଭଳି କିଛି କିଛି ବିସର୍ଜନ ଦିଆଯାଇଥିଲା । ତଦନୁଯାୟୀ ଠିକ୍ ୫ଟା ବେଳକୁ ପୁରୀରେ ସର୍କିଟ କୋଠି ନିକଟରେ ମହୋଦଧିରେ ମହାତ୍ମାଙ୍କ ଚିତାଭସ୍ମ ଓଡ଼ିଶା ଲାଟମାନ୍ୟବର କାଟଜୁ ବିସର୍ଜନ କରିଥିଲେ । ବୈଦିକ ରୀତିରେ ଏହି ବିସର୍ଜନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏକ ବିରାଟ ଜନତା ସମୁଦ୍ରକୂଳରେ ଆକୁଳ ନୟନରେ ଏହି ଅନୁଷ୍ଠାନ ଦେଖୁଥାନ୍ତି ଓ ତାଙ୍କର ପ୍ରିୟ ମହାତ୍ମାଙ୍କ ଚିତାଭସ୍ମ ଉଦ୍ଦେଶ୍ୟରେ ଶେଷ ପ୍ରଣତି କରୁଥାନ୍ତି ।

### ପୁରୀରେ ବିରାଟ ପଟୁଆର

କଟକରୁ ଚିତାଭସ୍ମ ଘେନି ଲାଟସାହେବ, ମାନ୍ୟବର ମନ୍ତ୍ରୀ, କଂଗ୍ରେସ ନେତା ଓ ଅନେକ ଲୋକ ସ୍ୱତନ୍ତ୍ର ରେଳ ଯୋଗେ ଆସିଥିଲେ ଉକ୍ତ ରେଳଗାଡ଼ି ଗୋଟାଏ ପନ୍ଦର ମିନିଟରେ ପୁରୀ ଷ୍ଟେସନରେ ପହଞ୍ଚିଥିଲା । ପୁରୀରେ ସେତେବେଳକୁ ଆକାଶ ମେଘାଚ୍ଛନ୍ନ ଥାଏ । ରାସ୍ତାଯାକ ମହାତ୍ମାଗାନ୍ଧିଙ୍କି ଜୟ ନାଦରେ 'ଆକାଶ ଫାଟି ପଡୁଥାଏ ଓ ମହତ୍ମାଙ୍କ ପ୍ରିୟ ଭଜନ 'ରଘୁପତି ରାଘବ ରାଜାରାମ ପତିତ ପାବନ ସୀତାରାମ' ବୋଲାଯାଉଥାଏ । ପୁରୀ ଷ୍ଟେସନ ମଧକୁ ରେଳଗାଡ଼ି ଆସିଲାବେଳକୁ ମହାତ୍ମା ଗାନ୍ଧିଙ୍କି ଜୟ ନାଦରେ ଚାରିଆଡ଼ କମ୍ପିଉଠିଲା । ଆଚାର୍ଯ୍ୟ ହରିହର ଦାସ ପୁରୀ ଜିଲ୍ଲା କଂଗ୍ରେସ କମିଟି ସଭାପତି ପଣ୍ଡିତ ଲୋକନାଥ ମିଶ୍ର (ପଙ୍କବାବୁ), ଜିଲା ବୋର୍ଡ଼ ଚେୟାରମ୍ୟାନ ଶ୍ରୀଯୁକ୍ତ ଜଗନ୍ନାଥ ମିଶ୍ର ଓ ଅନ୍ୟାନ୍ୟ କଂଗ୍ରେସ ନେତା ଓ ବିଶିଷ୍ଟ ବ୍ୟକ୍ତି, ପୁରୀର ଗଜପତି ରାଜା ଓ ଉଚ୍ଚ ଅଫିସର, ପୋଲିସ ହାକିମ ଓ ଅସଂଖ୍ୟ ଜନତା ଶୃଙ୍ଖଳିତ ଭାବରେ ଅପେକ୍ଷା କରି ରହିଥାନ୍ତି । ଜାତୀୟ ପତାକା ଓ ଶୁଭ୍ର ଖଦୀରେ ସୁସଜ୍ଜିତ ଏକ ଟ୍ରକ ଉପରେ ଏକ ଉଚ୍ଚ କାଷ୍ଠାସନ ଉପରେ ମହାତ୍ମା ଗାନ୍ଧିଙ୍କର ଏକ ସୁସଜ୍ଜତ ଓ ପୁଷ୍ପମାଳା ଭୂଷିତ ପ୍ରତିକୃତି ସ୍ଥାପିତ ହୋଇଥାଏ । ମହାତ୍ମାଗାନ୍ଧିଙ୍କି ଜୟ ଧ୍ୱନି ମଧରେ ମହାତ୍ମାଙ୍କ ଚିତାଭସ୍ମ ଥିବା ପାତ୍ରଟି ରେଳଗାଡ଼ିରୁ ଉକ୍ତ ଟ୍ରକ ଉପରକୁ ନିଆଯାଇଥିଲା ଓ ତା ପାଖରେ ଲାଟସାହେବ ମାନ୍ୟବର କାଟଜୁ, ପ୍ରଧାନମନ୍ତ୍ରୀ ମାନ୍ୟବର ମହତାବ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ମାନ୍ୟବର ନବକୃଷ୍ଣ ଚୌଧୁରୀ, ମାନ୍ୟବର କାନୁନଗୋ, ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ପଣ୍ଡିତ ପ୍ରାଣକୃଷ୍ଣ ପଢିଆରୀ, ପୁରୀଜିଲ୍ଲା କଂଗ୍ରେସ କମିଟି ସଭାପତି ପଣ୍ଡିତ ଲୋକନାଥ ମିଶ୍ର ପ୍ରମୁଖ ଥାନ୍ତି । ଚିତାଭସ୍ମ ଥିବା ପାତ୍ର ଟ୍ରକ ଉପରକୁ

ଗଲାବେଳେ ଗୁର୍ଖା ମିଲାଟାରୀ ପୋଲିସ ସାମରିକ ବିଧିରେ ସମ୍ମାନ ପ୍ରଦର୍ଶନ କରିଥିଲେ । ସେତେବେଳକୁ ସମଗ୍ର ଷ୍ଟେସନ ଅଞ୍ଚଳ ଲୋକାରଣ୍ୟ ହୋଇଯାଇଥାଏ । ଏକ ବିରାଟ ପଟୁଆରରେ ଚିତାଭସ୍ମକୁ ବଡ଼ଦାଣ୍ଡ ବାଟେ ସିଂହଦ୍ୱାର ଓ ସେଠାରୁ ସର୍କିଟ କୋଠି ନିକଟସ୍ଥ ସମୁଦ୍ର କୂଳକୁ ନିଆଯାଇଥିଲା । ପ୍ରାୟ ୩୦ ହଜାର ପର୍ଯ୍ୟନ୍ତ ଲୋକ ଏହି ପଟୁଆରରେ ଚାଲିଥାନ୍ତି । ଗୁର୍ଖା ପୋଲିସ ଫୌଜ ଓ ସାଧାରଣ ପୋଲିସ ଫୌଜ ଛଡ଼ା ସାଧାରଣ କର୍ମଚାରୀ ଓ ଲୋକ ବହୁସଂଖ୍ୟାରେ ଏଥିରେ ଯୋଗ ଦେଇଥିଲେ । ପାଗ ଭଲ ହୋଇଥାଏ । ବାଟ ଯାକ ଗୋଲାପଫୁଲ ପାଖୁଡ଼ା ଓ ଅନ୍ୟଫୁଲ ଟ୍ରକ ଉପରେ ବୃଷ୍ଟି ହେଉଥାଏ ଓ ମହାତ୍ମା ଗାନ୍ଧିଙ୍କି ଜୟ ନାଦରେ ଚାରିଆଡ଼ କମ୍ପୁଥାଏ । ସମଗ୍ର ପୁରୀ ସହରର ସମସ୍ତ ଦୋକାନ ବଜାର ବନ୍ଦ ଥାଏ ଓ ସମଗ୍ର ପୁରୀ ସହର ଯେପରି ବଡ଼ ଦାଣ୍ଡକୁ ଉଠି ଆସିଛନ୍ତି ଏହିଭଳି ମନେ ହେଉଥାଏ । ବିରାଟ ଲୋକ ସୁଅ ବଡ଼ଦାଣ୍ଡରେ ସମୁଦ୍ର ଅଭିମୁଖେ ଚାଲିଥାନ୍ତି ।

ସମୁଦ୍ର କୂଳରେ ପହଞ୍ଚିଲା ପରେ ବିପୁଳ ଜୟଧ୍ୱନି ମଧ୍ୟରେ ଚିତାଭସ୍ମ ପାତ୍ରକୁ ଟ୍ରକରୁ ନେଇ ଏକ ସୁସଜ୍ଜିତ ମଞ୍ଚା ଉପରେ ରଖା ଯାଇଥିଲା । ସଭା ସ୍ଥଳ ଜାତୀୟପତାକା ଦ୍ୱାରା ସୁନ୍ଦର ଭାବରେ ସଜ୍ଜିତ କରାଯାଇଥିଲା । ଆକାଶ ଧୀର ଓ ଶାନ୍ତ ଥିଲା । ଏକ ଶୀତଳ ବାୟୁପ୍ରବାହ ଚାରିଆଡ଼େ ଶାନ୍ତିର ବାର୍ତ୍ତା ପ୍ରଚାର କରୁଥାଏ । ପ୍ରାୟ ୨୦ ହଜାର ସରିକି ପୁରୁଷ ସ୍ତ୍ରୀ ବାଳକବାଳିକା ବାଲିରେ ଜମା ହୋଇ ଏହି ଶେଷ ବିସର୍ଜନ ଉତ୍ସବ ଦେଖୁଥାନ୍ତି । ନିଖିଳ ଭାରତ ରେଡ଼ିଓର କଟକ ଷ୍ଟେସନ ପକ୍ଷରୁ ଉକ୍ତ ଉତ୍ସବର ବିବରଣୀ ଶୁଣାଇବା ପାଇଁ ବ୍ୟବସ୍ଥା ହୋଇଥିଲା ।

ପ୍ରଥମେ ସମବେତ ପ୍ରାର୍ଥନା ହୋଇଥିଲା । ଗୀତା, କୋରାନ, ବାଇବେଲ ଓ ଗ୍ରନ୍ଥସାହେବ ପାଠ ହେଲାପରେ ଭଜନ ଓ ରାମଧୁନ ଗାନ ହୋଇ ଥିଲା । ତାପରେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ପୂତଚିତାଭସ୍ମ ପାତ୍ର ଉପରେ ଶେଷ ପୁଷ୍ପମାଲ୍ୟ ଦିଆଯାଇଥିଲା । ପୁରୀ ଓ ଉତ୍କଳର ଅନ୍ୟାନ୍ୟ ଅଞ୍ଚଳରୁ ଶତାଧିକ ଅନୁଷ୍ଠାନ ପକ୍ଷରୁ ପୁଷ୍ପମାଲ୍ୟ ଦିଆଯାଇଥିଲା । ମାନ୍ୟବର କାନୁନଗୋ ଠିଆ ହୋଇ ଫୁଲମାଳ ସଜାଡ଼ି ରଖୁଥାନ୍ତି ଓ ଯେତେବେଳେ ଫୁଲମାଳ ଜମା ହୋଇଯାଏ, ତାକୁ ଧୀରେ ଆଡ଼େଇ ରଖୁଥାନ୍ତି । ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ଏହିପରି ଫୁଲମାଳ ଦିଆହେଲା । ପୁରୀର ପ୍ରାୟ ସମସ୍ତ ଅନୁଷ୍ଠାନ ଓ ସଂଘ, ଏମାର ମଠ ମହନ୍ତ ମହାରାଜ, ରାଧାକାନ୍ତ ମଠ ମହନ୍ତ ମହାରାଜ ପ୍ରମୁଖ ବହୁ ବିଶିଷ୍ଟ ବ୍ୟକ୍ତି ମଧ୍ୟ ନିଜ ହାତରେ ପୁଷ୍ପମାଲ୍ୟ ଭସ୍ମପାତ୍ର ଉପରେ ଦେଇ ଆସିଥିଲେ । ବୈଦିକ ରୀତିରେ ହୋମାଦି ହେଉଥାଏ । କ୍ରମେ ଆକାଶରେ ମେଘ ଘନେଇ ଆସିଲା । ହୋମ ଓ ମନ୍ତ୍ରପାଠ ପରେ ଲାଟସାହେବ ମାନ୍ୟବର କାଟଜୁ ପବିତ୍ର ଭସ୍ମପାତ୍ରକୁ ଧରି ସମୁଦ୍ର ଅଭିମୁଖେ ଗଲେ ଓ ମହୋଦଧିର ପବିତ୍ର ଜଳରେ ମହାତ୍ମାଙ୍କ ପବିତ୍ର ଦେହାବଶେଷ ଚିତାଭସ୍ମକୁ ବିସର୍ଜନ ଦେଲେ । ବିରାଟ ଜନତାର 'ମହାତ୍ମା ଗାନ୍ଧିଙ୍କି ଜୟ'ନାଦରେ ଚାରିଆଡ଼ ଉଚ୍ଛୁଳି ଉଠୁଥାଏ । ବିସର୍ଜନ ଉତ୍ସବ ପରେ ବ୍ୟଥିତ ଅନ୍ତରରେ ଜନତା ସମୁଦ୍ର କୂଳରୁ ବାହୁଡ଼ିଥିଲେ । ସେତେବେଳକୁ ଝିପିଝିପି ବର୍ଷା ଆରମ୍ଭ ହୋଇଯାଇଥିଲା ।

❑ (୧୩. ୨. ୪୮. ''ସମାଜ''ରୁ ଗୃହୀତ)

ହିନ୍ଦୁ ଧର୍ମ ଏକ - ଦେଶ ଦର୍ଶୀ ନୁହେଁ । ପୃଥିବୀର ସବୁ ଧର୍ମର ମହାତ୍ମା ମାନଙ୍କର ପୂଜାପାଇଁ ଏଥିରେ ସ୍ଥାନ ଅଛି, ନିଜର ବିଶ୍ୱାସ ବା ଧର୍ମ ଅନୁସାରେ ଭଗବତ - ଉପାସନା କରିବାକୁ ହିନ୍ଦୁ ଧର୍ମ ସମସ୍ତଙ୍କୁ କହେ ଏବଂ ସବୁ ଧର୍ମ ସହିତ ଶାନ୍ତିରେ ସହାବସ୍ଥାନ କରେ ।

# କଂଗ୍ରେସ କର୍ମୀଙ୍କ ପାଇଁ

# ଗୋପବଂଧୁ ଚୌଧୁରୀଙ୍କ ପ୍ରଚାରପତ୍ର

ବନ୍ଧୁ !

ଆପଣ କଂଗ୍ରେସର ଜଣେ ସଭ୍ୟ ହୋଇଛନ୍ତି । ଖଣ୍ଡିଏ କାଗଜରେ ଦସ୍ତଖତ କରି ଚାରିଅଣା ଚାନ୍ଦା ଦେଇଛନ୍ତି । ଲୋକେ ତ ଟଙ୍କା କରଜ ଧାର ଦେଲାବେଳେ ଦଲିଲ ଦସ୍ତାବେଜରେ ଦସ୍ତଖତ କରିଥାନ୍ତି । ଏଠି ଆପଣ ବି ଦଲିଲ ଦସ୍ତଖତ କରିଛନ୍ତି । ଓଲଟା ପୁଣି ହାତରୁ ଚାରିଅଣା ପଇସା ଦେଇଛନ୍ତି । ଦଲିଲ ରେଜେଷ୍ଟ୍ରୀ ଫିସ୍ ଦେଲାଭଳି ଏ କଂଗ୍ରେସ ଚାନ୍ଦା ଦେଇଛନ୍ତି । କଥାଟି ହେଉଛି ଆପଣ ଗୋଟିଏ ପ୍ରକାରର ଚୁକ୍ତିପତ୍ରନେଇ ଦସ୍ତଖତ କରିଛନ୍ତି । ଏ ଚୁକ୍ତି କାହା ସାଙ୍ଗରେ କରିଛନ୍ତ ? ଏ ଚୁକ୍ତି ଆପଣ ଦେଶ ସାଙ୍ଗରେ କରିଛନ୍ତି । ଦେଶ ଜନଙ୍କର ମଙ୍ଗଳ ପାଇଁ ଦେଶରେ ସ୍ୱରାଜ୍ୟ ଲୋଡ଼ା । ସେହି ସ୍ୱରାଜ୍ୟ ପାଇଁ ଆପଣ ଦସ୍ତଖତ କରି ଦେଇଛନ୍ତି । ସେଥିପାଇଁ ଆପଣ କିଛି ନା କିଛି କରିବେ ବୋଲି ଚୁକ୍ତି କରିଛନ୍ତି, ମନରେ ସଂକଳ୍ପ କରିଛନ୍ତି । ଆପଣଙ୍କ ବଳକୁ ଅନେଇ ଆପଣ ଯଥାଶକ୍ତି ସ୍ୱରାଜ ପାଇଁ ଚେଷ୍ଟା କରିବେ । ଏଥିରେ ନଗଦ ଲାଭ ନାହିଁ, ଏଥିରେ ଯେଉଁ ଲାଭ ତାହା ଭବିଷ୍ୟତକୁ ମିଳିବ । ସେ ଲାଭ ଆମର ପରମ ଇଷ୍ଟ ଲାଭ । କେବେ ମିଳିବ ତାହା ସମସ୍ତଙ୍କ ଚେଷ୍ଟା ଉପରେ ନିର୍ଭର କରେ । ଚେଷ୍ଟା କଲେ ତ ଦିନକରେ ମିଳିପାରେ ।

ଏ ଚୁକ୍ତିରେ, ସଂକଳ୍ପରେ ଗୋଟିଏ ବିଶେଷ କଥା ଅଛି । ଯେମିତି ପାରେ ସେମିତି ସ୍ୱରାଜ୍ୟ ହେବ ନାହିଁ । କଂଗ୍ରେସର ଉଦ୍ଦେଶ୍ୟ ଫର୍ମରେ ଲେଖାଅଛି "ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଙ୍ଗତ ଉପାୟରେ ସ୍ୱରାଜ୍ୟପ୍ରାପ୍ତି" - ନ୍ୟାୟରେ ଚଳିବାକୁ ହେବ, ଶାନ୍ତି ରଖି ଚଳିବାକୁ ହେବ- ତେବେ ଯାଇ ସ୍ୱରାଜ୍ୟ ପାଇବା । ସତ୍ୟ ଛଡ଼ା ନ୍ୟାୟ ନାହିଁ । ଅହିଂସାକୁ ଛାଡ଼ି ଶାନ୍ତି ନାହିଁ । ସେଥିପାଇଁ କଂଗ୍ରେସର ମୂଳମନ୍ତ୍ର ହେଉଛି "ସତ୍ୟ ଓ ଅହିଂସା ।" ସେହି ସତ୍ୟ ଓ ଅହିଂସା ବାଟ ଧରି ଆପଣଙ୍କୁ ଚୁକ୍ତି ରକ୍ଷା କରିବାକୁ, ସଂକଳ୍ପ ସାଧନ କରିବାକୁ ହେବ ।

ଏବ୍ରତର ସାଧନ ପାଇଁ ତପସ୍ୟା ଦରକାର । ଖାଲି ମୁନି ଋଷି ବଣରେ ବସି ତପସ୍ୟା କରନ୍ତି ନାହିଁ । ପ୍ରତ୍ୟେକ ମଣିଷ ଆପଣା ଉଦ୍ଦେଶ୍ୟ ସାଧନରେ, ନିଜର ସଂକଳ୍ପ ସିଦ୍ଧି ପାଇଁ ଯେ କଷ୍ଟ ସ୍ୱୀକାର କରେ ତାକୁ ହିଁ ତପଶ୍ଚର୍ଯ୍ୟା କହନ୍ତି । ଏ ତପଶ୍ଚର୍ଯ୍ୟରେ ସତ୍ୟ ଓ ଅହିଂସା ମୂଳମନ୍ତ୍ର । ସେଥିଯୋଗୁଁ ମନ ଶୁଦ୍ଧ ହେବା ଆବଶ୍ୟକ । କଷ୍ଟ ସ୍ୱୀକାର ଅର୍ଥ ସ୍ୱାର୍ଥତ୍ୟାଗ । ସେଥିପାଇଁ ଆପଣଙ୍କୁ ସ୍ୱରାଜ୍ୟ ପାଇଁ କିଛି ସ୍ୱାର୍ଥତ୍ୟାଗ କରିବାକୁ ହେବ । ସବୁବେଳେ ଆପଣାର ସ୍ୱାର୍ଥ ଚିନ୍ତା କରି କରି ମନୁଷ୍ୟର ମନ ମଳିନ ହୋଇଯାଏ । ବେଳେ ବେଳେ ସ୍ୱାର୍ଥ ଚିନ୍ତା ଛାଡ଼ି ଦେଶଚିନ୍ତା ଆବଶ୍ୟକ ।

ଏ ତପଶ୍ଚର୍ଯ୍ୟାରେ ଆପଣ ଏକା ନୁହନ୍ତି । ଆପଣଙ୍କ ସଙ୍ଗେ ଆଉ ଅନେକ କଂଗ୍ରେସ ସଭ୍ୟ ହୋଇଛନ୍ତି । ସେଥିପାଇଁ ଏ କାମରେ ସାଧନା ପାଇଁ ସଂଘବଦ୍ଧ ହୋଇ କାମ କଲେ ଫଳ ଶୀଘ୍ର ମିଳେ, ଆଜି କଂଗ୍ରେସ ଏଥିପାଇଁ ମହାସଂଘ । ଆପଣମାନଙ୍କୁ ପ୍ରାଇମେରୀ କମିଟିରେ ସଂଘବଦ୍ଧ ହେବାକୁ ପଡ଼ିବ । ପ୍ରାଇମେରୀ କମିଟି ଜରିଯାରେ ଦେଶପାଇଁ, ଜନଙ୍କ ପାଇଁ କିଛି କରିବାକୁ ହେବ ।

ଆପଣ କମିଟିରେ ବସି ଗାଁର ଭଲ ମନ୍ଦ ଯେଉଁଥିରେ ହେଉଛି ବା ହେବ ସେ କଥା ଆଲୋଚନା କରନ୍ତୁ । - (୧) ନିଜ ଗାଁର ସ୍ୱାସ୍ଥ୍ୟରକ୍ଷା ପାଇଁ ଆପଣ ଗାଁ ପରିଷ୍କାର ରଖନ୍ତୁ, ଆପଣା କୁଅଭ୍ୟାସ ମାନ ଛାଡ଼ି ଗାଁ ଆଖପାଖ ମଇଳା କରନ୍ତୁ ନାହିଁ । (୨) ଗାଁର ପଇସା

ଗାଁରେ ରଖନ୍ତୁ - ବିଦେଶୀ ଜିନିଷର ଚକମକରେ ଭୁଲନ୍ତୁ ନାହିଁ- ଟିକିଏ କଷ୍ଟସ୍ୱୀକାର କରି ଆପଣା ଦେଶର ମୋଟାରୋଟାରେ ସନ୍ତୁଷ୍ଟ ହୁଅନ୍ତୁ । ଗାଁରେ ସ୍ୱଦେଶୀ ଚିଜ କିପରି ତିଆରି ହେବ, ଯତ୍ନ କରନ୍ତୁ । (୩) ବାହା ଶ୍ରାଦ୍ଧ ପୁଣ୍ୟ ପରବରେ ବାଜେ ଖରଚ କରି ଋଣଗ୍ରସ୍ତ ହୁଅନ୍ତୁ ନାହିଁ । ବୃଥା ଆଡ଼ମ୍ବରରେ ଲାଭ ନାହିଁ । (୪) ଆପଣା ପଇସା ପରକୁ ଦିଅନ୍ତୁ ନାହିଁ । ଗାଁର ଇଜ୍ଜତ ପଦାରେ ପକାନ୍ତୁ ନାହିଁ, ଗାଁ କଳି ଗାଁରେ ତୁଟାନ୍ତୁ । ତେବେ ଆମର ଯେ ସତ୍ୟ ଓ ଅହିଂସା ଆଶ୍ରୟ ଏକଥା ଭୁଲିବା ନାହିଁ । ପଞ୍ଚାୟତ ନିରପେକ୍ଷ ହେବା ଆବଶ୍ୟକ । ପଞ୍ଚାୟତ ନିଷ୍ପତ୍ତିରେ ଜୋରଜୁଲମ ରଖିବେ ନାହିଁ - ଜୋରିମାନା, ବାସନ୍ଦ ଏସବୁ କରିବାର ନୁହେଁ, (୫) ଅନ୍ୟାୟ ଜୁଲୁମକୁ ଡ଼ରିବେ ନାହିଁ । ଆପଣ ଡ଼ରିଲେ ଆପଣଙ୍କ ଦେଖାଦେଖି ଅନ୍ୟ ସାହି ପଡ଼ିଶା ଡ଼ରିବେ । ଯେ ଡ଼ରାଉଛି ସେ ବେଶୀ ଡ଼ରାଇବ । ଦେଶ ଦଶଙ୍କର କ୍ଷତି ବେଶୀ ହେବ । ସେଥିପାଇଁ ମନରୁ ଭୟ ଦୂର କରି, ସତ୍ୟ ଅହିଂସା ପଥରେ ରହି ଅସତ୍ୟ ଅନ୍ୟାୟର ବିରୋଧ କରନ୍ତୁ । (୬) ଅଳସୁଆ ହୋଇ ବସନ୍ତୁ ନାହିଁ । ଅଳସୁଆ ହେଲେ ଦେଶରେ ହିଂସା ବଢ଼େ । ଯେ ନିଜେ ପରିଶ୍ରମ ନ କରି ଖାଏ, ଅନ୍ୟର ପରିଶ୍ରମରେ ଉତ୍ପନ୍ନ ପଦାର୍ଥ ଖାଇ ଚଳେ ସେ ହିଂସା କରେ । ଦେଶରେ ଅଶାନ୍ତି ବଢ଼େ । (୭) ନିଶାଦ୍ରବ୍ୟ ବ୍ୟବହାର କରନ୍ତୁ ନାହିଁ - ସେଥିରେ ବୁଦ୍ଧି ମଳିନ ହୁଏ, ଧନସମ୍ପତ୍ତି ଉଡ଼ିଯାଏ, ସର୍ବନାଶ ହୁଏ । ଗାଁରୁ ନିଶାଖିଆ ବନ୍ଦ କରାନ୍ତୁ । (୮) "ନର ଦେହେ ନାରାୟଣ" ଅଛନ୍ତି । ମନୁଷ୍ୟକୁ ଅଛୁଆଁ କରି ନାରାୟଣଙ୍କର ଅବମାନନା କରନ୍ତୁ ନାହିଁ । ହିନ୍ଦୁ ଧର୍ମର ରକ୍ଷା ପାଇଁ ଅସ୍ପୃଶ୍ୟତା ଭୂତକୁ ତଡ଼ନ୍ତୁ । ଦେଶ ଭାଇକୁ ଆଜି ଅସ୍ପୃଶ୍ୟ କରିଥାଇଁ ବୋଲି ଆମେ କଳା ଲୋକେ ଆଜି ଦେଶ ବିଦେଶରେ ଅନ୍ୟ ପାଖରେ ଅସ୍ପୃଶ୍ୟ । ନିଜେ ଅନ୍ୟାୟ ଜୁଲୁମ୍ ବନ୍ଦ ନ କଲେ ଆମ ଉପରେ ଅନ୍ୟାୟ ଜୁଲୁମ୍ ବନ୍ଦ ହେବନାହିଁ ।

ଆପଣଙ୍କର
ଗୋପବନ୍ଧୁ ଚୌଧୁରୀ
ବରୀ - କଟକ,
୧୧, ୧୦, ୩୮
(ଗୋପବନ୍ଧୁ ଜୟନ୍ତୀ ବିଶେଷ ସଂଖ୍ୟା "ସର୍ବୋଦୟ" ୧୯୯୪ରୁ ଗୃହୀତ)

# ଗାନ୍ଧୀ ବିଚାର

**୧୯୪୭ ଜୁଲାଇ ୨୦ :**

"ମୁଁ ଈଶ୍ୱରଙ୍କୁ ମୁହାଁ ମୁହିଁ ଦେଖି ନାହିଁ । ମାତ୍ର ଈଶ୍ୱରଙ୍କ ଅସ୍ତିତ୍ୱ ଉପରେ ମୋର ବିଶ୍ୱାସ ଅଛି । ପୃଥିବୀର କୋଟି କୋଟି ଲୋକ ଏ ବିଷୟରେ ମୋ ସହ ଏକମତ ... କ୍ରୋଧ ଓ ଇଚ୍ଛାକୁ ଦମନ କରି ପ୍ରଶଂସା ଓ ନିନ୍ଦାପ୍ରତି ବୀତସ୍ପୃହ ରହିଲେ ଈଶ୍ୱରଙ୍କ ସାନିଧ୍ୟ ମିଳେ । "ବାସ୍ତବରେ ରାମରାଜ୍ୟ ପ୍ରତିଷ୍ଠା ସହଜ ନୁହେଁ । କାରଣ ଆମମନରେ ହିଁସା ଭରି ରହିଛି ଓ ଆମେ ଅହିଁସାର ଖୋଳ ପିନ୍ଧି କାମ କରୁଛେ ।" ("ସମାଜ" - ୫.୮.୯୭)

## ଅହିଂସା ଉପାୟରେ ଆତ୍ମରକ୍ଷା

୧୯୪୭ ମସିହା ଅଗଷ୍ଟ ୨୦ ତାରିଖ, ବୁଧବାର । ହତ୍ୟା କାରୀର ଖଣ୍ଡା କୃଷକର ଲଙ୍ଗଳମୁନ କେବେ ହେବ ତାହା ମଧ୍ୟ କହିହେବ ନାହିଁ । ଏହା କରାଯାଇପାରିଲେ ହତ୍ୟା ପରିବର୍ତ୍ତେ ଉତ୍ପାଦନ ବୃଦ୍ଧି ପାଇପାରନ୍ତା ; କିନ୍ତୁ ପ୍ରକୃତ ଆତ୍ମରକ୍ଷା ହେଉଛି ପ୍ରତି ଆକ୍ରମଣ ନକରିବା । ବିଚାର କର - ହିଂସା ଆମକୁ କ'ଣ ଦିଏ । ହିଂସାଆମକୁ ହିଂସା ଦେଇଥାଏ । ଆକ୍ରମଣ ପଛରେ ଆକ୍ରମଣ କାରୀର ଏକ ଉଦ୍ଦେଶ୍ୟ ଏକ ଥାଏ । ଏହି ପରିସ୍ଥିତିରେ ଆକ୍ରମଣର ଶିକାର ହେଉଥିବା ବ୍ୟକ୍ତି ଯଦି ପ୍ରତିହିଂସା ପ୍ରଦର୍ଶନ

ନକରେ ଓ ଆକ୍ରମଣ କାରୀ ନିକଟରେ ଆତ୍ମସମର୍ପଣ ନକରେ ତେବେ ଆକ୍ରମଣକାରୀର ହୃଦୟରେ ପରିବର୍ତ୍ତନ ହୁଏ । ଅବଶ୍ୟ ଶିକାର ହୋଇଥିବା ବ୍ୟକ୍ତିକୁ ଅସହ୍ୟ ଯନ୍ତଣା ଭୋଗିବାକୁ ପଡ଼ିଥାଏ । କିନ୍ତୁ ଶେଷରେ ବିଜୟ ତାହାର ହୁଏ । ଏହା ହେଉଛି ସବୁଠାରୁ ଉତ୍ତମ ଆତ୍ମରକ୍ଷା ଏପରି ଏକ ବିଜୟ ପାଇଁ ଶରୀରକୁ ତ୍ୟାଗ କଲେ କିଛି କ୍ଷତି ନାହିଁ । ଅହିଂସା ଉପାୟରେ ଯେଉଁ ଆତ୍ମରକ୍ଷା କରାଯାଏ ସେଥିରେ ମଣିଷ ଜୀବନ ହରାଏ ନାହିଁ, ବରଂ ପାଇଥାଏ । -ସମାଜ- ୨.୯.୯୭-

## ନେତାଜୀଙ୍କ ସାହସିକତା

୧୯୪୭ ଅଗଷ୍ଟ ୩୦ ଶନିବାର :

ଇଚ୍ଛାକରି ଯିଏ ଛୋଟିଆ କାମକରି ନିଜର ମହାନତା ଦେଖାଏ ସେହିଁ ବଡ଼ ତେଣୁ ଛାତ୍ରମାନେ ସବୁବେଳେ ନମନୀୟ ହେବା ଉଚିତ । ନେତାଜୀଙ୍କ ସାହସର ତୁଳନା ନାହିଁ । ନିଜେ ଆଦର୍ଶ ହୋଇ ସହକର୍ମୀମାନଙ୍କୁ ସେ ଶୃଙ୍ଖଳା ଓ ଆଜ୍ଞାବଦ୍ଧତା ବିଷୟରେ ଶିକ୍ଷା ଦେଇଥିଲେ । ବ୍ୟକ୍ତିଙ୍କୁ ଏକାଠି କରି ସଂଗ୍ରାମ ଘୋଷଣା କରିବା ଏକ ପିଲାଖେଳ ନଥିଲା । ଦେଶ ସ୍ୱାଧୀନ ହେବାପରେ ଆଇ. ଏନ. ଏ କର୍ମୀମାନେ କଲ୍ୟାଣମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଉଚିତ । ସେମାନେ କୃଷିକ୍ଷେତ୍ରରେ କାମ କରି ଦେଖାଇ ଦେବେଯେ ଖଡ଼ଗକୁ ମଧ ଲଙ୍ଗଳରେ ପରିଣତ କରାଯାଇ ପାରିବ । ସୈନ୍ୟମାନେ ସବୁବେଳେ ସୈନ୍ୟ ହେବା ଉଚିତ ନୁହେଁ । ଦେଶପାଇଁ ଲଢ଼ିବାକୁ ହେଲେ ପ୍ରତ୍ୟେକେ ହେଉଛନ୍ତି ଜଣେ ଜଣେ ଉତ୍କର୍ଷ ସୈନିକ, ଯୁଦ୍ଧ ନକରୁଥିା ବେଳେ ସେମାନେ ଆଦର୍ଶ ଚାଷୀ । ସମସ୍ତଙ୍କ ଠାରୁ କୌଣସି ଗୁଣରେ ନେତାଜୀ ନ୍ୟୁନ ନଥିଲେ । ସୈନିକ ହେବା ସୁଭାଷଙ୍କର ପେଶା ନଥିଲା । କିନ୍ତୁ ଜଣେ ଉଚ୍ଚ କୋଟୀର କମାଣ୍ଡର ଭାବେ ସେ ନିଜକୁ ପ୍ରତିପାଦିତ କରିଥିଲେ । (''ସମାଜ'' - ୧୦.୦୯.୯୭)

## ଆଇନର ଶାସନକୁ ସମ୍ମାନ ଦିଅ

୧୯୪୭ ଅଗଷ୍ଟ ୩୦ ଶନିବାର,

ବିଦେଶୀମାନେ ଯିବାପରେ ସାଂପ୍ରଦାୟିକତା ଭିତରେ ଭାରତ ବିଭାଜନ ହେବା ଚିନ୍ତାର ସମାଧି ଘଟିଛି । ସ୍ୱାଧୀନ ଭାରତରେ କେବଳ ଯୋଗ୍ୟତାକୁ ସମ୍ମାନ ଦିଆଯିବ, ଧର୍ମ, ଜାତିପ୍ରତି ଦୟା ବା ନିର୍ଦ୍ଦୟତା ପ୍ରଦର୍ଶନର ପ୍ରଶ୍ନ ଉଠୁନାହିଁ । ଯୋଗ୍ୟତା, ପ୍ରଜ୍ଞା, ଆତ୍ମୋତ୍ସର୍ଗ, ଅହିଂସା, ସଚ୍ଚୋଟତା ଥିଲେ ଯେ କୌଣସି ଖ୍ରୀଷ୍ଟିଆନ ମଧ.ହିନ୍ଦୁ ଓ ମୁସଲମାନଙ୍କୁ ପରିପନ୍ଥୀ ହୋଇ ପାରିବେ । ସ୍ୱେଚ୍ଛାକୃତ ଭାବେ ଶୃଙ୍ଖଳା ରକ୍ଷା ଏବଂ ସଂଯମ ଆଚରଣ ହେଉଛି ପ୍ରକୃତ ସ୍ୱାଧୀନତା । ଏହା ସହ ଆଇନର ଶାସନ ପ୍ରତି ସମ୍ମାନ ପ୍ରଦର୍ଶନ କରାଯିବା ଉଚିତ୍ । ନିର୍ବାଚିତ ପ୍ରତିନିଧିମାନେ ଆଇନ ପ୍ରଣୟନ କରିବେ ।

ଗଣତାନ୍ତ୍ରିକ ରାଷ୍ଟ୍ରରେ ସବୁଠାରୁ ବଡ଼ ଶକ୍ତି ହେଉଛି ଜନମତ । ତେବେ ଏ ଜନମତ ଠିକଣା ବାଟରେ ପ୍ରକାଶିତ ହେବା ଉଚିତ୍ । -(''ସମାଜ'' ୧୧.୯.୯୭-)

## ସଂଗ୍ରାମ ଓ ଯନ୍ତ୍ରଣା

## ସତ୍ୟାଗ୍ରହୀର ପୁରସ୍କାର

୧୯୪୭ ମସିହା ଅଗଷ୍ଟ ୮ ତାରିଖ ଶୁକ୍ରବାର । ଗରିବ ଯାତ୍ରୀମାନଙ୍କୁ ହଇରାଣ କରିବ ନାହିଁ । ଉତ୍କୋଚ ନେବନାହିଁ, ଯଦି ଏହା ମାନିବ ତେବେ ସବୁଠାରୁ ଉତ୍ତମ ସେବା ତୁମେ କରିପାରିବ । ସତ୍ୟାଗ୍ରହୀ ସଂଗ୍ରାମ କରେ । ନିଷ୍ଠୁରତା ଓ ହିଂସାରେ ମଣିଷ ପଶୁଠାରୁ ମଧ ଅଧିକ ଜଘନ୍ୟ । ବିଭିନ୍ନ ସମସ୍ୟା ସଂପର୍କରେ ଅଧ୍ୟୟନ କରି ତାହାର ସମାଧାନ କିପରି କରାଯାଇପାରିବ ତାହା ଉପରେ ବିଚାର କରିବା ହେଉଛି ଛାତ୍ରର କର୍ତ୍ତବ୍ୟ । ରାଜନୈତିକ ଦଳମାନେ ଛାତ୍ର ମାନଙ୍କୁ ନିଜ ଉଦ୍ଦେଶ୍ୟ ସାଧନ ପାଇଁ ବ୍ୟବହାର କରିବା ଠିକ୍ ନୁହେଁ । ବିହାରର ଭାବୀ ରାଜ୍ୟପାଳ ଶ୍ରୀ ଜୟରାମ ଦାସ ଦୌଲତ ରାମଙ୍କ

ନିକଟକୁ ଏକ ପତ୍ର ଲେଖି ଗାନ୍ଧିଜୀ ପରାମର୍ଶ ଦେଇଥିଲେ ତୁମମାନେ ସମସ୍ତ କାର୍ଯ୍ୟ ହିନ୍ଦୁସ୍ତାନରେ କରିବ । ସରଳ ଜୀବନଯାପନ କରିବ । ପ୍ରଶାସନ ଭୁଷୁଡ଼ି ପଡ଼ିଛି । ତାହାକୁ ସଜାଡ଼ିବ । ସବୁ ମନ୍ତ୍ରୀ ଯେପରି ଭାବେ କାର୍ଯ୍ୟ କରିବେ ସେଥିପାଇଁ ଉଦ୍ୟମ କରିବ । ସଂଖ୍ୟାଳଘୁ ସମ୍ପ୍ରଦାୟକୁ ନ୍ୟାୟ ଦେବ । ଖଦୀ ଓ ଗ୍ରାମଶିଳ୍ପକୁ ଭୁଲିଯିବ ନାହିଁ । ଗାଁକୁ ଯିବ ଓ ଲୋକମାନଙ୍କ ସହିତ ସେମାନଙ୍କ ପରି ଜଣେ ହୋଇ ବୁଲିବ । ନିଶାନିବାରଣ ନିଶ୍ଚୟ କରିବ । ଜଣେ ଦକ୍ଷ ସଚିବ ରଖିବା ଏବଂ ସେ ଯେପରି କୌଣସି ରାଜନୈତିକ ଦଳର ହୋଇନଥିବେ ।

''ସମାଜ'' :- ତା ୨୨.୮.୯୭

# ଆମର ବ୍ୟର୍ଥତାରେ ଏସିଆର ମୃତ୍ୟୁ

ମୋର ମୃତ୍ୟୁ ତିନୋଟି ମାର୍ଗରେ ହୋଇପାରେ । ପ୍ରଥମଟି ହେଲା ସ୍ୱାଭାବିକ ମୃତ୍ୟୁ । ଦ୍ୱିତୀୟରେ ଆଖିଟି ବୁଲୁଥିବ କିନ୍ତୁ ମସ୍ତିଷ୍କ କାମ କରୁନଥିବ । ଏହା ହେଲା ମାନସିକ ମୃତ୍ୟୁ ଓ ତୃତୀୟଟି ହେଲା ସାଧାରଣ କ୍ଷେତ୍ରରେ କାମ କରୁଥିବା ବେଳେ ହଠାତ୍ ଈଶ୍ୱର ଡ଼କାଇନେବେ । ପ୍ରଥମ ମୃତ୍ୟୁ ସମସ୍ତଙ୍କ ଜୀବନରେ ଆସିଥାଏ । ଦ୍ୱିତୀୟ ଏକ ଅବସ୍ଥା ଯାହା କେହି ଚାହାନ୍ତି ନାହିଁ ଏବଂ ତୃତୀୟଟି କାମ କରୁଥିବା ବେଳେ ମୃତ୍ୟୁ। ଆମ ସହିଷ୍ଣୁତା କ'ଣ ଏତେ ଦୁର୍ବଳଯେ ସାମାନ୍ୟ ଚାପରେ ଭୁଷୁଡ଼ି ପଡୁଛି । ଆମର ଶାଳୀନତା ଏବଂ ସହିଷ୍ଣୁତା ସୁଦୃଢ ହେବା ଉଚିତ । ଯଦି ତାହା ନହୁଏ ତେବେ ଭାରତ ସେଥିପାଇଁ ଲଜ୍ଜିତ । ଆମେ ସ୍ୱାଧୀନତା ପାଇବାକୁ ଯୋଗ୍ୟ ନୋହୁଁ ବୋଲି ଆମର ପ୍ରତିପକ୍ଷ ଯେପରି ନକୁହେ । ଅତି ଦୁଃଖର ସହିତ ମତେ କହିବାକୁ ହେଉଛି ଯଦି ଏ କ୍ଷେତ୍ରରେ ଭାରତ ବ୍ୟର୍ଥ ହୁଏ ତେବେ ଏସିଆର ମୃତ୍ୟୁ ହେବ । ''ସମାଜ'' - ୨ . ୯୭

# ପ୍ରତିମୂର୍ତ୍ତି ନ ବସାଇ ଭୋକିଲାକୁ ଆହାର ଦିଅ

୧୯୪୭ ସେପ୍ଟେମ୍ବର ୧୩ ଶନିବାର ଗାନ୍ଧିଜୀଙ୍କର ପ୍ରତିମୂର୍ତ୍ତି ଏକ ସର୍ବ ସାଧାରଣ ସ୍ଥାନରେ ବସାଇବାକୁ ଏକ ଉଦ୍ୟମ ହେଉଛି ବୋଲି-ଜାଣି ଗାନ୍ଧୀ ଏଥିରେ ବିରକ୍ତି ପ୍ରକାଶ କଲେ । ''ଏହି ଉଦ୍ୟମକୁ ମୁଁ ସଂପୂର୍ଣ୍ଣ ନାପସନ୍ଦ କରୁଛି । ଆମ ଲୋକେ ଖାଇବାକୁ ଓ ପିନ୍ଧିବାକୁ ପାଉ ନ ଥିବା ବେଳେ ସାମାନ୍ୟ ପ୍ରତିମୂର୍ତ୍ତି ପାଇଁ ଏତେ ଅର୍ଥ ବ୍ୟୟ ହେବା ଉଚିତ ନୁହେଁ । ପ୍ରତିମୂର୍ତ୍ତି ନିର୍ମାଣ ପାଇଁ ସଂଗୃହୀତ ଅର୍ଥ ସର୍ବ ସାଧାରଣ କାର୍ଯ୍ୟରେ ବ୍ୟୟିତ ହେବା ଉଚିତ । ଯଦି ଏହା କରାଯାଏ ତେବେ ତାହା ହେବ ଉପଯୁକ୍ତ ପ୍ରତିମୂର୍ତ୍ତି । ଖାଦ୍ୟଶସ୍ୟ ଉତ୍ପାଦନରେ ଏ ଅର୍ଥ ବ୍ୟୟ କଲେ ଭୋକିଲା ପେଟକୁ ଏହା ଖାଦ୍ୟ ଯୋଗାଇ ପାରିବ । ଏହା ବିଚାର୍ କର । (ସମାଜ ୨୫.୯.୯୭)

# ଆର ଏସ୍. ଏସ୍. ଶିବିରରେ ଉଦ୍‌ବୋଧକ

୧୯୪୭ ସେପ୍ଟମ୍ବର ୧୬ ଦିଲ୍ଲୀର ମେହେନ୍ତର କଲୋନୀରେ ଆର ଏସ. ଏସ. ପକ୍ଷରୁ ଏକ ସମାବେଶର ଆୟୋଜନ କରାଯାଇଥିଲା । ସେଥିକୁ ଗାନ୍ଧିଙ୍କୁ ଉଦ୍‌ବୋଧନ ଦେବାକୁ ଡ଼କାଯାଇଥିଲା । ଗାନ୍ଧିଜୀ କହିଲେ ଯେ ବହୁଦିନ ପୂର୍ବେ ସେ ଯମୁନାଲାଲ ବାଜାଜ୍‌ଙ୍କ ସହ ଆର ଏସ. ଏସ. ଶିବିର ଦେଖିଥିଲି । ସେଠାରେ ଛୁଆଁ ଅଛୁଆଁ ନ ଥିଲା ଓ ସରଳଜୀବନ ଯାପନ ଗାନ୍ଧଜୀଙ୍କୁ ମୁଗ୍ଧ କରିଥିଲା । ସେବା ଓ ତ୍ୟାଗକୁ ଆଧାର କରି ସଂଘ ଅଗ୍ରଗତି କରୁଥିଲା ବୋଲି ସେ ଦେଖିଲେ । ଗାନ୍ଧିଜୀ କହିଲେ, ''ମୁଁ ଜଣେ ସନାତନୀହିନ୍ଦୁ । ପୃଥିବୀର ସବୁ ଉତ୍ତମ ବିଶ୍ୱାସ ଏ ଧର୍ମରେ ରହିଛି । ଏହା ଏକ ସ୍ୱତନ୍ତ୍ରେ ଧର୍ମ ନୁହେଁ, ଜଣେ ସଚ୍ଚା ହିନ୍ଦୁ କଦାପି ମୁସଲମାନଙ୍କ ସହ କଜିଆ କରିବ ନାହିଁ । ଯଦି ଅସ୍ପୃଶ୍ୟତା ଦୂର ନ ହୁଏ ତେବେ ହିନ୍ଦୁ ଧର୍ମ ଧ୍ୱଂସ ହୋଇ ଯିବ ।

ଯଦି କେହି ଭାବେ ଭାରତ ହେଉଛି କେବଳ ହିନ୍ଦୁମାନଙ୍କର ରାଷ୍ଟ୍ର, ତେବେ ଭାରତ ମଧ ରହିବ ନାହିଁ ।" ("ସମାଜ" ୨୮.୯.୯୭)

## ମୁସଲମାନଙ୍କ ନିକାଲି ଦେବାକୁ କହିବା ଲଜ୍ଜାକର

୧୯୪୭ ମସିହା ସେପ୍ଟେମ୍ବର ୨୬ ତାରିଖ । ଆତ୍ମତ୍ସର୍ଗ ହେଉଛି ଆମର ପରଂପରା । ଅହିଂସା ବା ସତ୍ୟାଗ୍ରହ ଅର୍ଥ ନୁହେଁ ବଳ ପ୍ରୟୋଗ ଆଗରେ ଆତ୍ମସମର୍ପଣ କରିବା । ଅତ୍ୟାଚାରୀ ନିକଟରେ ନିଜର ଆତ୍ମବଳ ପ୍ରଦର୍ଶନ କରିବା ହେଉଛି ଏହାର ଲକ୍ଷ୍ୟ । ଏହି କୌଶଳରେ ସଂଗ୍ରାମୀ ଦୁର୍ବଳ ହୁଏ ନାହିଁ । ପ୍ରତିପକ୍ଷ ନିଶ୍ଚିତ ଭାବେ ପରାଜିତ ହୁଏ । ସତ୍ୟାଗ୍ରହ ହେଉଛି ଏପରି ଏକ ଅସ୍ତ୍ର ଯାହାକୁ କି ଜଣେ ବ୍ୟକ୍ତି ସମଗ୍ର ସାମ୍ରାଜ୍ୟ ବିରୋଧରେ ପ୍ରୟୋଗ କରିପାରିବ । (ଏବେ କିଏ ବା ମୋ କଥା ଶୁଣୁଛି । କେବଳ ମୁଁ ଯାହା କହୁଛି ତାହା ନିଜେ ଶୁଣୁଛି । ଏହା ଏକ ଖୋଲାକଥା । ମୁଁ ଏକା, ସଂପୂର୍ଣ୍ଣ ଭାବେ ଏକା । ମୋର ଆବଶ୍ୟକତା ଆଉ ନାହିଁ । ଦିଲ୍ଲୀରେ ଯଦି ସ୍ୱାଭାବିକ ପରିସ୍ଥିତି ଥାଆନ୍ତା ତେବେ ପାକିସ୍ଥାନ ଯାଇ ସେଠାରେ ପ୍ରାଣ ହରାଇଥାଆନ୍ତି । ମତେ ଯଦି କେହି ଗୁଳିକରି ହତ୍ୟାକରେ ତେବେ ସେତେବେଳେ ମଧ ମୁଁ ରାମ ରାମ କହୁଥିବି । ଫଳ ଯାହାକିଛି ହେଉନା କାହିଁକି ଉତ୍ତମ ହେବ । ମୁସଲମାନଙ୍କୁ ନିକାଲିଦେବା ପାଇଁ ଯାହା କହୁଛ ଭାରତ ପାଇଁ ତାହା ଅତ୍ୟନ୍ତ ଲଜ୍ଜାକର । ସାଢ଼େ ୪ କୋଟି ଲୋକଙ୍କୁ ଦେଶରୁ ବାହାରକରିବା ସମ୍ଭବ ନୁହେଁ । ଏହାକୁ ତୁମେ ବୁଝିବାକୁ ଚେଷ୍ଟାକର । ମୁଁ ସବୁବେଳେ କୁହେ କର ବା ମର; କିନ୍ତୁ କାହାକୁ ମାରନାହିଁ ।) "ସମାଜ" - ୯. ୧୦. ୯୭

## ଖଦୀ ଅହିଂସାର ପ୍ରତୀକ

୧୯୪୭ ସେପ୍ଟେମ୍ବର ୨୭ ଖଦୀ ହେଉଛି ଅହିଂସାର ପ୍ରତୀକ । ବର୍ତ୍ତମାନ ଦେଖିବାକୁ ହେବଯେ କିପରି ଗରିବମାନେ ଖଦୀକୁ ମାଧ୍ୟମ କରି ଆତ୍ମନିର୍ଭରଶୀଳ ହେବେ । ମୋ ପାଖରେ କାଢ଼ଁରୀ କାଠି ନାହିଁ କିମ୍ବା ମୋ ପାଖରେ ଖଣ୍ଡା ମଧ ନାହିଁ । ମୋର କେବଳ ଗୋଟିଏ ଅସ୍ତ୍ର ଅଛି ଏବଂ ତାହାହେଲା ଭଗବାନଙ୍କ ନାମ ଜପ କରିବା । କେବଳ ଈଶ୍ୱରହିଁ ଅଲୌକିକ କାର୍ଯ୍ୟ କରିପାରିବେ । ଈଶ୍ୱରଙ୍କ ଆଶୀର୍ବାଦ ବିନା ମୁଁ କିଛି କରିପାରିବି ବୋଲି ଆପଣମାନେ କିପରି ଭାବୁଛନ୍ତି ? ଯେଉଁ ଅସ୍ତ୍ର ସାହାଯ୍ୟରେ ଆମେ ସ୍ୱାଧୀନତା ହାସଲ କଲେ ତାହାକୁ ବ୍ୟବହାର କରି ଆମର ସ୍ୱାଧୀନତାକୁ ଆମେ ରକ୍ଷାକରିପାରିବା ।

"ସମାଜ" ୧୪.୧୦.୯୭

## ଜଘନ୍ୟଟି କସ

୧୯୪୭ ମସିହା ଅକ୍ଟୋବର ୩ ତାରିଖ । ମାଦ୍ରାଜ ମାର୍ଗ ପ୍ରଦର୍ଶନ କରି ସଂପୂର୍ଣ୍ଣ ନିଶା ନିବାରଣ ପାଇଁ ଏହି ଶପଥ ଗ୍ରହଣ କରାଗଲଣ । ଭାରତରେ ଯେତେ ସହଜରେ ନିଶା ନିବାରଣ କରାଯାଇ ପାରିବ, ପୃଥିବୀର ଅନ୍ୟ କୌଣସି ଅଞ୍ଚଳରେ ତାହା କରାଯାଇ ପାରିବ ନାହିଁ । ସମସ୍ତେ ମନେରଖ ଯେ ମଦ ଓ ନିଶାଦ୍ରବ୍ୟରୁ ଯେଉଁ ରାଜସ୍ୱ ଆଦାୟ ହେବ ତାହା ଅତ୍ୟନ୍ତ ଜଘନ୍ୟ ଟିକସ । ତାହା ନିଜର ଦୁର୍ନୀତି ପାଇଁ ବ୍ୟକ୍ତି ଟିକସ ଦେବା ସହ ସମାନ । ଟିକସ ଦେବାକୁ ଅକ୍ଷମ ବ୍ୟକ୍ତିଙ୍କ ଠାରୁ ଏହି ଟିକସ ଆଦାୟ କରାଯାଏ । ନିଶା ନିର୍ବାରଣ ଫଳରେ ଯେଉଁ ରାଜସ୍ୱ କ୍ଷତି ହୁଏ ତାହା କିଛି ନୁହେଁ । ନିଶା ନିବାରଣକୁ କଡ଼ାକଡ଼ି ପାଳନ କରାଗଲେ ମଦ୍ୟପମାନେ ରକ୍ଷା ପାଇଯିବେ । ଭଲବାଟରେ ଟଙ୍କା ଖର୍ଚ୍ଚ କରିବେ ଏବଂ ଏହାଦ୍ୱାରା ରାଷ୍ଟ୍ରର ମଙ୍ଗଳ ହେବ ।

## ରାମ ନାମ ସର୍ବରୋଗହର

୧୯୪୭ ମସିହା ଅକ୍ଟୋବର ୧ ତାରିଖ । "ରାମ ନାମ ହେଉଛି ମୋର ପେନସିଲିନ ।" ଭଗବାନଙ୍କ ନାମ ନେଇ ବରଂ ମୃତ୍ୟୁ ବରଣ କରିବି; କିନ୍ତୁ ଔଷଧ ଖାଇବି

ନାହିଁ । ବିଜ୍ଞାନକୁ ଏବେ ମଧ ଆହୁରି ଅନେକ କିଛି ଶିଖିବାକୁ ଅଛି । ବିଜ୍ଞାନ ଯାହା କିଛି ସଫଳତା ହାସଲ କରିଛି ତାହା ସମୁଦ୍ରକୁ ଶଙ୍ଖେ । ପ୍ରକୃତିର ନିୟମ ଭଂଗ କଲେ ରୋଗ ହୋଇଥାଏ । ଅର୍ଥାତ ରୋଗ ହେଉଛି ପାପ ବା କର୍ମଫଳ । ଈଶ୍ୱର ଏକ । ରାମ ନାମ ଜପକଲେ ସବୁ ପାପରୁ ମୁକ୍ତି ମିଳିଥାଏ । ରୋଗ ଭଲ ହୋଇଯାଏ । ଲୋକମାନଙ୍କର ରାମନାମ ଶକ୍ତି ସଂପର୍କରେ ସଠିକ୍ ଧାରଣା ନାହିଁ । ରାମନାର ଯେଉଁ ବୈଜ୍ଞାନିକ ଗୁଣ ଅଛି ତାହା ଦର୍ଶାଇବା ପାଇଁ ମୁଁ ଏହି ଅଗ୍ନିପରୀକ୍ଷାରେ ପ୍ରବେଶ କରିଛି । ''ସମାଜ'' -୧୮.୧୦.୯୭

## ଆଉ ବଞ୍ଚିବାକୁ ବାସନା ନାହିଁ

୧୯୪୭ ମସିହା ଅକ୍ଟୋବର ୫ ତାରିଖ । ସାଂପ୍ରତିକ ପରିସ୍ଥିତିରେ ମୁଁ ଆଉ ଅଧିକ ଦିନ ବଞ୍ଚିବାକୁ ଇଚ୍ଛା କରୁନାହିଁ । ୧୨୫ ବର୍ଷ ବଞ୍ଚିବାକୁ ମୋର ଇଚ୍ଛାନାହିଁ କିମ୍ବା ବର୍ତ୍ତମାନ ମୁଁ ମରିବାକୁ ଚାହେଁନା । ଭଗବାନଙ୍କ ନିକଟରେ ମୁଁ ନିଜକୁ ସମର୍ପଣ କରିଛି । ଗଭୀର ନୈରାଶ୍ୟ ଯୋଗୁ ଏହା ମୁଁ କହୁ ନାହିଁ ବରଂ ମୁଁ ନିଃସହାୟ ହୋଇପଡ଼ିଛି । ନିଃସହାୟ ହୋଇଯିବାରୁ ମତେ ନେଇ ଯିବାକୁ ମୁଁ ପ୍ରାର୍ଥନା କରୁଛି । ଯଦି ସେ ମୋତେ ଆଉ କିଛିଦିନ ଏହି ପୃଥିବୀରେ ରଖିବାକୁ ଚାହାନ୍ତି ତେବେ ରଖିବେ । ''ସମାଜ'' - ୨୨ - ୧୦ ୯୭

## ବଞ୍ଚିବାର ଅଧିକାର

୧୯୪୭ ଅକ୍ଟୋବର ୧୭ ତାରିଖ

ଆମେ ବିଶ୍ୱ ନାଗରିକ ଭାବେ ନିଜର କର୍ତ୍ତବ୍ୟ ସଂପାଦନ କଲେ ଯାଇ ଆମର ବଂଚିବାର ଅଧିକାର ଅଛି । ମୁଁ ଏହା ଦୃଢ଼ତାର ସହ କହିପାରେ ଯେ ଭାରତର ମୁସଲ ମାନମାନେ ନିଜର କର୍ତ୍ତବ୍ୟ ପାଳନ ପାଇଁ ପାକିସ୍ଥାନ ବିରୋଧରେ ଲଢ଼ିବେ । ତେବେ ସେମାନେ ଅନୁଭବ କରିବା ଉଚିତ ଯେ ସେମାନଙ୍କ ପ୍ରତି ପାତର ଅଂତର କରାଯାଉ ନାହିଁ । ଠିକ ସେହିପରି ପାକିସ୍ଥାନରେ ଥିବା ଅଣମୁସଲମାନମାନେ ଯଦି ପାକିସ୍ଥାନରେ ଉତ୍ତମ ବ୍ୟବହାର ପାଇବେ ତେବେ ଆବଶ୍ୟକ ବେଳେ ଭାରତ ବିରୋଧରେ ଲଢ଼ିବାକୁ ସେମାନେ ମଧ କୁଂଠିତ ହେବେ ନାହିଁ । ଆମର ଦୁର୍ଭାଗ୍ୟ ଯେ ଧର୍ମକୁ ଭିତ୍ତି କରି ଭାରତ ଭାଗ ଭାଗ ହୋଇଗଲା । ଏବେ ସାଂପ୍ରଦାୟିକତାର ବିଷ ସମଗ୍ର ବାତାବରଣରେ ଭରି ଯାଇଛି । ଅଧର୍ମକୁ ଧର୍ମର ଆଖ୍ୟା ଦିଆଯାଇଛି । ଏହି ବିପର୍ଯ୍ୟୟ ବେଳେ ନିଶ୍ଚିତ କେହି ପ୍ରତିରୋଧ କରିବେ ଏବଂ ସତ୍ୟର ଜୟ ହେବ ।

''ସମାଜ'' - ୪. ୧୧. ୯୭

## ସମ୍ବାଦ ପତ୍ରକୁ ଉପଦେଶ

୧୯୪୭ ମସିହା ଅକ୍ଟୋବର ୧୫ ତାରିଖ । ଜଣେ ଶାସକ ପ୍ରଜାମାନଙ୍କର ଟ୍ରଷ୍ଟି ଭାବେ କାର୍ଯ୍ୟ କଲେ କୌଣସି ବାହ୍ୟ ଆକ୍ରମଣକୁ ଭୟ ନ କରି ଜନସାଧାରଣଙ୍କ ଆସ୍ଥା ଓ ବିଶ୍ୱାସର ଆଧାର ଉପରେ ଶାସନ କରିପାରିବ ।

ମୁଁ ହେଉଛି ସମସ୍ତଙ୍କର ବଂଧୁ । ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟଂତ ମୁଁ ଏହା ରହିବି । ଏହି ଆଶା ନେଇ ମୁଁ ୬ ବର୍ଷ ହେଲା ବଂଚିଛି । ସମସ୍ତେ କହଂତି ଯେ ଶିଖମାନେ ମୁସଲମାନଙ୍କୁ ଓ ମୁସଲମାନ ଶିଖ୍‌ଙ୍କୁ ନିଜର ଶତ୍ରୁ ବୋଲି ସବୁବେଳେ ଭାବିଥାଂତି । ଏହା ସଂପୂର୍ଣ୍ଣ ଭୁଲ୍ । ମୁଁ ନିଜେ ଦେଖିଛି ଯେ ସହରରେ ଯେତେବେଳେ ଦଂଗା ହୋଇଛି ହିଂଦୁ ଓ ଶିଖମାନେ ମୁସଲମାନଂକୁ ଓ ମୁସଲମାନମାନେ ହିଂଦୁ ଓ ଶିଖ୍‌ଙ୍କୁ ନିଜଘରେ ସୁରକ୍ଷା ପ୍ରଦାନ କରିଛନ୍ତି । ଭାରତର ସବୁ ଅଞ୍ଚଳରେ ଏପରି ସାହସୀ ଲୋକମାନଙ୍କୁ ଦେଖିବାକୁ ପାଇବା । ସଂବାଦପତ୍ର ମାନେ ଏହି ସଦ୍‌ଭାବପୂର୍ଣ୍ଣ ସଂବାଦ ଛାପିବା ଉଚିତ୍ । ହିଂସାକାଂଡ଼ କଥା ଛାପିଲେ ତାହା ଅନ୍ୟମାଂକ ମନରେ ପ୍ରତିଶୋଧ ପରାୟଣ ମନୋଭାବ ଜାଗ୍ରତ କରିଥାଏ । ଯାହାକି ମାରାତ୍ମକ ପରିସ୍ଥିତି ସୃଷ୍ଟି କରିଥାଏ ।

(''ସମାଜ'' - ୨.୧୧.୯୭

# ୧୯୪୭ ଅକ୍ଟୋବର ୨୬ରେ କୟଦୀଙ୍କୁ ଉପଦେଶ

୧୯୪୭ ଅକ୍ଟୋବର ୨୬ :

ମୁଁ ବି ଦିନେ ବଂଦୀ ଥିଲି । ଦକ୍ଷିଣ ଆଫ୍ରିକାରେ ମୋର ଏ ଜୀବନ ଆରଂଭ ହୋଇଥିଲା । ମୋ ଦୃଷ୍ଟିକୋଣରୁ ମୋର କିଛି ଦୋଷ ନଥିଲା । କିଂତୁ ସମ୍ରାଟଙ୍କ ଆଖିରେ ମୁଁ ଦୋଷୀ ଥିଲି । ଦକ୍ଷିଣ ଆଫ୍ରିକାରେ ଜେଲ ନିୟମ ଭାରି କଠୋର ଥିଲା ।ଭାରତୀୟଂକ ପାଇଁ ଦୟାମୟା ନଥିଲା । ଯଦି ଓ ମୁଁ ଜଣେ ବାରିଷ୍ଟର ଥିଲି ତଥାପି ଜେଲ ନିୟମ ମୋ ପାଇଁ କୋହଳ ନଥିଲା । ସବୁ ଭାରତୀୟଂକୁ କୁଲି କୁହାଯାଇଥିଲା । ପ୍ରଥମେ ମତେ ବଂଦୀ କରି ୧୫୦ଜଣ ସତ୍ୟାଗ୍ରହୀଂକ ସହ ରଖା ଯାଇଥିଲା । ମୋର ଆଶା ଆମର ଜେଲଗୁଡ଼ିକ ବନ୍ଦୀଶାଳା ନ ହୋଇ ହାସପାତାଳ ହେବ । ବନ୍ଦୀ ଯେଉଁ ସମ୍ପ୍ରଦାୟର ହୁଅନ୍ତୁ ନା କାହିଁକି, ପରସ୍ପରକୁ ଭାଇ ପରି ଭଲପାଆନ୍ତୁ । ଅନ୍ତତଃ ପକ୍ଷେ ଜେଲଗୁଡ଼ିକ ସାଂପ୍ରଦାୟିକତା ବାଦରୁ ମୁକ୍ତ ରହୁ । ଏହା ହେଲେ ବନ୍ଦୀମାନେ ଜେଲରୁ ମୁକ୍ତି ପାଇଲେ ଆଦର୍ଶ ନାଗରିକ ଭାବେ ଜୀବନ ବିତାଇବେ ।

(''ସମାଜ'' ୧୩.୧୧.୯୭)

# ବିନା ଟିକଟ ଯାତ୍ରୀ ଚୋର

୧୯୪୭ ଅକ୍ଟୋବର ୨୯ :

ସମାଜର କଲ୍ୟାଣ ଓ ରାଷ୍ଟ୍ରର ସୁରକ୍ଷା ପାଇଁ ଶକ୍ତି ପ୍ରୟୋଗ ଆବଶ୍ୟକ ନଚେତ୍ ବିଶୃଂଖଳାକୁ ରୋକା ଯାଇ, ପାରିବ ନାହିଁ । ତେବେ ରାଷ୍ଟ୍ର ସର୍ବ ନିମ୍ନ ବଳ ପ୍ରୟୋଗ କରିବା ଉଚିତ୍ ।ବିହାର ଏବଂ ଅନ୍ୟ କେତେକ ସ୍ଥାନରେ ଲୋକମାନେ ଭାବୁଛନ୍ତି ଯେ ଆମେ ଯେହେତୁ ସ୍ୱାଧୀନତା ପାଇଛେ, ରେଳ ଯାତ୍ରା ପାଇଁ ଆଉ ଟିକଟ କିଣାଯିବା ଦରକାର ନାହିଁ ।କେତେକ ଥିଲାବାଲା ଲୋକ ଭାବୁଛନ୍ତି ଯେ ସେମାନେ ସବୁ ଟ୍ରେନ୍‌ର ମାଲିକ ହୋଇଗଲେ । ଯଦି ଲୋକମାନେ ଟ୍ରେନ୍‌ରେ ମାଗଣା ଯାତ୍ରା କରିବେ ତେବେ ଏହା ଏକ ପ୍ରକାର ହିଂସାକାଣ୍ଡ । ମୋ ଦୃଷ୍ଟିରେ ଏହା ଚୋରି ବ୍ୟତୀତ ଆଉ କିଛି ନୁହେଁ । ସବୁଠାରୁ ଦୁର୍ଭାଗ୍ୟଜନକ ଘଟଣା ହେଉଛି ଯେ ଟ୍ରେନର ଗାର୍ଡ଼ ଓ ଡ୍ରାଇଭର ମାନଙ୍କ ଉପରେ ଆକ୍ରମଣ କରାଯାଉଛି ।

ସ୍ୱାଧୀନତା ପୂର୍ବରୁ ରେଳବାଇର କୌଣସି ଦିନ କ୍ଷତି ହୋଇନଥିଲା । ଏପରିକି ତୃତୀୟ ଶ୍ରେଣୀ ଯାତ୍ରୀମାନଙ୍କଠାରୁ ଭଡ଼ା ବାବଦରେ ବିପୁଳ ଅର୍ଥ ମିଳୁଥିଲା । ଏଥିପାଇଁ ବିଶେଷ ଖର୍ଚ୍ଚ ନଥିଲା; କିନ୍ତୁ ଏବେ ମତେ ଦୁଃଖ ଲାଗୁଛି ଯେ ରେଳବାଇର ୮ କୋଟି ଟଙ୍କା କ୍ଷତି ହୋଇଗଲା ।  ୧୭,୧୧,୯୭ ''ସମାଜ''

# ସ୍ୱେଚ୍ଛାକୃତ ଗଣହତ୍ୟା

ବିନା ଟିକେଟ୍‌ରେ ଟ୍ରେନ୍ ଯାତ୍ରା କରିବା ଏକ ଜଘନ୍ୟ ଅପରାଧ । ଆର୍ଥିକ ଦୃଷ୍ଟିକୋଣରୁ ଏହା ଏକ ନିର୍ବୋଧତା ଏବଂ ସ୍ୱେଚ୍ଛାକୃତ ଗଣହତ୍ୟା । ଜଣେ ହେଲେ ବି ଯାତ୍ରୀ ବିନା ଟିକେଟରେ ଯାତ୍ରା କରିବେ ନାହିଁ । ରେଳବାଇକୁ ନିଜର ସଂପତ୍ତି ମନେ କରିବେ ଓ ରେଳ ଡବାକୁ ସଫା ରଖିବେ । ଡବାରେ ଧୂମପାନ କରିବେ ନାହିଁ କିମ୍ବା ପାନ ଛେପ ଆଦି ଇଆଡ଼େ ସିଆଡ଼େ ପକାଇବେ ନାହିଁ । ତାହା ହେଲେ ମୁଁ କହିବି ଯେ ଭାରତକୁ ପ୍ରକୃତ ସ୍ୱାଧୀନତା ମିଳିଛି । ଯଦି ତାହା ନ ହୁଏ ଏବଂ ଏବେ ଯାହା ଚାଲିଛି ତାହା ଅବ୍ୟାହତ ରହେ ତେବେ ସମଗ୍ର ଦେଶ ଦେବାଳିଆ ହୋଇଯିବ ।

''ସମାଜ'' ୧୯. ୧୧. ୯୭

# ଗୌରବାବହ ମୃତ୍ୟୁ

୧ ନଭେମ୍ବର ୧୯୪୭

କାଶ୍ମୀରରେ ବହୁ ସୈନ୍ୟ ଦୈନିକ ପ୍ରାଣ ହରାଇବେ । କିଂତୁ ଏହି ମୃତ୍ୟୁ ସେମାନଙ୍କ ପାଇଁ ହେବ

ଗୌରବମୟ । କାରଣ ଏହି ସୈନ୍ୟମାନେ ଶାଂତି ସ୍ଥାପନ ଓଉତ୍ସର୍ଗ କାଶ୍ମୀରର ନିରାପତ୍ତା ପାଇଁ ନିଜର ପ୍ରାଣବଳି ଦେବେ ।

"ସମାଜ" ୨୦।୧୦।୯୭

# ଆଶ୍ରମରେ ଆଉ ପବିତ୍ରତା ନାହିଁ

୧୯୪୭ ନଭେମ୍ବର ୨ ରବିବାର ମୋର ସହକର୍ମୀଂକ ମଧ୍ୟରେ ପ୍ରବଳ ମତଭେଦ ଦେଖା ଦେଲାଣି । ମୁଁ ଏହା ମଧ୍ୟ ବୁଝୁଛି ଯେ, ଆଶ୍ରମରେ ଆଉ ପୂର୍ବର ପବିତ୍ରତା ନାହିଁ । ମୁଁ ପ୍ରାୟ ଏକ ବର୍ଷ ହେଲା ଆଶ୍ରମ ବାହାରେ ରହିଛି । ତେଣୁ ସେଠାରେ କ'ଣ ସବୁ ଚାଲିଛି ତାହା ଭଗବାନ ଜାଣଂତି । ଜୀବନ ହେଉଛି ମୋ ପାଇଁ ପରମ ସତ୍ୟ । ଏହାକୁ ଇଶ୍ୱରଂକର ଏକ ଆଶୀର୍ବାଦ ଭାବି ମୁଁ ଏହାର ଯତ୍ନ ନେଉଛି ।

"ସମାଜ" - ୨୨।୧୧।୯୭

## ନାରୀଙ୍କୁ ସମ୍ମାନ ଦିଅ

୧୯୪୭ ମସିହା ନଭେଂବର ୪ ତାରିଖ, ମଂଗଳବାର

ମହିଳାମାନଙ୍କର ସ୍ୱାଧୀନତା ନାହିଁ ବୋଲି ମନୁ ଯାହା କହିଛଂତି ତାହା ଯଥାର୍ଥ ନୁହେଁ । ଯାହା ଜଣାପଡୁଛି ମନୁଂକ ସମୟରେ ନାରୀମାନେ ଉତ୍ପୀଡ଼ିତ ହୋଇ ପଶୁଭାବେ ରହୁଥିଲେ ବା ସେମାନଂକୁ ସେପରି ରଖାଯାଉଥିଲା । ଆମ ଶାସ୍ତ୍ରରେ ପତ୍ନୀକୁ ଅର୍ଦ୍ଧାଂଗିନୀ କୁହାଯାଏ । ସ୍ୱାମୀ ପତ୍ନୀଂକୁ ଦେବୀ ବୋଲି ସମ୍ବର୍ଦ୍ଧନା କରଂତି । ଏହା ଆଦୌ ଅସମ୍ମାନ ଜନକ ନୁହେଁ । ପୁରୁଷ ଯଦି ମନ୍ତରେ ପୁରୁଷ ଭାବରେ ରହିବାକୁ ଚାହେଁ ତେବେ ନାରୀକୁ ସେ ବିଶ୍ୱାସ କରିବା ଉଚିତ୍ । ଭାରତରେ ନାରୀମାନଂକୁ ସ୍ୱାଧୀନତା ପ୍ରଦାନ କଲେ ଭାରତର ସ୍ୱାଧୀନତା ସୁରକ୍ଷିତ ହେବ ଏବଂ ବିକାଶ ପକ୍ରିୟା ତ୍ୱରାନିତ ହେବ । ଆମେ ଅସ୍ପୃଶ୍ୟମାନଂକ ପ୍ରତି ଯେପରି ବ୍ୟବହାର କରୁଛେ ଠିକ୍ ସେହିପରି ନାରୀ ପ୍ରତି କରୁଛେ । ଏହା ଆମର ହୀନମନ୍ୟତା, ଦୁର୍ବଳତା ଓ ନିଃସହାୟତାର ପ୍ରମାଣ ।

ଝିଅମାନେ ବାପମାଂକର ସେବା ଯେପରି ଯତ୍ନ ଓ ନିଷ୍ଠାର ସହ କରଂତି କ୍ୱଚିତ୍ ପୁଅ ତାହା କରଂତି ।

ଜଣେ ଅହିଂସାବାଦୀ ଭାବେ ଲୁହ ନଗଡ଼ାଇ ହୃଦୟକୁ ମୁଁ କଠୋର କରି ଦେଇଛି । ଯାହା ଫଳରେ କି ବିପର୍ଯ୍ୟୟକୁ ଏଡ଼ାଇବାର ମନୋବଳ ମୋର ରହିଛି । ଅହିଂସାର ପୂଜାରୀ ଫୁଲପରି କୋମଳ ଓ ଗ୍ରାନାଇଟ୍ ପରି ଟାଣ । "ସମାଜ" - ୨୭।୧୧।୯୭

## ଗୋ - ସେବା

୧୯୪୭ ମସିହା ନଭେଂବର ୫ ତାରିଖ ବୁଧବାର

ମାରୁୱାଡ଼ି ଓ ଗୁଜରାଟୀମାନେ ଗୋ-ବଧର ବିରୋଧ କରଂତି । କିଂତୁ ସେମାନେ ନିଜେ ଗାଇ ଓ ତାହାର ପିଲାମାନଂକ ପ୍ରତି ଭଲ ବ୍ୟବହାର କରଂତି ନାହିଁ । ଭାରତର ଗାଇଗୋରୁ ପୃଥିବୀରେ ସବୁଠାରୁ ଅବହେଳିତ ଓ ରୁଗ୍ଣ । ବଳଦମାନଂକ ପ୍ରତି ଅକଥନୀୟ ଅତ୍ୟାଚାର ହୁଏ । ସରକାର କେବଳ ଗୋବଧ ବଂଦ ପାଇଁ ଆଇନ୍ ପ୍ରଣୟନ କଲେ ସେମାନଙ୍କଂର ଦୁଃଖ ଦୂର ହେବ ନାହିଁ । ସେମାନଂକ ପ୍ରତି ଦୟା ପ୍ରଦର୍ଶନ କରାଯିବା ଉଚିତ୍ । (୨୪.୧୧.୯୭ "ସମାଜ")

## ପ୍ରକୃତ ସନ୍ନ୍ୟାସୀ

ଯଦି ଜଣେ ଆତ୍ମନିୟଂତ୍ରଣ କରିପାରିଲା । ତେବେ ଆଉ ଗେରୁଆ ବସ୍ତ୍ରର ଆବଶ୍ୟକତା ନାହିଁ କିଂବା ବଣରେ ରହିବା ଦରକାର ନାହିଁ । ଚିଂତା ଓ ଭାଷା ଉପରେ ଯାହାର ନିୟଂତ୍ରଣ ଅଛି ସେ ହେଉଛି ପ୍ରକୃତ ସନ୍ନ୍ୟାସୀ । ନିର୍ଜନ ବଣରେ ରହିଲେ ମୁକ୍ତି ମିଳେନା । ପ୍ରାଚୁର୍ଯ୍ୟରୁ ଦୂରରେ ରହିଲେ ଅଭାବୀମାନଂକ ସେବା କରିହେବ ।

"ସମାଜ" ୨୪।୧୧।୯୭

# ମୁକ୍ତ ବାଣିଜ୍ୟ

୧୯୪୭ ନଭେମ୍ବର ୭

ବହୁତ ବିଚାର କରିବା ପରେ ମୁଁ ମୁକ୍ତ ବାଣିଜ୍ୟ କଥା କହୁଛି । ବଂଗପ୍ରଦେଶ ଯଦି ବିହନ ଚାହେଁ ଏବଂ ଉତ୍ତର ପ୍ରଦେଶ ମୁଖ୍ୟ ମଂତ୍ରୀ ପଂଥଜୀ ତାହା ଦେବେ ନାହିଁ । ତେବେ ଏହା ସ୍ୱାର୍ଥପର ନୀତି ହେବ । ପୁନଶ୍ଚ ମାଂଦ୍ରାଜର ଲୋକେ ଯଦି କହିବେ ଯେ ସେମାନେ ଭାତ ବା ଡ଼ାଲି ବ୍ୟତୀତ ଆଉ କିଛି ଖାଇବେ ନାହିଁ ତେବେ ତାହା ମଧ୍ୟ ଅସୁବିଧା ସୃଷ୍ଟି କରିବ । ଆମକୁ ଗହମ, ବାଜରା, ଜଅ, ଆଦି ଖାଇବାକୁ ହେବ । ମୁଁ ଭାବୁଛି ଆମର ପର୍ଯ୍ୟାପ୍ତ ପରିମାଣର ଖାଦ୍ୟ ଅଛି । ଏହା ହୋଇପାରେ ଯେ ଗୋଟିଏ ପ୍ରଦେଶରେ ଅଧିକ ଖାଦ୍ୟ ଶସ୍ୟ ଅଛି ଅନ୍ୟ ରାଜ୍ୟରେ କମ୍ । ସମଗ୍ର ଭାରତରେ ଖାଦ୍ୟ ଉତ୍ପାଦିତ ହେଉଛି । ତାହାକୁ ଆମେ ଯଦି ସଂଗ୍ରହ କରିବା ତେବେ ଭାରତରୁ ଖାଦ୍ୟ ସଂକଟ ଦୂର କରାଯାଇପାରିବ । ଯଦି ବଂଗ ପ୍ରଦେଶରେ ଚାଉଳ ନାହିଁ, ତେବେ ଆସାମରୁ ଆସିବ, ଭାରତରେ ସବୁ ରାଜ୍ୟ ଏକାଠି ହୋଇ କାମ କରିବେ ନଚେତ୍ ଏକାଠି ମରିଯିବେ - ଯଦି ଆମେ ହୃଦୟଗଂମ କରିବା ତେବେ ଯାଇ ସ୍ୱାଧୀନତାର ମୂଲ୍ୟବୁଝିବା । ଯଦି ରାଜ୍ୟମାନେ ପରସ୍ପର ସହ ପ୍ରତିଦ୍ୱଂଦିତା କରଂତି ତେବେ ଆମେ ସମସ୍ତେ ଧ୍ୱଂସ ପାଇଯିବା ।''ସମାଜ'' ୨୭।୧୧।୯୭

# ଦୀପାବଳୀ

୧୯୪୭ ନଭେମ୍ବର ୧୩

ଯେଉଁ ମାନଙ୍କର ମୌଳିକ ଆବଶ୍ୟକ ତାର ଅଭାବ ନାହିଁ ଆନନ୍ଦରେ ଜୀବନ ବିତାଉଛନ୍ତି, ପ୍ରାଚୁର୍ଯ୍ୟରେ ରହିଛନ୍ତି ସେମାନେ ଆଜି ଆନନ୍ଦର ଉତ୍ସବ ଦୀପାବଳୀ ପାଳନ କରୁଛନ୍ତି । ବାଣ ଫୁଟୁଛି । ମିଠା ବଣ୍ଟା ଯାଉଛି । ମହିଳା ମାନେ ଗହଣା ଗାଣ୍ଠି ପିନ୍ଧି ବାହାରିଛନ୍ତି । କୁଣିଆ ମୈତ୍ରରେ ଘର ପୂରି ଉଠୁଥିବ, କେହି କେହି ବନ୍ଧୁ ବାନ୍ଧବ ଘରକୁ ମଧ୍ୟ ଯାଉଥିବେ । ଉତ୍ସବ ପାଳୁଥିବା ଲୋକେ ସତେ ଯେପରି ଏକ ଭିନ୍ନ ଦୁନିଆରେ ଅଛନ୍ତି । କିନ୍ତୁ ଶରଣାର୍ଥୀ ଶିବିରରେ ଯେଉଁମାନେ ଅଛନ୍ତି, ଉପାସ, ଥଣ୍ଡା ରୋଗରେ ଜୀବନ ବିତାଉଛନ୍ତି । ସେମାନଙ୍କ ପାଇଁ ଦୀପାବଳୀର ଗୁରୁତ୍ୱ କିଛି ନାହିଁ ।

ଅସତ୍ୟ ଉପରେ ସତ୍ୟର ବିଜୟକୁ ସ୍ମରଣ କରିବା ଲାଗି ଦୀପାବଳୀ ପାଳନ କରାଯାଏ । ଆଜି ଆଉ ରାମ ରାଜ୍ୟ ନାହିଁ । ତେଣୁ ଆମେ କାହିଁକି ଦୀପାବଳି ପାଳନ କରିବା । କେବଳ ଈଶ୍ୱର ହିଁ ଆମ ହୃଦୟକୁ ଆଲୋକିତ କରି ପାରିବେ ଏବଂ ତାହା ହେବ ପ୍ରକୃତ ଆଲୋକ । ହୃଦୟକୁ ଆଲୋକିତ କରିବାକୁ ଆସ ପ୍ରତିଜ୍ଞା କରିବା, ଆମ ହୃଦୟରେ ରାବଣ ଉପରେ ରାମଙ୍କର ବିଜୟ ହେବ । ''ସମାଜ'' ୨. ୧୨. ୯୭

# ଇଟାର ଯବାବ ପଥରରେ ଦିଅ ନାହିଁ

ଏବେ ଭାରତରେ ଯାହା ହେଉଛି ସେଥିରେ ଆଂତର୍ଜାତୀୟ କ୍ଷେତ୍ରରେ ଆମେ ମୁଣ୍ଡ ଟେକି ପାରିବା ନାହିଁ । ଇଟାର ଜବାବ ପଥରରେ ଦେବା ଆମର ଲକ୍ଷ୍ୟ ନୁହେଁ । ପାକିସ୍ଥାନରେ ଯାହା ଘଟୁଛି ତାହା ଯଦି ତୁମେ କରିବ ତେବେ ପାକିସ୍ଥାନ ବିରୋଧରେ ଅଭିଯୋଗ କରିବାର ନୈତିକ ଅଧିକାର ତୁମର ନାହିଁ ।

ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ବିଷୟରେ ମୁଁ ଅନେକ କଥା ଶୁଣିବାକୁ ପାଉଛି । ମୁଁ ଏହା ମଧ୍ୟ ଶୁଣିଛି ଯେ ଏବେ ଯାହା ସବୁ ବଦମାସୀ ହେଉଛି ତାହାର ମୂଳରେ ଏହି ସଂଘ ଅଛି । ହତ୍ୟା ବା ଲୁଣ୍ଠନ ଦ୍ୱାରା ହିନ୍ଦୁ ଧର୍ମକୁ ରକ୍ଷା କରାଯାଇ ପାରିବ ନାହିଁ ।

ଆମର ନିର୍ବୋଧତା ଯୋଗୁଁ ଏହି କଷ୍ଟଲବ୍ଧ ସ୍ୱାଦୀନତା ଆମ ହାତରୁ ଖସିଯିବ ।

''ସମାଜ'' ୫. ୧୨. ୯୭

## ସଶସ୍ତ୍ର ପ୍ରତିବାଦ ସତ୍ୟାଗ୍ରହ ନୁହେଁ

କୌଣସି ସଶସ୍ତ୍ର ପ୍ରତିବାଦ ବା ବିରୋଧକୁ ସତ୍ୟାଗ୍ରହ କୁହାଯିବା ଏକ ତାମସାରେ ପରିଣତ ହୋଇଛି । ଏହାଦ୍ୱାରା ସମାଜର କ୍ଷତି ହେବ । ପ୍ରକୃତରେ ସତ୍ୟାଗ୍ରହ ଅର୍ଥ ହେଉଛି, ଜୀବନ୍ତ ଈଶ୍ୱର । ଏହା ସତ୍ୟ ଓ ପ୍ରେମର ଅବତାର । ଏହା ସବୁବେଳେ ସତ୍ୟାଗ୍ରହୀ ପାଖରେ ଥାଏ । ପ୍ରକୃତ ସତ୍ୟାଗ୍ରହୀର କେହି କ୍ଷତି କରିବାକୁ ସାହାସ କରନ୍ତି ନାହିଁ ।

ମୁସଲିମ ଜାତୀୟ ରକ୍ଷୀ, ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ, ଅକାଳୀ ସ୍ୱେଚ୍ଛାସେବୀ ବାହିନୀ ଆଦି ରାଷ୍ଟ୍ରର ସ୍ୱାଧୀନତା ପ୍ରତି ବିପଦ । "ସମାଜ" ୭. ୧୨. ୯୭

## ସହୀଦ ସେରଓ୍ୱାନୀ

**୧୯୪୭ ନଭେମ୍ବର ୧୯ ବୁଧବାର**

୩୦ ବର୍ଷ ବୟସ୍କ ବାରମୁଲ୍ଲାର ମକବୁଲ ସେରଓ୍ୱାନୀଙ୍କୁ ଆକ୍ରମଣକାରୀମାନେ ଆଜାଦ କାଶ୍ମୀର ପ୍ରତି ଆନୁଗତ୍ୟ ପ୍ରକାଶ ପାଇଁ ବାଧ କରିଥିଲେ । କୀନ୍ତୁ ସେରଓ୍ୱାନୀ ନ୍ୟାସନାଲ କନ୍‌ଫରେନ୍‌ସ ତ୍ୟାଗ କରିବେ ନାହିଁ ବୋଲି ରୋକଠୋକ ଭାବେ ଜଣାଇବାରୁ ତାଙ୍କୁ ସଂଗେ ସଂଗେ ହତ୍ୟା କରାଗଲା । ଏହି ସହିଦଙ୍କ ପାଇଁ ହିନ୍ଦୁ, ମୁସଲମାନ ଶିଖ୍ ସମସ୍ତେ ଗର୍ବିତ ।

"ସମାଜ" ୮.୧୨.୯୭

## କୃପାଣ ପବିତ୍ରତାର ପ୍ରତୀକ

**୧୯୪୭ ମସିହା ନଭେମ୍ବର ୨୯ ତାରିଖ ।**

ଧର୍ମ କାର୍ଯ୍ୟରେ ଉଭୟ ବାହାର ଓ ଭିତର ପରିଷ୍କାର ରଖାଯିବା ଉଚିତ୍ । ପବିତ୍ର ଧର୍ମକାର୍ଯ୍ୟରେ ଏହା ହେବା ଆବଶ୍ୟକ । ଏପରିକି ମା ଯେତେବେଳେ ପିତା ଔଷଧ ତାହାର ଛୁଆକୁ ଦିଏ ଠିକ୍ ସେହିପରି ଅପ୍ରିୟସତ୍ୟ ଆପଣମାନଙ୍କୁ କହିବାକୁ ମୁଁ ବାଧ ହେଉଛି । ଏହା ଆପଣମାନଙ୍କ ମଙ୍ଗଳ ପାଇଁ ମୁଁ କହୁଛି । ମା ମତେ ଗାଳିଦିଏ ସତ୍ୟ; କିନ୍ତୁ ତା କୋଳର ଆରାମ ଆଉ କେଉଁଠି ମୁଁ ପାଏ ନାହିଁ । ଶେଖ ଅବଦୁଲ୍ଲା ହେଉଛନ୍ତି ଜଣେ ସଚ୍ଚା ମୁସଲମାନ । କାଶ୍ମୀରରେ ସବୁ ହିନ୍ଦୁ ଓ ଶିଖଙ୍କ ହୃଦୟକୁ ସେ ଜୟକରିଛନ୍ତି । ସେଠାରେ ମୁସଲମାନ ହିନ୍ଦୁ, ଶିଖଙ୍କ ମଧ୍ୟରେ କିଛି ଭେଦଭାବ ନାହିଁ । ଏହା ସମ୍ଭବ ହୋଇଛି ଶେଖ ଅବଦୁଲ୍ଲାଙ୍କ ଯୋଗୁ । ଆମ୍ଭେମାନେ ସେହି ବିଶ୍ୱାସଘାତକଙ୍କ ଉପରେ ରାଗି ନିରୀହ ମୁସଲମାନ, ପିଲା, ମହିଳା ଓ ବୃଦ୍ଧମାନଙ୍କୁ ଆଘାତ କରିବା ଅତ୍ୟନ୍ତ ଲଜ୍ଜାକର ଘଟଣା । ଆଉ ଏପରି ଘଟଣାର ପୁନରାବୃତ୍ତି ହେବନାହିଁ ବୋଲି ମୁଁ ଆଶା କରୁଛି । ଶିଖମାନଙ୍କର କୃପଣ ହେଉଛି ପବିତ୍ରତାର ପ୍ରତୀକ । ନିରୀହ ଓ ନିଃସହାୟଙ୍କୁ ରକ୍ଷା ପାଇଁ ଏହାର ବ୍ୟବହାର କରାଯିବା ଉଚିତ । ଗୁରୁ ଗୋବିନ୍ଦ ସିଂହଙ୍କର ବହୁ ପ୍ରଭାବଶାଳୀ ମୁସଲମାନ ଶିଷ୍ୟ ଥିଲେ । ମଦ୍ୟ, ନିଶା, ନୃତ୍ୟ, ଲମ୍ପଟତା ଏବଂ ଅନ୍ୟାନ୍ୟ ପାପଠାରୁ ଶିଖଗୁରୁଙ୍କ ଭକ୍ତମାନେ ଦୂରରେ ରହିବା ଉଚିତ୍, ସମସ୍ତଙ୍କୁ ଭଲଭାବେ ଗ୍ରହଣ କରିବାକୁ ଶିଖ ଗୁରୁ ନାନକ ଶିକ୍ଷା ଦେଇଛନ୍ତି । "ସମାଜ" ୧୮. ୧୨. ୯୭

## ଗଠନମୂଳକ କାର୍ଯ୍ୟର ବ୍ରତାଧାରୀ ରାଜନୀତି ଛାଡ଼ନ୍ତୁ

**୧୯୪୭ ମସିହା ଡିସେମ୍ବର ୧୩ ତାରିଖ**

ଆମେ ଆମ ଜାତୀୟ ଚରିତ୍ରର ଉନ୍ନତି କରିବା । ଯଦି ଓ ସ୍ୱରାଜ ଆମେ ଅଳ୍ପଦିନ ହେଲା ଲାଭ କରିଛେ ଆମର ଗଠନ ମୂଳକ କାର୍ଯ୍ୟରେ ଢିଲା ହେଉଛି । ଗଠନମୂଳକ କାର୍ଯ୍ୟପାଇଁ ବ୍ରତୀ ହୋଇଥିବା ବ୍ୟକ୍ତିମାନେ ରାଜନୀତି ତ୍ୟାଗକରି ଏକ ନୂତନ ଶକ୍ତିଶାଳୀ ଭାରତ ଗଠନ ଉପରେ ଧ୍ୟାନ ଦେବା ଉଚିତ୍ । ଆମେ ପ୍ରଥମେ ନିଜକୁ ଶୁଦ୍ଧ କରିବା, ଏବେ କଂଗ୍ରେସ ହାତରେ କ୍ଷମତା । ଏପରି ସ୍ଥଳେ ଆମ କାର୍ଯ୍ୟ କାହିଁକି ଆଗଉ ନାହିଁ ? ଏହା ହୋଇ ପାରିଥାଏ, ଆମର ବୋଧହୁଏ ହୃଦୟ ନାହିଁ । ଯଦି ଆମର ଥାଆନ୍ତା ତେବେ ଅନ୍ୟର ଦୁଃଖ ଯନ୍ତ୍ରଣା ଦେଖି ଆମେ ବ୍ୟଥିତ ହୁଅନ୍ତୁ ଆମର ଖୋଲାମନ ନାହିଁ । ଗଠନ

ମୂଳକ କାର୍ଯ୍ୟ ହେଉଛି ଜୀବନର ଏକ ଧାରା । ନିଜ ଘରକୁ ଯଦି ଆମେ ଠିକ୍ ରଖିପାରିବା ତେବେ ରାଜନୈତିକ ଶକ୍ତିକୁ ଆମେ ପ୍ରଭାବିତ କରିପାରିବା ।

''ସମାଜ'' - ୧.୧.୯୮

## ଦୁଧିଆଳି ଗାଈର ନାତ ମିଠା

### ୧୯୪୭ ଅକ୍ଟୋବର ୨୦ ସୋମବାର

ମତେ ଯେଉଁମାନେ ଗାଳି ଦିଅନ୍ତି ସେମାନଙ୍କୁ ମୁଁ ବହୁତ ଗୁରୁତ୍ୱ ଦିଏ । କାରଣ ମତେ ଗାଳି ଦେବା ଦ୍ୱାରା ସେମାନଙ୍କ ହୃଦୟ ସଫା ହୋଇଯାଏ । ଅନୁଗତ ମାନଙ୍କ ଅପେକ୍ଷା କଟୁ ସମାଲୋଚକ ମାନଙ୍କୁ ମୁଁ ଅଧିକ ଭଲ ପାଏ । କିନ୍ତୁ ଯିଏ ଉଦ୍ୟମ ବନ୍ଦ କରେ ମୁଁ ତାଙ୍କ ଘୃଣା କରେ ।

ମତେ ଗାଳି ଦେଇ ଅନେକ ବନ୍ଧୁ ପତ୍ର ଦେଇଛନ୍ତି; କିନ୍ତୁ ଦୁଧିଆଳି ଗାଈର ନାତ ମଧ ନୁହେଁ କି ?

ଯେ ସମ୍ମାନ ଚାହେଁ ସେ ମଧ ଅନ୍ୟକୁ ସମ୍ମାନ କରିବା ଉଚିତ । ନିଜ ଜୀବନକୁ ବାଜି ଲଗାଇ ପଡ଼ୋଶୀର ଜୀବନ ରକ୍ଷା କରିବା ହେଉଛି ପ୍ରକୃତ ମଣିଷ ପଣିଆ ।

''ସମାଜ'' ୭.୧୧.୯୭

## ମହିଳାଙ୍କୁ ଅପହରଣ ପାଇଁ ପାକିସ୍ଥାନ ଦାୟୀ

### ୧୯୪୭ ମସିହା ଡିସେମ୍ବର ୮ ତାରିଖ

କେତେକ ହିନ୍ଦୁ ମହିଳା କର୍ମୀ ଲାହୋରରେ ମୁସଲମାନ ମହିଳା ନେତାଙ୍କୁ ସାକ୍ଷାତ କରିଛନ୍ତି । ଅପହୃତ ହୋଇଥିବା ହିନ୍ଦୁ, ଶିଖ, ମୁସଲମାନ ମହିଳାଙ୍କ ସଂପର୍କରେ କି ନିଷ୍ପତ୍ତି ନିଆଯିବ ତାହା ଉପରେ ଆଲୋଚନା ହୋଇଥିଲା । ଏହି ମହିଳା ମାନଙ୍କୁ ପ୍ରଥମେ ଉଦ୍ଧାର କରି ତାଙ୍କର ପରିବାର ହାତରେ ଅର୍ପଣ କରାଯିବ । ଧିକ୍ ସେ ବାପାମାଙ୍କୁ ଓ ସ୍ୱାମୀଙ୍କୁ, ଯେଉଁମାନେ ନିଜ କନ୍ୟା, ବୋହୂ ଓ ପତ୍ନୀଙ୍କୁ ଦୁଃଖ ସାଗରରେ ଭସାଇ ଦେଉଛନ୍ତି । ଏହି ମହିଳାମାନଙ୍କରତ କିଛି ଦୋଷ ନାହିଁ । ସେମାନେ ହିଂସାକାଣ୍ଡର ଶିକାର ହୋଇଛନ୍ତି । ଏଥିପାଇଁ ସେମାନଙ୍କୁ କଳଙ୍କ ମୋହର ଦେବା ଏକ ଜଘନ୍ୟ ଘଟଣା । ଏହି ବିଷାକ୍ତ କାଣ୍ଡପାଇଁ ମୁଖ୍ୟତଃ ପାକିସ୍ଥାନ ଦାୟୀ । ତେବେ ଦାୟିତ୍ୱ ଏଡ଼ାଇଦେବା ମଙ୍ଗଳକର ନୁହେଁ । ତେଣୁ ସାଂପ୍ରତିକ ପରିସ୍ଥିତିରେ ଉଭୟ ଦେଶର ସରକାରଙ୍କ ନିଦ୍ରାଭଙ୍ଗ ହେବ ଓ ଏହି ନିରାଶ୍ରିତ ମହିଳାମାନଙ୍କ ଦୁଃଖ ଲାଘବ ପାଇଁ ଉଭୟ ଦେଶର ସରକାର ଆଗେଇ ଆସିବେ । ''ସମାଜ''-୨୭.୧୨.୯୭

## ଏ ବର ସ୍ୱାଧୀନତା ଆମ ପାଇଁ ଅଭିଶାପ

### ୧୯୪୭ ମସିହା ଡିସେମ୍ବର ୩ ତାରିଖ

ଏକଦା ମୁଁ ଚାହୁଁଥିଲି ୧୨୫ ବର୍ଷ ବଞ୍ଚିବା ପାଇଁ । ଏବେ ସେ ଇଚ୍ଛା ମୋର ନାହିଁ । ଏବେ ଆମେ ଯେଉଁ ସ୍ୱାଧୀନତା ପାଇଛେ ତାହା ପ୍ରକୃତ ସ୍ୱାଧୀନତା ନୁହେଁ ବୋଲି ମୁଁ ଭାବୁଛି । ବରଂ ଦେଶପାଇଁ ଏହା ଏକ ଅଭିଶାପ । ଆମେ ନିଜ ଗୋଡ଼ରେ ନିଜେ ନିଜେ କୁରାଢ଼ୀ ମାରିଛେ । ଏହା ଅତ୍ୟନ୍ତ ଦୁଃଖର କଥା ଯେ ଦେଶ ସ୍ୱାଧୀନ ହେବାପରେ ସାଂପ୍ରଦାୟିକତା ଭିତ୍ତିରେ ସେନାବାହିନୀ ଭାଗ ଭାଗ ହୋଇଗଲା । ଭାରତର ଜେନେରାଲ ଯଦି ମୋକଥା ଶୁଣିବେ ଏବଂ କାମ କରିବେ ତେବେ ମୁଁ ଭାବିବିଯେ ସତରେ ଅହିଂସା ଉପାୟରେ ଆମେ ସ୍ୱାଧୀନତା ପାଇଛେ । ସେହି ସ୍ୱାଧୀନତା ପାଇଁ ଆମେ ନିଜକୁ ପ୍ରସ୍ତୁତ କରିବା ଉଚିତ । ପୁଲିସ ଓ ସୈନ୍ୟ ସଚ୍ଚୋଟ ହେବା ଉଚିତ । ଅହିଂସା ଉପାୟରେ ହିଂସାକୁ ଜୟ କରିହେବ । ୨ରେ ୨ ମିଶିଲେ ଯେପରି ୪ ହୁଏ ଏହା ଠିକ୍ ସେହିପରି ସତ୍ୟ । ଅହିଂସା ସାଧନ ପାଇଁ ନିର୍ମଳ ହୃଦୟ ଓ ଆତ୍ମବଳ ଆବଶ୍ୟକ । ଅହିଂସାର ଯେ ପୂଜାରୀ ତାଙ୍କ ହୃଦୟର କୌଣସି କୋଣରେ ସାମାନ୍ୟ ହିଂସାଭାବ ମଧ୍ୟ ରହିବ ନାହିଁ ।

''ସମାଜ'' - ୨୨.୧୨.୯୭

# ଶିକ୍ଷକଙ୍କୁ ଧର୍ମଗୁରୁର ସମ୍ମାନ ମିଳୁ

**୧୯୪୭ ମସିହା ଡିସେମ୍ବର ୧୧ ତାରିଖ ।**

ଯୁବକମାନେ ପରିମଳ ବ୍ୟବସ୍ଥା, ଅର୍ଥନୀତି ଏବଂ ଅନ୍ୟାନ୍ୟ ବିଷୟରେ ଜ୍ଞାନ ଆହରଣ କରବା ଉଚିତ । କେବଳ ପୁସ୍ତକ ପାଠକରି ଜ୍ଞାନ ଅର୍ଜନ ହୁଏ ନାହିଁ, ବାସ୍ତବ କ୍ଷେତ୍ରରେ କାମକରି ଜ୍ଞାନ ଆହରଣ କରାଯାଏ । କଠୋର ପରିଶ୍ରମ କରି ଆବଶ୍ୟକୀୟ ଜ୍ଞାନ ଆହରଣ କର । ଲର୍ଡ଼ କର୍ଜନଙ୍କ ଜନ୍ମ ଦିବସକୁ ଘୋଷିକରି ମନେ ରଖିବାର ଆବଶ୍ୟକତା କ'ଣ ଅଛି ? ଛାତ୍ରମାନେ ହେଉଛନ୍ତି ଦେଶର ପ୍ରକୃତ ସଂପଦ । ଭାରତର ସ୍ୱାଧୀନତାର ବହ୍ନି ଯଦି ପ୍ରଜ୍ୱଳିତ କରି ରଖିବାକୁ ଥାଏ ତେବେ ପ୍ରଥମେ ଶିକ୍ଷା କ୍ଷେତ୍ରରେ ବିପ୍ଲବ ଆବଶ୍ୟକ । ଶିକ୍ଷକମାନେ ମର୍ଯ୍ୟାଦାର ସହ ନିଜକାର୍ଯ୍ୟ କରନ୍ତୁ । ପ୍ରତ୍ୟେକ ପିତା ଶିକ୍ଷକଙ୍କ କାର୍ଯ୍ୟପ୍ରତି ଆଗ୍ରହ ପ୍ରକାଶ କରିବା ଉଚିତ । ଆଧାତ୍ମିକ ଗୁରୁମାନଙ୍କୁ ଆମେ ଯେପରି ସମ୍ମାନ ପ୍ରଦର୍ଶନ କରୁ ଠିକ୍ ସେହିପରି ସମ୍ମାନ ଯଦି ଶିକ୍ଷକମାନଙ୍କୁ ଆମେ ନକରିବା ତେବେ ସେମାନେ ପ୍ରକୃତ ଜ୍ଞାନ ଆମ୍ଭମାନଙ୍କୁ ଦେଇପାରିବେ ନାହିଁ । ଧନ୍ଦାମୂଳକ ଶିକ୍ଷାରେ ଉଭୟ ଶରୀର ଓ ମନ ସକ୍ରିୟ ହୁଏ । ଖଦୀ ଆନ୍ଦୋଳନର କେନ୍ଦ୍ରବିନ୍ଦୁ ହେଉଛି ଚରଖା । ପ୍ରଥମେ ତୁଳାକୁ ଭିଣାଯିବ । ଏହାପରେ ସୂତା ହେବ ଓ ସୂତାରୁ ଲୁଗା ହେବ । ଯଦି ଭାରତର କୋଟି କୋଟି ଲୋକ ଏହା କରିବେ ଏବଂ ପିଲାଙ୍କୁ ଏହାଶିଖାଇ ଦିଆଯାଏ ତେବେ ବଜାରରୁ ଲୁଗା କିଣିବାରେ ଯାହା ବ୍ୟୟ କରାଯାଉଛି ତାହାକୁ ରୋକାଯାଇ ପାରିବ । ଏପରିକି ଦେଶରେ ଗୋଟିଏ ହେଲେ ଲୁଗାକଳ ନଥିଲେ ମଧ୍ୟ ଆମର ଲୁଗା ଅଭାବ ହେବ ନାହିଁ । ଚରଖା ବ୍ୟବହାର କଲେ କୋଟି କୋଟି ଟଙ୍କା ଗ୍ରାମକୁ ଯିବ । ଗ୍ରାମାଞ୍ଚଳର ଦାରିଦ୍ର୍ୟ ଦୂର ହୋଇପାରିବ ।

"ସମାଜ" - ୩୦. ୧୨. ୯୭

# ଚାକିରୀ ମଧ୍ୟ ଦେଶସେବା

**୧୯୪୭ ମସିହା ନଭେମ୍ବର ୨୩ ତାରିଖ, ରବିବାର**

ଏହା ସତ୍ୟ ଯେ ବ୍ରିଟିଶ ଶାସନ ବେଳେ ଚାକିରି ଛାଡ଼ି ଦେବା ପାଇଁ ମୁଁ ଆହ୍ୱାନ କରୁଥିଲି । ଅସହଯୋଗ କରିବାକୁ ପରାମର୍ଶ ଦେଉଥିଲି । ତେବେ ଏବେ ଆଉ ସେ ପରିସ୍ଥିତି ନାହିଁ । ଏବେ ଯେକୌଣସି ବ୍ୟକ୍ତି ଦେଶର ସେବା କରିବାକୁ ଚାହିଁବେ ସେ ଚାକିରି କରି ତାହା କରିପାରିବେ । ଦରମା ପାଉଥିବା ପ୍ରତ୍ୟେକ ବ୍ୟକ୍ତି ନିଷ୍ଠାର ସହ ଯଦି କାର୍ଯ୍ୟ କରନ୍ତି ଏବଂ ହିଂସାକାଣ୍ଡ ସୃଷ୍ଟି ନକରନ୍ତି ତେବେ ଦେଶର ସେବା ସେମାନେ ଠିକ୍‌ଭାବେ କରୁଛନ୍ତି ବୋଲି କହିବାକୁ ହେବ ।

ଯଦି ଜଣେ ମନ ଲଗାଇ କାମ ନ କଲା ତେବେ ଯେଉଁ ଅର୍ଥ ସେ ହାସଲ କରିବ ତାହା ଠକାମି; ଶୋଷଣ ଓ ପାପ । "ସମାଜ" ୧୪.୧୨.୯୭ଓ୧୨.୧୨.୯୭

# କଂଗ୍ରେସର ସଦ୍‌ବୁଦ୍ଧି ଉଦିତ ହେଉ

**୧୯୪୭ ମସିହା ନଭେମ୍ବର ୨୩ ତାରିଖ, ରବିବାର**

ଭାରତ ବିଭାଜନ ଆଦୌ ମୁଁ ଚାହୁଁ ନଥିଲି । ଏପରି ହେବ ବୋଲି ମତେ ସେତେବେଳେ ଜଳ ଜଳ କରି ଦେଖା ଯାଉଥିଲା । ତେଣୁ ଆଜି ଯେଉଁ ସଂକଟ ଦେଖା ଦେଇଛି ସେଥିରେ ମୁଁ ବିସ୍ମିତ ନୁହେଁ । ଯେଉଁ ଭାଇଭଉଣୀମାନେ କଂଗ୍ରେସରେ ଯୋଗ ଦେଇ ସ୍ୱାଧୀନତା ସଂଗ୍ରାମ ବେଳେ ଜେଲ, ଯାଇଥିଲେ ଚାବୁକ ଖାଇଥିଲେ ଏବେ ସେମାନେ କ୍ଷମତା ପାଇଁ ଲାଳାୟିତ । ସେମାନଙ୍କ କାର୍ଯ୍ୟକଳାପ ଶୁଣି ମୋ ଭିତରେ କ୍ରୋଧ ପରିବର୍ତ୍ତେ ଅନୁକମ୍ପା ସୃଷ୍ଟି ହୋଇଛି । ଏହାହିଁ ତ ହେଉଛି ଆମ ଦେଶ ପ୍ରେମୀମାନଙ୍କ ମନୋଭାବ । ହେ ଭଗବାନ ସେମାନଙ୍କର ସଦ୍‌ବୁଦ୍ଧି ଉଦିତ ହେଉ ।

"ସମାଜ" ୧୫. ୧୨. ୯୭

# ବିବିଧ

## ସୁବର୍ଣ୍ଣ ସ୍ୱାଧୀନତା

ଅନ୍ନପୂର୍ଣ୍ଣାଦାସ

ଭାରତର ଇତିହାସେ ଅଗଷ୍ଟ ପନ୍ଦର
ଚରଖା ଚିହ୍ନିତ ଧ୍ୱଜା ଉଡ଼େ ତାର ଶିର ।
ନେତାଏ ଭାବିଲେ ତାର ମଥାରେ ମଣ୍ଡିବେ
ସୁବର୍ଣ୍ଣ ମୁକୁଟ ଟିଏ ଅତି ଗଟରବେ ।
ସୁନା ତ ଅମୂଲ ମଉଲ କିଣିବେ କେମିତି ?
ପଚାଶ ବର୍ଷର ସ୍ୱପ୍ନ ବ୍ୟର୍ଥେ ଯିବ ବିତି ?

ଏବେ ବି କୁଟୁଛି ମାଆ ପରଘର ଧାନ
ଭୁଲିଛି ସେ ଆପଣାର ମାନ ସନମାନ ।
ଦେଖାଇ ଲଙ୍ଗଳା ନାଚ ବୁଲୁଛନ୍ତି ପିଲେ
ବିଷ - ଅମୃତର ଯୁଦ୍ଧ ନିତି ଗାଆଁ ବିଲେ ।

ମଣିଷ ଆକାରେ ଯେତେ ଜୀବ ବିହରନ୍ତି
ପ୍ରକୃତ ମଣିଷ ସେଥୁଁ ହାତର ଗଣତି ।
ବେଶି ଭାଗ ଛେଳିଧର୍ମୀ ମେଁଏ ମେଁଏ ହୋଇ
କଂସେଇ ପାଖରେ ଆଶ୍ରା ଲୋଡୁଛନ୍ତି ଯାଇ ।
ବଡ଼ ବଡ଼ ମହାବନ କରନ୍ତି ଶିକାର
ବୁଲୁନ୍ତି ଭାଲୁଧର୍ମୀ ରକ୍ତ ଶୋଷିବାର ।
ତାଙ୍କ ପଛେ ଚାଲିଛନ୍ତି ଧାଡ଼ି ଧାଡ଼ି ହୋଇ
ରକ୍ତ ଶୋଷା ଟିଙ୍କ ଜୋକ ବାଇଦ ବଜାଇ ।
କୁତ ମଡ ପାଖେ ବିଲୁଆ କୁକୁର
ଚିଲ ଶାଗୁଣାଙ୍କ ରାବ ଅତି ଭୟଙ୍କର ।
କାହାରି ଇଚ୍ଛାରେ ବାଧା ନ ଦିଅନ୍ତି କେହି
ଜୀଅନ୍ତା ଲୋକଙ୍କ କଥା କର୍ଣ୍ଣେ ନ ଶୁଭଇ ।

ସୁନାର ଭାରତ ହେଲା ଆଳୁବତୀ ଗପ
ପାପ ହେଲା ପୁଣି ପୁଣ୍ୟ ଲୋ ପାପ ।
ଆଚାର ବିଚାର ସବୁ ରହିଲେ କଥାରେ
ଜୋର୍ ଯାର ମୂଲକ୍ ତାର ହେଲା ସବୁଠାରେ ।

ମଲାଙ୍କ ବଣରେ ଦେଶ ହେଲା ସୁଶୋଭିତ
ଜାଣି ନ ଜାଣନ୍ତି ଲୋକେ କେଉଁଥିରେ ହିତ ।
ଦେଶ ତ ସ୍ୱାଧୀନ ହେଲା ଅଗଷ୍ଟ ପନ୍ଦରେ
ପଶିନାହିଁ ସ୍ୱାଧୀନତା ଦେଶେ ପ୍ରତିଘରେ ।
ପଚାଶ ବର୍ଷ ବିତିଛି ଢଙ୍ଗ ନ ବଦଳି
ନାଗରିକ ନିଜ ଧର୍ମ ପାରିନାହିଁ କଳି ।
ସରକାର ଗଳା ଧରି ଝୁଲିବା ଅଭ୍ୟାସ
ସ୍ୱାଧୀନତା ନାମେ ସର୍ବେ ସ୍ୱେଚ୍ଛାରେ ବଶ ।
ସ୍ୱାଧୀନ ଦେଶ ଚଳଣି ନ ଚଳିଲା ଭଲେ
ସମ୍ମାନ ମିଳେ ଆପଣା ମହତ ରଖିଲେ ।

ଉଉରା ଯାଇଛି ବହି ଦେଉଛି ଖବର
ମଳୟ କରିବ ନବ ଜୀବନ ସଞ୍ଚାର ।

ରାମବାବୁ, ଦାମବାବୁ ଗାଦୀକୁ ଯେ ଗଲେ ।
ଗାଦୀ ମହିମାରେ ସର୍ବେ ଏକାପରି ହେଲେ ।
କେହି କାହାରିକୁ ବାଛିବାର ବେଳ କାହିଁ ?
ନିଜଛଡ଼ା ଅନ୍ୟ କେହି ଆଖି ଆଗେ ନାହିଁ ।

ଯୋଜନାମାନ ଆସିଲେ ଝଡ଼ ପରି ବହି
ଜନତା ପିଇଲା ବିଷ ନୀଳକଣ୍ଠ ହୋଇ ।
ସର୍କାର ବଦଳି ଥିଲା ନ ବଦଳି ବାଞ୍ଛା
ଯୋଗନା ଅନ୍ନ ବ୍ୟଞ୍ଜନ ତେଣୁ ହେଲା କଞ୍ଚା ।
ଜନ କଲ୍ୟାଣ ସକାଶେ ଆସିଲା ଯେ ଧନ
ବାଟମାରୁ ହେତୁ ଗଲା ନାହିଁ ଯଥା ସ୍ଥାନ ।
ନିଶା ନିବାରଣ ସଙ୍ଗେ ଅବଳା ତାରଣ
ଉଜାଣି ବହିଲା ପରି କାମ ହେଲା ଜାଣ ।
ହଳକୁ ବଳଦ ଭଣା କୃଷକ କତିରେ
ବିଂଶ ସୂତ୍ରୀ କାମ ଲେଖା ରହିଲା ପୋଥିରେ ।

ବିନୋବା ଯା କହିଥିଲେ ଗାଆଁ ଗାଆଁ ବୁଲି
ତାଙ୍କ କଥା ଲୋକମାନେ ଗଲେଣି ତ ଭୁଲି ।
କାହିଁଗଲେ ଜଗନ୍ନାଥ ଜଗତର ନାଥ !
କନ୍ଦରା ମଧରେ ଲୁଚି ହୋଇଲେ ଗୁପତ ।
ବୁଦ୍ଧଙ୍କ କରୁଣା ଧାରା ଲୁପ୍ତ ରକ୍ତଧାରେ
ଯୀଶୁଙ୍କ ପ୍ରେମ ହଜିଗଲା ଦୁଃଖୀଙ୍କ ଲୁହରେ ।
ମହମ୍ମଦଙ୍କର ଶାନ୍ତି ବାର୍ତ୍ତା ପବନରେ
ମିଶିଗଲା ସମବେତ ଆର୍ତ୍ତ ଚିତ୍କାରରେ ।

ତଥାପି ଆସିଛି ଆଜି ଅଗଷ୍ଟ ପନ୍ଦର
ସ୍ୱାଗତ ଜଣାନ୍ତି ସର୍ବେ ହୋଇ ଏକାକାର ।
ତ୍ରିରଙ୍ଗୀ ପତାକା ତଳେ ଶପଥ କରନ୍ତି
''ପାଞ୍ଚମନ ଏକ ହୋଇ ଦେଶ ହେଉ ଶାନ୍ତି !''
ସତେକି ଏ ଦେଶୁଁ ଭେଦଭାବ ଦୂର ହୋଇ
ରାମରାଜ୍ୟ ହେବ ପ୍ରତି ଜନେ ସୁଖ ଦେଇ ?
ସୁନାର ମୁକୁଟ ପଛେ ନ ହେଲା ନ ହେଉ
ସୁଖ ଶାନ୍ତି ସମୃଦ୍ଧିରେ ଦେଶ ଭରିଯାଉ ।
କୁଆଁସ, ଭଦ୍ରକ ''
୧୯୯୭ ଗାନ୍ଧୀଜୟନ୍ତୀ ସଂଖ୍ୟା ସର୍ବୋଦୟରୁ ଗୃହୀତ''

# ସ୍ୱାଧୀନତାର ପଚାଶ ପରେ

**ଆଚାର୍ଯ୍ୟ ଭାବାନନ୍ଦ**

ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ଭିତରୁ ୨୫ ବର୍ଷ ଓଡ଼ିଶାରେ କଟାଇଛି । (ଅବଶ୍ୟ ମଧ୍ୟେ ମଧ୍ୟେ ଦେଶର ଅନ୍ୟ ରାଜ୍ୟ ଓ ବିଦେଶକୁ ଯାଇଛି) । ତା' ପୂର୍ବରୁ ୧୯୪୨ଠାରୁ ୧୯୬୬ ପର୍ଯ୍ୟନ୍ତ ପ୍ରାୟ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଓ ଭାରତର ବହୁ ରାଜ୍ୟରେ ସମନ୍ୱୟ କଟାଇଛି । ପୁଣି ଗଲା ୫ ବର୍ଷ ଭିତରେ ନିର୍ବାଚନରେ ଭାଗ ନେବାଠାରୁ ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନର ଗଠନ ଓ ଏବେ ଆମର ରାଜନୈତିକ ଜୀବନଯାତ୍ରା, କାର୍ଯ୍ୟକଳାପ, ଭୋଟଯାତ୍ରା ଆଦିକୁ ଏ ଦେଶର / ରାଜ୍ୟର ପ୍ରଥମ ସଂକଟ ବୋଲି ଅଭିହିତ କରିବି । ( ମୋ ବିଚାରରେ ଏ କଥା ମୁଁ ପ୍ରଥମେ କହୁନାହିଁ, କେବଳ ଦୋହରାଉଛି ଏଇଥି ପାଇଁ ଯେ) ରାଜନୈତିକ ଦଳମାନେ ଯେଉଁ ସବୁ 'ବିଧାନ ପ୍ରଣୟନ' କରିଛନ୍ତି, ସେ ଗୁଡ଼ିକ ଯେପରି ସମୀକ୍ଷା ହେବା କଥା, ପ୍ରାୟୋଜିକ ଦିଗରୁ ଯେପରି ତାହା 'ଲୋକଙ୍କ ପାଇଁ' ସଂଶୋଧିତ ବୋ କଥା, ତାହା ହେଉନାହିଁ । ବୋଧହୁଏ ଏଇଥିପାଇଁ ଯେ ସ୍ୱାଧୀନତା ପ୍ରାପ୍ତି ସମୟରେ ଯେଉଁ ସ୍ୱପ୍ନ ଥିଲା, କାହାର ନେତୃତ୍ୱ ନେଇଥିଲେ ଦୂରଦୃଷ୍ଟି ସଂପନ୍ନ ଲୋକେ । ସାଦା କଥାରେ କହିଲେ - ସେମାନେ ଥିଲେ ଖୁବ୍ 'ଢେଙ୍ଗା ଲୋକ' । କ୍ରମେ କ୍ରମେ ଏହି ନେତୃତ୍ୱ ସବୁ ବାଙ୍ଗରା, ଛୋଟିଆ କ୍ଷମତା ଲୋଭୀଙ୍କ ହାତକୁ ଚାଲିଯାଇଛି । ଏକଥା ବୋଧହୁଏ ଗାନ୍ଧିଜୀ ଉପଲବ୍ଧି କରିଥିଲେ । ସେଥିପାଇ ସେ ୧୯୪୭ ଅଗଷ୍ଟ ୧୫ ତାରିଖର ଶୁଭବେଳାରେ ନୀରବ ଓ ଅନୁପସ୍ଥିତ ରହିବାକୁ ଶ୍ରେୟ ମଣିଥିଲେ । ଏବେ ଆମର ପ୍ରଧାନ ତ୍ରୁଟି - ମୋ ବିଚାରରେ - ସବୁ ନାଗରିକଙ୍କୁ ଭୋଟ ଅଧିକାର ଦେବା । ମୋ ଜାଣିବାରେ ପୃଥିବୀର କୌଣସି ରାଷ୍ଟ୍ର ଗଣତାନ୍ତ୍ରିକ ପଦ୍ଧତିକୁ କ୍ରିୟାଶୀଳ କରିବାକୁ ଏପରି ଭୋଟ ଅଧିକାର ଦେବାର ନଜିର ନାହିଁ ଏପରି ନୁହେଁ, ଏପରିକି ସମ୍ବିଧାନ ସଭାରେ ଏ ସଂପର୍କରେ ବିତର୍କ ସୃଷ୍ଟି ହୋଇଥିଲା । ମନେହେଉଛି (ସମ୍ବିଧାନ ସଭାର ବିଶେଷଜ୍ଞମାନେ ମୋର ତ୍ରୁଟି ଦର୍ଶାଇ ପାରନ୍ତି) ଏ ଦିଗରେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଓ ବଲ୍ଲଭଭାଇ ପଟେଲ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ସେମାନେ ଚାହିଁଥିଲେ ଯେ, ପ୍ରଥମେ ଏହି ଭୋଟ ଅଧିକାରକୁ ସୀମିତ ରଖିବା ଓ କାଳକ୍ରମେ ଏହାକୁ ସାଁବାଳକ ଭୋଟପ୍ରଥା ଭିତରକୁ ଆଣିବା । ସେମାନେ ପ୍ରସ୍ତାବ ଦେଇଥିଲେ ଯେ ପ୍ରଥମେ ଆମର ନାଗରିକ ମାନଙ୍କୁ ସେମାନଙ୍କର ଦାୟିତ୍ୱ ଓ ଅଧିକାର ବିଷୟରେ ଶିକ୍ଷାଦେବା ପରେ କ୍ରମଶଃ ସାଁବାଳକ ଭୋଟପ୍ରଥା ଚାଲୁରଖିବା । କିନ୍ତୁ ଗଣତନ୍ତ୍ରର ନିୟମ ଅନୁଯାୟୀ ତାଙ୍କ ପ୍ରସ୍ତାବ ସମ୍ବିଧାନ ସଭାର ବହୁମତ ଦ୍ୱାରା ନାକଚ ହୋଇଗଲା ।

ଗାନ୍ଧିଜୀଙ୍କର ପରାମର୍ଶ ଥିଲା ଭିନ୍ନ ପ୍ରକାର । ଗ୍ରାମ ସ୍ୱରାଜର ସହମତି ମୂଳକ ବ୍ୟବସ୍ଥାରୁ ଅଞ୍ଚଳ, ଜିଲ୍ଲା,

ରାଜ୍ୟ ଓ ରାଷ୍ଟ୍ରୀୟ ସ୍ୱରାଜର ସେ ଯେଉଁ ନକ୍ସା ଦେଇଥିଲେ, ତାହା ମଧ୍ୟ ଆମର ସଂସଦୀୟ ବ୍ୟବସ୍ଥାର ନେତୃବୃନ୍ଦ ପ୍ରତ୍ୟାଖ୍ୟାନ କରିଦେଲେ । ତା'ନହେଲେ ଆମେ ଏବେ ପଚାଶବର୍ଷ ପରେ ଲୋକଙ୍କୁ କ୍ଷମତା ଦେବା (ପଞ୍ଚାୟତ, ନାରୀ ଆଦିଙ୍କୁ କ୍ଷମତା ହାସ୍ତାନ୍ତର - Empowerment) କଥା କହୁନଥାନ୍ତୁ । କିନ୍ତୁ ଏବେ ବି ନିର୍ବାଚନ ଆଇନ (Peoples Representation Act) କୁ ସଂଶୋଧନ କରାଯାଇ ପାରିବ । ଏବେ ବି ପୁଣିଥରେ ଏକ ନୂଆ ସମ୍ବିଧାନ ପ୍ରଣୟନ ସଭା ଗଠନ କରାଯାଇ ପାରିବ (ଏହା ସର୍ବୋଦୟ ପାର୍ଟିର ଇସ୍ତାହାରରେ ରହିଛି, ଯାହା ନିର୍ବାଚନ କମିଶନଙ୍କ ଦପ୍ତରରେ ଗୃହୀତ ହୋଇଛି) । ଆମର ନିର୍ବାଚନ ବ୍ୟବସ୍ଥାକୁ କାଳୋପଯୋଗୀ କରିବାକୁ ହେଲେ, ଆମକୁ ଅନେକ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ । ଏଥିପାଇଁ ବିତର୍କ କରିବାରେ ସବୁଠାରୁ ଭଲ ସମୟ ହେଉଛି ଏବେ ଅର୍ଦ୍ଧଶତାବ୍ଦୀ ପରେ । ଏଥିପାଇଁ ସବୁ ରାଜନୈତିକ ଦଳ ଏ ଦିଗରେ ତତ୍ପର ହେବା କାମ୍ୟ । କିନ୍ତୁ ବର୍ତ୍ତମାନର ରାଜନୀତିକ ବାତାବରଣରେ ଏହା ସମ୍ଭବ କି ? ଯେତେବେଳେ ସଂସଦୀୟ ଗଣନ୍ତ୍ରିକ ପରଂପରା ଭୁଶୁଡ଼ି ପଡ଼ିବାକୁ ଯାଉଛି, ସେତେବେଳେ ମୋ ବିଚାରରେ ଗୁଲଜାରୀ ଲାଲ୍‌ନନ୍ଦାଙ୍କ ଅଧ୍ୟକ୍ଷତାରେ ଏପରି ଏକ ନୂତନ ସମ୍ବିଧାନ ସଭା ପ୍ରଣୟନ ଆରମ୍ଭ ପାଇଁ ଆଲୋଚନା ଆରମ୍ଭ ହେବା ଆବଶ୍ୟକ । ଏହି ଆଲୋଚନା ସଭାର ଦ୍ୱାରକୁ ସମସ୍ତ ସ୍ୱୀକୃତ ଓ ପଞ୍ଜୀକୃତ ରାଜନୈତିକ ଦଳକୁ ନିମନ୍ତ୍ରଣ କରାଯିବା ଆବଶ୍ୟକ । ଏହାର ପ୍ରଥମ କାର୍ଯ୍ୟ ହେବ ସମ୍ବିଧାନର ପୁନର୍ଲିଖନ ଓ ସଂପୃକ୍ତ ନିର୍ବାଚନ ଆଇନର ନବୀକରଣ । ଏହାର ଦ୍ୱାତିୟ କାର୍ଯ୍ୟଟି ହେବ ରାଜ୍ୟ ପୁନର୍ଗଠନ କମିଶନ ପାଇଁ ପ୍ରସ୍ତୁତି ଓ ତୃତୀୟ କାର୍ଯ୍ୟଟି ହେବ ପ୍ରଶାସନିକ ବ୍ୟବସ୍ଥାର ସଂପୂର୍ଣ୍ଣ ସଂସ୍କାର । ଏହାଛଡ଼ା ସଂସଦୀୟ ଗଣତନ୍ତ୍ରକୁ ରକ୍ଷା କରିବା ସମ୍ଭବ ହେବ ବୋଲି ମନେ ହେଉ ହେଉନାହିଁ (ଅବଶ୍ୟ ଯଦି ବହୁରାଷ୍ଟ୍ରୀୟ କମ୍ପାନୀମାନେ ତାଙ୍କ ସ୍ୱାର୍ଥ ଦୃଷ୍ଟିରୁ ଏ ଦିଗରେ ମନ ନବଳାନ୍ତି) ।

ଏବେ ଦ୍ୱିତୀୟ ତ୍ରୁଟି କଥା ଉଲ୍ଲେଖ କରେ । ପରିବାର ନିୟୋଜନ, ନିୟନ୍ତ୍ରଣ କ୍ଷେତ୍ରରେ ଆମର ନୀତି, ଯୋଜନା ଓ କାର୍ଯ୍ୟକ୍ରମ ସବୁଠାରୁ ବେଶୀ ବିଫଳ ହୋଇଛି (ତା'ନହେଲେ ୫୦ ବର୍ଷ ଭିତରେ ଜନସଂଖ୍ୟା ପ୍ରାୟ ତିନିଗୁଣ ହୋଇନଥାନ୍ତା ।ସେଥିପାଇଁ ଆମର ଅର୍ଥନୈତିକ ଅଭିବୃଦ୍ଧି ଧାର୍ଯ୍ୟ ଲକ୍ଷଠାରୁ ଦୂରେଇ ଯାଉଛି ।

ତୃତୀୟ ତ୍ରୁଟିଟି ହେଉଛି ପ୍ରାଥମିକ ଶିକ୍ଷା ପ୍ରତି ଚରମ ଅବହେଳା । ସମ୍ବିଧାନର ୪୫ ସୁଧା ଆମେ ୧୯୬୦ ସୁଧା ମାଗଣା ଓ ବାଧ୍ୟତା ମୂଳକ ଶିକ୍ଷା ବ୍ୟବସ୍ଥା କରିବାକୁ ଅଙ୍ଗୀକାର ବଦ୍ଧ ଥିଲୁ । ଏବେ ୧୯୯୭ରେ ଏ ତ୍ରୁଟିକୁ ସ୍ୱୀକାର କରିବାକୁ ଯେଉଁ ପ୍ରୟାସ ହେଉଛି ତାହା ଗୌଣ ସମସ୍ୟା ।

ଏହି ନିରକ୍ଷର ଲୋକେ ଭୋଟ ଅଧିକାର କ'ଣ ଜାଣନ୍ତି ନାହିଁ । ତାଙ୍କୁ ମୌଳିକ ମୂଲ୍ୟ ଭିତ୍ତିକ ଦିଆଯାଏ ନାହିଁ । ଚତୁର୍ଥ ତ୍ରୁଟିଟି ହେଉଛି - ଆମର ଶିକ୍ଷା ବ୍ୟବସ୍ଥା ଭିତ୍ତିରେ ଭାରତର ଅତୀତ ଗୌରବମୟ ଇତିହାସ ଓ ସଂସ୍କୃତି ସବୁଠାରୁ ଦୁଃଖର କଥା ହେଉଛି ଆମ ନେତାମାନଙ୍କ ଭିତରେ ଭାରତୀୟ ନେତା ଆଦୌ ନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ବୋଧହୁଏ ଆଞ୍ଚଳିକ ନେତାମାନଙ୍କର ପ୍ରାବଲ୍ୟ ହିଁ ଭାରତୀୟ ଗଣତନ୍ତ୍ରକୁ ଏକ ଅଙ୍କକଷା (ସଂଖ୍ୟା ଗଣିବା) ସଂସଦରେ ବା ବିଧାନସଭାରେ ପରିଣତ କରି ସାରିଛି । ଏଥିରୁ ଉଦ୍ଧାର ପାଇବାର ସମ୍ଭାବନା ନାହିଁ । ମନେ ହେଉଛି ହା ହିଁ ରାଷ୍ଟ୍ରର ବିପର୍ଯ୍ୟର କାରଣ ହୋଇପାରେ । ଏବେ ବି ପ୍ରଶ୍ନ ହେଉଛି ଭାରତ କ'ଣ ସତରେ ଏକ ରାଷ୍ଟ୍ର (Nation ଅର୍ଥରେ ) ନା ଏହା ଅନେକ ରାଷ୍ଟ୍ର (ଏବେ ଯାହାକୁ ରାଜ୍ୟ କୁହାଯାଉଛି)ର ସମାହାର । ଏ ନିଷ୍ପତ୍ତି ନେବା ବି ଆବଶ୍ୟକ । ସବୁଠାରୁ ବଡ଼ ଏହି ତ୍ରୁଟିଟି ଏବେ ଆଖି ଆଗକୁ ଆସିଛି ବିହାରରେ, ବୋଡ଼ୋଲାଣ୍ଡରେ, ଝାଡ଼ଖଣ୍ଡରେ, କୋଶଳରେ, ଉତ୍ତରାଖଣ୍ଡରେ, ମୁମ୍ବାଇରେ, ପୁଣି ଉତ୍ତର ପ୍ରଦେଶରେ । ତାହା ହେଉଛି ଜାତିବାଦ । ଏବର ନେତୃତ୍ୱ ଏହି ସଂକଟରୁ ରାଷ୍ଟ୍ରକୁ ଉଦ୍ଧାର

କରିବା ଦୁଃସ୍ୱପ୍ନ ପରି ମନେହେଉଛି (କାରଣ ଏହା ଆମର ଭୋଟ ରାଜନୀତି ସହିତ ଜଡ଼ିତ) ।

ଆମ ନାଗରିକଙ୍କ କଥା ଛାଡ଼ି ଦିଆଯାଉ । ଆମର ଜନପ୍ରତିନିଧି ମାନେ ସାଂସଦମାନେ, ବିଧାୟକମାନେ ବୋଧହୁଏ ପୃଥିବୀର ଯେକୌଣସି ଗଣତାନ୍ତ୍ରିକ ରାଷ୍ଟ୍ରଠାରୁ ବେଶୀ ବିଶୃଙ୍ଖଳ । ସେମାନେ ସେମାନଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱବୋଧର ପରିସର ମଧ୍ୟରେ କାର୍ଯ୍ୟ କରିଥିଲେ, ଏବେ ଭାରତତରେ ବିଚ୍ଛିନ୍ନତାବାଦର ସ୍ୱର ଶୁଣାଯାଉ ନଥାନ୍ତା । ମନେ ହେଉଛି ଏଭଳି ବିଶୃଙ୍ଖଳିତ (Permissive) ନାଗରିକ (ବେଶୀ ଭାଗ ତଥାକଥିତ ଶିକ୍ଷିତ ଲୋକେ) ପୃଥିବୀର ଅନ୍ୟ କୌଣସି ରାଷ୍ଟ୍ରରେ ନାହାନ୍ତି । ବିଶେଷ ଭାବରେ ଏମାନଙ୍କ ମଧ୍ୟରୁ ଅଧିକାଂଶ ରାଷ୍ଟ୍ରୀୟ ନିଯୁକ୍ତି ପାଇଛନ୍ତି ସେମାନେ ହିଁ ଆମର ପରିଚାଳକ ସାଜିଛନ୍ତି । ଅନ୍ୟ ଭାଷାରେ କହିଲେ ଯେଉଁଠି ରାଜନୈତିକ ଦଳ ଓ ଅମଲାତନ୍ତ୍ର ମଧ୍ୟରେ ଶୃଙ୍ଖଳର ଅଭାବ ରହିଛି, ସେ ରାଷ୍ଟ୍ରର ଭବିଷ୍ୟତ ଅନ୍ଧକାରମୟ କହିବାରେ କୌଣସି ଦ୍ୱିମତ ରହିବ ନାହିଁ । ଏହା ହିଁ ଭାରତର ଗଣତାନ୍ତ୍ରିକ ପ୍ରଚେଷ୍ଟାକୁ ବିଫଳ କରିବାର ସମ୍ଭାବନା ବେଶୀ ।

ଶେଷରେ ଦୁର୍ନୀତି କଥା କାହିଁକି କହିବି ? ସେ ବିଷୟରେ ତ ରାଜୀବ ଗାନ୍ଧୀଙ୍କ ଠାରୁ ଗୁଜରାଲଙ୍କ ପର୍ଯ୍ୟନ୍ତ ସମସ୍ତେ କହି ସାରିଲେଣି । ଅବଶ୍ୟ ପ୍ରଥମେ ଏକଥା କହିଥିଲେ ଜବାହରଲାଲ ନେହେରୁ । କିନ୍ତୁ ଗତ ପଚାଶବର୍ଷ ଭିତରେ ମୁଁ ଯେତେ ବିଜୁଳୀବତିର ଖୁଣ୍ଟ ଦେଖିଛି, ସେଠି କୌଣସି ଦୁର୍ନୀତି ପରାୟଣ ଲୋକ ଝୁଲୁଥିବାର ଲକ୍ଷ୍ୟ କରିନାହିଁ ।

ଏବେ ଏହିସବୁ କାରଣରୁ (ଯାହାର ଦୂରୀକରଣ ପାଇଁ ମୋର ଶକ୍ତି ବା ସାମର୍ଥ୍ୟ ନାହିଁ) ମୁଁ ସମସ୍ତ କାର୍ଯ୍ୟକ୍ରମରୁ ଅବସର ନେଉଛି । ଆଶା କରୁଛି ଯୁବ ସଂପ୍ରଦାୟ ସେମାନଙ୍କର ଭବିଷ୍ୟତର ସୁରକ୍ଷା ଦୃଷ୍ଟିରୁ ଗାନ୍ଧିଜୀଙ୍କର ସର୍ବୋଦୟ ଚିନ୍ତାଧାରାକୁ ପରିବର୍ତ୍ତିତ ପରିସ୍ଥିତି ଓ ପରିବେଶରେ ପୁଣିଥରେ ଅନୁଧ୍ୟାନ ଓ ଆବିଷ୍କାର କରିବା ଆବଶ୍ୟକ । ସେମାନେ ଚାହିଁଲେ ଭାରତର ସ୍ୱାଧୀନତା ବଞ୍ଚାଯାଇପାରିବ - ନଚେତ୍ ଭାରତ ଖଣ୍ଡିତ ହେବାକୁ ବାଧ୍ୟ ମନେହେଉଛି । ଏ ବର୍ଷଟି ମହୋତ୍ସବର ନୁହେଁ ଅନୁଶୋଚନାର ବର୍ଷ ହେଉ ବା ସମୀକ୍ଷାର ବର୍ଷ ହେଉ ।

ଯଦି ସ୍ୱାଧୀନତାର ୫୦ ବର୍ଷକୁ ପ୍ରୌଢତ୍ୱର ବର୍ଷ ବୋଲି ବିଚାର କରାଯାଏ ଓ ୬୦ ବର୍ଷକୁ ଅବସର ଗ୍ରହଣର ବର୍ଷ ବୋଲି ଧରାଯାଏ, ତେବେ ସନ୍ଦେହ ହେଉଛି ଯେ ଆଉ ଦଶ ବର୍ଷ ଭିତରେ ଆମେ ତ୍ରୁଟିଗୁଡିକ ସଂଶୋଧନ କର ନପାରିଲେ ଭାରତୀୟ ସଂସଦୀୟ ଗଣତନ୍ତ୍ରର ଧାରାକୁ ସୁନ୍ଦର ସମାଧି ଦେଇ ପାରିବା ।

(୧.୧୨.୯୭ରେ )

# ସର୍ବୋଦୟ ବିଚାର ମଞ୍ଚ

**ଗୌରୀ ମଣି ଦେବୀ**

ମହାତ୍ମା ଗାନ୍ଧିଙ୍କ ସର୍ବୋଦୟ ବିଚାର ଧାରା ଦ୍ୱାରା ଛାତ୍ରଛାତ୍ରୀଙ୍କୁ ଉଦ୍‌ବୁଦ୍ଧ କରାଇବା ପାଇଁ ସର୍ବୋଦୟ ମେଳା ନୀତି ସ୍ୱରୂପ ଗ୍ରହଣ କରିବାରୁ ଆମେ ମେଳାର କର୍ମ କର୍ତ୍ତାମାନେ ଏକ ଯୋଜନା ବଦ୍ଧ କାର୍ଯ୍ୟକ୍ରମ ଗ୍ରହଣ କରିଥିଲୁ । ଏହି ପରି ପ୍ରେକ୍ଷୀରେ ଘଟଣାଟିଏ ମନେ ପଡୁଛି ।

ଦିନେ ପୁରୀରେ ମଣ୍ଡଳ କମିଶନ ଜନିତ ଅସ୍ଥିରତା ଦେଖା ଦେଇଥିଲା ବେଳେ ଦେଖିଲି ସାତ ଆଠ ଜଣ ଛାତ୍ର ଏକ ମନ୍ଦିରର ମୁଖଶାଳାରେ ଚୁପ୍ ଚାପ ବସିଛନ୍ତି । ଚିହ୍ନିଲି ସେମାନେ କେତେଥର ଆମ ସହିତ ସମୂହ ସଫାଇ କାର୍ଯ୍ୟକ୍ରମରେ ଭାଗ ନେଇଛନ୍ତି । ସମସ୍ତେ ଶାହା ମହାବିଦ୍ୟାଳୟର ଛାତ୍ର । କଥା ପ୍ରସଂଗରେ ବୁଝିଲି ଯେ ମଣ୍ଡଳ କମିଶନ୍ ଜନିତ ଅସ୍ଥିରତା ଯୋଗୁ କଲେଜ୍‌ରେ ପୁଲିସ୍ ଅଛନ୍ତି । ହିଂସା ଠାରୁ ଦୂରେଇ ଯିବାକୁ ଶ୍ରେୟ ମଣି ସେମାନେ ବାହାରି ଆସିଛନ୍ତି । ସେମାନଙ୍କ ବିଚାରର ଯଥାର୍ଥତା ବୁଝିଲି । ମନେ ପଡ଼ିଲା, ତା ପୂର୍ବ ଦିନ ସ୍ଥାନ ସଂରକ୍ଷଣର ପ୍ରତିବାଦ କରି କେତେକ ପଲୀମପ୍ରାପ୍ତ ଶିକ୍ଷକ ପ୍ରାର୍ଥୀ ପୁରୀ ଶିକ୍ଷାମଣ୍ଡଳ ଅଫିସ୍‌କୁ ଘେରାଉ କରିଥିଲେ । ଯାହା ହେଉ ଶାହା କଲେଜ୍‌ରେ ସର୍ବୋଦୟ

ବିଚାର ମଞ୍ଚର ଯେଉଁ ଶୁଭାରଂଭ ହୋଇଥିଲା ତାହା ପିଲାଙ୍କ ମନରେ ସୁପ୍ରଭାବ ପକାଇଥିବା ଅନୁଭବ କଲି । ପ୍ରବଳ ଯୁବ ଶକ୍ତିକୁ ସତ୍ ମାର୍ଗରେ ପରିଚାଳିତ କରାଇ ପାରିଲେ ଦେଶକୁ ଉନ୍ନତ ଓ ଦୁର୍ନୀତି ମୁକ୍ତ କରାଇ ବିଶ୍ୱ ଦରବାରରେ ଏକ ସ୍ୱତନ୍ତ୍ର ଆସନ ଦେଇ ପାରିବ ବୋଲି ମୋର ହୃଦ୍ ବୋଧ ହେଲା । ତା ୨୪.୧.୯୧ରେ ଶାହା କଲେଜ୍‌ରେ ଅଧକ୍ଷ ଶ୍ରୀ ଆଶୁତୋଷ ମିଶ୍ରଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଛାତ୍ରଛାତ୍ରୀଙ୍କ ସମାବେଶରେ ପୁରୀରେ ପ୍ରଥମ କରି ସର୍ବୋଦୟ ବିଚାର ମଂଚର ଶୁଭ ପ୍ରତିଷ୍ଠା କରିଥିଲୁ । ବୋଧିପ୍ରିୟ ରାଧାକୃଷ୍ଣ ସାହୁ ଆନୁଷ୍ଠାନିକ ରୀତିରେ ଏହି ବିଚାର ମଞ୍ଚକୁ ଉଦ୍‌ଘାଟନ କରି "ନିଜେ ସୁଖୀ ହୁଅ ଓ ଅନ୍ୟକୁ ସୁଖ ଦିଅ" - ଏହି ସଂବେଦନ ଶୀଳତା ଗ୍ରହଣ କରିବାକୁ ଉପଦେଶ ଦେଇଥିଲେ । ଏହି ବିଚାର ମଞ୍ଚକୁ ଆଶୀର୍ବାଦ ଜଣାଇ ପ୍ରଫେସର ସର୍ବେଶ୍ୱର ଦାଶ ଗାନ୍ଧିଜୀଙ୍କ କ୍ରାନ୍ତିକାରୀ ବିଚାରଧାରା ଅନୁଶୀଳନ କରିବାକୁ ଗୁରୁତ୍ୱ ଆରୋପ କରିଥିଲେ । କଲେଜ ଅଧକ୍ଷଙ୍କ ପୃଷ୍ଠପୋଷକତା, ଉପାଧକ୍ଷ ଶ୍ରୀ ପ୍ରସନ୍ନ କୁମାର ନନ୍ଦ, ଅଧାପକ ଶ୍ରୀ ଶୁକ ଦେବ ମହାନ୍ତିଙ୍କ ସହ ଯୋଗିତା ଓ ଅଧାପକ ଶ୍ରୀ ସୁକାନ୍ତ କୁମାର ମହାନ୍ତିଙ୍କ ସଂପାଦକ ତ୍ୱରେ ପନ୍ଦର ଜଣ ଛାତ୍ରଛାତ୍ରୀଙ୍କୁ ନେଇ ସର୍ବୋଦୟ ବିଚାର ମଂଚ ଜନ୍ମ ପରିଗ୍ରହ ଲାଭ କଲା । ମୁଁ ଏହାର ପୁରୋଧା ଦାୟିତ୍ୱରେ ରହିଲି । ଏହି ବିଚାର ମଞ୍ଚ ଆନୁକୂଲ୍ୟରେ ପ୍ରଥମ କରି ତା ୩୦. ୧. ୯୧ରିଖରେ ଗାନ୍ଧି ଘାଟରେ ଶହୀଦ ଦିବସ ପାଳିତ ହୋଇଥିଲା ।

ଉତ୍କଳ ସର୍ବୋଦୟ ମଣ୍ଡଳ ଓ ଗାନ୍ଧି ସ୍ମାରକ ନିଧି ଆମର ଏହି ବିଚାର ମଞ୍ଚକୁ ଅନୁପ୍ରେରଣା ଯୋଗାଇବା ପାଇଁ ଗୋଟିଏ ସେଟ୍ ସର୍ବୋଦୟ ପୁସ୍ତକ ଦାନ କଲେ । ଏହାର ସଦସ୍ୟ ଛାତ୍ରଛାତ୍ରୀମାନେ ସମୂହ ସଫାଇ, ପଥପାର୍ଶ୍ୱରେ ପଡ଼ିଥିବାନିରାଶ୍ରୟ ଦୁଃସ୍ଥ ରୋଗୀକୁ ନିଜ ଖର୍ଚ୍ଚରେ ଚିକିତ୍ସାଳୟକୁ ନେଇ ସେବା କରିଥିଲେ । ସ୍ୱନାମଧନ୍ୟ ସଂଗ୍ରାମୀ, ସେବକ ଓ ସର୍ବୋଦୟ ନେତା ଆଚାର୍ଯ୍ୟ ହରିହରଙ୍କ ସ୍ମୃତିରେ ଗଠିତ ସଂସଦର ସଂପାଦକ ସ୍ୱର୍ଗତ ପଦ୍ମ ଚରଣ ସାମଂତସିଂହାର ପ୍ରତ୍ୟେକଂକୁ ହରିହରଂଙ୍କ ପ୍ରତିକୃତି ଦାନ କରିଥିଲେ । ସଦସ୍ୟ ବର୍ଗ ସ୍ୱବ୍ୟୟରେ କନା ବ୍ୟାଚ ତିଆରି କରି ଧାରଣ କଲେ । ସେମାନଂକର କାର୍ଯ୍ୟକଳାପରୁ ମନେ ହେଲା ଶୃଂଖଳିତ ଓ ସମାଜସେବା ଆଦର୍ଶ ଗ୍ରହଣ ପାଇଁ ଅନୁପ୍ରାଣିତ ହେଉଛନ୍ତି । ନିଶା ମୁକ୍ତି, ଅନ୍ୟାୟ ଓ ଅବିଚାରର ପ୍ରତିବାଦ ଅହିଂସା ମାର୍ଗରେ କରାଇବା ପାଇଁ ସେମାନେ ଶପଥ ଗ୍ରହଣ କଲେ । ଘଟଣା କ୍ରମେ ସେମାନଂକ ମଧ୍ୟରୁ ଅନେକ ସ୍ନାତକ ହେବା ପରେ ସେହି ସଂକଳ୍ପକୁ ଭୁଲି ଯାଇ ନାହାଂତି ।

କେତେକ ଅନିବାର୍ଯ୍ୟ କାରଣ ବଶତଃ ବିଚାର ମଂଚରେ ପରିଚାଳନା ଧିମେଇ ଯାଇଥିଲେ ମଧ ଅବସରପ୍ରାପ୍ତ ଗାଂଧି ବିଚାର ଧାରାରେ ଅନୁପ୍ରାଣୀତ ଶିକ୍ଷକ ଶ୍ରୀ ଗଂଗାଧର ମିଶ୍ରଂଙ୍କ ପରିଚାଳନାରେ ଏବେ ସେହି ବିଚାର ମଂଚ ନିୟମିତ ଅନୁଷ୍ଠିତ ହେଉଛି । ସର୍ବଶ୍ରୀ ନୃସିଂହ ଷଡ଼ଂଗୀ, ବୀରେଂଦ୍ର କୁମାର ମହାଂତି, ବାମନ ଚଂଦ୍ର ଦାସଂକ ପରିଚାଳନାରେ ପୁରୀ ମହିଳା କୁଟୀରରେ ସର୍ବୋଦୟ ବିଚାର ମଂଚର ବୈଠକ ମାସର ଶେଷ ରବିବାରେ ଅନୁଷ୍ଠିତ ହେଉଛି ।

ଏହି ଉଦ୍ୟମ କ୍ଷୁଦ୍ର ହେଲେ ମଧ ଦଳମତ ଜାତିବର୍ଣ୍ଣ ନିର୍ବିଶେଷରେ ସବୁ ଶ୍ରେଣୀର ସଚେତନ ନାଗରିକ ଏଥିରେ ଭାଗନେଇ ସାଂପ୍ରତିକ ସମସ୍ୟା ଉପରେ ବିଚାର ବିମର୍ଶ କରୁଛଂତି । ଏହି ପରିପ୍ରେକ୍ଷୀରେ ମନେ ପଡୁଛି ପଣ୍ଡିତ ଗୋପବଂଧୁଂଙ୍କ ବିରଚିତ ଧର୍ମପଦରୁ ଏକ ଉଂଛନସାର -

"ନିମେଷେ ମାତର ଉଜ୍ଜଳ ପ୍ରଖର
ଶିଖା ଟେକି ହୁତାଶନ
ଜଳି ଯେବେ କିରେ
ଆଲୋକ ଉତାପ ଚଉଦିଗେ ବିତରଣ
ଲିଭୁସେ କ୍ଷଣିକେ ତଥାପି ଏ ଲୋକେ
ରହେ ତା ଆଦର ଯଶ
କି ଲାଭ ତହିଁରେ ରହେ ଯେ ମହୀରେ

କୁହୁଳି ସହସ୍ର ବର୍ଷ''

ଅଦୂର ଭବିଷ୍ୟତରେ ଏହି ସର୍ବୋଦୟ ବିଚାର ମଂଚ ଅସ୍ଥିର ସମାଜକୁ ଜାତୀୟ ସେତୁବଂଧକୁ ଗୁଂଡୁଚି ମୂଷାର ଦାନ ଦେଇ ପାରିବ ବୋଲି ଭରସା ଜନ୍ମୁଛି ।

(ସର୍ବୋଦୟ ମେଳାର ସଦସ୍ୟା, ପ୍ରଭାତ ଲେନ୍, ପୁରୀ)

## ସର୍ବପଲ୍ଲୀଙ୍କ ଦୃଷ୍ଟିରେ ଗାନ୍ଧୀ

୧୯୪୭ ମସିହା ଅକ୍ଟୋବର ୬ ତାରିଖ

ମହାତ୍ମାଙ୍କ ଶକ୍ତିର ଉତ୍ସ ହେଉଛି ତାଙ୍କର ଅନ୍ତରାତ୍ମା । ଯେତେବେଳେ ଅଧାତ୍ମିକ ଓ ଭୌତିକ ସମସ୍ୟାର ସମ୍ମୁଖୀନ ସେ ହୁଅନ୍ତି ଭାବପ୍ରବଣତା ତାଙ୍କୁ ବିବ୍ରତ କରିଦିଏ । ସଂକଟର ଭାରରେ ଭାରାକ୍ରାନ୍ତ ହେଲାବେଳେ ଧ୍ୟାନମଗ୍ନ ହୋଇଯାଆନ୍ତି । ଏଥିରୁ ସେ ଶକ୍ତି ପାଆନ୍ତି । ମହାତ୍ମାଙ୍କ ପରି ବ୍ୟକ୍ତି ମାନେ ସଂପୂର୍ଣଭାବେ ଅଧାତ୍ମବିକ ବାଦୀ, ସେମାନେ ମାନବ ଜାତିର ଉଦ୍ଧାର ପାଇଁ ନିଜକୁ ନିୟୋଗ କରନ୍ତି । ଏପରି ବ୍ୟକ୍ତି ମାନେ କ୍ୱଚିତ ଜନ୍ମଗ୍ରହଣ କରନ୍ତି ଏବଂ ମାନବ ଜାତିର ପ୍ରଗତି ପାଇଁ ନିଜକୁ ଉତ୍ସର୍ଗ କରନ୍ତି ।

''ସମାଜ'' - ୨୩. ୧୦. ୯୭

## ଦେଶ ବିଦେଶର ସ୍ୱାଧୀନତା ଦିବସ

| | | | | |
|---|---|---|---|---|
| ୧. | ଆମେରିକା | ଜୁଲାଇ | ୪ | ୧୭୭୬ |
| ୨. | ରୁଷିଆ | ନଭେମ୍ବର | ୭ | ୧୯୧୭ |
| ୩. | ଫ୍ରାନ୍‌ସ | ଜୁଲାଇ | ୧୪ | ୧୭୮୯ |
| ୪. | ଚେକୋସ୍ଲୋଭାକିଆ | ଅକ୍ଟୋବର | ୨୮ | ୧୯୧୮ |
| ୫. | ବେଲଜିଅମ | ଜୁଲାଇ | ୨୧ | ୧୮୩୧ |
| ୬. | ଯୁଗୋସ୍ଲୋଭିଆ | ନଭେମ୍ବର | ୨୯ | ୧୯୪୫ |
| ୭. | ଫିନ୍‌ଲାଣ୍ଡ | ଡିସେମ୍ବର | ୬ | ୧୯୧୭ |
| ୮. | ପର୍ତ୍ତୁଗାଲ | ଅକ୍ଟୋବର | ୫ | ୧୯୧୦ |
| ୯. | ନରୱେ | ମଇ | ୧୭ | ୧୮୧୪ |
| ୧୦. | ସ୍ପେନ୍ | ଏପ୍ରିଲ | ୧୪ | ୧୯୧୩ |
| ୧୧. | ଗ୍ରୀସ୍ | ମାର୍ଚ୍ଚ | ୨୫ | ୧୯୨୪ |
| ୧୨. | ଆର୍ଜେଣ୍ଟାଇନା | ମଇ | ୨୫ | ୧୮୧୭ |
| ୧୩. | ମେକ୍‌ସିକୋ | ସେପ୍ଟେମ୍ବର | ୧୬ | ୧୮୧୦ |
| ୧୪. | ବ୍ରହ୍ମଦେଶ | ଜାନୁୟାରୀ | ୪ | ୧୯୪୮ |
| ୧୫. | ସିଂହଳ | ଫେବୃୟାରୀ | ୪ | ୧୯୪୮ |
| ୧୬. | ଇଣ୍ଡୋନେସିଆ | ଡ଼ିସେମ୍ବର | ୨୭ | ୧୯୪୯ |
| ୧୭. | ଥାଇଲାଣ୍ଡ | ଜୁନ୍ | ୨୪ | ୧୯୩୨ |
| ୧୮. | ନେପାଳ | ଦଶହରା | | |
| ୧୯. | ପାକିସ୍ଥାନ | ଅଗଷ୍ଟ | ୧୪ | ୧୯୪୭ |
| ୨୦. | ଆଫାଗାନିସ୍ଥାନ | ମଇ | ୨୭ | |
| ୨୧ | ଅଷ୍ଟ୍ରେଲିଆ | ଜାନୁୟାରୀ | ୨୬ | |
| ୨୨. | କାନାଡ଼ା | ଜୁଲାଇ | ୧ | |
| ୨୩. | ଆୟାରଲ୍ୟାଣ୍ଡ | ଅପ୍ରେଲ | ୧୮ | |
| ୨୪. | ଇଟାଲୀ | ଜୁନ୍ | ୨ | |
| ୨୫. | ଜାପାନ | ଅପ୍ରେଲ | ୨୯ | |
| ୨୬. | ସ୍ୱିଡେନ | ନଭେମ୍ବର | ୧୧ | |
| ୨୭. | ଥାଇଲାଣ୍ଡ | ଜୁନ୍ | ୨୪ | |
| ୨୮. | ସ୍ୱିଜରଲାଣ୍ଡ | ଅଗଷ୍ଟ | ୧ | |
| ୨୯. | ସଂଯୁକ୍ତ ଆରବ ରାଷ୍ଟ୍ର | ଜୁଲାଇ | ୨୪ | |

(ସ୍ୱାଧୀନତା ଦିବସ ଉପଲକ୍ଷେ ୧୯୫୩ରେ ପ୍ରକାଶିତ ସ୍ୱତନ୍ତ୍ର ସଂଖ୍ୟା ହିନ୍ଦୁ ସ୍ଥାନ ଷ୍ଟାଣ୍ଡାର୍ଡ଼ ଓ ୧୯୫୯ରେ ପ୍ରକାଶିତ ସ୍ୱତନ୍ତ୍ର ସଂଖ୍ୟା ଦୈନିକ 'ସମାଜରୁ' ଗୃହିତ)

## ଜାତୀୟ ଚରିତ୍ର ଗଠନ କରନ୍ତୁ

ଜାତୀୟ ଚରିତ୍ର ଗଠନ କଲେ ଜାତୀୟ ପର୍ବ ପାଳନ ଏକାନ୍ତ ଆବଶ୍ୟକ । ଜାତୀୟ ପର୍ବ ସହ ଜଡ଼ିତ

ସ୍ୱାଧୀନତା ସଂଗ୍ରାମ ବେଳର ଜାତୀୟ ନେତୃବର୍ଗଙ୍କ ଜୀବନର ମହନୀୟ ସ୍ମୃତି ତଥା ରୋମାଞ୍ଚ ରଘଟଣାବଳୀ ନବଯୁବକଙ୍କ ପାଇଁ ପ୍ରେର

ଣାର ଉତ୍ସ । ନିମ୍ନୋକ୍ତ ମାର୍ଗ ଦର୍ଶିକା ଅନୁସରଣରେ ପ୍ରତ୍ୟେକ ଶିକ୍ଷାନୁଷ୍ଠାନ, ଯୁବକେନ୍ଦ୍ର, ମହିଳା ସମିତି, ପାଠାଗାର ଓ ସମାଜସେବୀ ସଂସ୍ଥା ପ୍ରଭାତଫେରୀ, ଜାତୀୟପତାକା ଉତ୍ତୋଳନ, ଶ୍ରମଦାନ, ଗ୍ରାମ ସଫାଇ ଜାତୀୟ ଏକତାର ପ୍ରତୀକ ପଂକ୍ତି ଭୋଜନ, ପିଲାମାନଙ୍କ ମଧ୍ୟରେ କ୍ରୀଡା, ବାଗ୍ମିତା, ପ୍ରବନ୍ଧ, ଚିତ୍ରାଙ୍କନ, ହସ୍ତାକ୍ଷର, ଝୋଟି, ମୁରୁଜ, ସାଧାରଣ ଜ୍ଞାନ ଓ ପ୍ରତିଭା ଅନ୍ୱେଷଣାଦି ପ୍ରତିଯୋଗିତା ସଙ୍ଗକୁ ଦିବସର ମହତ୍ୱ ଚର୍ଚ୍ଚା ଆଦି ମାଧ୍ୟମରେ ଜାତୀୟପର୍ବ ପାଳନ ପାଇଁ ଓ ପ୍ରତିପାଳନର ବିବରଣୀ ଲେଖି ରଖି ଇତିହାସ ସୃଷ୍ଟି କରିବାକୁ ନିବେଦନ କରାଯାଉଛି ।

ଯୌତୁକ ଦେବୁନାହିଁ କି ନେବୁ ନାହିଁ, ଗାଁ କଳି ଗାଁ'ରେ ତୁଟାଇବୁ, ନିଶା ଖାଇବୁ ନାହିଁ, ପଞ୍ଚାୟତ ନିର୍ବାଚନକୁ ସର୍ବସମ୍ମତ କରାଇବୁ, ସରକାରୀ ହିତାଧିକାରୀଙ୍କ ସହଯୋଗରେ ନିରନ୍ନ ଓ ଭୂମିହୀନଙ୍କ ହିତ କଳ୍ପେ କାମ କରିବୁ, ବିଭିନ୍ନ ସଂସ୍ଥା ମାଧ୍ୟମରେ ମିଳୁଥିବା ସରକାରୀ ଅନୁଦାନର ବାଟମାରଣା ବନ୍ଦ କରିବୁ, ଲାଞ୍ଚ ନେବୁନାହିଁ କି ଦେବୁନାହିଁ, କଥାରେ ହିରୋ ଅଥଚ କାମରେ ଜିରୋ ହେବୁନାହିଁ, ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ ଚଳାଇ ଆମ୍ଭକୁ ଉନ୍ନତ କରିବୁ, ଜାତୀୟ ସଂପତ୍ତି ଧ୍ୱଂସ କରିବୁ ନାହିଁ, ରାଗିବୁ ନାହିଁ କି ରଗାଇବୁ ନାହିଁ ଇତ୍ୟାଦି ପାଇଁ ଶପଥ ଗ୍ରହଣ ଜାତୀୟ ଦିବସ ପ୍ରତିପାଳନର ମହତ୍ତ୍ୱ ବର୍ଦ୍ଧନ କରିବ ।

## ମାର୍ଗ ଦର୍ଶିକା

୧. ସ୍ୱାମୀ ବିବେକାନନ୍ଦ ଜୟନ୍ତୀ - ଜାତୀୟ ଯୁବ ଦିବସ - ଜାନୁଯାରୀ ୧୨ (୧୮୬୩)

୨. ନେତାଜୀ ସୁଭାଷଙ୍କ ଜୟନ୍ତୀ - ଜାନୁଯାରୀ ୨୩ (୧୮୯୭)

୩. ସାଧାରଣତନ୍ତ୍ର ଦିବସ - ଜାନୁଆରୀ - ୨୬ (୧୯୫୦)

୪. ଶହୀଦ ଦିବସ - ଗାନ୍ଧିଜୀଙ୍କ ଶ୍ରାଦ୍ଧ - ଜାନୁୟାରୀ ୩୦ (୧୯୪୮)

୫. ସର୍ବୋଦୟ ମେଳା - ଗାନ୍ଧିଜୀଙ୍କ ଚିତାଭସ୍ମ ବିସର୍ଜନ ଦିବସ - ଫେବୃୟାରୀ ୧୨ (୧୯୪୮)

୬. ଲୋକମାତା କସ୍ତୁରବାଙ୍କ ଶ୍ରାଦ୍ଧ - ଫେବୃୟାରୀ ୨୨ (୧୯୪୪ ଶିବରାତ୍ରୀ), ଜନ୍ମ ୧୮୬୯ ଅପ୍ରେଲ

୭. ଆଚାର୍ଯ୍ୟ ହରିହରଙ୍କ ଜୟନ୍ତୀ - ଫେବୃୟାରୀ ୨୭ (୧୮୭୮)

୮. ଜାତୀୟ ସପ୍ତାହ - ଜାଲିଆନା ବାଗ୍ ସ୍ମୃତି - ଏପ୍ରିଲ ୬ରୁ ୧୩ (୧୯୧୯)

୯. ପତାକା ପୁଣ୍ୟାହ - ସ୍ୱାଧୀନ ଭାରତ ଜାତୀୟ ପତାକାର ଜନ୍ମ - ଜୁଲାଇ ୨୨ (୧୯୪୭)

୧୦. ମା' ରମାଦେବୀଙ୍କ ଶ୍ରାଦ୍ଧ - ସର୍ବୋଦୟ ନେତ୍ରୀ - ଜୁଲାଇ ୨୨ (୧୯୮୫), ଜନ୍ମ ୩।୧୨।୧୮୯୯

୧୧. ଉତ୍କଳମଣି ଗୋପବନ୍ଧୁଙ୍କ ଶ୍ରାଦ୍ଧ - ନେତ୍ରୋତ୍ସବ (୧୯୨୮ ଜୁନ୍ ୧୭) ଜୟନ୍ତୀ ଅକ୍ଟୋବର ୯ (୧୮୭୭)

୧୨. ଲୋକମାନ୍ୟ ତିଳକଙ୍କ ଶ୍ରାଦ୍ଧ - ଅଗଷ୍ଟ ୧ (୧୯୨୦), ଜନ୍ମ ଜୁଲାଇ ୨୬ (୧୮୫୬)

୧୩. ଭାରତ ଅନ୍ତିମ ସ୍ୱାଧୀନତା ସଂଗ୍ରାମ କ୍ରାନ୍ତି ଦିବସ - ଅଗଷ୍ଟ ୯ (୧

୧୪. ସ୍ୱାଧୀନତା ଦିବସ - ଅଗଷ୍ଟ ୧୫ (୧୯୪୭) ୧୫. ଗୁରୁଦିବସ - ଦାର୍ଶନିକ ରାଧାକୃଷ୍ଣନ୍ଙ୍କ ଜୟନ୍ତୀ - ସେପ୍ଟେମ୍ବର ୫ (୧୮୮୮)

୧୬. ଭୂ ଜୟନ୍ତୀ - ଆଚାର୍ଯ୍ୟ ବିନୋବାଙ୍କ ଜନ୍ମତିଥି - ସେପଟେମ୍ବର ୧୧ (୧୮୯୫) ବିୟୋଗ - ନଭେମ୍ବର ୧୫ (୧୯୮୨)

୧୭. ଗାନ୍ଧୀ ଜୟନ୍ତୀ ଅକ୍ଟୋବର ୨ (୧୮୬୯)

୧୮. ଶାନ୍ତି ଦୂତ ଲାଲ ବାହାଦୂର ଶାସ୍ତ୍ରୀଙ୍କ ଜୟନ୍ତି - ଅକ୍ଟୋବର ୨ (୧୯୦୪) ବିୟୋଗ - ଜାନୁୟାରୀ ୧୧ (୧୯୬୬)

୧୯. କୌମି ଏକତା ଦିବସ - ଇନ୍ଦିରାଗାନ୍ଧୀଙ୍କ ଶ୍ରାଦ୍ଧ - ଅକ୍ଟୋବର ୩୧ (୧୯୮୪) ଜନ୍ମ - ନଭେମ୍ବର ୧୯ (୧୯୧୭)

୨୦. ଶିଶୁ ଦିବସ - ପଣ୍ଡିତ ଜବାହାରଲାଲାଙ୍କ ଜୟନ୍ତୀ - ନଭେମ୍ବର ୧୪ (୧୮୮୯) ବିୟୋଗ - ମଇ ୨୭ (୧୯୬୪)

୨୧. ଜାତୀୟ କଂଗ୍ରେସର ଜନ୍ମ - ଡ଼ିସେମ୍ବର ୨୮ (୧୮୮୫)

୨୨. ସର୍ବୋଦୟ ନେତା ଗୋବନ୍ଧୁ ଚୌଧୁରୀଙ୍କର ଶ୍ରାଦ୍ଧ - ଅପ୍ରେଲ ୨୯ (୧୯୫୮) ଜନ୍ମ - ଅପ୍ରେଲ ୨୧ (୧୮୯୫)

୨୩. ସମାଜବାଦୀ ଆନ୍ଦୋଳନର ପ୍ରବକ୍ତା ନବକୃଷ୍ଣ ଚୌଧୁରୀଙ୍କ ଶ୍ରାଦ୍ଧ ଜୁନ୍ ୨୪ (୧୯୮୪) ଜନ୍ମ - ନଭେମ୍ବର ୨୩ (୧୯୦୧)

୨୪. ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ଶ୍ରାଦ୍ଧୋତ୍ସବ - ଜାନୁୟାରୀ ୨

## ଶହୀଦବର୍ଗଙ୍କ ସ୍ମରଣାର୍ଥେ

୧. ରଘୁ ଦିବାକର (ରଣପୁର) ଦିବସ - ଜାନୁୟାରୀ ୨୫ (୧୯୩୯)

୨. ବୀର ସୁରେନ୍ଦ୍ର ସାଏ ଦିବସ - ଫେବୃୟାରୀ ୨୮ (୧୮୮୪)

୩. ଲକ୍ଷ୍ମଣ ନାୟକ (କୋରାପୁଟ) ଦିବସ - ମାର୍ଚ୍ଚ ୧୮ (୧୯୪୩)

୪. ଭଗତ ସିଂ, ସୁଖଦେବ ଓ ରାଜଗୁରୁଙ୍କ ଦିବସ - ମାର୍ଚ୍ଚ ୨୩ (୧୯୩୧)

୫. ଜାଲିଆନାୱାଲାବାଗ ଗୁଳିକାଣ୍ଡର ଖଳନାୟକ ଜେନେରାଲ ଡ଼ାୟାରଙ୍କୁ ଲଣ୍ଡନରେ ହତ୍ୟା କରି ଫାଶି ପାଇଥିବା ଉଦ୍ଧାମ ସିଂ (ରାମ ମହମ୍ମଦ ସିଂ ଆଜାଦ) ଦିବସ - ଜୁଲାଇ ୩୧ (୧୯୪୦)

୬. ଖୁଦିରାମ ଦିବସ - ଅଗଷ୍ଟ ୧୧ (୧୯୦୮)

୭. ମଦନଲାଲ ଧିଙ୍ଗ୍ରା ଦିବସ - ଅଗଷ୍ଟ ୧୭ (୧୯୦୯)

୮. ଦ୍ୱିତୀୟ ଜାଲିଆନାୱାଲାବାଗ ଇରମ (ବାଲେଶ୍ୱର) ଦିବସ (୨୯ ଜଣ ସଂଗ୍ରାମୀଙ୍କ ଆତ୍ମବଳୀଦାନ) ଅଗଷ୍ଟ ୨୮ (୧୯୪୨)

୯. କାଇପଡ଼ା (ବରି - କଟକ) ଗୁଳିକାଣ୍ଡ ଦିବସ - ଗହ୍ମାପୂର୍ଣ୍ଣିମା ୧୯୪୨

୧୦. ଉତ୍ସବ ମଲିକ (ନିମାପଡ଼ା - ପୁରୀ) ଦିବସ - ସେପ୍ଟେମ୍ବର ୧୬ (୧୯୪୨)

୧୧. ବାଘାଯତୀନ ଦିବସ - ସେପ୍ଟମ୍ବର ୧୦ (୧୯୧୫)

୧୨. ବନ୍ଦୀ ଜୀବନର ସଂସ୍କାର ପାଇଁ ୬୪ ଦିନ ପ୍ରୟୋପବେଶରେ ଆତ୍ମବଳୀ ଦାନୀ ଯତୀନ୍ଦ୍ର ନାଥ ଦିବସ ସେପ୍ଟେମ୍ବର ୧୩ (୧୯୨୯)

୧୩. ୧୬୪ ଦିନ ପ୍ରୟୋପବେଶନରେ ଆତ୍ମବଳୀ ଦାନୀ ବୌଦ୍ଧଭିକ୍ଷୁ ପୁଙ୍ଗି ବିଜୟାଦିବସ - ସେପ୍ଟେମ୍ବର ୨୯ (୧୯୨୯)

୧୪. ନୟାଗଡ଼ ପ୍ରଜାମଣ୍ଡଳ ଶହୀଦ ଦିବସ - ଅକ୍ଟୋବର ୧୦

୧୫. ବାଜିରାଉତ (ଢେଙ୍କାନାଳ) ଦିବସ - ଅକ୍ଟୋବର ୧୧ (୧୯୩୮)

## ଆମ ସ୍ୱାଧୀନତା ସଂଗ୍ରାମ ସ୍ମରଣେ

୧. ପ୍ରଥମ ସଶସ୍ତ୍ର ଜନ ଜାଗରଣରେ ଶେଷ ସ୍ୱାଧୀନ ସମ୍ରାଟ ବାହାଦୁର ଶାହଙ୍କ ପତନ ଓ

ଲାଲ କିଲାରେ ଅନ୍ତିମ ଜୀବନ ଯାପନ ୧୮୫୭ । ଏହି ସଂଗ୍ରାମରେ ଭାରତୀୟ ବାହିନୀଙ୍କ ଦ୍ୱାରା ସବୁଜ ରଙ୍ଗର ନିଶାଣ ବ୍ୟବହୃତ ।

୨. ୰ଉମେଶଚନ୍ଦ୍ର ବାନାର୍ଜିଙ୍କ ପୌରୋହିତ୍ୟରେ ବମ୍ବେ ମହାନଗରୀରେ ସିଭିଲିଆନ ଆୟାରଲ୍ୟାଣ୍ଡ ନିବାସୀ ମିଷ୍ଟର ହ୍ୟୁମଙ୍କ ପ୍ରେରଣାରେ ଜାତୀୟ କଂଗ୍ରେସର ଜନ୍ମ - ଡ଼ିସେମ୍ବର - ୨୮ - ୧୮୮୫

୩. ରଙ୍ଗ ଭଙ୍ଗ ପାଇଁ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ନିର୍ଦ୍ଦେଶର ପ୍ରତିବାଦରେ ଅରବିନ୍ଦ ଘୋଷ ଓ ବିପିନଚନ୍ଦ୍ର ପାଲ ପ୍ରମୁଖଙ୍କ ନେତୃତ୍ୱରେ ବନ୍ଦେମାତରମ୍ ଆନ୍ଦୋଳନ ୧୯୦୪ - ୧୯୦୬ ।

୪. ମ୍ୟାଡାମ୍ କେମା ଓ ସ୍ୱାମିଜୀ କୃଷ୍ଣବର୍ମାଙ୍କ ନେତୃତ୍ୱରେ ପ୍ରବାସୀ ଭାରତୀୟମାନେ ପ୍ୟାରିସ୍‌ରେ ସମବେତ ହୋଇ ଭାରତୀୟଙ୍କ ପାଇଁ ନାଲି, ହଳଦିଆ ଓ ସବୁଜ ରଙ୍ଗର ପତାକାଟିଏ ପ୍ରସ୍ତୁତି କରି ବର୍ଲିନରେ ଅନୁଷ୍ଠିତ ସମାଜବାଦୀ ସମ୍ମିଳନୀରେ ଉତ୍ତୋଳନ କଲେ । ଏହି ପତାକାର ଆଦ୍ୟ ଭାଗରେ ଅଷ୍ଟପଦ୍ମ, ମଧ ଭାଗରେ ନାଗରି ଲିପିରେ "ବନ୍ଦେ ମାତରମ୍" ଓ ନିମ୍ନ ଭାଗରେ ସୂର୍ଯ୍ୟ, ଚନ୍ଦ୍ର ଓ ତାରାକାର ଚବି ଥିଲା ।... ୧୯୦୫

୫. ଡ଼ାଃ ଶ୍ରୀମତୀ ଆନିବେସାନ୍ତଙ୍କ ନେତୃତ୍ୱରେ ସ୍ୱାୟତ୍ତ ଶାସନ ପ୍ରତିଷ୍ଠା ପାଇଁ ଆନ୍ଦୋଳନ ଓ ପ୍ରତୀକ ସ୍ୱରୂପ ୫ଟି ନାଲି ଓ ୪ଟି ସବୁଜ ରଙ୍ଗର ପଟି, ଗାତ୍ରରେ ସପ୍ତର୍ଷିମଣ୍ଡଳ ଓ ବ୍ରିଟିଶ ପତାକା ଇଉନିୟନ ଜ୍ୟାକ୍‌ର ଛବି ଥାଇ ଏକ ଅଭିନବ ପତାକା ବ୍ୟବହୃତ ହେଲା । ୧୯୧୫

୬. ଅମୃତସର ସ୍ଥିତ ଜାଲିଆନାବାଗରେ ଲାଲା ହଂସରାଜଙ୍କ ନେତୃତ୍ୱରେ ପଞ୍ଜାବ ବାସୀ ବୈଶାଖୀ ଉତ୍ସବ ପାଳୁଥିଲା ବେଳେ ଜେନେରାଲ ଡ଼ାୟାରଙ୍କ ଅମାନୁଷିକ ଗୁଳିକାଣ୍ଡରେ ଆବାଳ - ବୃଦ୍ଧ ବନିତାଙ୍କ ଆତ୍ମ ବଳିଦାନ - ମହାବିଷୁବ ସଂକ୍ରାନ୍ତି - ୧୯୧୯ ଅପ୍ରେଲ ୧୩

୭. ସ୍ୱରାଜ ମନ୍ତ୍ରର ଜନ୍ମଦାତା ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କ ମହାପ୍ରୟାଣ ... ୧୯୨୦ ଅଗଷ୍ଟ ୧

୮. ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଅହିଂସକ ଅସହଯୋଗ ଆନ୍ଦୋଳନ... ୧୯୨୦

୯. ଚରଖାର ପୂର୍ଣ୍ଣାବୟବ ରୂପକୁ ବକ୍ଷରେ ଧାରଣ କରି ଶ୍ୱେତ (ସଂଖ୍ୟା ଲଘିଷ୍ଠ), ସବୁଜ (ମୁସଲମାନ) ଓ ନାଲି (ହିନ୍ଦୁ)ର ତ୍ରିରଙ୍ଗ ପତାକା ଜାତୀୟ ପତାକା ରୂପେ କଂଗ୍ରେସର ମାନ୍ୟତା ପ୍ରାପ୍ତ ହୋଇ ୟୁନିୟନ ଜ୍ୟାକକୁ ହଟାଇ ଅହମଦାବାଦ କଂଗ୍ରେସରେ ପ୍ରଥମ କରି ଉତ୍ତୋଳିତ ହେଲା । ...୧୯୨୧

୧୦. ଶ୍ରୀମତୀ ସୁଭଦ୍ରା ଦେବୀ ନାଗପୁର ଠାରେ ଝଣ୍ଡା ସତ୍ୟାଗ୍ରହର ଶୁଭ ଦେଲେ ।...୧୯୨୩

୧୧. ସାଇମନ କମିଶନ - ବର୍ଜନ - ବିକ୍ଷୋଭର ନାୟକ ପଞ୍ଜାବ କେଶରୀ ଲାଲା ଲଜପତ ରାୟ ପୋଲିସର ନିର୍ମମ ଲାଠି ମାଡ଼ରେ ଲାହୋରରେ ଆହତ ହୋଇ ପ୍ରାଣ ତ୍ୟାଗ କଲେ । ୧୯୨୮ ନଭେମ୍ବର ୨୩

୧୨. ପଣ୍ଡିତ ଜବାହର ଲାଲ ନେହରୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱାଧୀନତା ପାଇଁ ପ୍ରସ୍ତାବ ଧାର୍ଯ୍ୟ ହେଲା । ... ୧୯୨୯

୧୩. ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟରେ ୧୯୩୦ ରୁ ପ୍ରତିବର୍ଷ ଶପଥ ଗ୍ରହଣ ପାଇଁ ସ୍ୱାଧୀନତା ଦିବସ

ରୂପେ ଧାର୍ଯ୍ୟ ହେଲା ।... ଜାନୁଆରୀ ୨୬

୧୪. ସୀମାନ୍ତ ଗାନ୍ଧୀଖାଁ ଅବଦୁଲ୍ ଖଫୁର ଖାଁ ଓ ତାଙ୍କର ବଡ଼ ଭାଇ ଡ଼ାକ୍ତର ଖାଁ ସାହେବଙ୍କ ସହଯୋଗରେ ପଠାଣମାନଙ୍କୁ ଗାନ୍ଧିଜୀଙ୍କ ଅହିଂସା ମନ୍ତ୍ରରେ ଦୀକ୍ଷିତ କରାଇ ଖୋଦାଇ - ଖିଦମତ୍‌ଗାର (ଈଶ୍ୱରଙ୍କ ସେବକ) ସଂଘ ପ୍ରତିଷ୍ଠା... ୧୯୨୯ ୩୦ , ୧୯୩୦ ବେଳକୁ ଏହାର ସଭ୍ୟ ସଂଖ୍ୟା ଥିଲା ୮୦ ହଜାର

୧୫. ମହାତ୍ମା ଗାନ୍ଧି ସାବରମତି ଆଶ୍ରମରୁ ୭୮ ଜଣ ସତ୍ୟାଗ୍ରହୀଙ୍କ ସହ ଲବଣ କାନୁନ୍ ଭଙ୍ଗ ପାଇଁ ଦାଣ୍ଡି ଯାତ୍ରାରେ ବାହରି ଲବଣ ସତ୍ୟାଗ୍ରହର ଶୁଭାରମ୍ଭ କଲେ । ... ୧୯୩୦ ମାର୍ଚ୍ଚ ୧୨

୧୬. ଚରଖାକୁ ବକ୍ଷରେ ଧାରଣ କରି କେଶରୀ (ସାହସ ଓ ତ୍ୟାଗ), ଶ୍ୱେତ (ସତ୍ୟ, ଶାନ୍ତି, ପବିତ୍ରତା) ଓ ସବୁଜ (ବିରତ୍ୱ, ବିଶ୍ୱାସ, ଶ୍ରଦ୍ଧା, ଭକ୍ତି ) ର ତ୍ରିରଙ୍ଗା ପତାକା ସ୍ୱାଧୀନତା ସଂଗ୍ରାମରେ ଜାତୀୟ ପତାକା ରୂପେ ବ୍ୟବହୃତ ହେଲା ... ୧୯୩୧ ଅଗଷ୍ଟ ୩୦

୧୭. ମହାତ୍ମାଜଗାନ୍ଧୀ ଓ ବଡ଼ଲାଟ୍ ଇରଉଇନ୍‌ଙ୍କ ମଧ୍ୟରେ ଲବଣ କାନୁନ୍ ଉଠାଇବା ମର୍ମରେ ଚୁକ୍ତି ସ୍ୱାକ୍ଷରିତ ହେଲା... ୧୯୩୧ ମାର୍ଚ୍ଚ ୫

୧୮. ବ୍ରିଟିଶ ସରକାରଙ୍କ ଆମନ୍ତ୍ରଣ କ୍ରମେ କଂଗ୍ରେସର ପ୍ରତିନିଧି ରୂପେ ମହାତ୍ମାଗାନ୍ଧୀ ବିଲାତରେ ଗୋଲଟେବୁଲ ବୈଠକରେ ଯୋଗ ଦେଲେ ଓ ସାଂପ୍ରଦାୟିକ ନିର୍ବାଚନର ବିରୋଧ କରି ବିଫଳ ମନୋରଥ ହୋଇ ବାହୁଡ଼ି ଆସିଲେ .... ୧୯୩୧ ସେପ୍‌ଟେମ୍ବର - ଡ଼ିସେମ୍ବର ।

୧୯. ଦ୍ୱିତୀୟ ଆଇନ ଅମାନ୍ୟ ଆନ୍ଦୋଳନ.... ୧୯୩୨ ଜାନୁୟାରୀ

୨୦. ଅସ୍ପୃଶ୍ୟତା କଳଙ୍କର ବିଲୋପ କଳ୍ପେ ବାପୁଜୀ ପୁରୀ ଧାମରୁ ଐତିହାସିକ ହରିଜନ ପଦଯାତ୍ରା ଆରମ୍ଭ କଲେ ... ୧୯୩୪ ମଇ ୮

୨୧. ପ୍ରଥମ କରି ଜାତୀୟ କଂଗ୍ରେସ ନିର୍ବାଚନ ସୂତ୍ରରେ ପ୍ରାଦେଶିକ ଶାସନ ଦାୟିତ୍ୱ ଗ୍ରହଣ କଲେ... ୧୯୩୭

୨୨. ଦ୍ୱିତୀୟ ମହାସମରରେ ଭାରତୀୟ ସୈନ୍ୟଙ୍କ ନିୟୋଜନର ପ୍ରତିବାଦରେ କଂଗ୍ରେସ ଶାସନରୁ ଓହରି ଆସିଲେ ... ୧୯୩୮ ନଭେମ୍ବର ୩

୨୩. ପ୍ରଥମ ସତ୍ୟାଗ୍ରହୀ ଆଚାର୍ଯ୍ୟ ବିନୋବା ୱାର୍ଦ୍ଧାରେ ବାଣୀ ସତ୍ୟାଗ୍ରହର ଶୁଭାରମ୍ଭ କଲେ... ୧୯୪୦ ଅକ୍ଟୋବର ୧୦

୨୪. କଲିକତା ମହାନଗରୀରୁ କଳଙ୍କିତ ଅନ୍ଧକୂପ ହତ୍ୟା ସ୍ମୃତିସ୍ତମ୍ଭକୁ ଧ୍ୱଂସ କରିବା ସତ୍ୟାଗ୍ରହରେ ଗିରଫ ହୋଇ ଶତ୍ରୁଭେଳୁ ବହିଃଶକ୍ତିଙ୍କ ସହଯୋଗରେ ଭାରତରୁ ବିଦେଶୀ ଶାସନକୁ ହଟାଇବା ଅଭିପ୍ରାୟରେ ନେତାଜୀ ସୁଭାଷ ଦେଶରୁ ଅନ୍ତର୍ହିତ ହେଲେ... ୧୯୪୧ ମାର୍ଚ୍ଚ

୨୫. ନେତାଜୀ ସୁଭାଷ ଆଜାଦ ହିନ୍ଦ୍ ସଂଘ ଗଠନ କଲେ... ୧୯୪୨ ଜୁନ୍ ୨୪

୨୬. ଆଜାଦ ହିନ୍ଦ୍ ଫୌଜ ଗଠିତ ହେଲା... ୧୯୪୨ ଜୁଲାଇ ୧୫

୨୭. ବମ୍ବେ ଗୋଆଲିଆ ଟ୍ୟାଙ୍କ ମୈଦାନରେ ଅଖିଳ ଭାରତ, କଂଗ୍ରେସ କମିଟି ଭାରତରୁ ଇଂରେଜ ଶାସନର ଚୂଡ଼ାନ୍ତ ଅପସାରଣ ଦାବୀ କରି ଐତିହାସିକ "ଭାରତ ଛାଡ଼" ପ୍ରସ୍ତାବ ଗ୍ରହଣ କଲେ... ୧୯୪୨ ଅଗଷ୍ଟ ୮

୨୮. ସ୍ୱତଃ ସ୍ଫୁର୍ତ୍ତ "ଭାରତଛାଡ଼" ଆନ୍ଦୋଳନ ଆକୁମାରୀ - ହିମାଚଳ ପରିବ୍ୟାପ୍ତ ହେଲା । ୧୯୪୨ ଅଗଷ୍ଟ ୯

୨୯. ଆର୍ଜି - ହୁକୁମତ୍ - ଆଜାଦ୍ - ହିନ୍ଦ୍ (ଆଜାଦ୍ ହିନ୍ଦ୍ ସରକାର) ଗଠିତ.....୧୯୪୨ ଅକ୍ଟୋବର ୨୧

୩୦. ଆଣ୍ଡାମାନ ନିକୋବର ଆଜାଦ୍ ହିନ୍ଦ୍ ସରକାରଙ୍କ ଅଧୀନସ୍ଥ ହେଲା ... ୧୯୪୨ ନଭେମ୍ବର ୮

୩୧. - ରାଜଧାନୀ ପୋର୍ଟବ୍ଲେଆରରେ କଂଗ୍ରେସର ତ୍ରିରଙ୍ଗ ପତାକା ଉତ୍ତୋଳିତ ହେଲା... ୧୯୪୨ ଡ଼ିସେମ୍ବର ୩୦

୩୨. "ଦିଲ୍ଲୀ ଚଲୋ" - ନାରା ଲଗାଇ ଆଜାଦ - ହିନ୍ଦ୍ - ଫୌଜ ଭାରତରେ ପ୍ରବେଶ କଲେ ... ୧୯୪୪ ମାର୍ଚ୍ଚ ୨୮

୩୩. ଦ୍ୱିତୀୟ ମହାଯୁଦ୍ଧରେ କ୍ଷତିଗ୍ରସ୍ତ ବ୍ରିଟିଶ ଶକ୍ତି ଭାରତୀୟ ମାନଙ୍କ ଅଭୂତ ପୂର୍ବ ଦେଶାତ୍ମବୋଧକୁ ସମ୍ମାନ ଜଣାଇ ଭାରତକୁ ସ୍ୱାଧୀନତା ପ୍ରଦାନ ଲକ୍ଷ୍ୟରେ ନିର୍ବାଚନରେ ଶ୍ରମିକ ଦଳଙ୍କୁ ବିଜୟୀ କଲେ । ଶ୍ରମିକ ନେତା ଶ୍ରୀଯୁକ୍ତ ଅଟ୍‌ଲି ବିଲାତର ଶାସନ ଦାୟିତ୍ୱ ଗ୍ରହଣ କଲେ...୧୯୪୫ ।

୩୪. ଭାରତୀୟ ନୌବାହିନୀ ଅଫିସରମାନେ ବିଦ୍ରୋହ କଲେ... ୧୯୪୬ ଫେବୃୟାରୀ ୧୯

୩୫. ଭାରତ ପାଇଁ ଶାସନ ବିଧାୟକ ସଭା ଗଠିତ ହେଲା... ୧୯୪୬ ଡ଼ିସେମ୍ବର ୯

୩୬. ଚରଖାର ଚକ୍ରଟିକୁ ସାରନାଥସ୍ଥିତ ଅଶୋକ ଚକ୍ର ରୂପରେ ବକ୍ଷରେ ସ୍ଥାନ ଦେଇ ପୂର୍ବ ବ୍ୟବହୃତ ତ୍ରିରଙ୍ଗ ପତାକାକୁ ସ୍ୱାଧୀନ ଭାରତର ଜାତୀୟ ପତାକା ରୂପେ ସମ୍ବିଧାନ ପରିଷଦ ମାନ୍ୟତା ପ୍ରଦାନ କଲେ - ୧୯୪୭ ଜୁଲାଇ ୨୨

୩୭. ବଡ଼ଲାଟ୍ ଲର୍ଡ଼ ମାଉଣ୍ଟବେଟେନଙ୍କ ଠାରୁ ପଣ୍ଡିତ ଜବାହାର ଲାଲ ନେହେରୁ ଭାରତୀୟଙ୍କ ପ୍ରତିନିଧି ରୂପେ ସ୍ୱାଧୀନତା ପ୍ରାପ୍ତିର ସନନ୍ଦ ଗ୍ରହଣ କଲେ... ୧୯୪୭ ଅଗଷ୍ଟ ୧୪ ମଧ୍ୟରାତ୍ରି

୩୮. ବିଦେଶୀ ଶାସନର ବିଲୋପ ଘୋଷଣା କରି ପଣ୍ଡିତ ନେହେରୁ ଐତିହାସିକ ଲାଲ୍ କିଲ୍ଲାରେ ତ୍ରିରଙ୍ଗା ପତାକା ଉତ୍ତୋଳନ କଲେ .... ୧୯୪୭ ଅଗଷ୍ଟ ୧୫

୩୯. ନବଲବ୍ଧ ସ୍ୱାଧୀନତାର ସୁରକ୍ଷା ତଥା ଜାତୀୟ ସଂହତି ପ୍ରତିଷ୍ଠା ଲକ୍ଷରେ ମହାତ୍ମାଗାନ୍ଧୀ ଉପବାସ ଓ ମୌନବ୍ରତ ପାଳନ ଦ୍ୱାରା ଈଶ୍ୱରଙ୍କୁ ପ୍ରାର୍ଥନା କଲେ ... ସ୍ୱାଧୀନତା ଦିବସ ୧୯୪୭ ଅଗଷ୍ଟ ୧୫

୪୦. ସ୍ୱକଳ୍ପିତ ରାମରାଜ୍ୟର ପ୍ରତିଷ୍ଠା ଦେଖିବା ପୂର୍ବରୁ ଅତ୍ୟନ୍ତ ଆକସ୍ମିକ ଭାବରେ ଦିଲ୍ଲୀସ୍ଥିତ ବିର୍ଲା ହାଉସ୍ ପରିସର ମଧ୍ୟରେ ପ୍ରାର୍ଥନା ସଭାରେ ଆତତାୟୀର ନିର୍ମମ ଗୁଳି ଚୋଟରେ ପୂଜ୍ୟ ବାପୁଜୀ ଶହୀଦତ୍ୱ ଲାଭ କଲେ ... ୧୯୪୮ ଜାନୁୟାରୀ ୩୦

୪୧. ନିଜସ୍ୱ ସମ୍ବିଧାନ ଅନୁସରଣରେ ଭାରତ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ ହେଲା - ୧୯୫୦ ଜାନୁୟାରୀ ୨୬

## ସଂଗ୍ରାମ ସ୍ମରଣେ

ଆମ ହାତରେ ନ ଥିଲା ତରବାରି
ଆମେ ହୋଇତ ନ ଥିଲୁ କରବାରୀ
ଭାରତ ମାତାଙ୍କ ନାମକୁ ସୁମରି
ବଢ଼ିଲା ନଇକୁ ହେଲୁ ପାରି ।।୦।।

ମନରୁ ମଇଳା ଦୂର କରିବା ଲାଗି ଔଷଧ ହେଉଛି ଉପାସନା ।

ହାତରେ ନ ଥିଲା ଖଣ୍ଡେ ତ ବନ୍ଧୁକ
ଅବାପ୍ରାଣ ନାଶୀ ଜହର କନ୍ଧୁକ
ତରୁଣ ବନ୍ଧୁଙ୍କ ଅରୁଣ ହୃଦକୁ
ଗୁଛି ଥିଲୁ ପୂଜା ଫୁଲ ପରି ॥୧॥

ନ ଥିଲା ଟର୍ପେଡ଼ୋ, ନ ଥିଲା ଜାହାଜ
କେତେ କୁଳବଧୂ ହୋଇ ଆସି ସଜ
ସମର ତରଙ୍ଗେ ପ୍ରାଣ ଢାଳି ଥିଲେ
ପଷାଣକୁ ଦେଲେ ଚୂନା କରି । ॥୨॥

ନ ଥିଲା ମଥାରେ କୂଟ ବୁଦ୍ଧି ବଳ
ପ୍ରେମ ଥିଲା ଏକ ହୃଦୟ ସମ୍ବଳ
ସେ ପରଶମଣି ଆଲୋକିତ କରି
ଆମ ବାଟ ଆମେ ନେଲୁ ବାରି ॥୩॥

ନଥିଲା ସିନ୍ଧୁକ ନ ଥିଲା ତ ଟଙ୍କା
ସାହା ଥିଲା ଶୁଭ୍ର ଜାତୀୟ ପତାକା
ଭିକ୍ଷା ମାଗୁଥିଲୁ ସଙ୍ଗେ ନେଇ ତାରେ
ଆମେ ଦ୍ୱାର ଦ୍ୱାର ବୁଲି ବୁଲି ॥୪॥

ଆମ ବ୍ୟୋମରେ ନ ଥିଲା ବ୍ୟୋମଯାନ
ଆମେ ଚଳାଇ ଆମର ଦେହଯାନ
ମରଣ ଦୁଆରେ ଉଭା ହୋଇଥିଲୁ
ବରଣ ମାଳାକୁ କରେ ଧରି ॥୫॥

ମନେ ଅଛି ସବୁ ସେ ଝଡ଼ ବତାସ
ଯାଇ ନାହିଁ ଭାଇ ମାଡ଼ର ପରାସ
ସବୁ ସହିଗଲୁ ପଥର ପରି ତ କ୍ଷଣକ
ମୁହଁ କୁ ଚାହିଁ କରି ॥୬॥

ନ ଥିଲେ ପ୍ରତାପ ନ ଥିଲେ ଶିବାଜୀ
ଅବା କାହିଁ ଜାଁଶୀ ବୀର ସୈନ୍ୟ ରାଜି
ପାଞ୍ଚ ହାତ ଖଦା ପିନ୍ଧି ସେ ନାଉଣ୍ଡି ଆମ ଡଙ୍ଗାକୁ ଆଣିଲା
କାତ ମାରି ॥୭॥

# ଭାରତର ବନ୍ଦନା

## (ଭକ୍ତ କବି ମଧୁସୂଦନ)

ତୁହିମା ଜନମ ଭୂମି ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମ୍ଭେ ଅଟୁଁ ସରବେ
ତୋର ଶ୍ରୀଚରଣ ସେବା ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ
ତୋ ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ॥୧॥
ଧନ୍ୟ ମହିମା ତୋହର ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତ ବର
ଦୁଇ ପାରୁଶେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁ ନଦୀ
ଚରଣରେ ବିରାଜିତ ମହାସାଗର
ବିନ୍ଧ୍ୟ ଗିରିବର କଟିରେ
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ ॥୨॥
ଜନମିଲେ ତୋ କୋଳରେ କେତେ ସୁର ବୀର ନରେ
ରାମଚନ୍ଦ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଜ୍ଜୁନ
ମହାକବି ବେଦବ୍ୟାସ, ବାଲ୍ମୀକି କାଳିଦାସ
ଗାଇଲେ ପବିତ୍ର କଣ୍ଠେ ତୋହରି ଗୁଣ
ଚୈତନ୍ୟାଦି ମହାତ୍ମା ଜନେ
ପଟାରିଲେ ବିଷ୍ଣୁନାମ ଆନନ୍ଦ ମନେ ॥୩॥
କେତେକେତେ ପୁଣ୍ୟବତୀ କେହେ ପତିବ୍ରତା ସତୀ
କେତେବୀରା ନାରୀ କେତେ ବୀର ଜନନୀ
ସମସ୍ତେ ତୋର ଦୁହିତା ପଦ୍ମିନୀ ସାବିତ୍ରୀ ସୀତା
ଦୁର୍ଗାବତୀ ଆଦି କେତେ ବୀରା ରମଣୀ
ନମଇଁ ମା ଭକତି ଭରେ
ଅଧମ ଅକ୍ଷମ ସୁତ ତୋ ଚରଣରେ ॥୪॥

ସ୍ୱାଧୀନ ଭାରତରେ କେହି ଭୋକିଲା ରହିବେ ନାହିଁ । ନିରକ୍ଷର ରହିବେ ନାହିଁ । ସାମାଜିକ ବ୍ୟବସ୍ଥା ଏପରି ହେବ ଯେ, ଅନ୍ଧାର ରାତିରେ ଜଣେ ଯୁବତୀ ନିଃଶଙ୍କରେ ଚଳପ୍ରଚଳ କରିପାରୁ ଥିବ ।

# ଜନନୀ ଭାରତ

ସର୍ବେଷାଂନୋ ଜନନୀ ଭାରତ, ଧରଣୀ କଳ୍ପ ଲତେୟଂ ।
ଜନନୀ ବତ୍ସଳ ତନୟ ଗଣୈସ୍ତଦ୍ ସମ୍ୟକ୍ ଶର୍ଣ୍ଣିଚିନ୍ତ୍ୟଯମ୍ ।୦।

ହିମଗିରି-ସୀମନ୍ତିତ-ମସ୍ତକମିଦ ମମ୍ବୁଧି ପରିଗତ ପାର୍ଶ୍ୱମ୍
ଅସଙ୍କନ୍ଦ-ମନ୍ଦିବ ମନିଶଂ-ଶୈତ-ପୁରାତନ ମାର୍ଷମ୍ ।୧।

ବିଜନିତ ହର୍ଷଂ ଭାରତବର୍ଷଂ ବିଶ୍ୱୋତ୍କର୍ଷ-ନିଦାନମ୍
ଭାରତ ଶର୍ମଣି କୃତ-ମସ୍ତାଭି - ର୍ନବମିତ ମୈକ୍ୟ ବିଧାନମ୍ ।।୨।।

ଭାରତ ପଙ୍କଜ ଦଳମିଦ ମୁକୁଳ-ମଣ୍ଡଳ ମିତ ବିଦିତ ୨
ତସ୍ୟୈକ୍ୟତେ ବୟ ମତ୍ର ସମେତା ବିହିତାତ୍ରୋଟ୍ଟଳ - ସଂସତ ।।୩।।

ଭାରତ - ମେକା ଗତିରସ୍ମାକଂ ନାପରାସ୍ତି ଭୁବିନାନ
ସର୍ବାର୍ତ୍ତୌ ପରିଷଦ୍-କର୍ମଣି ତଦ୍ ଭାରତମେବ ନମାମଃ ।।୪।।

(କବିବର ରାଧାନା...)

# ଭାରତ ବନ୍ଦନା

**(ଭକ୍ତ କବି ମଧୁସୂଦନ)**

ତୁହିମା ଜନମ ଭୂମି ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମ୍ଭେ ଅଟୁଁ ସରବେ
ତୋର ଶ୍ରୀଚରଣ ସେବା ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ
ତୋ ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।।୧।।

ଧନ୍ୟ ମହିମା ତୋହର ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତ ବର
ଦୁଇ ପାରୁଶେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁ ନଦୀ
ଚରଣରେ ବିରାଜିତ ମହାସାଗର
ବିନ୍ଧ୍ୟ ଗିରିବର କଟିରେ
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ ।।୨।।

ଜନମିଲେ ତୋ କୋଳରେ କେତେ ଶୂର ବୀର ନର
ରାମଚନ୍ଦ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଜୁନ
ମହାକବି ବେଦବ୍ୟାସ, ବାଲମୀକି କାଳିଦାସ
ଗାଇଲେ ପବିତ୍ର କଣ୍ଠେ ତୋହରି ଗୁଣ
ଚୈତନ୍ୟାଦି ମହତ୍ମା ଜନେ
ପ୍ରଚାରିଲେ ବିଷ୍ଣୁନାମ ଆନନ୍ଦ ମନେ ।।୩।।

କେତେକେତେ ପୁଣ୍ୟବତୀ କେହେ ପତିବ୍ରତା ସତୀ
କେତେବୀରା ନାରୀ କେତେ ବୀର ଜନନୀ
ସମସ୍ତେ ତୋର ଦୁହିତା ପଦ୍ମିନୀ ସାବିତ୍ରୀ ସୀତା
ଦୁର୍ଗାବତୀ ଆଦି କେତେ ବୀରା ରମଣୀ
ନମଇ ମା ଭକତି ଭରେ
ଅଧମ ଅକ୍ଷମ ସୁତ ତୋ ଚରଣରେ ।।୪।।

# ହିନ୍ଦୁ ସ୍ତାଁ ହମାରା

ସାରେ ଜହାଁ ସେ ଅଚ୍ଛା ହିନ୍ଦୁସ୍ତାଁ ହମାରା-ହମାରା ହମ୍ ବୁଲବୁଲେଂ ହୈଁ ଇସକୀ ଯେ ଗୁଲସ୍ତାଁ ହମରା-ହମାରା ।୦।
ପରବତ ହୋ ସବସେ ଊଁଚା ହମସା-ୟେ ଆସମାଁକା ଓ ସନ୍ ତେରୀ ହମାରା ଓ ମା ସୁବା ହମାରା-ହମାରା ।୧
ଗୋଦୀ ମେଂ ଖେଲତୀ ହୈଂ ଜିସକୀ ହଜାରୋଂ ନଦିୟାଁ ଗୁଲସନ୍ ହୈ ଜିସକେ ଦମସେ ରସକେ ବିନା ହମାରା-ହମାରା ।୨।
ମଜହବ ନହୀଂ ଶିଖାତା ଆପସ ମେଂ ବୈର ରଖନା ହିନ୍ଦୀ ହୈଁ ହମ୍ ହିନ୍ଦୀ ହୈଁ ହମ ବତନ ହୈ ହିନ୍ଦୁସ୍ତାଁ ହମାରା-ହମାରା ।୩।

(ମହମ୍ମଦ ଇକବାଲ)

ମୁଁ ସବୁଠାରୁ ଅଧିକ ମେହେନ୍ତରର ପାଦଧୂଳି ଗ୍ରହଣ କରିବାରେ, କିନ୍ତୁ ସମ୍ରାଟ ପାଖରେ ମୁଣ୍ଡ ନୁଆଁଇ ଠିଆ ହେବାକୁ ରାଜିନୁହେଁ ।

# ଉଦ୍‌ବୋଧନୀ

ହେ ପତାକା ! ଜାତିର ଗରବ ଜାତିର ଜୀବନ ପରାଣ ତୁହିରେ,

ଏକତା ପୀରତି ଶାନ୍ତି-ମୂରତି ସମାନ ତୋହର କାହିଁରେ ନାହିଁରେ ।।୦।।

ତୋ'ରି ଲାଗି ଦେଶେ ଦେଶେ, ପୀରତି ହୋଇଛି ବଢ଼ିରି ଶେଷେ ।

ତୋହରି ଲାଗି ଅରିର ଖଡ଼ଗ, ଶରୀରେ ରକତେ ଦେଲୁ ରଞ୍ଜାଇରେ ।।୧।।

ତୋହରି ଲାଗିକେତେ ଯେ ସମର, ଲାଗିଛି ଜାଗିଛି କୀରତି ଅମର

ତୋରି ଲାଗି କେତେ କରାଗାର, ବରିଲେ ମରିଲେ ସମର ଭୁଇଁରେ ।।୨।।

ଉଡ଼ିଛୁ ଉଡୁଛୁ ଉଡୁଥିବା ପରା, ଯାବତ ଏ ଦେଶ ଧରିଥିବ ଧରା

ତାବତ ଜାତିର ଜଣେ ଏ ପରାଣେ, ଥିବ ତୁ ରାଜିବୁ ଗଗନ ଛୁଇଁରେ ।।୩।।

ପାଇଛି ଯେ ଥରେ ଜାତୀୟତା ସ୍ୱାଦୁ, ଚାଖିଛି ଯେ ଥରେ ସ୍ୱାଧୀନତା ମଧୁ

ପାରିଛି ଦେବାକୁ ଜୀବନ ଯୌବନ, ମାନ ସନମାନ ବିମନ ନୋହିରେ ।।୪।।

ଧନ୍ୟ ଧନ୍ୟ ତୁହି ତିନି ରଙ୍ଗିଆରେ, ବହିଛୁ ଅଙ୍ଗରେ ସୁଖ ସଙ୍ଗିଆରେ

ଅଶୋକଚକ୍ର ଅହିଂସା ଅବତାର ବକ୍ଷରେ ସେ ଚିହ୍ନ ନମଇଁ ମୁହିଁରେ ।।୫।। ❑

# ରାଷ୍ଟ୍ରୀୟ ସଙ୍ଗୀତର ମର୍ଯ୍ୟାଦା ପ୍ରାପ୍ତ

## ବନ୍ଦେ ମାତରମ୍

ସୁଜଳାମ୍ ସୁଫଳାମ୍ ମଳୟଜ ଶୀତଳାମ୍, ଶସ୍ୟଶ୍ୟାମଳାମ୍ ମାତରମ୍ ।। ବନ୍ଦେ-ମାତରମ୍ ।।

ଶୁଭ୍ର ଜ୍ୟୋତ୍ସ୍ନା ପୁଲକିତ ଯାମିନୀମ୍, ଫୁଲ୍ଲକୁସୁମିତ ଦ୍ରୁମଦଲ ଶୋଭିନୀମ୍

ସୁହାସିନୀମ୍ ସୁମଧୁର ଭାଷିନୀମ୍, ସୁଖଦାମ୍ ବରଦାମ୍ ମାତରମ୍ ।। ବନ୍ଦେ ମାତରମ୍ ।।

ଲେଖକ-ଋଷି ବଙ୍କିମ ଚନ୍ଦ୍ର (ରଚନା କାଳ- ୮୯୨)

## ରାଷ୍ଟ୍ରୀୟ ସଙ୍ଗୀତ

### ଜନଗଣମନ

ଜନଗଣମନ ଅଧିନାୟକ ଜୟହେ ଭାରତ ଭାଗ୍ୟ ବିଧାତା, ପଞ୍ଜାବ ସିନ୍ଧୁ ଗୁଜରାଟ ମରାଠା ଦ୍ରାବିଡ଼ ଉତ୍କଳ ବଙ୍ଗ

ବିନ୍ଧ୍ୟ ହିମାଚଳ ଯମୁନା ଗଙ୍ଗା ଉଚ୍ଛଳ ଜଳଧି ତରଙ୍ଗ, ତବଶୁଭ ନାମେ ଜାଗେ, ତବ ଶୁଭ ଆଶିଷ ମାଗେ

ଗାହେ ତବ ଜୟ ଗାଥା, ଜନଗଣ-ମଙ୍ଗଳ ଦାୟକ ଜୟହେ ଭାରତ ଭାଗ୍ୟ ବିଧାତା ।

ଜୟ ହେ, ଜୟ ହେ, ଜୟ ହେ, ଜୟ ଜୟ ଜୟ ଜୟ ହେ,

(ଗାନ ପ୍ରାଇଁ ସମୟ ୫୨ ସେକଣ୍ଡ) ଲେ : ବିଶ୍ୱ କବି ରବୀନ୍ଦ୍ର ନାଥ, ରଚନା କାଳ : ୧୯୧୧ ଡିସେମ୍ବର

ସ୍ୱର ସଂଯୋଜକ - ଆୟରଲାଣ୍ଡ ନିବାସୀ ହେନେରୀ ଜଜିନ୍ସ । ତାଙ୍କ ଭାରତୀୟ ନାମ - ଜୟରାମ -

# ଝଣ୍ଡାଉତ୍ତୋଳନ ଗାନ

ବିଜୟୀ-ବିଶ୍ୱ ତିରଙ୍ଗା ପ୍ୟାରା, ଝଣ୍ଡା ଉଁଚା ରହେ ହମାରା ॥୦॥

ସଦାଶକ୍ତି ବରଷାନେ ବାଲା, ପ୍ରେମ ସୁଧା ସରସାନେ ବାଲା ,
ବୀରୋଁକୋ ହରଷାନେ ବାଲା, ମାତୃ ଭୂମିକାତନମନ ସାରା ॥୧॥

ଆଓ ଭାୟୋଁ ବହନୋଁ ଆଓ, ଦେଶ - ଧର୍ମପର ବଳି ବଳି ଜାଓ
ଏକ ସାଥ ସବ ମିଲକର ଗାଓ, ପ୍ୟାରା ଭାରତ ଦେଶ ହମାରା ॥୨॥

ସାନ ନ ଇସକୋ ଜାନେ ପାୟେ, ଚାହେ ଜାନ ଭଲେହୀ ଜାୟେ
ବିଶ୍ୱ ବିଜୟ କରକେ ଦିଖଲାୟେଁ, ତବ୍ ହୋବେ ପ୍ରଣ ପୂର୍ଣ୍ଣ ହମାରା ॥୩॥

(ଲେ : ଶ୍ୟାମଲାଲ ଗୁପ୍ତ ପାର୍ଶଦ), ରଚନାକାଳ ୧୯୨୦ ।

# ଝଣ୍ଡା ନମିତ କରଣ ଗାନ

ରାଷ୍ଟ୍ର - ଗଗନ କୀ ଦିବ୍ୟଜ୍ୟୋତି , ରାଷ୍ଟ୍ରୀୟ ପତାକା ନମୋ ନମୋ,
ଭାରତ - ଜନନୀ କେ ଗୌରବ କୀ , ଅବିଚଲ ଶାଖା ନମୋ ନମୋ ॥୦॥

କରମେଂ ଲେକର ଇସେ , ଶୂରମା କୋଟି କୋଟି ଭାରତ ସନ୍ତାନ,
ହଁସତେ ହଁସତେ ମାତୃଭୂମିକେ , ଚରଣୋଁପର ହୋଁଗେ ବଲିଦାନ ।

ହୋ ଘୋଷିତ ନିର୍ଭିକ ବିଶ୍ୱମେଂ , ତିରଲ ତିରଙ୍ଗା ନବଲ ନିଶାନ
ବୀର ହୃଦୟ ଖିଲ ଉଠେ, ମାରଲେଂ ଭାରତୀୟ କ୍ଷଣମେଂ ମୈଦାନ ।

ହୋ ନସନସମେଁ ବ୍ୟାପ୍ତ ଚରିତ , ଶୂରମା ଶିବୀକା ନମୋ ନମୋ ॥୧॥

ଉଚ୍ଚ ହିମାଲୟକୀ ଚୋଟୀପର , ଜାକର ଇସେ ଉଡ଼ାୟେଁଗେ,
ସବସେ ଉଁଚା ରହେ, ନ ଇସକୋ ନୀଚେ କଭି ଝୁକା ୟେଁଗେ ।

ସମରାଙ୍ଗଣମେ ଲାଲ ଲାଡ଼ଲେ, ଲାଖୋଁ ବଲିବଲି ଜାୟେଁଗେ,
ବିଶ୍ୱ ବିଜୟିନୀ ରାଷ୍ଟ୍ର ପତାକା କା ଗୌରବ ଫହରା ୟେଙ୍ଗେ ।

ଗୁଁଜେ ସ୍ୱର ସଂସାର - ସିନ୍ଧୁମେଁ, ସ୍ୱତନ୍ତ୍ରତା କା ନମୋ ନମୋ ।,
ରାଷ୍ଟ୍ର - ଗଗନକୀ ଦିବ୍ୟ ଜ୍ୟୋତି ରାଷ୍ଟ୍ରୀୟ ପତାକା ନମୋ ନମୋ । ॥୨॥



ଭଗବାନ ଉର୍ଦ୍ଧ୍ୱ ଆକାଶରେ ବା ପାତାଳପୁରୀରେ ବାସ କରନ୍ତି ନାହିଁ । ସେ ପ୍ରତ୍ୟେକ ମାନବ ମଧ୍ୟରେ ବିରାଜ ମାନ । ତେଣୁ ମାନବର ସେବା ଦ୍ୱାରା ହିଁ ଭଗବାନଙ୍କୁ ପ୍ରତ୍ୟକ୍ଷ କରିହୁଏ ।

# ଝଣ୍ଡା ଉତ୍ତୋଳନ ବିଧି

୧. ଗୋଟିଏ ଚଉରସ ସ୍ଥାନରେ ପତାକାପୀଠ ପ୍ରସ୍ତୁତ ହେବ । ୨. ପୀଠର ମୁଖ ପୂର୍ବକୁ ରହିବ । ୩. ପୀଠର ଠିକ୍ ମଧ୍ୟଦେଶରେ ସ୍ତମ୍ଭ ରହିବ ଓ ସ୍ତମ୍ଭକୁ ଘେରି ଗୋଟିଏ ବୃତ୍ତାକାର ବା ଚାରିକୋଣିଆ ଉଚ୍ଚ ମୂଳପୀଠ ରହିବ । ୪. ଧ୍ୱଜନୀ (ନିର୍ଦ୍ଦେଶକ ଓ ଧ୍ୱଜ ରକ୍ଷକ), ପୁରୋଧା, ଗାୟନଦସ୍ତା, ତାଲୀମପ୍ରାପ୍ତ ଦସ୍ତା (ଏନ୍. ସି. ସି ବା ବାଳଚର) ଶଙ୍ଖ ବା ବିଗୁଲନାଦକ, ସହାୟକ, ବିଶିଷ୍ଟ ବ୍ୟକ୍ତି, ଶିକ୍ଷକ ଓ ସର୍ବସାଧାରଣଙ୍କ ପାଇଁ ପୀଠରେ ଆସ୍ଥାନ ଚିହ୍ନିତ ହେବ । ୫. ଧ୍ୱଜନୀ, ସହାୟକଙ୍କ ସହାୟତାରେ ପତାକାକୁ ଫୁଲ ଦେଇ କୁଣ୍ଢି ଫାଶ ଦେଇ ସ୍ତମ୍ଭରେ ଚଢାଇବେ । ୬. ଅତଃପର ଧ୍ୱଜନୀ ସମସ୍ତଙ୍କୁ ସଜ୍ଜିତ କରାଇବା ପରେ ପୁରୋଧାଙ୍କୁ ଆମନ୍ତ୍ରଣ କରି ଉଦ୍ଦିଷ୍ଟ ସ୍ଥାନରେ ଛିଡ଼ାକରାଇବେ । ୭. ଧ୍ୱଜନୀଙ୍କ ନିର୍ଦ୍ଦେଶରେ ସମସ୍ତେ - **ସାବଧାନ** - ସ୍ଥିତିରେ ରହିବାପରେ (୧). "ବନ୍ଦେ ମାତରମ" ଗାନ କରାଯିବ । (୨). ପୁରୋଧାଙ୍କ ଦ୍ୱାରା ପତାକା ଉନ୍ମୋଚିତ ହେବ । (୩). ସମସ୍ତେ ପତାକାକୁ ଅଭିବାଦନ (ସଲାମୀ ଆମ୍‌ଦୋ) ଜ୍ଞାପନ କରିବେ । ଏତିକିବେଳେ ଶଙ୍ଖ ବା ବିଗୁଲ ବାଜିବ । (୪). ରାଷ୍ଟ୍ରୀୟ ସଂଗୀତ "ଜନଗଣ ମନ" ଗାନ କରାଯିବ । (୫). ଝଣ୍ଡା ଗୀତ ଗାନ ହେବ । (୬) ସମସ୍ତେ "ବିଶ୍ରାମ" ସ୍ଥିତିରେ ରହିବେ । (୭). ପୁରୋଧା ଉଦ୍‌ବୋଧନ ଦେବେ । (୮). ସମସ୍ତେ - "ସାବଧାନ" - ହେବେ । (୯). ଜୟଧ୍ୱନି - "ଆଜାଦହିନ୍ଦ୍ - ଜିନ୍ଦାବାଦ" ବନ୍ଦେ - ମାତରମ୍ "କୌମିନାରା - ଜୟହିନ୍ଦ୍"... ସମୂହ ନିନାଦିତ ହେବ । (୧୦). ଶପଥ ପତ୍ର ପାଠ ହେବ । (୧୧). "ବରଖାସ୍ତ" ଆଦେଶରେ ସମସ୍ତେ ଡାହାଣକୁ ଘୂରି "ଜୟହିନ୍ଦ୍" କହି ପୀଠ ପରିତ୍ୟାଗ କରିବେ । (୧୨). ନମିତ କରଣ ଯାଏ ପୀଠ ଓ ଉତ୍ତୋଳିତ ପତାକାକୁ ସ୍ୱୟଂ ସେବକମାନେ ଜଗିକରି ସୁରକ୍ଷା କରିବେ ।



# ନମିତ କରଣ ବିଧି

ଧ୍ୱଜନୀଙ୍କ ନିର୍ଦ୍ଦେଶରେ (୧) ସମସ୍ତେ ପୀଠରେ ଯଥାସ୍ଥାନ ସଜ୍ଜିତ ହେବେ । (୨). "ରାଷ୍ଟ୍ର ଗଗନ କୀ ଦିବ୍ୟ ଜ୍ୟୋତି" କିମ୍ବା "ଜନଗଣମନ" ଗାନ କରାଯିବ । (୩) ଅଭିବାଦନ ଜ୍ଞାପନ କରାଯିବ । (୪) ସମସ୍ତେ "ବିଶ୍ରାମ" ସ୍ଥିତିରେ ରହିବାପରେ ଧ୍ୱଜନୀ ପତାକାକୁ ଖସାଇବା ଅବସ୍ଥାରେ ଭୂମିସ୍ପର୍ଶ କରିବାକୁ ନଦେଇ ସହାୟକ ନିଜେ ପତାକାକୁ ଧରିନେବେ । (୫). ଦୁହେଁ ପତାକାକୁ ଫିଟାଇ ଯଥାବିଧି କୁଣ୍ଢିବା ପରେ ସହାୟକ ଦୁଇ ହାତରେ ପତାକାକୁ ଧରି ରଖିବେ । (୬) "ସାବଧାନ" - ସ୍ଥିତିରେ ରହି ସମସ୍ତେ ଜୟଧ୍ୱନି ଦେବେ । (୭) "ବରଖାସ୍ତ" - ଆଦେଶରେ ସମସ୍ତେ ପୀଠ ତ୍ୟାଗ କରିବେ । (୮) ସହାୟକ କୁଣ୍ଢିତ ପତାକାକୁ ନେଇ କପଡ଼ା ବା କାଗଜ ଗୁଡାଇ ଆଲମିରାର ଉପରଥାକ ବା ସେହିପରି କୌଣସି ଉଚ୍ଚ ସୁରକ୍ଷିତ ସ୍ଥାନରେ ରଖିବେ । ରଜ୍ଜୁ ମଧ୍ୟ ସୁରକ୍ଷିତ ହେବ ।



ପ୍ରେମାଗ୍ନିରେ ସର୍ବାପେକ୍ଷା କଠିନ ଦ୍ରବ୍ୟ ମଧ୍ୟ ତରଳିଯାଏ । ଯଦି ନ ତରଳେ ତେବେ ଅଗ୍ନିର ତେଜ କମ୍ ।

A civilisation is to be judged by its treatment of minorities

I want world sympathy in the battle of right against mighty.

# ପତାକାର ତତ୍ତ୍ୱ

୧. କେଶରୀ - ସାହସ - ଓ ତ୍ୟାଗ, ୨. ଶ୍ୱେତ - ସତ୍ୟ, ଶାନ୍ତି ଓ ପବିତ୍ରତା, ୩. ସବୁଜ - ବୀରତ୍ୱ, ବିଶ୍ୱାସ, ଶ୍ରଦ୍ଧା ଓ ଭକ୍ତି ଧରିତ୍ରୀକୁ ଶସ୍ୟ ଶ୍ୟାମଳା କରିବାର ଓ ମନକୁ ସଦା ସବୁଜ ରଖିବାର ସୂଚନା ।

ସ୍ୱାଧୀନତା ସଂଗ୍ରାମ କାଳରେ ୧୯୨୧ ମସିହାରେ ଅଖିଳ ଭାରତ ଜାତୀୟ କଂଗ୍ରେସ ଆନୁଷ୍ଠାନିକ ରୀତିରେ ପ୍ରଥମ କରି ନିଜର ବୋଲି ଯେଉଁ ପତାକାକୁ ସ୍ୱୀକୃତି ପଦାନ କରିଥିଲେ ତାହା ତ୍ରିରଙ୍ଗ ଥିଲା । ଶୀର୍ଷ ଦେଶରେ ଶ୍ୱେତ, ମଧ୍ୟଭାଗରେ ସବୁଜ ଓ ନିମ୍ନଦେଶରେ ନାଲିରଙ୍ଗର ସମଆୟତନ ବିଶିଷ୍ଟ କପଡ଼ାତ୍ରୟ ପରସ୍ପର ସୀବନ ସୂତ୍ରରେ ଗ୍ରଥିତ ହୋଇଥିଲା । ପତାକାର ଏହି ପ୍ରସ୍ଥ ତ୍ରୟ ଯଥାକ୍ରମେ ସଂଖ୍ୟାଲଘିଷ୍ଠ, ମୁସଲମାନ ଓ ହିନ୍ଦୁ ମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ଓ ସିଲାଇ ହେବାଦ୍ୱାରା ନିବିଡ଼ ଜାତୀୟ ସଂହତି ଓ କପଡାର ସମ ଆୟତନ ସ୍ୱାଧୀନ ଭାରତରେ ଜାତି - ବର୍ଣ୍ଣ ଧର୍ମ - ସଂଖ୍ୟା ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମାନ ନାଗରିକ ଅଧିକାର ସୂଚନା ଦେଉଥିଲା । ପତାକାର କେନ୍ଦ୍ରଦେଶରେ ଥିଲା ଅରଟର ପୂର୍ଣ୍ଣାବୟବ ଛବି - ଏହା ଅହିଂସକ ସଂଗ୍ରାମର ଆୟୁଧ ଓ ଜନସାଧାରଣରେ ଆଶା ଭରସା ।

ପରବର୍ତ୍ତୀ କାଳରେ ପତାକାର ବର୍ଣ୍ଣ ଯୋଜନାରେ ପରିବର୍ତ୍ତନ ହୋଇ ତାହା କେତୋଟି ସଦ୍‌ଗୁଣର ପ୍ରତୀକ ହୋଇଥିଲେ ମଧ୍ୟ ଜାତୀୟ ସଂହତିର ଭାବନାରୁ ଦୂରେଇ ଯାଇନାହିଁ । ☐

# ଅଶୋକ ଚକ୍ର

ଅରଟର ପ୍ରତିନିଧି - ସତ୍ୟ, ଅହିଂସା, ଜ୍ଞାନ ବିଜ୍ଞାନ, ଦର୍ଶନ, ସ୍ୱାଶ୍ରୟିତା ଓ ନ୍ୟାୟର ପ୍ରତୀକ । ଏଥିରେ ଥିବା ୨୪ଟି ଅର ଅହୋରାତ୍ର ଗତିଶୀଳ ଜୀବନର ସୂଚକ ଓ ଗୀତୋକ୍ତ ଚତୁର୍ବିଂଶତି ଧର୍ମତତ୍ତ୍ୱର ଦ୍ୟୋତକ ।

# ଶପଥ ପତ୍ର

ପତାକା ଉତ୍ତୋଳନ ବେଳେ ଧ୍ୱଜନୀ ବା ପୁରୋଧା ନିମ୍ନୋକ୍ତ ଶପଥ ପତ୍ରକୁ ପଦ ପଦ କରି ପାଠ କରିବେ । ସମସ୍ତେ ତାକୁ ଦୋହରାଇବେ । ସେତେବେଳେ ସମସ୍ତେ ଯୋଡହସ୍ତରେ ରହିବେ ।

**''ଆମ ଜନ୍ମଭୂମି ପବିତ୍ର ଭାରତ ଗାଣତାନ୍ତ୍ରିକ ଓ ସାଧାରଣତନ୍ତ୍ର ରାଷ୍ଟ୍ର । ଆମ ଜାତୀୟ ପତାକା ଆମ ରାଷ୍ଟ୍ରର ପ୍ରତୀକ । ମୁଁ ଆମ ଦେଶ ଓ ଜାତୀୟ ପତାକା ପ୍ରତି ଅନୁଗତ ରହିବା ପାଇଁ ଶପଥ ଗ୍ରହଣ କରୁଛି ।''**

# ସାବଧାନତା

୧. ଉଡ଼ିଲାବେଳେ କେଶରୀ ଉପରକୁ ରହିବ । ୨. ପତାକାର ଲମ୍ବ ୩ ହେଲେ ଓସାର ୨ ହେବ । ୩. ସ୍ତମ୍ଭ ପତାକା ଉସାରର ୧୦ ଗୁଣ ଓ ତାହା ସଳଖ ଓ ସୁଦୃଶ୍ୟ ହେବ । ସ୍ତମ୍ଭର ୧/୧୦ ପୋତାହେବ । ୪. ରଜ୍ଜୁ ଶ୍ୱେତ ସୂତାର ହେବ ଓ ସ୍ତମ୍ଭର ଦୁଇଗୁଣରୁ ସାମାନ୍ୟ କମ୍ ଲମ୍ବ ରହିବ । ୫. ଜାତୀୟ ପର୍ବ, କ୍ରୀଡ଼ୋତ୍ସବ ବା ବାଳଚର ମେଳାରେ ପତାକା ଉତ୍ତୋଳନ କରାଯାଇପାରିବ । ଜାତୀୟ ଦିବସରେ ପ୍ରତ୍ୟେକ ନାଗରିକ ଯାନ ବାହାନରେ ପତାକା ବ୍ୟବହାର କରିପାରିବେ । ୬. ସାଧାରଣତଃ ସୂର୍ଯ୍ୟୋଦୟପରେ ପୂ. ଘ. ୯. ୩୦ ମଧ୍ୟରେ ପତାକା ଉତ୍ତୋଳନ କରାଯାଇଥାଏ ଓ ସୂର୍ଯ୍ୟାସ୍ତ ପୂର୍ବରୁ ନମିତକରଣ କରାଯାଏ । ୭. **କୌଣସି ଜାତୀୟ ନେତାଙ୍କର ମୃତ୍ୟୁ ହେଲେ**

ସରକାରଙ୍କ ନିର୍ଦ୍ଦେଶରେ ରାଷ୍ଟ୍ରୀୟ ଶୋକ ସୂଚନା ପାଇଁ ପତାକା ସ୍ତମ୍ଭର ଅଗ୍ରଭାଗରୁ କିଛି ତଳକୁ ଖସାଇ ଉଡ଼ାଯାଏ । ମାତ୍ର କୌଣସି ଜାତୀୟ ପର୍ବରେ ଶୋକର ଘଟଣା ଘଟିଲେ ମଧ ପତାକା ଶୋକ ସୂଚକ ରୂପେ ଉଡାଯିବ ନାହିଁ । ୮. ଝଡ଼, ବତାସ ଭଳି ପାଗରେ ପତାକା ନଷ୍ଟ ଭ୍ରଷ୍ଟର ଆଶଙ୍କା ଥିବାରୁ ଉତ୍ତୋଳନପରେ ନମିତକରଣ କରାଯାଇପାରିବ । ୯. ମାସର ଶେଷ ଶୁକ୍ରବାର (ପ୍ରଥମ ସ୍ୱାଧୀନତା ଦିବସ) ବା ଅନ୍ୟ କୌଣସି ଦିନ ବିଦ୍ୟାଳୟରେ ଅଭ୍ୟାସ ମୂଳକ ପତାକା ବନ୍ଦନା ପାଇଁ ସମୟ ରଖାଯିବା ଆବଶ୍ୟକ । ୧୦. ଶୋଭାଯାତ୍ରାରେ ଅଗ୍ରଣୀ ଡାହାଣ କାନ୍ଧରେ ପତାକା ଧରିବେ । ୧୧. ଛିନ୍ନ, ମଳିନ ବା ବିବର୍ଣ୍ଣ ପତାକା ଉତ୍ତୋଳିତ ହେବନାହିଁ । ୧୨. ଅବ୍ୟବହାର୍ଯ୍ୟ ପତାକାକୁ ସସମ୍ମାନ ଦାହ କରାଯିବ ବା କବର ଦିଆଯିବ । ୧୩. କୌଣସିମତେ ପତାକା ବା ରଜ୍ଜୁକୁ ଭୂମି ସ୍ପର୍ଶ କରିବାକୁ ଦିଆଯିବ ନାହିଁ । ୧୪ ରାଷ୍ଟ୍ରୀୟ ଓ ସାମରିକ ଶବ ସତ୍କାର ଉପଲକ୍ଷେ ପତାକା ଶବାଧାରରେ ଘୋଡ଼ାଇ ଦିଆଯିବ । କେଶରୀ ଭାଗଟି ଶବାଧାରର ମସ୍ତକ ଆଡ଼କୁ ରହିବ । ମାତ୍ର ପତାକାକୁ ଯୁଇରେ ବା କବରରେ ନିକ୍ଷେପ କରାଯିବ ନାହିଁ । ୧୫. ନିଜ ରାଷ୍ଟ୍ରୀୟ ନିଶାଣ ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ଯାଇ ଇତର ରାଷ୍ଟ୍ରର ନିଶାଣ ପ୍ରତି ଅବମାନନା ଅକ୍ଷମଣୀୟ ଅପରାଧ । ୧୬. ପତାକାରେ ଥିବା ଦ୍ୱିତୀୟ ପ୍ରସ୍ତ କପଡାର ଠିକ୍ ମଧ୍ୟଭାଗରେ ଅଶୋକ ଚକ୍ର ନୀଳରଙ୍ଗରେ ଚିତ୍ରିତ ହେବ । ଚକ୍ରର ବ୍ୟାସ, ପତାକାରେ ଥିବା ପ୍ରତ୍ୟେକ କପଡ଼ାର ପ୍ରସ୍ଥ ସହିତ ସମାନ ରହିବ । ତେଣୁ ଅଙ୍କିତ ଚକ୍ରଟି କେଶରୀ ଓ ସବୁଜ କପଡ଼ାକୁ ସ୍ପର୍ଶ ମାତ୍ର କରିବ । ୧୭. ଜାତୀୟ ପତାକା ସହ କୌଣସି ଶୋଭାଯାତ୍ରା ଆସୁଥିଲେ ପଥାଚାରୀ ଦଣ୍ଡାୟମାନ ରହି ସମ୍ମାନ ଜଣାଇବେ । ୧୮. ରାଷ୍ଟ୍ରୀୟ ସଙ୍ଗୀତ ଗାନ ହେଉଥିଲାବେଳେ ଶ୍ରୋତାମାନେ ଦଣ୍ଡାୟମାନ ରହିବେ ।

# ଗାନ୍ଧୀଘାଟ

**ଡାକ୍ତର ଗୌରାଙ୍ଗ ଚରଣ ମହାପାତ୍ର**

୧୯୪୮ ମସିହା ଜାନୁୟାରୀ ୩୦ ତାରିଖ ସଂଧ୍ୟା ପ୍ରାର୍ଥନା ସଭାରେ ନାଥୁରାମ ଗଡ଼ସେ ଗାନ୍ଧିଜୀଙ୍କୁ ଗୁଳିକରି ହତ୍ୟା କରିବା ସଂବାଦ ପୁରୀରେ ପହଞ୍ଚିଲା ସଂଧ୍ୟା ୭ଟାରେ । ମୁଁ ପୁରୀ ସିଂହଦ୍ୱାର ନିକଟ ମୋ ଡାକ୍ତରଖାନାରେ ବସିଥାଏ । ଜଣେ କଂଗ୍ରେସ କର୍ମୀ ଧାଇଁ ଆସି ମୋତେ ହଠାତ ଏ ଦୁଃସଂବାଦଟି ଦେଇ ଗଲେ । ସେତେବେଳେ ପୁରୀ ସହରରେ ରେଡ଼ିଓ ବା ଟେଲିଭିଜନ ନ ଥାଏ । ଜଣେ ଦୋକାନୀର ଗୋଟିଏ ରେଡ଼ିଓ ଥାଏ । ସେ ରେଡ଼ିଓ ପାଖରେ ଶହ ଶହ ଲୋକ ଏ ଦୁଃସଂବାଦ ଶୁଣି ଶୋକ ବିହ୍ୱଳ ହୋଇ ଆପଣାଛାଏଁ ଦୋକାନ ବଜାର ସବୁ ବନ୍ଦ କରି ଦେଲେ ।.... ସେହି କାଳରାତ୍ରରୁ ତହିଁ ଆର ଦିନ ସାରା ପୁରୀରେ ଦୋକାନ ବଜାର ସବୁ ବନ୍ଦ । ହରତାଳ ପାଳିତ ହେଲା

ସ୍ୱତଃ ସ୍ଫୁର୍ତ୍ତ ଭାବରେ ତହିଁ ଆରଦିନ ସକାଳେ ଶ୍ରୀ ଭଗବାନ ପ୍ରତିହାରୀ ୰ରାମଚନ୍ଦ୍ର ଗୋଛିକାର, ମୁଁ ଓ ଅନ୍ୟ କଂଗ୍ରେସମାନେ ମିଳି ଦିଗବାରୀଣୀ ବାମ ଖୁଣ୍ଟି ପାଖ ବେଳାଭୂମିରେ ଏକ ବିରାଟ ଶୋକସଭା କଲୁ । ସଭାରେ ଆମ୍ଭେମାନେ ସ୍ଥିରକଲୁ ପ୍ରତିଦିନ ସକାଳେ ଓ ସଂଧ୍ୟାରେ ପ୍ରାର୍ଥନାସଭା ହେବ । ମୁଁ ଏହା ଅତିନିଷ୍ଠା ଓ ଯତ୍ନ ସହ କରାଉଥାଏ । ପଣ୍ଡିତ ବାସୁଦେବ ମିଶ୍ର ବେଦ ଓ ଗୀତା, ଭାତିନା ସାଇବ ପାର୍ଶିମନ୍ତ ପଢନ୍ତି । ବାଳିକାମାନେ ରାମଧୂନ ଗାନକରନ୍ତି । ମୌଲବି ଲତିଫୁର ରହମାନ କୋରାଣ ପଢନ୍ତି । ଏହି ସର୍ବଧର୍ମ ପ୍ରାର୍ଥନା ସଭାରେ ବୌଦ୍ଧ ସନାସୀ ମଧ ଯୋଗ ଦିଅନ୍ତି । ସାତ ଦିନ ପର୍ଯ୍ୟନ୍ତ ଏପରି ପ୍ରାର୍ଥନା ସଭା ସେହି ମହୋଦଧି କୂଳରେ ଚାଲିଥାଏ ।

ଫେବୃୟାରୀ ୭ ତାରିଖ । ସେହିଦିନ ସକାଳେ ଡକ୍ଟର ହରେ କୃଷ୍ଣ ମହତାବ ପୁରୀ ସର୍କିଟ ହାଉସରେ

ଏକ ସର୍ବଦଳୀୟ କର୍ମୀ ସମ୍ମେଳନ ଅନୁଷ୍ଠାନ କଲେ । କଂଗ୍ରେସ କର୍ମୀ, ମଠମହନ୍ତ, ଶ୍ରୀମନ୍ଦିର ସେବାୟତ ଆଜୀବନ ସଂସ୍ଥାର ସଦସ୍ୟ, ରାଜ୍ୟମନ୍ତ୍ରୀ ମଣ୍ଡଳର ସମସ୍ତ ସଦସ୍ୟ, ପୂଜ୍ୟ ଆଚାର୍ଯ୍ୟ ହରିହର ପ୍ରମୁଖଙ୍କ ସମାବେଶରେ ଧାର୍ଯ୍ୟ ହେଲା ଯେ ପୁରୀ ମହୋଦଧିରେ ମହାତ୍ମାଗାନ୍ଧୀଙ୍କ ଚିତାଭସ୍ମ ବିସର୍ଜିତ ହେବ । ମୋର ସୌଭାଗ୍ୟ ଏହି ସମାବେଶ ପାଇଁ ମୁଁ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲି ।

ଏ ପ୍ରସଙ୍ଗରେ ମହତାବାଜୀ ବୁଝାଇ କହିଲେ ଯେ, ଯୁଗ ଯୁଗ ଧରି ସାଧୁ, ସନ୍ଥ, ବୁଦ୍ଧ, ଜୈନ, ଚୈତନ୍ୟ, କବିର, ନାନକ ପ୍ରମୁଖ ଧର୍ମାଚାର୍ଯ୍ୟ ମାନଙ୍କର ସ୍ମୃତି ପୁରୀରେ ଧର୍ମୀୟ ବାତାବରଣକୁ ଗରୀୟାନ କରିଥିବାରୁ ପୁରୀରେ ମହାତ୍ମାଗାନ୍ଧୀଙ୍କ ସ୍ମୃତି ମନ୍ଦିର ସେହି ପରମ୍ପରାକୁ ନିଶ୍ଚିତ ସମୃଦ୍ଧ କରିବ ।

ବିସର୍ଜନ ପାଇଁ ଦିନ ଧାର୍ଯ୍ୟହେଲା ଫେବୃୟାରୀ ୧୨ ତାରିଖ । ସେଦିନ ପୁରୀରେ ଅଭୂତପୂର୍ବ ଜନ ସମାବେଶ । ପ୍ରାୟ ୨୦/୨୫/ ଲକ୍ଷ ହେବେ ।

ଗୋଟିଏ ସ୍ପେଶାଲ ରେଳଗାଡିରେ ଗାନ୍ଧିଜୀଙ୍କ ଚିତାଭସ୍ମ ପୁରୀରେ ପହଞ୍ଚିବ ବୋଲି ପୂର୍ବରୁ ପ୍ରଚାରିତ ହୋଇଥିବାରୁ ସବୁ ରେଳ ଷ୍ଟେସନରେ ଅଗଣିତ ଜନତା ଗାନ୍ଧୀଚିତା ଭସ୍ମକୁ ଭକ୍ତିପ୍ଳୁତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଭିଡବାନ୍ଧି ଉପସ୍ଥିତ ଥିଲେ । ଖଡ଼ଗ ପୁର ହାଓଡା ଲୋକାଲ ଟ୍ରେନ ଭଦ୍ରକ - ଖଡକ ପୁର ଲୋକାଲ ଟ୍ରେନରେ ଅସଂଖ୍ୟ ଜନତା ଗାନ୍ଧିଜୀଙ୍କ ଚିତାଭସ୍ମ ବିସର୍ଜନ ଦେଖିବାକୁ ପୁରୀ ଆସିଥିଲେ । ରାଜ୍ୟପାଳ କୈଳାସନାଥ କାଟ୍‌ଜୁ ଗାନ୍ଧିଜୀଙ୍କ ଚିତାଭସ୍ମକୁ ଆଣି କଟକ ରେଲ ଷ୍ଟେସନରେ ପହଞ୍ଚିବା ମାତ୍ରେ ଗାର୍ଡ ଅଫ୍ ଅନର ଦିଆଗଲା ଓ ବହୁ ମାନ୍ୟ ଗଣ୍ୟ ବ୍ୟକ୍ତି ପୁଷ୍ପ ମାଲ୍ୟ ଦେଇ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ।

ଅତଃପର ଚିତାଭସ୍ମ- ସ୍ପେଶାଲଟ୍ରେନ ପୁରୀରେଲ ଷ୍ଟେସନରେ ସକାଳ ୧୦ଟାରେ ପହଞ୍ଚିଲା । ପୁରୀ ଷ୍ଟେସନରେ ଜନସମୁଦ୍ର । ଚିତାଭସ୍ମ ପହଞ୍ଚିଲା ମାତ୍ରେ ହରିବୋଲ ହୁଳହୁଳି ସହ "ମହାତ୍ମାଗାନ୍ଧିକି ଜୟ" ଧ୍ୱନି ପ୍ରକମ୍ପିତ ହେଲା । ଶ୍ରୀ ହରେକୃଷ୍ଣ ମହତାବ ଶ୍ରୀନବକୃଷ୍ଣ ଚୌଧୁରୀ, ଶ୍ରୀନିତ୍ୟାନନ୍ଦ କାନୁନଗୋ ପ୍ରଭୃତି ମନ୍ତ୍ରୀମଣ୍ଡଳର ସମସ୍ତ ସଦସ୍ୟଙ୍କ ସହ ରାଜ୍ୟପାଳ ମହୋଦୟ ଚିତାଭସ୍ମ ଗାଡିରୁ ଅବତରଣ କଲେ । ସରକାରୀ ଭାବେ ତୋପ ସଲାମୀ ଓ ଗାର୍ଡ଼ଅଫଅନର ଦିଆଗଲା । ମାଳତୀ ପାଟପୁର ରେଲ ଷ୍ଟେସନଠାରୁ ତାଳବଣିଆ, ଗୁଣ୍ଡିଚାମନ୍ଦିର, ଏଣେ ଚକ୍ରତୀର୍ଥ ପର୍ଯ୍ୟନ୍ତ ଚାରି ଦିଗରେ ଜନସମୁଦ୍ର । ଗାର୍ଡ଼ ଅଫ ଅନର ପରେ ସୁସଜ୍ଜିତ ହାତୀ ଉପରେ ରାଜ୍ୟପାଳ ଚିତାଭସ୍ମ କଳସଧରି ଆରୁଢ଼ ହେଲେ । ଅନ୍ୟ ଦୁଇଟି ହାତୀଚାମର ହଲାଉଥାନ୍ତି । ପୁଲିସ ବ୍ୟାଣ୍ଡ ବାଜୁଥାଏ । ଶୋଭା ଯାତ୍ରା କୋଉବାଟେ ଯିବ କିଛି ଜଣାନ ପଡ଼ିଲେ ମଧ ସବୁଆଡ଼େ ଜନଗହଳି ବଢୁଥାଏ । ଦେଖେ ଜଗନ୍ନାଥ ସଡ଼କରେ ବିଭିନ୍ନ ଗାଁ ମାନଙ୍କରୁ ଅଗଣିତ ନରନାରୀଙ୍କ ଧାଡ଼ି ଛୁଟିଥାଏ । ବିଭିନ୍ନ ସଂକୀର୍ତ୍ତନ ଦଳ ଉଦଣ୍ଡ କୀର୍ତ୍ତନ କରି ନାଚି ନାଚି ଆସୁଥାନ୍ତି । ଏ ଜନ ସ୍ରୋତ ପ୍ରବାହକୁ ନିୟନ୍ତ୍ରଣ କରିବା ଅସମ୍ଭବ । ପୁରୀ ବଡ଼ ଡାକ୍ତରଖାନା ଠାରୁ ଶରଧା ବାଲି ଓ ରେଇଷ୍ଟେସନ ପର୍ଯ୍ୟନ୍ତ ଏତେ ଜନଗହଳି ହୋଇଥାଏ ଯେ ଶୋରିଷ ପକାଇ ଲେ ତଳେ ପଡ଼ିବ ନାହିଁ । ଏଣେ ସିଂହ ଦ୍ୱାର ଠାରୁ ବଡଶଙ୍ଖ ପର୍ଯ୍ୟନ୍ତ ଲୋକାରଣ୍ୟ । ଚିତାଭସ୍ମ ଶୋଭାଯାତ୍ରା ଆପଣାଛାଏଁ ବଡ଼ଦାଣ୍ଡ ଦେଇ ସିଂହଦ୍ୱାର ପର୍ଯ୍ୟନ୍ତ ଆଗେଇ ଚାଲିଲା ।

ସିଂହଦ୍ୱାରରେ ପହଞ୍ଚିବା ମାତ୍ରେ ବେଣ୍ଡପାର୍ଟି ଦୋଳ ମଣ୍ଡପ ସାହିବାଟେ ମୁହାଁଇଲେ, ଅଧେ ଲୋକ ସିଂହଦ୍ୱାର ଠାରୁ ବାଲିସାହି ଦେଇ ସ୍ୱର୍ଗଦ୍ୱାର ଆଡ଼କୁ ଧାଇଁଲେ ସମୁଦ୍ରକୂଳରେ ଗାନ୍ଧିଜୀଙ୍କ ଚିତାଭସ୍ମ କେଉଁ ସ୍ଥାନରେ ବିସର୍ଜନ ହେବ ସେ କଥା ବି ଶୋଭାଯାତ୍ରାକାରୀ ମାନେ ଜାଣିନଥିଲେ । ଏ ଶୋଭାଯାତ୍ରା ୧୨ ଟାରୁ ବାହାରି ସମୁଦ୍ରକୂଳ ଦିଗବାରିଣୀ ଖୁଣ୍ଟି ପାଖରେ ପହଞ୍ଚିଲା ।

ପୁରୀ ଜିଲ୍ଲା ବୋର୍ଡ଼ କାର୍ଯ୍ୟାଳୟପଛ, ସରକିଟହାଉସ ତଳରେ ସମୁଦ୍ରକୂଳ ବାଲୁକାବେଦୀ ଉପରେ ମହାତ୍ମାଗାନ୍ଧି ଚିତାଭସ୍ମ ବିସଜନ ପର୍ବ ବୈଦିକ ରୀତିରେ ବ୍ରାହ୍ମଣ ପଣ୍ଡିତଙ୍କ ଦ୍ୱାରା କରାଗଲା ରାଜ୍ୟପାଳ ଚୈଳାସନାଥ କାଟୁଜୁ ଓ ଓଡ଼ିଶାର ପ୍ରଧାନ ମନ୍ତ୍ରୀ ହରେକୃଷ୍ଣ ମହତାବ ପବିତ୍ର ବେଦପାଠ ମଧ୍ୟରେ ଗାନ୍ଧିଜୀଙ୍କ ଚିତାଭସ୍ମକୁ ବିସର୍ଜନ କଲାବେଳେ ଶଙ୍ଖ, ହରିବୋଲ, ହୁଳହୁଳି, ରାମଧୁନ ଓ "ମହାତ୍ମାଗାନ୍ଧୀକି ଜୟ", "ବାପୁଜୀ ଅମର ରହେ" ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଉଥାଏ । ରାଜ୍ୟପାଳ ମହୋଦୟ ଚିତାଭସ୍ମ ବିସର୍ଜନ କରି ଲଣ୍ଡିତ ମସ୍ତକରେ ସ୍ନାନକରି ରାଜଭବନକୁ ଗଲେ । ମହତାବଜୀ ସମୁଦ୍ରରେ ସ୍ନାନ ସାରି ସର୍କିଟ ହାଉସକୁ ଗଲେ ।....

ମହୋଦଧିରେ ଗାନ୍ଧିଜୀଙ୍କ ଚିତାଭସ୍ମ ବିସର୍ଜନ ସ୍ଥାନକୁ "ଗାନ୍ଧୀଘାଟ" ନାମରେ ଘୋଷଣା କରାଗଲା । ଡକ୍ଟର ହରେକୃଷ୍ଣ ମହତାବ ଏହି "ଗାନ୍ଧୀଘାଟ" ପାଇଁ ବିରାଟ ପରିକଳ୍ପନା କରିଥିଲେ । ଭଲ ଭଲ ସ୍ଥପତିଙ୍କୁ ଡିଜାଇନ ଦେବାକୁ କହିଲେ । ପୁରୀ ସର୍କିଟ ହାଉସ ଓ ପୁରୀ ଜିଲ୍ଲା ବୋର୍ଡ ଅଫିସ ମଝିରେ ଥିବା ଜମିରେ ଗୋଟିଏ ବିରାଟ - "ଗାନ୍ଧୀପାର୍କ" ତିଆରି ହୋଇ ତନ୍ମଧ୍ୟରେ ଗୋଟିଏ "ଗାନ୍ଧୀପାଠାଗାର" ବା ମୁକ୍ତାକାଶ ଲାଇବ୍ରେରୀ ନିର୍ମିତ ହେବ । ସମୁଦ୍ରକୂଳରେ ଲମ୍ବାଲମ୍ବା ବେଞ୍ଚ, ଡେକ୍ସ କାଠ ଓ ସିମେଣ୍ଟରେ ତିଆରି ହେବ । ପର୍ଯ୍ୟଟକ ତଥା ପାଠକମାନେ ଗାନ୍ଧୀ ଲାଇବ୍ରେରୀରୁ ବହି ନେଇ ପଢି ପାରିବେ । ଗାନ୍ଧୀ ସାହିତ୍ୟ ଆଲୋଚନା, ତଥା ପାଠଚକ୍ର ହେବ । ସେହି ଗାନ୍ଧୀପାର୍କ ଭିତରେ ଗୋଟିଏ "ଗାନ୍ଧୀପାନ୍ଥଶାଳା" ସ୍ଥାପିତ ହେବ ଓ ଗୋଟିଏ ଗାନ୍ଧୀ ପ୍ରତିମୂର୍ତ୍ତି ରହିବ .....

ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଏଠାରେ ପଞ୍ଚବର୍ଷି ସମୟରେ ଗୋଟିଏ ଗାନ୍ଧୀ ପ୍ରତିମୂର୍ତ୍ତି ଉନ୍ମୋଚିତ ହୋଇଛି ।.... ମହତାବଜୀ କେନ୍ଦ୍ରମନ୍ତ୍ରୀ, ତଥା ବମ୍ବେ ରାଜ୍ୟପାଳ ହୋଇ ଓଡ଼ିଶା ବାହାରେ ରହିବାରୁ ତାଙ୍କ ଗାନ୍ଧୀଘାଟ ଯୋଜନା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ସେ ଯାହା ହେଉ, ୧୯୪୮ ମସିହାରୁ ପଚାଶବର୍ଷ ହେଲା ପୁରୀରେ "ଗାନ୍ଧୀଘାଟ" ପ୍ରସିଦ୍ଧିଲାଭ କରିଛି । ପଚାଶବର୍ଷ ହେଲା ଏଠାରେ "ସର୍ବୋଦୟ ମେଳା" ହୋଇ ଆସୁଛି ।

ରାଜ୍ୟ ସ୍ତରୀୟ ପ୍ରଥମ ଶ୍ରାଦ୍ଧଉତ୍ସବ ପାଇଁ ପୁରୀ ସର୍କିଟ ହାଉସରେ ଗୋଟିଏ ସମ୍ମିଳନୀ ପ୍ରଧାନ ମନ୍ତ୍ରୀ ମହତାବଜୀଙ୍କ ସଭାପତିତ୍ୱରେ ବସିଲା । ଓଡ଼ିଶାର ସବୁ କଂଗ୍ରେସ ନେତା, ସର୍ବୋଦୟନେତା, ମନ୍ତ୍ରୀମଣ୍ଡଳର ସଦସ୍ୟଗଣ, ଏମ. ଏଲ. ଏ. ଓ ପୁରୀର ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ । ପୁରୀରେ ଗାନ୍ଧିଜୀଙ୍କ ଚିତାଭସ୍ମ ବିସର୍ଜନ ହୋଇଥିବାରୁ ଗାନ୍ଧିଜୀଙ୍କ ପ୍ରଥମ ବାର୍ଷିକ ଶ୍ରାଦ୍ଧକୁ ମହାସମାରୋହରେ ପାଳନ କରିବାକୁ ଗୋଟିଏ ପ୍ରସ୍ତୁତି କମିଟି ଗଠନ କରାଗଲା । କାର୍ଯ୍ୟ କାରିଣୀ କମିଟିର ସଭାପତି ଭାବରେ ବିଶ୍ୱନାଥ ଦାଶ ଓ ଡାକ୍ତର ଗୌରାଙ୍ଗ ଚରଣ ପାତ୍ର ସଂପାଦକ ମନୋନୀତ ହେଲେ.. ଏଥିପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା:-

ସମୁଦ୍ର କୂଳ ଦିଗବାରିଣୀ ଖୁଣ୍ଟି ନିକଟରେ ଏ ଶ୍ରାଦ୍ଧୋତ୍ସବ ପାଇଁ ଗୋଟିଏ ସ୍ୱତନ୍ତ୍ର ନିର୍ମିତ ସଭାମଣ୍ଡପରେ ଶ୍ରାଦ୍ଧୋତ୍ସବ ପାଳିତ ହେବ ।

ପ୍ରଭାତ ଫେରି, ସମୂହ ପ୍ରାର୍ଥନା, ପତାକା ଉତ୍ତୋଳନ, ରାଜ୍ୟପାଳଙ୍କ ଅଧ୍ୟକ୍ଷତାରେ ସୂତ୍ରଯଜ୍ଞ, ଗାନ୍ଧୀ ସାହିତ୍ୟ ଆଲୋଚନା, ହରିନାମ ସଂକୀର୍ତ୍ତନ, ଭଜନଗାନ, ଶୋଭାଯାତ୍ରା, ସର୍ବୋଦୟ ଆଲୋଚନା ସଭା ଓ ସଂଧ୍ୟାରେ ସର୍ବଧର୍ମ ପ୍ରାର୍ଥନା କାର୍ଯ୍ୟକ୍ରମରେ ରହିଲା । କାର୍ଯ୍ୟବାହୀ କମିଟିର ୨ୟ ବୈଠକ ପୁରୀ ଟାଉନହଲରେ ଅନୁଷ୍ଠିତ ହେଲା । ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ ହୋତା, ଗୋପବନ୍ଧୁଚୌଧୁରୀ, ହରେ କୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାଶ ପ୍ରଭୃତି ପ୍ରମୁଖ ନେତାମାନେ ଯୋଗ ଦେଇଥିଲେ ।

...... ମହତାବାଙ୍କ ପ୍ରସ୍ତାବ ଦେଲେ ଏଠାରେ ପ୍ରତିବର୍ଷ ଫେବୃଯାରୀ ୧୨ରେ "ଗାନ୍ଧୀମେଳା" ପାଳିତ ହେବ । ଆଚାର୍ଯ୍ୟ ହରିହର ସେତେବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀର ସଭାପତି ଥାଆନ୍ତି । ସେମହତାବଙ୍କ ପ୍ରସ୍ତାବକୁ ସମର୍ଥନ କରି କହିଲେ ଏଠାରେ ପ୍ରତି ବର୍ଷ ଗାନ୍ଧୀ ଶ୍ରାଦ୍ଧ ଦିବସକୁ "ଗାନ୍ଧୀମେଳା" କରାଯିବ । ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ ରମାଦେବୀ ପ୍ରଭୃତି ଏହି ଦିବସକୁ "ସର୍ବୋଦୟ ମେଳା" ଭାବେ ପାଳନ କରିବାକୁ ପ୍ରସ୍ତାବ ଦେଇଥିଲେ । ତାହା ଗୃହୀତ ହେଲା ।

ଅଶେଷ ଦୂରଦୃଷ୍ଟି ସମ୍ପନ୍ନ ଡକ୍ଟର ହରେ କୃଷ୍ଣ ମହାତାବ ପ୍ରତିବର୍ଷ "ଗାନ୍ଧୀମେଳା" କୁ ଏକ ଜାତୀୟ ମହୋତ୍ସବ ରୂପେ ପାଳନ କରିବାକୁ ହେଲେ କେବଳ ସଭା ସମ୍ମିଳନୀ, ବକ୍ତୃତା, ଉଦବୋଧନ, ଆଲୋଚନା ରେ ସୀମିତ ନକରି ଖଦୀ ଓ ଗ୍ରାମୋଦ୍ୟୋଗ, କୁଟୀର ଶିଳ୍ପ, କୃଷି ଓ ଗୋପ୍ରଦର୍ଶନୀ ହେଲେ ଜନସାଧାରଣ ଆକୃଷ୍ଟ ଓ ଉପକୃତ ହେବେ ବୋଲି ମତ ପ୍ରକାଶ କଲେ । ତଦନୁଯାୟୀ ବ୍ୟବସ୍ଥା ହେଲା ।

ବିଶିଷ୍ଟ ଗାନ୍ଧୀବାଦୀ - ଗୋପବନ୍ଧୁ ଚୌଧୁରୀଙ୍କ ମାର୍ଗଦର୍ଶନରେ ସେହିଠାରେ ସର୍ବୋଦୟମେଳା ଫେବୃୟାରୀ ୧୨ ତାରିଖରେ ହେବ ବୋଲି ନୂଆକାର୍ଯ୍ୟକ୍ରମ ସଂଯୋଜିତ ହୋଇଥିଲା । ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା ଶ୍ରୀମତୀ ରମା ଦେବୀ, ସୁନାମଣୀ ଦେବୀ, ରମ୍ଭା ଦେବୀ ପ୍ରଭୃତିଙ୍କ ଦ୍ବାରା ସର୍ବୋଦୟମେଳା ପାଇଁ ବ୍ୟାପକ କାର୍ଯ୍ୟ କ୍ରମର ପ୍ରସ୍ତୁତି ଚାଲିଲା । ଅନୁଗୁଳ, ସମ୍ବଲପୁରରୁ ଆରମ୍ଭକରି, କୋରାପୁଟ, ବ୍ରହ୍ମପୁର, ବାଲେଶ୍ବର ପ୍ରଭୃତି ଜିଲ୍ଲାର ଚାରିଆଡୁ ସର୍ବୋଦୟ ମହିଳା କର୍ମୀମାନେ ଗାଁକୁ ଗାଁ ପଦଯାତ୍ରା ରେ ପୁରୀ ଆସିବାକୁ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା । ଏହି ପଦଯାତ୍ରୀଦଳ ଗାଁ କୁ ଗାଁ ପଦଯାତ୍ରାରେ ଅତିକ୍ରମ କରି ଯେଉଁଠି ସଂଧ୍ୟାହେବ ସେଠାରେ ରାତ୍ରୀଯାପନ କରିବେ । ଗାଁ ଲୋକଙ୍କୁ ଗାନ୍ଧୀବାଣୀ ଓ ସର୍ବୋଦୟ ବିଚାର ଧାରା ବିଷୟରେ ବୁଝାଇ ବେ । ୧୨ତାରିଖରେ ପୁରୀ ସମୁଦ୍ରକୂଳ ଗାନ୍ଧୀ ଘାଟରେ ପହଞ୍ଚିବେ ପୁରୀ ଗାନ୍ଧୀଘାଟରେ ୧୯୪୯ ଫେବୃୟାରୀ ୧୨ରେ ପ୍ରଥମ "ଗାନ୍ଧୀ ମେଳା " ବା ସର୍ବୋଦୟ ମେଳା ହେଲା । ତାହା ଏକ ଅଭିନବ ଆୟୋଜନ । ମହିଳା ପଦ ଯାତ୍ରୀ ଦଳ ପୁରୀ ସହର ପରିକ୍ରମା କରି ରାମଧୁନ ଗାଇ ଗାଇ "ମହାତ୍ମାଗାନ୍ଧୀ କି ଜୟ" ଧ୍ୱନିରେ ପୁରୀର ଗଗନ ପବନ କମ୍ପାଇ ଦେଇଥିଲେ । ମନେ ହେଉଥିଲା ଏକ ନୂଆ ଗାନ୍ଧୀ ଯୁଗର ସୂର୍ଯ୍ୟ ବେଳା ଭୂମିକୁ ବିକଶିତ କରୁଛନ୍ତି ।

୧୨ ତାରିଖ ଦିନ ପ୍ରଭାତରେ ରାମଧୁନ ସହ ପ୍ରଭାତ ଫେରି ପରେ ସକାଳ ୮ଟାରେ ଗାନ୍ଧୀଘାଟରେ ପତାକା ଉତ୍ତୋଳିତ ହେଲା । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ବିଶିଷ୍ଟ ଗାନ୍ଧୀବାଦୀ ନେତା, କଂଗ୍ରେସ ଓ ସର୍ବୋଦୟ କର୍ମୀ, ଓ ଓଡ଼ିଶାର ସବୁ ମନ୍ତ୍ରୀ ଏମ. ଏଲ. ଏ. ଜିଲ୍ଲା ବୋର୍ଡ଼ ଚେୟାରମାନେ ପ୍ରଭୃତି ଏ ଶ୍ରାଦ୍ଧସଭାରେ ଯୋଗ ଦେଇଥିଲେ । ଶ୍ରୀଯୁକ୍ତ ବିଶ୍ବ ନାଥ ଦାସ ପତାକା ଉତ୍ତୋଳନ କରିଥିଲେ । ତାପରେ ସୂତ୍ର ଯଜ୍ଞ। ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀ, ସର୍ବୋଦୟ ନେତା ଓ କଂଗ୍ରେସ କର୍ମୀମାନେ ଏଥିରେ ଯୋଗ ଦେଇଥିଲେ । ଏହାପରେ ବିନୋଦ କାନୁନଗୋ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ ମନମୋହନ ଚୌଧୁରୀ ପ୍ରଭୃତି ଗାନ୍ଧୀ ସାହିତ୍ୟ ପାଠ କରିଥିଲେ । ସେ ଦିନ ସମୁଦ୍ର କୂଳରେ ପ୍ରାୟ ୨ ହଜାର କର୍ମୀ ବସିବା ପାଇଁ ସଭାମଣ୍ଡପ ନିର୍ମିତ ହୋଇଥିଲା । ଏହାଛଡ଼ା ଦିଗବାରଣି ଖୁଣ୍ଟି ପାଖରୁ ପୁରୀ ହୋଟେଲ ପର୍ଯ୍ୟନ୍ତ ସମୁଦ୍ର ବାଲିରେ ମୁକ୍ତ ଜାଗ ତଳେ ୧୦ ହଜାର ଲୋକ ସମବେତ ହୋଇ ଥିଲେ ।

ମହତାବବାବୁଙ୍କ ନିର୍ଦ୍ଦେଶ କ୍ରମେ ଖଦୀବୋର୍ଡ ତରଫରୁ ଓ ଶିଳ୍ପ ବିଭାଗ ଆନୁକୂଲ୍ୟରୁ ୨ଟି ଷ୍ଟଲ ଖୋଲା ଯାଇଥିଲା । ଏହା ଛଡ଼ା ନୀଳାଚଳ ନାରୀ ଶିକ୍ଷାଶ୍ରମ, ବିଧବାଶ୍ରମ ଓ ଅନାଥାଶ୍ରମତରଫରୁ ବିଭିନ୍ନ ହସ୍ତ ଶିଳ୍ପ ସାମଗ୍ରୀର ଷ୍ଟଲ ମାନ ଓ ସତ୍ୟବାଦୀ , ଗୋପବନ୍ଧୁ ସେବା

ସଦନରୁ ଖଦୀ ଷ୍ଟଲ ଆସିଥିଲା । ଅପରାହ୍ନରେ ବିଭିନ୍ନ ସ୍କୁଲ କଲେଜରୁ ଓ ସାହି ତଥା ଗ୍ରାମାଞ୍ଚଳରୁ ଶୋଭାଯାତ୍ରା ଆସି ଗାନ୍ଧୀଘାଟରେ ପହଞ୍ଚିଥିଲା । ସଂଧ୍ୟାରେ ସାଧାରଣ ସଭା ଆରମ୍ଭ ହୋଇ ରାତି ୮ଟାରେ ସାଙ୍ଗ ହେଲେ ମଧ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ମେଳା ମହୋତ୍ସବ ଚାଲିଥିଲା ।

ପ୍ରଖ୍ୟାତ ଗାନ୍ଧୀବାଦୀ ନେତାଙ୍କର ଅଭିଳାସଥିଲା ସମୁଦ୍ର କୂଳେ ଗୋଟିଏ "ଇଣ୍ଟର ନେସନାଲ ଗାନ୍ଧୀ ସଂସ୍ଥା ନିର୍ମାଣ କରିବା । ଯେପରି "ମକର ମେଳା" "ବାରୁଣୀ ଯାତ୍ରା" "ଚନ୍ଦ୍ରଭାଗା ମାଘସପ୍ତମୀ ମେଳା" ହେଉଛି - ୧୨ ତାରିଖରେ "ଗାନ୍ଧୀମେଳା" ଅନୁଷ୍ଠିତ ହେବ । ମହତାବଜୀଙ୍କ ମତରେ ଗାନ୍ଧିଜୀଙ୍କ ମହାପ୍ରୟାଣ ଦିବସ ଜାନୁୟାରୀ ୩୦ ତାରିଖ ଠୁ ଚିତାଭସ୍ମ ବିସର୍ଜନ ଦିବସ ଫେବୃୟାରୀ ୧୨ ତାରିଖ ଯାଏ ଗାନ୍ଧୀଘାଟ ରେ ଏହି ଗାନ୍ଧୀମେଳା ବା ସର୍ବୋଦୟମେଳା ଚାଲିବା ବାଞ୍ଛନୀୟ ଏବିଷୟରେ ପୁରୀର ଶ୍ରୀ ଭଗବାନ ପ୍ରତିହାରୀ, ରାମ ଚନ୍ଦ୍ର ଗୋଚ୍ଛିକାର, ଉପେନ୍ଦ୍ର ମହାନ୍ତି, ଗୌରମୋହନ ଚାଟାର୍ଜି, ଜୟକୃଷ୍ଣ ମହାନ୍ତି, ଶ୍ରୀମତୀ କିରଣ ଲେଖା ମହାନ୍ତି, ଡ଼ାକ୍ତର ଗୌରାଙ୍ଗ ଚରଣ ମହାପାତ୍ର, ଶ୍ରୀ ଚନ୍ଦ୍ର ଶେଖର ନାୟକ, ମଧୁସୂଦନ ନନ୍ଦ ପଦ୍ମ ଚରଣ ସାମନ୍ତ ସିଂହାର, ଲୋକନାଥ ମିଶ୍ର, (ପଙ୍କ ବାବୁ) ପ୍ରଭୃତି କଂଗ୍ରେସ କର୍ମୀ ମାନଙ୍କ ସାହାଯ୍ୟ ସହଯୋଗ ଓ ଉଦ୍ୟମ ବିଶେଷ ଉଲ୍ଲେଖନୀୟ । ପୁରୀର ମଠମହନ୍ତ ତଥା ବଦାନ୍ୟ ବନ୍ଧୁ ମାନେ ସର୍ବୋଦୟ ମେଳାକୁ ମହାପ୍ରସାଦ ଯୋଗାଇ ଆତିଥେୟତା ପ୍ରଦର୍ଶନ କରୁଥିଲେ ।

ଗାନ୍ଧୀଘାଟ - ଗାନ୍ଧୀମେଳା - ସର୍ବୋଦୟ ମେଳାର ଐତିହାସିକ ଲକ୍ଷ୍ୟ, ଉଦ୍ଦେଶ୍ୟ ଅତି ମହାନ । ମହାତ୍ମାଗାନ୍ଧୀଙ୍କ ଚିନ୍ତାଧାରା, "ଗାନ୍ଧିଦର୍ଶନ" - ସ୍ୱାବଲମ୍ବନ ଶୀଳତା, ସ୍ୱଦେଶୀ ଓ ଗ୍ରାମସ୍ୱରାଜ୍ୟ ପ୍ରତିଷ୍ଠାପାଇଁ ନୂତନ ଦିଗଦର୍ଶନ ଦେବାକୁ "ଗାନ୍ଧୀଘାଟ"ର ଜନ୍ମ ଜାତକ ସୃଷ୍ଟି ହୋଇଥିଲା । ଦୁଃଖ ଲାଗେ ଦେଶରେ ଗାନ୍ଧୀ ଶତବାର୍ଷିକୀ ପାଳନ ହେଉଛି ଅଥଚ ଗାନ୍ଧିଜୀଙ୍କୁ ତଥାକଥିତ ନେତା ଓ ମନ୍ତ୍ରୀମାନେ ଭୁଲିଗଲେଣି । କ୍ଷମତା ରାଜନୀତିରେ ସ୍ୱାର୍ଥାନ୍ଧନେତା ମାନଙ୍କ ପାଇଁ ଗାନ୍ଧୀଘାଟ ର ମୂଲ୍ୟ କିଛି ନାହିଁ ସତ, ମାତ୍ର ଗାନ୍ଧୀଜୀଙ୍କ ନୀତି ଆଦର୍ଶ ବିନା ସ୍ୱାଧୀନ ଭାରତର ଅନ୍ୟପନ୍ଥା କିଛି ନାହିଁ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ । "ଜୟତୁ ବାପୁଜୀ !"

# ନିଶାମୁକ୍ତି

ସରକାର ବହୁ ଦେଶୀ - ବିଦେଶୀ ମଦ ଦୋକାନ ଖୋଲୁଥିବାରୁ ରାଜ୍ୟସାରା ଗଭୀର ଉଦ୍‌ବେଗ ଓ ଆଲୋଡ଼ନ ସୃଷ୍ଟି ହୋଇଛି । ସ୍ୱାଧୀନତା ସଂଗ୍ରାମରେ ନିଶା ବର୍ଜନ ପ୍ରମୁଖ କାର୍ଯ୍ୟକ୍ରମ ଥିଲା । ବହୁ ସ୍ୱାଧୀନତା ସଂଗ୍ରାମୀ ନିଶା ଦୋକାନ ଆଗରେ ପିକେଟିଂ କରି ବିଦେଶୀ ପ୍ରଶାସକ ଓ ପଟାଦାରଙ୍କ ଦ୍ୱରା ଅସୀମ ନିର୍ଯ୍ୟାତନା ଭୋଗ କରିଥିଲେ । ଗାନ୍ଧିଜୀଙ୍କ ମତରେ - "ମଦ ଓ ଅଫିମ ସଇତାନର ଦୁଇ ବାହା । ରୋଗ ଶରୀରର କ୍ଷତି କରେ, ନିଶା ଶରୀର ଓ ଆତ୍ମା ଉଭୟକୁ ନିଃଶେଷ କରିଦିଏ । ଭାରତ ପଛକେ କାଙ୍ଗାଳ ଅବସ୍ଥାକୁ ଯାଉ, ଶତ ସହସ୍ର ସଂଖ୍ୟକ ମଦୁଆ ଆମ ଭିତରେ ନରହନ୍ତୁ । ନିଶା ପ୍ରସାର ଦ୍ୱାରା ଶିକ୍ଷା ନାମରେ ଅଶିକ୍ଷା କିଣିବା ଅପେକ୍ଷା ବିନା ଶିକ୍ଷାରେ ରହିବା ଶତଗୁଣରେ ଶ୍ରେୟଃ ।"

ମହାତ୍ମାଗାନ୍ଧୀଙ୍କ ଅଭିମତକୁ ସମ୍ମାନ ଦେଇ ଆମ ସମ୍ବିଧାନର ୪୭ ଧାରାରେ ନିର୍ଦ୍ଦେଶ ଦିଆଯାଇଛି ଯେ ଜୀବନ ଧାରଣର ମାନବୃଦ୍ଧି ତଥା ଉତ୍ତମ ସ୍ୱାସ୍ଥ୍ୟଲାଭ ପାଇଁ ନିଶା ବର୍ଜନ ଏକାନ୍ତ କରଣୀୟ । ଅଥଚ ଦୀର୍ଘ ୪୦ ବର୍ଷ ଭିତରେ ଏହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଅଧିକନ୍ତୁ ଚରସ, ବ୍ରାଉନ ସୁଗାର ଓ ହେରୋଇନ ଭଳି ଉତ୍‌କଟ ନିଶା - ଯାହା କେବେ ଇଣାଶୁଣା ନଥିଲା-ନବ - ଯୁବକଙ୍କୁ ମୃତ୍ୟୁ ଯନ୍ତାକୁ ଟାଣିବାରେ ଲାଗିଛି ।

ଶିକ୍ଷାଳୟ, ଧର୍ମାଳୟ, ଶ୍ରମିକବସ୍ତି ଓ ସର୍ବସାଧାରଣ ମାର୍ଗରେ ନିଶା ଦୋକାନ ଖୋଲାଯିବାକୁ ଆଇନ ବାରଣ କରୁଥିଲେହେଁ ସର୍ବତ୍ର ତାହାର ଉଲଂଘନ କରାଯାଉଛି । ବିଭାଘର ଭଳି ପବିତ୍ର ଅନୁଷ୍ଠାନରେ ମଧ୍ୟ ଅବିଚାରିତ ଭାବେ ସୁରା ପ୍ରବେଶ କରୁଛି ।

ସରକାର ଅବକାରୀ ରାଜସ୍ୱ ଟଙ୍କାଟିଏ ପାଉଥିବାବେଳେ ସଡ଼କ ଦୁର୍ଘଟଣା, କାରଖାନାର ଉତ୍ପାଦନ ହ୍ରାସ, ଅପରାଧ ବୃଦ୍ଧି, କୋଟକଚେରୀ ଇତ୍ୟାଦି ନିଶା ସେବନର ଆନୁଷଙ୍ଗିକ ଦୋଷ ପାଇଁ ଦଶଟଙ୍କା ବ୍ୟୟ କରନ୍ତି । ନିଶାଖୋର ଚାରିଟଙ୍କା ଦିଏ; ସେଥିରୁ ଟଙ୍କାଏ ସରକାର ପାଉଥିବାବେଳେ ବଳକା ତିନିଟଙ୍କା ପ୍ରସ୍ତୁତିକାରୀ ଓ ବିକ୍ରେତା ପାଇଥାନ୍ତି । ହଜାର ଟନ୍ ଖାଦ୍ୟଶସ୍ୟ ଯାହାକି ଖାଦ୍ୟାଭାବ ଦୂର କରି ପାରନ୍ତା- ମଦ୍ୟ ତିଆରିରେ ଲାଗୁଛି । ସର୍ବହରା ସମସ୍ୟା ସମାଧାନ ହୋଇପାରୁନାହିଁ; ଅଥଚ ମଦ କାରଖାନା ପାଇଁ ସହଜରେ ଜମି ମିଳିଯାଉଛି । ହଜାର ବିନ୍ଦୁ ରକ୍ତରେ ମାତ୍ର ପାଞ୍ଚବୁନ୍ଦା ସୁରା ମୃତ୍ୟୁର କାରଣ ହୋଇଥାଏ । ଡକ୍ଟର ଏଭନେଷ୍ଟ ବିଣ୍ଡରଙ୍କ ମତରେ ଜଣେ ଦିନକୁ ୧୬ଟି ସିଗାରେଟ ବା ୬ ଆଉନସ ସୁରାପାନ କଲେ ଅନ୍ୟମାନଙ୍କ ଠାରୁ ୭ ଗୁଣ ଗଳାକର୍କଟ ରୋଗ ଭୋଗ କରିଥାଏ । ଆମେରିକାର ଜୀବନ ବୀମା କମ୍ପାନୀ ମଦ୍ୟପଙ୍କ ଠାରୁ ଅଧିକ ହାରରେ ପ୍ରିମିୟମ ନିଅନ୍ତି । କାରଣ ସେମାନଙ୍କ ଆୟୁ ବହୁତ କମ୍ । ଆମେରିକାର ମହିଳା ପୋଲିସ ଅଧକ୍ଷା ବ୍ଲେଞ୍ଚ ବୋନସଙ୍କ ମତରେ - "ଶତକଡ଼ା ନବେ ଅବୈଧ ସନ୍ତାନ ମଦ୍ୟପ ଯୁବକ ଯୁବତୀଙ୍କ ଦୁଷ୍କର୍ମରୁ ଜାତ ।" ଗୋଟିଏ ଢୋକ ହ୍ୱିସ୍କି ସେବନ ଦ୍ୱାରା ମାଂସପେଶୀର ଶକ୍ତି ଶତକଡ଼ା ପନ୍ଦର କମିଯାଏ ।

## ଚେଣ୍ଟୁ ଛାଡ଼ ଏ ଇଲତ ନିଶାକୁ

ମାନ ମହତକୁ ଡର ଥିଲେ ଭାଇ, ଛାଡ଼ ଏ ଇଲତ ନିଶାକୁ, ନିଶା ନିତି ନିତି ତୁମକୁ ଖାଉଛି, ଦେଖୁନାହିଁ ନିଜ ଦଶାକୁ ।୧। ନିଶା ଦାଉରେ କି ବସି ଭାଳୁଅଛ, ଠକିଦେବ ତୁମେ ଯମକୁ, ଭିତରେ ସେ ତମ କଲିଜା କାଟୁଛି, ଧୋକଡ଼ା କରଇ ଚମକୁ ।।୨।। ହକ୍ ଦେଇ ହାତୁଁ ପଇସା କଉଡ଼ି, କିଣୁଅଛ ଲୋକହସାକୁ, ସିଂହ ହୋଇ ତୁମେ ଠେକୁଆ ହେଉଛ, ହାତୀ ହୋଇ ଡ଼ର ମଶାକୁ ।।୩।। ନିଜ ଭାଇକି ତ ଭଗାରି କରୁଛ, ଭାବୁନାହିଁ ଆଗ ପଛକୁ, ନିଜର କୋକେଇ ନିଜେ ବାନ୍ଧୁଅଛ, ବଢାଉଛ ବିଷ ଗଛକୁ ।।୪।। ହାଣ କୁରାଢିକୁ ଡ଼ାକି ହାକି ଆପେ, ଆଣୁଅଛ ନିଜ ବେକକୁ, ମହାତ୍ମା ବଚନ ନିନ୍ଦା କରୁଅଛ, ତଳକରି ଦେଶ ଟେକକୁ ।।୫।। ପୁଅ ଭାରିଯାଙ୍କ ମୁଖକୁ ନଚାହିଁ,, ପିଉଛ ପୁତନା କ୍ଷୀରକୁ, ବେପାରୀ ହାତକୁ ନିଜ ଚୁଟି ଦିଅ, ଜାଣିଶୁଣି ନୋଇଁ ଶିରକୁ ।।୬।। ମାଲି ମୋକଦ୍ଦମା ଚୋରି ଡ଼କାୟତି, ନିଶା ଲାଗି ଆସେ ଦେଶକୁ, କେତେ କେତେ ଲୋକ ପଡ଼ି ତା ପାଲରେ, ରିକ୍ତ ହସ୍ତ ହେଲେ ଶେଷକୁ ।।୭।। ସେହି ପଇସାରେ ଘିଅ ଦୁଧ ଖାଇ, ଦମ୍ଭ ରଖ ନିଜ ବାହାକୁ, କିଣି ପଢ ଭଲ ଖବର କାଗଜ, ଭାଙ୍ଗ ନାହିଁ ସାନ କୁହାକୁ ।।୮।। ମାନମହତକୁ ଡ଼ର ଥିଲେ ଭାଇ, ଛାଡ଼ ଏ ଇଲତ ନିଶାକୁ ।

"ସୁରା ବୈ ମଳମନ୍ନାନଂ, ପାପା ଚ ମଳ୍ମୁଚ୍ୟତେ", ସୁରା ଅନ୍ନର ମଳ । ଏହାକୁ ପାପ କହନ୍ତି । ।। ମହର୍ଷିମନୁ ।। "ସିଂହ ପାଖକୁ ଯିବାକୁ ଭୟଭୀତ ହୁଅନାହିଁ । ତାହା ତୁମ ପରାକ୍ରମର ପରୀକ୍ଷା । ଖଡ୍ଗ ଆଗରେ ମୁଣ୍ଡଆଁଅ ନାହିଁ - ତାହା ତୁମ ବଳିଦାନର କିର୍ଯୌଟି । ପର୍ବତ ଉପରୁ ଗହ୍ୱରକୁ ଡ଼େଇଁବାକୁ ଡରନାହିଁ - ତାହା ତୁମର ସ୍ୱର୍ଣ୍ଣ ପରୀକ୍ଷା । ମାତ୍ର ସାବଧାନ - ମଦିରାଠାରୁ ସଦା ଦୂରରେ ରହିବ - ତାହା ହେଉଛି ପାପ ଓ ଭ୍ରଷ୍ଟାଚାର ଉଭୟର ଜନ୍ମଦାତ୍ରୀ ।" (ଭଗବାନ ବୁଦ୍ଧ )

ମଣିଷକୁ ପ୍ରାଣରେ ମାରି ଦେଲେ ସେ ଶାସ୍ତିକୁ ସଂଶୋଧନ କରିବାର ଆଉ ଉପାୟ ନଥାଏ । ଈଶ୍ୱରହିଁ କେବଳ ଜୀବନ ନେଇ ପାରନ୍ତି, କାରଣ ସେ ମଧ ଜୀବନ ଦେଇ ପାରନ୍ତି ।

# ନିଶା - ମୁକ୍ତି ପାଇଁ ସମ୍ବିଧାନର ନିର୍ଦ୍ଦେଶ

Section - 47 :- Duty of the State to raise the level of Nutrition and the Standard of Living and to improve public health. "The State Shall regard the raising of the Level of nutrition and the Standard of Living of its people and the improvement of public health as among its primary clauses and in partioular the State shall end eavour to bring about prohibition of the consumption except for medicinal purpose of intexicating drinks and drugs which are injurious to health."

(Rama Chandra Pradhan, Advocate Phone : 22231. ଙ୍କ ଆନୁକୂଲ୍ୟରେ ସଂଗୃହୀତ)

# ପଶ୍ଚିମ ଓଡ଼ିଶାରେ ମହିଳାମାନଙ୍କ ଦ୍ୱାରା

## ମଦ ବିରୋଧୀ ଆନ୍ଦୋଳନ

ମେଘପାଳ ନିକଟସ୍ଥ ଖଣ୍ଡିଆ ମୁଣ୍ଡା ମଦଭାଟି ବନ୍ଦ ହେଲା, ମଦ ବ୍ୟବସାୟୀଙ୍କ ପ୍ରେରିତ ଗୁଣ୍ଡାମାନଙ୍କ ଆକ୍ରମଣରେ ଆଦିବାସୀ ନେତ୍ରୀ ପଦ୍ମାକିସାନ ଗୁରୁତର ଭାବେ ଆହତ । ସମ୍ବଲପୁର ୧୭. ୮ - ମହିଳାମାନଙ୍କ ବଳିଷ୍ଠ ନେତୃତ୍ୱ ଓ ସାହସିକ ପଦକ୍ଷେପ ଯୋଗୁଁ ସମ୍ବଲପୁର ଜିଲ୍ଲାର ଖଣ୍ଡିଆ ମୁଣ୍ଡା ମଦଭାଟି ସମ୍ମୁଖରେ ଗତ ୮ ତାରିଖ ଦିନ ଦେଢ଼ହଜାର ଆଦିବାସୀ, ହରିଜନ ମହିଳା ମିଳିତ ହୋଇ ବିକ୍ଷୋଭ ପ୍ରଦର୍ଶନ ଓ ପିକେଟିଂ କରିବା ପରେ ଦିର୍ଘଦିନରୁ ଚାଲୁଥିବା ଏହି ମଦଭାଟି ପରିଶେଷରେ ବନ୍ଦ ହେଲା । ଆନ୍ଦୋଳନକୁ ନିୟନ୍ତ୍ରିତ କରିବା ପାଇଁ ବହୁସଂଖ୍ୟକ ମହିଳା ପୁଲିସ ଓ ମହିଳା ଅବକାରୀ କନେଷ୍ଟବଳ ସମ୍ବଲପୁରରୁ ଯାଇ ରେଢ଼ାଖୋଲ ତହସିଲଦାରଙ୍କ ମାଜିଷ୍ଟ୍ରେଟ ଦାୟିତ୍ୱରେ ମୁତୟନଥିଲେ । ମହିଳାମାନଙ୍କ ପ୍ରବଳ ବିରୋଧ ହେତୁ ଭାଟି ଠିକାଦାର ଭାଟି ବନ୍ଦକରି ଦେବାକୁ ଲିଖିତ ଚୁକ୍ତି କରିଥିଲେ ଏବଂ ଆସନ୍ତା ୧୨ ତାରିଖ ସୁଦ୍ଧା ତାଙ୍କର ସବୁ ଆସବାବ ସମ୍ବଲପୁର ଫେରାଇ ନେବାକୁ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ । କୌଣସି ରାଜନୈତିକ ଦଳର ନେତୃତ୍ୱ ବିନା ପ୍ରଥମଥର ପାଇଁ ମହିଳାମାନେ ନିଜେ ସଙ୍ଗଠିତ ହୋଇ ଏଭଳି ପଦକ୍ଷେପ ନେଇଥିଲେ ଓ ପଶ୍ଚିମ ଓଡ଼ିଶାରେ ପ୍ରଥମଥର ପାଇଁ ମଦଭାଟି ବନ୍ଦ କରି ପାରିଥିଲେ ।

ଏଠାରେ ସ୍ମରଣ କରାଯାଇପାରେ ଯେ, ଅଗ୍ରଣୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମାନବକଲ୍ୟାଣ ପ୍ରତିଷ୍ଠାରେ ଉଦ୍ୟମକ୍ରମେ ଗତ ୧୯୯୩ ମସିହାରେ ମହିଳାମାନେ ପ୍ରଥମେ ସଙ୍ଗଠିତ ହୋଇ ନିଜନିଜ ଗାଁ'ରେ ମଦ, ହାଣ୍ଡିଆ ପ୍ରଭୃତି ନିଶା ବିରୁଦ୍ଧରେ ସ୍ୱରଉତ୍ତୋଳନ କରିଥିଲେ ଏବଂ ସମ୍ବଲପୁର ଜିଲ୍ଲାର ମେଘପାଳ - ବିବଂଦ୍ରା ଅଞ୍ଚଳରୁ ସଂପୂର୍ଣ୍ଣ ନିଶାବାରଣ କରିବାକୁ ସମର୍ଥ ହୋଇ ପାରିଥିଲେ । ସେତେବେଳର ସରକାର ମହିଳାମାନଙ୍କ ଏ ପଦକ୍ଷେପକୁ ସମର୍ଥନ କରିଥିଲେ । ଫଳରେ ଗାଁ' ଗାଁ'ରେ ସୁଖଶାନ୍ତି ଫେରି ଆସିଥିଲା । ସାହୁକାର ଓ ଦଲାଲମାନଙ୍କ ଅତ୍ୟାଚାର ମଧ୍ୟ କମି ଯାଇଥିଲା । କିନ୍ତୁ ବର୍ତ୍ତମାନ ସରକାର ପୁଣି ମହୁଲ ମଦ ପ୍ରଚଳନ କରିବା ନିଷ୍ପତ୍ତି ନେବାରୁ ମହିଳାମାନେ ଏହାର ତୀବ୍ର ବିରୋଧ କରୁଛନ୍ତି । ଇତିମଧ୍ୟରେ ଗତ ଜୁନ୍ ୨୫ ତାରିଖ ଦିନ ସମ୍ବଲପୁର ସଦର ମହକୁମାଠାରେ, ଜୁଲାଇ ୧୦ ତାରିଖ ଦିନ କୁଚିଣ୍ଡା ଉପଖଣ୍ଡ ମହକୁମାଠାରେ ଏବଂ ତା'ପରେ ଜୁଲାଇ ୩୦ ତାରିଖ ଦିନ ଦେବଗଡ଼ ସଦର ମହକୁମାଠାରେ ସହସ୍ରାଧିକ ମହିଳା ମଦବିରୋଧୀ ପ୍ରଦର୍ଶନ କରିଥିଲେ ଓ ସରକାରୀଙ୍କୁ ଦାବୀପତ୍ର ଦେଇଥିଲେ । ମୁଖ୍ୟମନ୍ତ୍ରୀଙ୍କୁ ଏ ସମ୍ପର୍କରେ ଏକ ଖୋଲା ଚିଠି ମଧ୍ୟ ସେମାନେ ଦେଇଛନ୍ତି ଏବଂ ବିପୁଳ ପରିମାଣରେ ଦସ୍ତଖତ ସଂଗ୍ରହ କରି ସ୍ମାରକପତ୍ର ଦାଖଲ କରିଛନ୍ତି । କିନ୍ତୁ ଏ ସମ୍ବନ୍ଧରେ ସରକାର ନୀରବତା ଯୋଗୁ ଅସନ୍ତୋଷର ବହ୍ନି ତୀବ୍ରତର ହେଲଣି । ଯଦି ସରକାର କିଛି ପ୍ରତିକାର ନ କରନ୍ତି, ତେବେ ଲୋକେ ଆନ୍ଦୋଳନାତ୍ମକ ପନ୍ଥା ଗ୍ରହଣ କରିବାକୁ ବାଧ୍ୟ ହେବେ ।

(୧୫ ସେପ୍ଟେମ୍ବର ୧୯୯୬ ''ସର୍ବୋଦୟ''ରୁ ଗୃହୀତ)

# ଅମ୍ଲାନ ଜ୍ୟୋତି

ଶ୍ରୀ ଗୋପାଳ ପ୍ରସାଦ ଦାସ

ଏକଦା କୌଣସି ଏକ ମୁଖ୍ୟ ଚିକିତ୍ସାଳୟର ଚକ୍ଷୁ ବିଭାଗରେ ଜଣେ ବିଚିତ୍ର ରୋଗୀଙ୍କୁ ଦେଖିବାକୁ ମିଳିଲା । ଅନ୍ୟର ଚକ୍ଷୁପାଇଁ ସେ ଯେତେ ଚିନ୍ତିତ ଥିଲେ ନିଜର ଆରୋଗ୍ୟ ପାଇଁ ଡାକ୍ତରଙ୍କୁ ଅନୁରୋଧ କରିବା କେହି କେବେ ଦେଖିନଥିଲେ । ତାଙ୍କର ବହୁ ଗୁଣମୁଗ୍ଧ ରୋଗଶଯ୍ୟାରେ ଶାୟିତ ସେହି ରୋଗୀଙ୍କୁ ଦେଖିବାକୁ ଆସି ରୋଗୀଙ୍କର ଧୈର୍ଯ୍ୟ, ସହନଶୀଳତା ଓ ପରପାଇଁ ଘାଣ୍ଟିହେଉଥିବା ଦେଖି ବିସ୍ମିତ ହେଉଥାନ୍ତି ।

ନିତିଦିନର କାମପରି ଚିକିତ୍ସକ ଆସିଲେ । ରୋଗୀ ତାଙ୍କୁ ନିଜପାଇଁ କିଛି ନକହି ଅତ୍ୟନ୍ତ ନମ୍ର ଓ ଧୀର ଭାବରେ ଅନୁରୋଧ କଲେ - "ମୋ ଆଖି ଆଉ ଭଲ ହେବାର ନାହିଁ । ଏତିକିବେଳେ ମୋ ଚକ୍ଷୁର କୌଣସି ଅଂଶ ଯଦି ଅନ୍ୟର ଚକ୍ଷୁରେ ରୋପଣ କରାଯାଇ ତାଙ୍କୁ ଆରୋଗ୍ୟ କରାଯାଇପାରନ୍ତା ମୁଁ ବହୁତ ଖୁସୀ ଓ ସନ୍ତୋଷ ଲାଭ କରନ୍ତି ।

ଶେଷ ନିଃଶ୍ୱାସ ତ୍ୟାଗ ଯାଏ ବଞ୍ଚିବାର ଦୁର୍ବାର କାମନା ମଣିଷର ଜାଗ୍ରତ ହେଉଥିବାବେଳେ ଆତଙ୍କିତ ନ ହୋଇ ପରପାଇଁ କାନ୍ଦୁଥିବା ଏ ବିଚିତ୍ର ରୋଗୀଙ୍କୁ ଦେଖି ଚିକିତ୍ସକ ବିସ୍ମିତ ନେତ୍ରରେ ରୋଗୀଙ୍କୁ ନିର୍ବାକ ଚାହିଁ ରହିଲେ ।

ଏ ରୋଗୀ ଆଉ କେହି ନୁହନ୍ତି, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀମାନବ ସେବା ମାଧ୍ୟମରେ ମାଧବଙ୍କୁ ଦର୍ଶନ କରୁଥିବା ପ୍ରାତଃ ସ୍ମରଣୀୟ ଆଚାର୍ଯ୍ୟ ହରିହର ।

ଜୀବନକୁ ଜାଣିବାର ଅନ୍ୱେଷା ଭିତରୁ ମଣିଷ ଆହରଣ କରେ ଅଭିଜ୍ଞତା, ଅନୁଭୂତି ଓ ପ୍ରଜ୍ଞା । ସେହି ଅନ୍ୱେଷଣ ମାର୍ଗରେ ଯାଇ ଜୀବନର ବିପୁଳ ଦୃଶ୍ୟ, ଚରିତ୍ର, ବିଭବ ମଧ୍ୟରେ ଖୋଜିବସେ ଆତ୍ମ ପରିଚୟ । ମୁଁ କିଏ ? କଣ ମୋର ପରିଚୟ ? କେଉଁଠିକି ଆସିଛି ? କେଉଁଠିକି ଯିବି ? ଏହି ସବୁ ପ୍ରଶ୍ନ ଚେତନାଶୀଳ ମଣିଷ ମନକୁ ଆପେ ଆପେ ଆସିଯାଏ । ଅଥଚ ସେ ଉତ୍ତର ପାଏ ନାହିଁ । ଆଚାର୍ଯ୍ୟ ମହାଶୟ ସେହି ଆତ୍ମ ଅନ୍ୱେଷଣର ଜଣେ ସିଦ୍ଧ ସାଧକ ଥିଲେ ।

ସେ ସଂସାରରେ ଥାଇ ସଂସାରୀ ନଥିଲେ । ଅନୁଷ୍ଠାନ ପ୍ରତି ତାଙ୍କର ଆଶକ୍ତି ନଥିଲା । ନଥିଲା ତାଙ୍କର ଗର୍ବ ଅହଂକାର । ତାଙ୍କର ସେବା ଥିଲା ମାନବ ସେବା । ତାଙ୍କର ଧର୍ମ ଥିଲା ମାନବ ଧର୍ମ । ସେ ଜଣେ ମଣିଷ ପରି ମଣିଷ ହିଁ ଥିଲେ ।

ଆଚାର୍ଯ୍ୟ ମହାଶୟନିଜ କର୍ମମୟ ଜୀବନ ଭିତରେ ହାଇସ୍କୁଲ ଶିକ୍ଷକ, ଶିକ୍ଷା ଅନୁଷ୍ଠାନରେ ଆଚାର୍ଯ୍ୟ, ବିଧବା ଆଶ୍ରମର ପରିଚାଳକ, ସତ୍ୟାଗ୍ରହୀ ମାନଙ୍କର ସେନାପତି, ହରିଜନ ସେବକ ସଂଘର ସଭାପତି, ମୌଳିକ ଶିକ୍ଷା ପରିଷଦର ସଭାପତି, ସର୍ବୋଦୟ ଆନ୍ଦୋଳନର ନେତା, ଭୂଦାନ - ଗ୍ରାମଦାନ ଆନ୍ଦୋଳନର ସାରଥୀ ଓ ଶାନ୍ତି ସେବା ମାନଙ୍କର ଦିଗ୍‌ଦର୍ଶନ, ଇତ୍ୟାଦି ବହୁବିଧ ସେନା ମୂଳକ କାର୍ଯ୍ୟ କରି ସାରା ଜୀବନ ବିତାଇଛନ୍ତି ।

ଆଚାର୍ଯ୍ୟ ମହାଶୟ ଜନସେବାକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ପୁରୀ ଜିଲା ସ୍କୁଲରେ ଛାତ୍ରଥିବା ସମୟରୁ ତାଙ୍କର ସେବା କରିବା ମନୋବୃତ୍ତି ରହିଥିଲା । ରଥଯାତ୍ରା ସମୟରେ ସ୍ୱେଚ୍ଛା ସେବକ ଦଳ ସଂଗଠନ କରି ହଇଜା ରୋଗୀଙ୍କ ସେବା କରିବା, ମେଲେରିଆ ରୋଗର ନିରାକରଣ ପାଇଁ ପୁରୀ ସହର ଓ ଆଖ ପାଖ ଗ୍ରାମ ମାନଙ୍କରୁ ପୋଖରୀ ଗଡ଼ିଆରୁ ଦଳ ସଫା କରିବା, ବର୍ଷ ବର୍ଷଧରି ନିୟମିତ କରୁଥିଲେ ଓ କଗଜ ଥିଲେ । ସତ୍ୟବାଦୀ ଜାତୀୟ ବନ ବିଦ୍ୟାଳୟରେ ଶିକ୍ଷକ ଥିବା ସମୟରେ ପୀଡ଼ିତ ଛାତ୍ରମାନଙ୍କୁ ନିର୍ବିକାର ଚିତ୍ତରେ ମା ପରି ସେବା ଶୁଶ୍ରୁଷା କରୁଥିଲେ । ଧୋଇ, ମରୁଡ଼ି, ବନ୍ୟା, ବାତ୍ୟା ଆଦି ବିପର୍ଯ୍ୟୟରେ ଅଯାଚିତ ଭାବରେ ଦୁର୍ଗତ ମାନଙ୍କ ପାଖରେ ପହଞ୍ଚି ଚୁଡ଼ା, ଚାଉଳ ବାଣ୍ଟିଛନ୍ତି । ତାଙ୍କର ନିଃସ୍ୱାର୍ଥପର ସେବାର ପଟାନ୍ତର ନାହିଁ ।

୧୯୬୪ ମସିହାରେ ଓଡ଼ିଶାରେ ବିରାଟ ଛାତ୍ର ଆନ୍ଦୋଳନକୁ ପ୍ରଶମିତ କରିବା ପାଇଁ ସରକାର ଓ ବହୁ ବିଶିଷ୍ଟ ବ୍ୟକ୍ତି ମଧ୍ୟସ୍ଥତା କରି ବିଫଳ ହୋଇଥିଲେ । ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ଶ୍ରୀ ଗୁଲଜାରୀ ଲାଲନନ୍ଦାଙ୍କ ଉପସ୍ଥିତିରେ ଛାତ୍ରମାନେ ଆଚାର୍ଯ୍ୟ ମହାଶୟଙ୍କର ମଧ୍ୟସ୍ଥତାକୁ ସ୍ୱୀକାର କରି ଆନ୍ଦୋଳନ ପ୍ରତ୍ୟାହାର କରିଥିଲେ ।

ସେହି ବର୍ଷ ରାଉରକେଲା ଇସ୍ପାତ ନଗରରେ ସାଂପ୍ରଦାୟିକ ହିଂସାକାଣ୍ଡ ଘଟି ଶହ ଶହ ଲୋକ ଟଳିପଡ଼ିଲେ। ରାସ୍ତାଘାଟରେ ରକ୍ତନଦୀ ଛୁଟିଲା। ଗୃହଦାହ ଠାରୁ ଆରମ୍ଭ କରି କେତେ ଯେ କ୍ଷତି ହେଲା ତାର ଇୟତ୍ତା ନାହିଁ। ଶାନ୍ତି ଦୂତ ଆଚାର୍ଯ୍ୟ ହରିହର ସେବକ ସଚ୍ଚିଦାନନ୍ଦ ମହାନ୍ତିଙ୍କୁ ସାଂଗରେ ଧରି ରାଉରକେଲାରେ ପହଞ୍ଚି ଗଲେ। ଆଚାର୍ଯ୍ୟ ମହାଶୟ ଆସିଛନ୍ତି ବୋଲି ଚାରିଆଡ଼େ ଚହଳ ପଡ଼ିଗଲା। ସରକାରୀ ଉଚ୍ଚ ପଦାଧିକାରୀମାନେ, ଇସ୍ପାତ କାରଖାନାର ପଦସ୍ଥ ଅଫିସର୍ ଏବଂ ସହରର ବିଶିଷ୍ଟ ବ୍ୟକ୍ତିମାନେ ପରିସ୍ଥିତିର ଆଶୁ ସମାଧାନ ପାଇଁ ଆଚାର୍ଯ୍ୟ ମହାଶୟଙ୍କର ପରାମର୍ଶ ଲୋଡ଼ିଲେ । ଶାନ୍ତି କମିଟି ମାନ ଗଠିତ ହେଲା। ଏଣେ ଆଚାର୍ଯ୍ୟ ମହାଶୟ ସାହି ବସ୍ତିରେ ଘର ଘର ବୁଲି ଅଭୟ ବାର୍ତ୍ତା ପ୍ରଚାରରେ ଲାଗିଗଲେ ଏବଂ ସାହି ମାନଙ୍କରେ ସର୍ବ ଧର୍ମ ପ୍ରାର୍ଥନା ଅନୁଷ୍ଠାନ କରାଇଲେ। ନିର୍ଭୟରେ ହଜାର ହଜାର ଲୋକ ପଦାକୁ ବାହାରି ପ୍ରାର୍ଥନା ସଭାରେ ଯୋଗ ଦେଲେ । ସ୍ୱାଭାବିକ ଅବସ୍ଥା ଫେରି ଆସିବା ପର୍ଯ୍ୟନ୍ତ ସାହିମାନଙ୍କରେ ସର୍ବ ଧର୍ମ ପ୍ରାର୍ଥନା ରୀତିମତ ଚାଲିଲା । ନାମର ମହିମା କେତେ ଆଚାର୍ଯ୍ୟ ମହାଶୟ ଏଠି ପ୍ରମାଣ କରିଦେଲେ।

ସେବକ ସଚ୍ଚିଦାନନ୍ଦ ମହାନ୍ତିଙ୍କୁ ସାଂଗରେ ଧରି ଆଚାର୍ଯ୍ୟ ମହାଶୟ ଓଡ଼ିଶାରେ ଅଢେଇ ବର୍ଷ କାଳ ଐତିହାସିକ ପଦଯାତ୍ରା କରି ଶାନ୍ତି ବାର୍ତ୍ତା ପ୍ରଚାର କରିବା ସଂଗେ ସଂଗେ ଭୂଦାନ ଗ୍ରାମଦାନ ମଧ ସଂଗ୍ରହ କରିଥିଲେ।

କଟକ ଜିଲା ପଦଯାତ୍ରା ଦାୟିତ୍ୱ ଲେଖକଙ୍କୁ ଦିଆଯାଇଥିଲା । ବାଲେଶ୍ୱର ଜିଲା ଚାନ୍ଦବାଲି ଠାରୁ ଆଳି, କନିକା, ପଟ୍ଟମୁଣ୍ଡାଇ, କେନ୍ଦ୍ରାପଡ଼ା, ସାଲେପୁର ବାଟ ଦେଇ କଟକ ପର୍ଯ୍ୟନ୍ତ ପଦଯାତ୍ରୀମାନେ ଆସିବାକୁ ୨୭ ଗୋଟି ରହଣି ବ୍ୟବସ୍ଥିତ ହୋଇଥିଲା । ଗ୍ରାମବାସୀ ମାନେ ପଦଯାତ୍ରୀ ମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରୁଥିଲେ । ପଦଯାତ୍ରା ସୁରୁଖୁରୁରେ ଚାଲିଥିଲା । ଖଣ୍ଡିଏ ସାଇକେଲ୍ ଧରି ପୂର୍ବ ରହଣୀର ବ୍ୟବସ୍ଥା ବୁଝି ସଭା ପୂର୍ବରୁ ମୁଁ ପହଞ୍ଚି ଯାଉଥିଲି। କିଛି ପାଟି ତୁଣ୍ଡ ନ କରି ମୁଣ୍ଡିଆ ମାରି ଗୋଡ଼କୁ ଆଉଁସି ଦେଉଥିଲି। ଅନୁମାନ କରି ମଣିଷ ଚିହ୍ନୁଥିଲେ । ଏଣୁ ମତେ "ନେଉଳ ଭାଇ" ଉପାଧି ମିଳିଥିଲା ।

ଋଷି ପ୍ରତିମ ଆଚାର୍ଯ୍ୟ ମହାଶୟଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ଡକ୍ଟରେଟ୍ ଉପାଧି ଦେବାକୁ ସ୍ଥିର କରିଥିଲେ। ଆଚାର୍ଯ୍ୟ ମହାଶୟ ନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରି କହିଲେ ଦୃଷ୍ଟିଶକ୍ତି ହୀନ କ୍ଷୀଣ ଶରୀରରେ ଉପାଧି ମୁଣ୍ଡେଇ ଚାଲି ପାରିବି ନାହିଁ।

ଏହି ଯୁଗ ପୁରୁଷ ଜନ୍ମିଥିଲେ ସତ୍ୟବାଦୀର ଅଦୂରବର୍ତ୍ତୀ ଶ୍ରୀରାମ ଚନ୍ଦ୍ରପୁର ଶାସନରେ । ସେ କୌଣସି ଗ୍ରାମ, ଜାତି ବା ଅଞ୍ଚଳର ନଥିଲେ। ସାରା ଓଡ଼ିଶା ଥିଲା ତାଙ୍କର ଘର। ନିଜର କୌଣସି ଜନ୍ମ - ଯାତକ ସୂଚନା ତାଙ୍କଠାରୁ ମିଳିଲା ନାହିଁ । ତେବେ ସଂଗୃହୀତ ବିଭିନ୍ନ ତର୍ଥ୍ୟନୁ ଯାୟୀ ୧୮୭୯ ଫାଲଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଫେବୃୟାରୀ ୨୭ ତାରିଖରେ ତାଙ୍କର ଜନ୍ମ। ସେ ଥିଲେ କୌଶିକ ଗୋତ୍ରୀ । ତାଙ୍କ ପିତାଙ୍କ ନାମ ମହାଦେବ ବ୍ରହ୍ମା ଓ ମାତାଙ୍କ ନାମ ଶ୍ରଦ୍ଧାଦେବୀ। ୧୯୭୧ ଫେବୃୟାରୀ ୨୧ ତାରିଖ ରବିବାର ଫାଲଗୁନ କୃଷ୍ଣ ପକ୍ଷୋଦ୍ଧାର ଏକାଦଶୀରେ ସର୍ବୋଦୟ ଆନ୍ଦୋଳନର ସାଧନା ପୀଠ କଟକ ଥୋଡ଼ିଆ ସାହି ସ୍ଥିତ ଗୁଣନିଧି ଭବନରେ ତାଙ୍କର ଦେହାନ୍ତ ହୋଇଛି ।

(ପୂର୍ବତନ ସଭାପତି, ଉତ୍କଳ ସର୍ବୋଦୟ ମଣ୍ଡଳ ଗୁଣନିଧି ଭବନ, କଟକ)

# ମୋହନରୁ ମହାତ୍ମା

| ଜୀବନ ଚର୍ଯ୍ୟା | | ବୟସ |
|---|---|---|
| ୧୮୬୯ ଅକ୍ଟୋବର ୨ | ପୋରବନ୍ଦରରେ ଜନ୍ମ | ୦ |
| ୧୮୮୨ କସ୍ତୁରବାଙ୍କ | ସହ ବିବାହ | ୧୩ |
| ୧୮୯୧ ଇଂଲଣ୍ଡରେ | ବାରିଷ୍ଟର | ୨୨ |
| ୧୮୯୨ | ରାଜକୋଟ ଓ ବମ୍ବେରେ ଓକିଲାତ | ୨୩ |
| ୧୮୯୩ | ଓକିଲାତି ପାଇଁ ଦକ୍ଷିଣ ଆଫ୍ରିକା ଗମନ | ୨୪ |

୧୯୦୪ "ଅନ୍‌ଟୁ ଦି ଲାଷ୍ଟ" ବହି ପଢି ଜୀବନରେ କ୍ରାନ୍ତିକାରୀ ପରିବର୍ତ୍ତନ, ଫିନିକ୍ସରେ ଆଶ୍ରମ ସ୍ଥାପନା ୩୫

୧୯୦୬ ବ୍ରହ୍ମଚର୍ଯ୍ୟ ପାଳନ ପାଇଁ ପ୍ରତିଜ୍ଞା ୩୭

୧୯୦୭ ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ଏବଂ କରାଦଣ୍ଡ ଭୋଗ ୩୮

୧୯୦୯ "ହିନ୍ଦସ୍ୱରାଜ୍ୟ" ଲେଖା ୩୯

୧୯୧୦ ଜୋହାନସ ବର୍ଗରେ ଟଲ୍‌ଷ୍ଟୟ ଫାର୍ମ ସ୍ଥାପନା ୪୦

୧୯୧୪ ସତ୍ୟାଗ୍ରହର ସଫଳତା ୪୫

୧୯୧୫ ଭାରତ ଆଗମନ "କୋଚରବ ଆଶ୍ରମ" ସ୍ଥାପନା ୪୬

୧୯୧୭ ଚମ୍ପାରଣ ସତ୍ୟାଗ୍ରହ କୋଚରବ - ଆଶ୍ରମ ସାବରମତୀ ଅଣାଗଲା ୪୮

୧୯୧୮ 'ଖେଡ଼ା ସତ୍ୟାଗ୍ରହ ମିଲ ଶ୍ରମିକଙ୍କ ହରତାଳ (ଅହମଦାବାଦ) ୪୯

୧୯୨୧ 'ରାଓଲଟ-ଆଇନ' ବିରୁଦ୍ଧରେ ଅପ୍ରେଲ ୬ରେ ଆନ୍ଦୋଳନ, ପ୍ରାର୍ଥନା ଏବଂ ଉପବାସ, 'ନବଜୀବନ' (ହିନ୍ଦୀ, ଗୁଜୁରାଟୀ) ଏବଂ "ୟଙ୍ଗ ଇଣ୍ଡିଆ" ସାପ୍ତାହିକୀ ସଂପାଦନା ୫୦

୧୯୨୦ 'ଅସହଯୋଗ ଆନ୍ଦୋଳନ' 'ଗୁଜୁରାଟ ବିଦ୍ୟାପୀଠ ସ୍ଥାପନ ୫୧

୧୯୨୧ ବିଦେଶୀ ବସ୍ତ୍ର ବର୍ଜନ ଏବଂ ରଚନାତ୍ମକ କାର୍ଯ୍ୟକ୍ରମ ଆରମ୍ଭ ୫୨

୧୯୨୨ ଚୌରୀ ଚୌରା କାଣ୍ଡ ଯୋଗୁଁ ସତ୍ୟାଗ୍ରହ ସ୍ଥଗିତ, ଛ ବର୍ଷ ଜେଲ ଦଣ୍ଡ ୫୩

୧୯୨୪ ହିନ୍ଦୁ ମୁସଲମାନ ଏକତା ପାଇଁ ୨୧ ଦିନ ଉପବାସ ୫୫

୧୯୨୫ ଅଖିଳ ଭାରତ ଚରଖା ସଂଘସ୍ଥାପନା, "ଆତ୍ମ କଥା" ଲେଖା ୫୬

୧୯୨୮ ବର୍ଦ୍ଦୋଲି ସତ୍ୟାଗ୍ରହ ୫୯

୧୯୩୦ 'ଦାଣ୍ଡିଯାତ୍ରା', ଲବଣ ସତ୍ୟାଗ୍ରହ ଓ ସାବରମତୀ ଆଶ୍ରମ ତ୍ୟାଗ, ଜେଲରେ ମଙ୍ଗଳ ପ୍ରଭାତ ଲେଖା ୬୧

୧୯୩୧ 'ଗାନ୍ଧୀ-ଇରଉଇନ ବୁଝାମଣା' ଦ୍ୱିତୀୟ ଗୋଲ ଟେବୁଲ ପରିଷଦରେ ଭାରତର ଏକମାତ୍ର ପ୍ରତିନିଧି ନିର୍ବାଚିତ ୬୨

୧୯୩୨ ହରିଜନଙ୍କ ସ୍ୱତନ୍ତ୍ର ମତଦାନ କାରଣ ନେଇ ଆମରଣ ଅନଶନ । ୬୩

୧୯୩୩ ଯମୁନାଲାଲଜୀଙ୍କ ଆଗ୍ରହରେ ଓର୍ଦ୍ଧା ଆଗମନ ୬୪

୧୯୩୪ ଅଖିଳ ଭାରତ ଗ୍ରାମୋଦ୍ୟୋଗ ସଂଘ ସ୍ଥାପନା ୬୫

**ପୁରୀରୁ ହରିଜନ ପଦଯାତ୍ରା (୧୯୩୪ ମଇ - ୮)**

୧୯୩୬ 'ସେବାଗ୍ରାମ ଆଶ୍ରମ' ସ୍ଥାପନା ୬୭

୧୯୩୭ 'ହିନ୍ଦୁସ୍ତାନୀ ତାଲୀମ ସଂଘ' ସ୍ଥାପନା ୬୮

୧୯୪୧ କଂଗ୍ରେସ ନେତୃତ୍ୱରୁ ମୁକ୍ତ ୭୨

୧୯୪୨ 'ଭାରତ ଛାଡ଼ ଆନ୍ଦୋଳନ' ଏବଂ ସାମୂହିକ ଗିରଫଦାରୀ ୭୩

୧୯୪୪ କାରାବାସରେ କସ୍ତୁରବାଙ୍କ ମୃତ୍ୟୁ । ବନ୍ଦୀଶାଳାରୁ ମୁକ୍ତି ୭୫

୧୯୪୭ 'ନୂଆଖାଲି ପଦଯାତ୍ରା'। **ଅଗଷ୍ଟ ୧୫ରେ ସ୍ୱତନ୍ତ୍ରତା ପ୍ରାପ୍ତି ଏବଂ** କଲିକତାରେ ୭୨ ଘଣ୍ଟା ଉପବାସ....୭୮

୧୯୪୮ ଦିଲ୍ଲୀରେ ଆମରଣ ଉପବାସ । ପାଞ୍ଚଦିନ ବିତିଲା ପରେ ରାଷ୍ଟ୍ରୀୟ ଶାନ୍ତି ସ୍ଥାପନା ପାଇଁ ମଗ୍ନ ପ୍ରାର୍ଥନା ମଣ୍ଡପରେ ଜଣେ ପଥ ଭ୍ରଷ୍ଟ ହିନ୍ଦୁ ଦ୍ୱାରା ନିହତ ୭୯

(ସର୍ବ ସେବା ସଂଘ ପ୍ରକାଶିତ "ସେବାଗ୍ରାମ ଆଶ୍ରମ" ପୁସ୍ତିକାରୁ ଗୃହୀତ)

# मो खप्नर स्वराज्य – ग्रामस्वराज्य

### गान्धोजी

स्वराज्य एक पवित्र शब्ध अटे एहा एक बैदिक शब्द अटे, याहार अर्थ आत्म - शासन ओ आत्मसंयम। एथिपाइँ प्रकृत स्वराज्य आमर 'आन्तरिक शान्ति' उपरे निर्भर करे। यदि स्वराज पाइयिबा परे लोक निज जीबनर प्रत्येक छोट कथार समाधान पाइँ सरकार सम्मुखकु यिबाकु आरम्भ करिदिए त, एहि स्वराज्य-सरकार कौणसि कामरे आसिब नाहिँ। स्वतन्त्र भारतर; गरिबरु गरिब लोक मध्य एहा भाबिब ये. एहा आमर देश ओ एहार निर्माणरे ता मतर मध्य गुरुत्वरहिछि। एहि प्रकारर स्वराज्य सेतेबेले स्थापित होइपारिब, ये तेबेले समाज सत्य ओ अहिंसार शुद्ध साधनागुडिकु हिँ उपयोग करिव एबं जनता मध्यरे पारस्परिक सहयोग ओ सद्भाब रहिब। लोकतन्त्र ओ हिंसा एकत्र रहिपारिव नाहिँ। प्रकृत प्रजातन्त्रर्र निम्नरु निम्न ओ उचरु उच्च लोककु समान अबसर मिलिबा उचित। प्रकृत लोकशासन केन्द्ररे बसिकरि दश कीडिए लोक चलाइ पारिबे नाहिँ, एबे त तलआड़ु प्रत्येक ग्रामबासीङ्क द्वारा चालिबा उचित। भारतर प्राण सहरर्र नाहिँ, मात्र सातलक्ष गाँरि रहिछि।

ग्राम - स्वराज्य एक पुंर्ण प्रजातन्त्र हेउ, ये. येउँथिरे आमर पुरुषानुक्रमिक आबश्यकतागुडिक स्वाबलमबनकु आधार करि पूर्ण करायाइ पारे एबं अन्न ओ बस्त्र पाइँ अन्य उपरे निर्भर करिबाकु पडिब नाहिँ। प्रत्येक गाँरे नाटकशाला, पाठशाळा एबं सभागृह रहिब। समस्तङ्क पाइँ पिइबा पाणिर ब्बबस्था हेब, बंशानुक्रमिक तालीम सबु पिलाङ्क पाइँ दिआयिब ओ गाँर सबु काम सहयोग भित्तिरे कशयिब। ग्राम स्वराजयरे जातिआणा ओ अस्पृश्यता परि भेद आदौ रहिब नाहिँ। आमर गाँरे स्वच्छतार समस्त ब्बसथा रहिव। कुडिआगुडिकरे पर्य्याप्त ओलोक ओ बायुर ब्यबस्था हेब एबं तार निर्माणरे सथानीय जिनिषर यथासम्भब ब्यबहार हेब। खदी छडा आमर गाँगुडिकरे कुटीरशिल्पकु मध्य स्थापित करायिब, याहाकि प्रत्येक लोककु निज जीबिका निर्बाह पाइँ रोजगार मिलिपारिब।

मुँ यन्त्र बिरोघरे नुहेँ। किन्तु यन्त्रर मुक्त प्रबेशर बिरोध करे। यन्त्रर साहाय्य नेबा सेतेबेले ठिक् हेव येतेबेले कौणसि निर्द्धारित कामकु सारिबा पाइँ अल्प लोक थान्ति। मात्र भारत परि देशरे त लक्ष लक्ष कोटि कोटि लोक बेकार अछन्ति; एहि अबस्थारे यान्त्रीकरणरे बेकारी आहुरि अधिक बढिब। ("ଓଡ଼ିଆ ଦେବନାଗରୀ" ଅକ୍ଟୋବର ୧୯୯୭ ରୁ ଗୃହୀତ)

## ଗ୍ରାମ ସ୍ୱରାଜ୍ୟ ପାଇଁ ସମ୍ବିଧାନର ନିର୍ଦ୍ଦେଶ

Section 40 :- Constitution (Indian) Organisation of Village Panchavat. The State shall take steps to organise village Panchayats and endow them with such powers and authority as may be necessary to enable them to function as units of self Government. (ଅଧିବକ୍ତା ଶ୍ରୀ ରାମ ଚନ୍ଦ୍ର ପ୍ରଧାନଙ୍କ ଦ୍ୱାରା ସଂଗୃହୀତ)

ପତିକୁ ଯଦି ଦେବତାର ଆସନ ଦିଆଯାଏ ପତ୍ନୀକୁ ମଧ୍ୟ ଦେବତାର ଆସନ ଦିଆଯିବା ଉଚିତ । ପତ୍ନୀ, ପତିର ଦାସୀ ନୁହେଁ - ଜୀବନ ସାଥୀ । ସମାନ ଅଧିକାର ଉପଭୋଗ ତାର ଅଧିକାର । ପ୍ରତ୍ୟେକେ ହେଉଛନ୍ତି ଅପରର ଜଣେ ଗୁରୁ ।

# ଆମ ଗାଁରେ ଆମେ ସରକାର

ନିର୍ବାଚନ ପରିପ୍ରେକ୍ଷୀରେ ନିଜର ରାଜନୈତିକ ଭୂମିକାକୁ ସ୍ପଷ୍ଟ କରିବା ନିମନ୍ତେ ଦେଶରେ ଏକ ନୂଆ ରାଜନୀତି ସଂସ୍କୃତି ଲୋଡ଼ା ଯାହା ନୀତିବାନ ହୋଇଥିବ । ବୈପ୍ଳବିକ ପରିବର୍ତ୍ତନ ପ୍ରତି ପ୍ରତିବଦ୍ଧ ଥିବ ଓ ଯେଉଁଥିରେ ସାଧାରଣ ନାଗରିକ ହିଁ ସର୍ବେସର୍ବା ହୋଇଥିବେ । ଏହା ଲୋକଙ୍କୁ ବୁଝାଇ ସେମାନଙ୍କୁ ସଙ୍ଗଠିତ କରିବାକୁ ହେବ ।

ଆଜି ଦେଶର ବଡ଼ ସମସ୍ୟା ହେଉଛି ଯେ, ଧନୀ ସାମ୍ରାଜ୍ୟବାଦୀ ଦେଶମାନେ ଏ ଦେଶକୁ ପୁଣି ପରାଧୀନ କରି ଦେଲେଣି । କ୍ଷମତା ରାଜନୀତି କ୍ଷେତ୍ରରେ ସାଂପ୍ରଦାୟିକ ଓ ଜାତିଆଣ ବିଦ୍ୱେଷର ପ୍ରଚାର ଦେଶର ଏକତାକୁ ଧ୍ୱଂସ କରୁଛି ।

ଏ ସବୁରୁ ରକ୍ଷା ପାଇବାକୁ ହେଲେ ଅର୍ଥନୀତିର ଓ ଶାସନ କ୍ଷମତାର ବିକେନ୍ଦ୍ରୀକରଣ ଗାଁ ସ୍ତର ଯାଏଁ ଲୋଡ଼ା । କେନ୍ଦ୍ର ସରକାର ମାତ୍ର ଅଳ୍ପ କେତୋଟି ଅଧିକାର ରଖିବା ଚାହି ଗ୍ରାମ ଓ ନଗର ଓ ସଭା ମାନଙ୍କର ଅଧିକରୁ ଅଧିକ କ୍ଷମତା ରହିବା ଚାହିଁ ରାଜ୍ୟ ସବୁ ଭୌଗୋଳିକ ଓ ସାଂସ୍କୃତିକ ସମରସତା ଭିତ୍ତିରେ ସାନ ସାନ ହେବା ଚାହି। "ଆମ ଗାଁରେ ଆମେ ସରକାର, ରାଜଧାନୀରେ ଆମ ସରକାର", ଏହି ଆମର ଲକ୍ଷ୍ୟ ।

ଦେଶରୁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ବିଦାୟ ହେବା ଚାହି । ଭାରତ ଧନୀ ସାମ୍ରାଜ୍ୟବାଦୀ ଦେଶ ଓ ବିଶ୍ୱ ସଙ୍ଗଠନ ସହିତ ଅର୍ଥନୈତିକ ସମ୍ପର୍କ ଛିଣ୍ଡେଇଦେବା ଚାହି । ଲୋକ ପ୍ରତିନିଧି ଭୁଲ୍ ବାଟରେ ଗଲେତାଙ୍କୁ ଓ୍ୟାପସ ଆଣିବାର ଅଧିକାର ଲୋକଙ୍କର ରହିବା ଚାହି ।

ଏ ଲକ୍ଷ୍ୟ ହାସଲ କରିବା ପାଇଁ ଗଠନ ମୂଳକ କାମ, ଜନ ଆନ୍ଦୋଳନ ଓ ସତ୍ୟାଗ୍ରହ ସାଙ୍ଗକୁ ଭୋଟର ମାନେ ସଙ୍ଗଠିତ ହୋଇ ନିଜର ସଚ୍ଚୋଟ ପ୍ରାର୍ଥୀ ଛିଡ଼ାକରି ବା ଓ ଚରିତ୍ରହୀନ ରାଜନୀତିକ ଦଳମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ଚାହି ।

ଯେ ଦୁର୍ନୀତିଗ୍ରସ୍ତ, ବିଦେଶୀଙ୍କୁ ଡାକିଆଣି ଥିବା ଭେଦଭାବ ବଢାଉଥିବା ଦଳମାନଙ୍କର ନେତା, ମନ୍ତ୍ରୀ ଆଦିଙ୍କର ସଭା ସମିତିକୁ ବର୍ଜନ କରାଯିବ । ସେମାନଙ୍କୁ କୌଣସି କାର୍ଯ୍ୟକ୍ରମକୁ ଡ଼କାଯିବ ନାହିଁ ।

ନିର୍ବାଚନରେ ଉପରୋକ୍ତ ବଦନାମ ଦଳମାନଙ୍କୁ କଦାପି ଭୋଟ ଦିଆଯିବ ନାହିଁ । କୌଣସି ନୀତିବାନ୍ ସାନଦଳ ବା ସ୍ୱାଧୀନ ପ୍ରାର୍ଥୀ ଥିଲେ ତାଙ୍କୁ ଭୋଟ୍ ଦେବେ । ଚାଷୀ, ମୂଲିଆ, ଯୁବ ଓ ମହିଳା ସଙ୍ଗଠନ ଆଦିଙ୍କ ଉଦ୍ୟମରେ ପ୍ରାର୍ଥୀ ଛିଡ଼ା କରାଯାଉଥିବେ ତ ତାଙ୍କୁ ସମର୍ଥନ କରାଯିବ । ଏଭଳି ପ୍ରାର୍ଥୀଙ୍କ ପକ୍ଷରେ ନିର୍ବାଚନ ମଣ୍ଡଳର ଅନ୍ତଃ ଶତକଡ଼ା ପାଞ୍ଚଭାଗ ଭୋଟରଙ୍କର ସକ୍ରିୟ ସମର୍ଥନ ଥିବା ଚାହି । କୌଣସି ଉପଯୁକ୍ତ ପ୍ରାଥୀ ନଥିଲେ କାହାରିକୁ ଭୋଟ ଦେବେ ନାହିଁ । ଲୋକ ପ୍ରାର୍ଥୀ ପାଇଁ ନିଜ ନିଜ ନିର୍ବାଚନ ମଣ୍ଡଳୀରେ କ୍ଷେତ୍ର ପ୍ରସ୍ତୁତ କରିବା ପାଇଁ କାମ ଆରମ୍ଭ କରିବାକୁ ହେବ ।

ଏସବୁ କଥା ଆମକୁ କୋଟି କୋଟି ଲୋକଙ୍କ ପାଖରେ ଶୀଘ୍ର ପହଞ୍ଚାଇବାକୁ ହେବ । ସେଥିପାଇଁ ଲକ୍ଷ ଲକ୍ଷ ସଂଖ୍ୟାରେ ଏସବୁର ସମର୍ଥକ ସଂଗ୍ରହ କରାଯିବା ଲକ୍ଷ୍ୟ ନେଇ ଏକ ପ୍ରତିଜ୍ଞାପତ୍ରରେ ସସ୍ତଖତ ସଂଗ୍ରହ କରାଯିବ । ସ୍ୱାକ୍ଷର କାରୀଙ୍କ ଠାରୁ ଏକ ଟଙ୍କା ଚାନ୍ଦା ସଂଗ୍ରହ କରାଯିବ ।

ସାଥୀମାନେ ଏ ଦିଗରେ ଶୀଘ୍ର ଲାଗିପଡ଼ିବା ପାଇଁ ନିବେଦନ । ନିର୍ବାଚନ ପୂର୍ବରୁ ଓ ବେଳେ ଲୋକେ ନୂଆ କଥା ଶୁଣିବାକୁ ଉତ୍ସୁକ ଥାନ୍ତି । ଏହି ଅନୁକୂଳତାର ସୁଯୋଗ ନେବାକୁ ହେବ ।

ଇଂରାଜୀ ଶିକ୍ଷା ଆମକୁ ପୁରୁଷତ୍ୱ ହୀନ କରିଛି । ଆମର ଧୀ ଶକ୍ତିକୁ ସଙ୍କୁଚିତ କରି ଦେଇଛି । ଏହାର ଶିକ୍ଷାଦାନ ପ୍ରଣାଳୀ ଯୋଗୁଁ ଆମେ ମାଇଚିଆ ହୋଇ ଯାଉଛୁ ।

# ପ୍ରତିଜ୍ଞା ପତ୍ର

ମୁଁ ବିକେନ୍ଦ୍ରୀତ ସମାଜ ବ୍ୟବସ୍ଥା ବା ଗ୍ରାମ ସ୍ୱରାଜ୍ୟରେ ବିଶ୍ୱାସ କରେ । ସେଥିପାଇଁ ରଚନାତ୍ମକ କାମ, ଜନ ଆନ୍ଦୋଳନ ଓ ସତ୍ୟାଗ୍ରହ ସାଙ୍ଗକୁ ଏକ ନୀତିବାନ ଓ କ୍ରାନ୍ତିକାରୀ ରାଜନୀତିକ ବିକଳ୍ପର ଆବଶ୍ୟକତାରେ ବିଶ୍ୱାସ କରେ । ଏଥିପାଇଁ -

୧. ଦେଶକୁ ନୂତନ ଦାସତ୍ୱର ମୁକ୍ତ କରିବା ପାଇଁ ମୁଁ ସ୍ୱଦେଶୀ ବସ୍ତ୍ର ଆବରିବି ଓ ବିଦେଶୀ ଖାଉଟି ବସ୍ତ୍ର ବର୍ଜନ କରିବି ।

୨. ମୁଁ ଜାତିଆଣ ଓ ସାଂପ୍ରଦାୟିକ ଭେଦଭାବରୁ ଚିନ୍ତା ଓ କର୍ମରେ ଦୂରରେ ରହିବି । ଏହା ଉଠାଇବା ଉଦ୍ୟମରେ ବିରୋଧ କରିବି ।

୩. ମୁଁ ମଦ ଓ ଅନ୍ୟ ସମସ୍ତ ପ୍ରକାରର ନିଶାଦ୍ରବ୍ୟରୁ ଦୂରରେ ରହିବି । ଏସବୁ ପାଇଁ ଚାଲିଥିବା ଅହିଂସା ଆନ୍ଦୋଳନ ସହିତ ମୁଁ ସହଯୋଗ କରିବି ।

(୧୯୯୫ ଅକ୍ଟୋବର ୩୧ ତାରିଖରେ ବମ୍ବେରେ ସର୍ବସବା ଆନୁକୂଲ୍ୟରେ ଅନୁଷ୍ଠିତ ପ୍ରମୁଖ କର୍ମୀ ଓ କର୍ମକର୍ତ୍ତାଙ୍କ ବୈଠକର ନିର୍ଣ୍ଣୟ ତଥା କଟକରେ ନଭେମ୍ବର ୨୫ ତାରିଖରେ ଅନୁଷ୍ଠିତ ମୁକ୍ତି ଓ ସଦ୍‌ଭାବନା ସମ୍ମେଳନରେ ଗୃହୀତ ପ୍ରସ୍ତାବରୁ ଗୃହୀତ))

# ଆମେ କ'ଣ କରିବା

୧. ନିମ, ସାହାଡ଼ା, କରଞ୍ଜ ବା ବାବୁଲ ଦାନ୍ତ କାଠି ବ୍ୟବହାର କର ।

୨. ବିଦେଶୀ କଂପାନୀ ତିଆରି ସନ୍‌ଲାଇଟ୍, ଲକ୍ସ, ରେକ୍ସୋନା, ଲିରିଲ୍, ଲାଇଫ୍ ବୟ, ପିଅର୍ସ ଓ ରିନ୍ ସାବୁନ ବର୍ଜନ କର ।

୩. ମା' କ୍ଷୀର ଶିଶୁ ପାଇଁ ଅମୃତ । ଅଭାବରେ କେବଳ ଗାଈ କ୍ଷୀର, ଅମୁଲ, ଲକ୍ଟୋଜେନ ଶିଶୁ ପିଉ ।

୪. ପେପ୍‌ସୀର ମାଲ ବର୍ଜନ କରି ପଇଡ, ସର୍ବତ ଭଳି ଦେଶୀ ପାନୀୟ ପିଅନ୍ତୁ ।

୫. ଗାଁ ଗାଁରେ କ୍ଷୁଦ୍ରଶିଳ୍ପ ପ୍ରତି ମନ ଦେଇ ବେକାରୀ ଦୂର କରାନ୍ତୁ ।

୬. ଗାଁ ଦଣ୍ଡା ଓ ଅନାବାଦୀରେ ଗଛ ଲଗାଇ ପରିବେଶକୁ ପ୍ରଦୂଷଣ ମୁକ୍ତ ରଖନ୍ତୁ ।

୭. ଯାଚିଲେ ମଧ ବିଦେଶୀ ସଂସ୍ଥାର ସାହାଯ୍ୟ ଗ୍ରହଣ କରନ୍ତୁ ନାହିଁ ।

୮. ଖୋସାମଦ ନ କରି ହକ୍ କଥା କହନ୍ତୁ ।

୯. ବିଭିନ୍ନ ଧର୍ମାବଲମ୍ବୀଙ୍କ ମଧ୍ୟରେ ବନ୍ଧୁ ତାସ୍ଥାପନ କରନ୍ତୁ ।

୧୦. ବଡ଼ମାନେ ସାନମାନଙ୍କୁ ଏକାଠି କରି ଖେଳ ଶିଖାନ୍ତୁ, ମହାପୁରୁଷଙ୍କର ଓ ସ୍ୱାଧୀନତା ସଂଗ୍ରାମର କଥା ଶୁଣାନ୍ତୁ ।

୧୧. ନିଶା ରାକ୍ଷସର ପାଖ ମାଡ଼ନ୍ତୁ ନାହିଁ ।

୧୨. ଗାଁ କଳି କଚେରୀକୁ ନ ନେଇ ଗାଁ ରେ ନିଷ୍ପତ୍ତି କରନ୍ତୁ ।

୧୩. ଫୁରୁସତ ସମୟକୁ ସୂତାକଟା ଭଳି ସୃଜନଶୀଳ କାମରେ ଲଗାନ୍ତୁ ।

୧୪. ବିଲବାଡ଼ିରେ ରାସାୟନିକ ସାର ପ୍ରୟୋଗ କରନ୍ତୁ ନାହିଁ ।

୧୫. ଘର କାମରେ ପିତାମାତାଙ୍କୁ ସାହାଯ୍ୟ କରନ୍ତୁ । ଘରର ଆସବାବ ଓ ପଢାବହିକୁ ସଜାଡ଼ି ରଖନ୍ତୁ, ଯେପରିକି ମନକଲା ମାତ୍ରେ ଯେ କୌଣସିଟି ମିଳିପାରିବ ।

୧୬. ଏଗାରଟି ବ୍ରତ - ''ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅସଂଗ୍ରହ, ଶରୀର ଶ୍ରମ, ଅସ୍ୱାଦ, ନିର୍ଭୀକତା, ଧର୍ମଗତ ସହିଷ୍ଣୁତା, ସ୍ୱଦେଶୀ ଓ ସ୍ପର୍ଶଭାବନା ଆଚରଣ କରି ଶରୀର, ମନ ଓ ଆତ୍ମାକୁ ଶୁଦ୍ଧ କରନ୍ତୁ ।

୧୭. ପ୍ରତ୍ୟେକେ ବାଣ୍ଟ ଦେଇ କୋଠପାଣ୍ଠି ଗଢନ୍ତୁ ।

୧୮. ସ୍ୱଦେଶୀ ବିଚାର ଜାଣିବା ପାଇଁ ''ସର୍ବୋଦୟ'' ପତ୍ରିକା ନିୟମିତ ପଢନ୍ତୁ । ମ୍ୟାନେଜରର 'ସର୍ବୋଦୟ', ବାଖରାବାଦ, କଟକ-୨କୁ ତିରିଶ ଟଙ୍କା ପଠାଇ ବାର୍ଷିକ ଗ୍ରାହକ ହୋଇଯା'ନ୍ତୁ ।

ସ୍ୱଦେଶୀ ଆଚରଣ ଦ୍ୱାରା ବେକାରୀ କମିମ, ଉତ୍ପାଦନ ବଢିବ, ଋଣଗ୍ରସ୍ତ ହେବାନାହିଁ, ସମାଜ ଓ ଶାସନରୁ କଳୁଷକଲ୍ମଷ ଦୂର ହେବ, ଦରଦାମ୍ ସ୍ଥିର ରହିବ, ମୁଦ୍ରାସ୍ଫୀତି କମିବ ।

(ସର୍ବୋଦୟ ମେଳା, ପୁରୀ)

# ଠକାମି କାରବାର ଓ ତା'ର ପ୍ରତିକାର

୧୯୯୨ରେ ଭାରତ ସରକାର ୭୩ାକ ସଂବିଧାନ ସଂଶୋଧନ କରି ପଞ୍ଚାୟତିରାଜ ବ୍ୟବସ୍ଥାକୁ ସଂବିଧାନରେ ସ୍ଥାନ ଦେଲେ । ଗ୍ରମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦର ନିର୍ବାଚନ ପ୍ରତି ପାଞ୍ଚ ବର୍ଷରେ ନିୟମିତ କରାଯିବାର ବିଧାନ ହେଲା ଓ ପଞ୍ଚାୟତ ହାତକୁ ଦିଆଯାଇଥିବା 'ଅଧିକାର'ର ଏକ ଲମ୍ବା ତାଲିକା ସମ୍ବିଧାନରେ ଯୋଡ଼ା ହେଲା । ପୂର୍ବରୁ କେନ୍ଦ୍ର ଓ ରାଜ୍ୟମାନଙ୍କ ହାତରେ କି. କି. ବିଷୟର ଦାୟିତ୍ୱ ଓ ଅଧିକାର ରହିବ ଓ କେଉଁ ସବୁ ବିଷୟରେ କେନ୍ଦ୍ର ଓ ରାଜ୍ୟ ସରକାର ଉଭୟେ ଆଇନ୍ ଗଢି ପାରିବେ ଓ କାମ କରିପାରିବେ ତାର ତିନୋଟି ତାଲିକା ସଂବିଧାନରେ ଥିଲା । ଏବେ ଏ ଚାରିକ ଯୋଡ଼ା ହେଲା । ମାତ୍ର ଏ ସଂବିଧାନ ସଂଶୋଧନ ଦ୍ୱାରା ପଞ୍ଚାୟତି ସଂସ୍ଥାମାନଙ୍କୁ କୌଣସି କ୍ଷମତା ଦିଆଯାଇ ନାହିଁ, ତାହା ରାଜ୍ୟ ସରକାରମାନଙ୍କ ଉପରେ ଛାଡ଼ି ଦିଆଯାଇଛି ।

ଏ ବାବଦରେ ରାଜ୍ୟ ସରକାରମାନେ ଯେଉଁସବୁ ପଞ୍ଚାୟତିରାଜ ଆଇନ କରିଥିଲେ ଓ ଏ ସମ୍ବିଧାନ ସଂଶୋଧନ ପରେ ଯେଉଁସବୁ ରାଜ୍ୟରେ ନୂଆ ଆଇନ ହୋଇଛି ସେଥିରେ ପଞ୍ଚାୟତ ସଂସ୍ଥାମାନଙ୍କୁ ଓ ଖାସ କରି ଗ୍ରାମପଞ୍ଚାୟତକୁ ପ୍ରକୃତ କ୍ଷମତା ପ୍ରାୟ କିଛି ଦିଆଯାଇ ନାହିଁ । ସେମାନଙ୍କର ନିଜସ୍ୱ କୌଣସି ସମ୍ବଳ ନାହିଁ ଯେ ସେମାନେ ନିଜ ଇଚ୍ଛା ଅନୁସାରେ କୌଣସି କାମ କରିପାରିବେ । ଦେଶର, ଗାଁମାନଙ୍କର ସମସ୍ତ ଧନ ଓ ସମ୍ବଳ ସରକାର ଓ ପୁଞ୍ଜିପତି ପୋଛି ପୋଛି ନେଇ ଯାଉଛନ୍ତି । ପୁଞ୍ଜିପତିମାନେ ଯାହା ନେଇଛନ୍ତି ସେସବୁ ସେମାନଙ୍କ ସମ୍ପତ୍ତି ବଢାଇବାରେ ଓ ବିଳାସବ୍ୟସନରେ ଯାଉଛି । ସରକାର ଯାହା ନେଉଛନ୍ତି ତାର ଶତକଡ଼ା ଅଶୀ ଭାଗ ସରକାର କରିଥିବା ଋଣ ଓ ତାର ସୁଧ ପଇଠ କରିବା, ସୁରକ୍ଷା ବାହିନୀ, ଅମଲାତନ୍ତ୍ର ହାକିମ ଓ ମନ୍ତ୍ରୀମାନଙ୍କ ପିଛା ଖର୍ଚ୍ଚ ହେଉଛି । ବାକୀ ଗାଁ ଓ ଗରିବ ଲୋକଙ୍କ ପାଇଁ ଯାହା ବଳୁଛି ସେଥିରୁ 'ଉନ୍ନୟନ' ଯୋଜନାମାନଙ୍କର ଅମଲାତନ୍ତ୍ରକୁ ପୋଷିବାରେ ଓ ଚୋରୀରେ ୮୦-୮୫ ଭାଗ ଗଲା ପରେ ଗାଁରେ ପହଞ୍ଚୁଛି ୧୫-୨୦ ଭାଗ । ଅର୍ଥାତ୍ ଗାଁରୁ ସରକାର ହଜାରେ ଟଙ୍କା ନେଲେ ସେଥିରୁ ଫେରୁଛି ମାତ୍ର ୪୦-୫୦ ଟଙ୍କା ବା ଆହୁରି କମ୍ । ଏଇ ପଇସା ପୁଣି ରାଜ୍ୟ ବା କେନ୍ଦ୍ର ସରକାରର ଯୋଜନା ଆକାରରେ ପୁଡ଼ିଆ ବନ୍ଧା ହୋଇ ଆସିବ । ଗ୍ରାମପଞ୍ଚାୟତ କେବଳ ତାକୁ ଠିକାଦାର ଭାବରେ କାର୍ଯ୍ୟକାରୀ କରିବାର ଅଧିକାର ପାଇଛନ୍ତି ।

ପଞ୍ଚାୟତ ଯେଉଁ ବଜେଟ ପାସ୍ କରିବ ତାକୁ ଜିଲ୍ଲାପାଳ ମଞ୍ଜୁର କଲେ ଯାଇ ତାହା କାର୍ଯ୍ୟକାରୀ

ହେବ । [illegible]କୁ ସରକାର କୌଣସି ଏକ କାରଣ ଦର୍ଶେଇ ଭାଙ୍ଗି ଦେଇପାରିବେ । ପୂର୍ବେ ଏପରି ଭାଙ୍ଗି ଦେଇ ଦଶ ଦଶ ବର୍ଷ ଯାଏ ନୂଆ ପଞ୍ଚାୟତର ନିର୍ବାଚନ ହେଉ ନ ଥିଲା । ଏବେ ଛଅ ମାସରେ ଅବଶ୍ୟ ହେବ, ଏତିକି ଉନ୍ନତି ହେଇଛି ।

ଏଇ ପିଲା ଭଣ୍ଡେଇବା ବ୍ୟବସ୍ଥାକୁ ମହାତ୍ମା ଗାନ୍ଧୀଙ୍କର ଗ୍ରାମସ୍ୱରାଜ୍ୟ ବୋଲି ବହୁତ ଜୋର୍‌ସୋର୍‌ରେ ପ୍ରଚାର କରାଯାଉଛି । ଏବେ କଳାହାଣ୍ଡି ଜିଲାରେ କାମ କରୁଥିବା 'ବିଶ୍ୱାସ' ନାମକ ସଂସ୍ଥା ଦ୍ୱାରା ପ୍ରକାଶିତ ଏକ ପୁସ୍ତିକା ଆମର ହସ୍ତଗତ ହୋଇଛି । ଏହାର ମଲାଟ ଉପରେ ଗାନ୍ଧୀଙ୍କ ଛବି ଓ ବାଣୀ ଦିଆଯାଇଛି । ୭୩କ ସମ୍ବିଧାନ ସଂଶୋଧନ ଦ୍ୱାରା ମହାତ୍ମା ଗାନ୍ଧୀଙ୍କ 'ପଞ୍ଚାୟତ ରାଜ' ଲକ୍ଷ୍ୟ ସାଧିତ ହେଲା ବୋଲି କୁହାଯାଇଛି । ଏହାଠାରୁ ବଡ଼ ଠକାମି ଆଉ କିଛି ନାହିଁ ।

ଗାନ୍ଧୀଜୀଙ୍କ ଗ୍ରାମସ୍ୱରାଜ୍ୟ ଓ ଏଇ ବ୍ୟବସ୍ଥା ଭିତରେ ସେତିକି ପ୍ରଭେଦ ଯେତିକି ଜୀଅନ୍ତା ମଣିଷ ଓ କାଠ ପିତୁଳା ଭିତରେ । ଗ୍ରାମସ୍ୱରାଜ୍ୟରେ ପ୍ରତ୍ୟେକ ଗାଁ ନିଜର ସମସ୍ତ କାମ ନିଜେ ତୁଲାଇବ । କୃଷି ଯୋଜନା, ଗ୍ରାମଶିଳ୍ପର ବିକାଶ, ଶିକ୍ଷା, ସ୍ୱାସ୍ଥ୍ୟ, ନ୍ୟାୟ ବିଚାର, ଶାନ୍ତିରକ୍ଷା ଆଦି ସବୁ । ଖାସ କରି ଗାଁର ଜମି, ଜଙ୍ଗଲର ଓ ଜଳଭଣ୍ଡାରର ସୁରକ୍ଷା ଓ ସୁବ୍ୟବସ୍ଥାର ଦାୟିତ୍ୱ ଗାଁ ହାତରେ ଅର୍ଥାତ୍ ଗାଁର ସମସ୍ତ ସାବାଳକ ଲୋକଙ୍କୁ ନେଇ ଗଢା ଗ୍ରାମସଭା ହାତରେ ରହିବ । ଦେଶର ଖଜଣା ଟିକସ ବ୍ୟବସ୍ଥା ଏପରି ବଦଳାଯିବ ଯେ ଗାଁମାନେ ହିଁ ଅଧିକରୁ ଅଧିକ ଆର୍ଥିକ ସମ୍ବଳ ସଂଗ୍ରହ କରିବେ ଓ ଓଲଟା ରାଜ୍ୟ ଓ କେନ୍ଦ୍ରମାନଙ୍କୁ ଗାଁମାନେ ଅନୁଦାନ ବା ଭାଗ ଦେବେ । ଇଂରେଜ ଆସିବା ପୂର୍ବରୁ ଯେଉଁ ଗ୍ରାମ ବ୍ୟବସ୍ଥା ଥିଲା, ସେଥିରେ ଗାଁ ନିଜ ସମ୍ବଳ ଆଦାୟ କରି ତାର ଅଳ୍ପ ଅଂଶ ଉପରିସ୍ଥ ରାଜ୍ୟ ଶାସନକୁ ଦେଉଥିଲେ । ଏହିପରି ବ୍ୟବସ୍ଥାରେ ହୁଏତ ୮୦ ଭାଗ ସମ୍ବଳ ଗାଁରେ ରହିବ ଓ ୨୦ ଭାବ ଉପରକୁ ଯିବ ।

ଗ୍ରାମସଭା ହେବ ଗାଁର ସରକାର । ଗ୍ରାମସଭା ଗଢି ନିଜର କାରବାର ନିଜେ ଚଳାଇବା ଗ୍ରାମବାସୀଙ୍କର ଜନ୍ମସିଦ୍ଧ ଅଧିକାର । ସରକାର ପଲ୍ଲୀସଭା ବା ଗ୍ରାମସଭା ଗଢିବାକୁ ସ୍ଥିର କରିଛନ୍ତି ବୋଲି ଯେ ଡ଼ିଣ୍ଡିମ ବଜାଇ ବାହାଦୁରି ନେଉଛନ୍ତି ସେ କଥା କହିବାକୁ ସେ କିଏ ? ହଁ ଦିଲ୍ଲୀରେ ଆଇନ ଗଢା ହୋଇ ସଂବିଧାନରେ ଗ୍ରାମସଭାମାନଙ୍କର ସ୍ଥିତି ଓ ଅଧିକାର ଲିପିବଦ୍ଧ ହେବ । ମାତ୍ର ଆଇନ ହେଲେ ଗ୍ରାମସଭା ଗଢା ହେବା କଥା ଯେ ହେଉଛି ତାର ଓଲଟା ହେବା ଚାହି । ଲୋକେ ଗ୍ରାମସଭା ଗଢିବେ ଓ ଆଇନ ତାକୁ ଲିପିବଦ୍ଧ କରିବ । ଯେମିତି ଗୋଟିଏ ପରିବାରକୁ ସରକାର ଆଇନ କରି ଗଢୁନାହିଁ ବା ଗଢିବାର ଅନୁମତି ଦେଉନାହିଁ, ରେଶନ୍‌କାର୍ଡ ତିଆରି ବା ଇତ୍ୟାଦି ସମ୍ପତ୍ତି ରେକର୍ଡଭୁକ୍ତ କରିବାବେଳେ ପରିବାରମାନଙ୍କୁ ମାନି ନିଆଯାଉଛି, ପରିବାର ଭଳି ଗାଁ ଓ ତାର ଗ୍ରାମସଭା ମଧ୍ୟ ଏକ ସ୍ୱାଭିବିକ ସଙ୍ଗଠନ, ଏକକ । ତାକୁ ଭାଙ୍ଗିବା ଗଢିବା ଅଧିକାର ବାହାରର କାହାରି, ବ୍ରହ୍ମାବିଷ୍ଣୁଙ୍କର ବି, ନାହିଁ । ସେ ସବୁର ସଦସ୍ୟମାନେ ନିଜେ ଚାହିଁଲେ ଭିନେ ହେବେ । ସେ କଥା ଅଲଗା ।

୭୩କ ସଂବିଧାନ ସଂଶୋଧନ ଓ ରାଜ୍ୟର ପଞ୍ଚାୟତ ଆଇନ୍ ଏହି ସବୁଠାରୁ ଲକ୍ଷେ ଯୋଜନ ଦୂରରେ । ଭାରତରେ ସ୍ୱାଧୀନତା ଆନ୍ଦୋଳନ ଜୋରଦାର ହୋଇ ଚାଲିଲାରୁ ଇଂରେଜମାନେ ଭାରତବାସୀଙ୍କୁ ଭଣ୍ଡାଇବା ପାଇଁ ୧୯୦୯ରେ, ପୁଣି ୧୯୧୯ରେ ଓ ୧୯୩୫ରେ ଭାରତ ଶାସନ ଆଇନମାନ ଗଢିଥିଲେ । ସେଥିରେ ଭୋଟ ଦ୍ୱାରା ପ୍ରତିନିଧି ନିର୍ବାଚନ, ପ୍ରଦେଶ ଓ କେନ୍ଦ୍ରରେ ବିଧାନସଭାମାନଙ୍କରେ ଆଲୋଚନା ଓ ଆଇନପ୍ରଣୟନ ଆଦି ଗଣତନ୍ତ୍ରର ସବୁ ବାହାରିଆ ଥାଟ ଥିଲା । ମାତ୍ର ଅସଲ କଥା, କ୍ଷମତା ହସ୍ତାନ୍ତର ଆଦୌ ନ ଥିଲା । ବିଧାନସଭା ଆଇନ୍ ପାସ୍ କରିବ ମାତ୍ର ତାକୁ ବଡ଼ଲାଟ ବା ପ୍ରାଦେଶିକ ଲାଟ ମଞ୍ଜୁର ନ କରିବେ ତ ତାହା ଅକାମୀ ହୋଇ ରହିବ ।

ଏ ପିଲା ଭଣ୍ଡାଇବା ବ୍ୟବସ୍ଥାକୁ ମହାତ୍ମା ଗାନ୍ଧୀଙ୍କ ପରାମର୍ଶ ଅନୁସାରେ ୧୯୨୧ରେ କଂଗ୍ରେସ ବର୍ଜନ କରିଥିଲା । ୧୯୩୭ ବେଳକୁ ସ୍ୱାଧୀନତା ଆନ୍ଦୋଳନ ବେଶ୍ ଶକ୍ତିଶାଳୀ ହୋଇ ଜନଜାଗରଣ ଆସିଥିବାରୁ କଂଗ୍ରେସ ନିର୍ବାଚନ ଲଢ଼ି ସାତଟା ପ୍ରଦେଶରେ ସଂଖ୍ୟାଧିକ ଲାଭ କଲା, ମାତ୍ର ଆଗେ ଇଂରେଜ ସରକାରଙ୍କ ଠାରୁ ଏ ପ୍ରତିଶ୍ରୁତି ହାସଲ କଲା ଯେ ପ୍ରାଦେଶିକ ଲାଟମାନେ ମନ୍ତ୍ରୀମଣ୍ଡଳର ନିଷ୍ପତ୍ତିରେ କୌଣସି ପ୍ରକାର ହସ୍ତକ୍ଷେପ କରିବେ ନାହିଁ ଓ ତାହା ପରେ ଯାଇ ଶାସନ ଭାର ହାତକୁ ନେଲା । ମାତ୍ର ୧୯୩୯ରେ ଭାରତବାସୀଙ୍କ ମତ ନ ନେଇ ଇଂରେଜ ସରକାର ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତକୁ ନିଜ ପକ୍ଷଭୁକ୍ତ କରିନେବାରୁ ମନ୍ତ୍ରୀମଣ୍ଡଳ ମାନେ ଇସ୍ତଫା ଦେଇଦେଲେ । ଏବେ ଏ ୭୩କ ସମ୍ବିଧାନ ଦ୍ୱାରା ଲୋକଙ୍କୁ ସେହିପରି ଭଣ୍ଡେଇବା ଚେଷ୍ଟା ହେଉଛି ।

ଆମ ଓଡ଼ିଆରେ ଗୋଟାଏ ଢଗ ଅଛି-

କରଣ ସାଆନ୍ତ ଢମ, ଉଖୁଡ଼ା ହାଣ୍ଡିକ ଛଅଣା ପଇସା ଚାରି ପାଣ କୋଟି କମ । ଆଜିକାଲି ବ୍ୟବସାୟୀମାନେ ନିରସ ଓ ଭେଜାଲ ମାଲକୁ ରଙ୍ଗରଙ୍ଗିଆ ଡବାରେ ପୂରେଇ ଚଢ଼ା ଦାମ୍‌ରେ ବିକ୍ରି କରନ୍ତି । ଏ ୭୩ ସଂବିଧାନ ସେମିତି ଠକାମି କାରବାର । ଗାଁ ଲୋକଙ୍କୁ ଯେ ପ୍ରକୃତରେ କିଛି ଅଧିକାର ଦିଆ ହେଇନାହିଁ ତାର ପ୍ରମାଣ ଆପଣ ଚାରିଆଡ଼କୁ ଆଖି ବୁଲେଇଲେ ପାଇବେ ।

କାଶିପୁର (କୋରାପୁଟ ଜିଲ୍ଲା) ଅଞ୍ଚଳରେ ଏଲୁମିନିୟମ୍ କାରାଖାନା ହେବ ବୋଲି ପଚିଶ ତିରିଶ ଖଣ୍ଡ ଗାଁକୁ ଉଠାଇ ଦିଆଯିବା ପାଇଁ ରାଜ୍ୟସରକାର ଠିକ କରିଛି । ଗାଁ ଲୋକଙ୍କୁ ପଚାରିବା ଦରକାର ମନେ କରାଯାଉ ନାହିଁ । ଅନାବାଦୀ ଜମି ଯାହା ଗାଁ ଲୋକଙ୍କର, ତାକୁ ସରକାରୀ ଜମି କହି କଳାହାଣ୍ଡି ରେ ଏକ ଚିନିକଲ କମ୍ପାନୀକୁ ସରକାର ଦେଇ ଦେଇଛି । ଯାଜପୁର ଜିଲ୍ଲାର ସୁକିନ୍ଦା ଅଂଚଳରେ ଏକ ଲୁହା କାରଖାନା ପାଇଁ ୧୫-୧୭ ଖଣ୍ଡ ଗାଁକୁ ଉଠେଇ ଦେବା ସ୍ଥିର ହୋଇଛି । ମୋଟ ଉପରେ ଲୋକଙ୍କୁ ଜନ୍ଦା ପିମ୍ପୁଡ଼ି ଭଳି ଓଟେଇ ସଫା କରିଦେଇ ସରକାର ଓ କମ୍ପାନୀମାନେ ଜମି ଦଖଲ କରୁଛନ୍ତି । ଜଙ୍ଗଲ ସବୁ ବଡ଼ ବଡ଼ କମ୍ପାନୀକୁ ପଟା ଦେଇଦେବା ଯୋଜନା ହେଉଛି । ଏବେ ବି ଜଙ୍ଗଲ ଉପରେ ଜୀବିକା ପାଇଁ ନିର୍ଭର କରୁଥିବା ଆଦିବାସୀଙ୍କୁ ତାହା ଭିତରେ ପ୍ରବେଶ ନିଷିଦ୍ଧ ହେଲାଣି । ଠିକାଦାର ଓ ବେପାରୀମାନେ ମନ୍ତ୍ରୀ ଓ ହାକିମଙ୍କୁ ଲାଞ୍ଚ ଦେଇ ନିର୍ବିଘ୍ନରେ ମୂଲ୍ୟବାନ ଜଙ୍ଗଲରୁ କାଠ ଚୋରିରେ ଲାଗିଛନ୍ତି । ଗାଁ ଲୋକେ ମୂକ ଦର୍ଶକ ହୋଇ ରହିଛନ୍ତି ।

ସବୁ ବ୍ୟବସ୍ଥାରେ 'ଘରୋଇକରଣ' ହେବା ବେଳକୁ ଭାରତ ସରକାର ଜଳଭଣ୍ଡାର ସବୁକୁ ରାଷ୍ଟ୍ରୀୟକରଣ କରି ଦେଲେଣି । ନଈ, ନାଳ, ବନ୍ଧ ଆଦିର ପାଣି ଆଉ ସେଠା ଲୋକଙ୍କର ନୁହେଁ । ସରକାର ତାକୁ ଯେମିତି ଚାହିଁବେ ବ୍ୟବହାର କରିବେ । ଗୋଆ, କେରଳ ପ୍ରଭୃତି ରାଜ୍ୟରେ କୋଟିପତି ବିଦେଶୀ ପର୍ଯ୍ୟଟକଙ୍କର ସୌକ ପାଇଁ ହଜାର ହଜାର ଏକର ଜମିରେ ଗଲ୍‌ଫ ଖେଳ ପଡ଼ିଆ କମ୍ପାନୀମାନେ ତିଆରୀ କରିଛନ୍ତି । ସେଥିରେ ଅଜସ୍ର ପାଣି ପ୍ରତିଦିନ ଛିଞ୍ଚି ସେ ସବୁକୁ ସୁଶ୍ୟାମଳ କରି ରଖାଯାଉଛି । ସରକାରୀ ଜଳସେଚନ ବିଭାଗ ଚାଷଜମିକୁ ପାଣି ନ ଦେଇ ଏସବୁକୁ ପାଣି ଯୋଗାଉଛନ୍ତି । ଗଲଫ ପଡ଼ିଆ ମାଲିକ ପାଣି ପାଇଁ ଚଢ଼ା ଦାମ ଦେଇପାରିବ । ତେଣୁ ସେ ପାଇବ ପାଣି, ଚାଷୀ ଏତେ ପଇସା ନ ଦେଇ ପାରିବ ତ ପାଣି କାହିଁକି ପାଇବ ? ସେହିପରି ବମ୍ବେ ସହରରେ ବଡ଼ ବଡ଼ କାରଖାନାମାନେ ବେଶୀ ପାଣି ପାଉଛନ୍ତି । ସହରବାସୀ ଦିନକୁ ମାତ୍ର ଘଣ୍ଟାଏ ଦେଢ଼ ଘଣ୍ଟା ପାଣି ପାଇପାରୁଛନ୍ତି ।

ପଞ୍ଚାୟତକୁ ଗ୍ରାମଶିଳ୍ପର ବିକାଶ କରିବା କ୍ଷମତା ଦେବା କଥା କୁହାଯାଉଛି, ତେଣେ ତନ୍ତି, ତେଲି, ଲୁଣମରାଳୀ, ମାଛଧରାଳୀ, ଗୁଡ଼ ରନ୍ଧାଳୀ, ପଇଡ଼ ବିକାଳୀ, ବଣିଆ, ମୋଚି, ଦର୍ଜୀ ଆଦିଙ୍କ ଧନ୍ଦା ବୁଡ଼ାଇବା ଚକ୍ରାନ୍ତ ଚାଲିଛି । ସୂତା ବିଦେଶରେ ଚଢ଼ା ଦାମରେ ବିକ୍ରି

ହେଉଥିବାରୁ ତଡ଼ିଙ୍କ ହାତ ବନ୍ଦ କରି ରପ୍ତାନୀ କରାହେଉଛି । ବଡ଼ କମ୍ପାନୀମାନଙ୍କୁ ପୋଷିବା ପାଇଁ ସାଦା ଲୁଣ ନିଷିଦ୍ଧ କରି ଆଇଡ଼ିନ ମିଶା ଲୁଣର ପ୍ରସାର କରାଯାଉଛି । କେତେ ଜାଗାରେ କେବଳ ଚିନି କଳକୁ ଆଖୁ ବିକିବାକୁ ଗୁଡ଼ ରନ୍ଧା ଉପରେ ନିଷେଧାଜ୍ଞା ଜାରି କରାହେଇଛି । ଚାଷୀ କେବଳ ଚାଉଳ କଳକୁ ଧାନ ବିକିବ ବୋଲି ହୁକୁମ ଜାରି ହୋଇଛି । ଏସବୁ କଣ ଗ୍ରାମସ୍ୱରାଜର ଲକ୍ଷଣ ? ଗାଁକୁ କ୍ଷମତା ଦେବାର ସୂଚନା ? ପଞ୍ଚାୟତମାନେ ଏ ବିଷୟରେ କିଛି କରିପାରିବେ ? ଗାଁ ଗାଁରେ ବିଲାତି ମଦ ଦୋକାନ ଖୋଲିବାର ଯୋଜନା ସରକାରର ଅଛି । ପଞ୍ଚାୟତ ନିଜ ଅଞ୍ଚଳରୁ ଏ ଭଳି ଦୋକାନ ଉଠେଇ ଦେଇ ପାରିବେ ?

ଅସଲ କଥା ଗାଁ ଓ ଗରିବ ଲୋକଙ୍କୁ ଶୋଷଣ କରି ଟଙ୍କାର କାଣ୍ଡି ମାରୁଥିବା ଧନୀ ପୁଞ୍ଜିପତିଙ୍କର ଆଶ୍ରିତ, ଦୁର୍ନୀତିରେ ବୁଡ଼ିଥିବା ଓ ଗଣତନ୍ତ୍ରକୁ ଧ୍ୱଂସ କରିବାରେ ଲାଗିଥିବା ବିଭିନ୍ନ ଦଳର ସରକାରଙ୍କଠାରୁ ଅଧିକ କଣ ଆଶା କରାଯାଇପାରେ ? ଭାରତ ସରକାର ନିଜ ହାତରେ ସବୁ କ୍ଷମତା ରଖିବା ପାଇଁ ରାଜ୍ୟ ସରକାରମାନଙ୍କ କ୍ଷମତା ସବୁ ମଧ କାଢ଼ି ନେଲେଣି । ସେ ଗାଁକୁ କି କ୍ଷମତା ଦେବେ ? ବୋଫର୍ସ, ପ୍ରତିଭୂତି କେଲେଙ୍କାରୀ ଆଦିର ଭୟଙ୍କର ଦୁର୍ନୀତିକୁ ଯେ ଘଣ୍ଟ ଘୋଡ଼ାଉଛନ୍ତି ସେମାନେ କି ଗଣତନ୍ତ୍ର ଚଳାଇବେ ? ଦଶ ଟଙ୍କିଆ ନୋଟକୁ ଶହେ ଟଙ୍କିଆ କରିଦେବାର ଲୋଭ ଦେଖାଇ ନିରୀହ ଲୋକଙ୍କୁ ଠକୁଥିବା ଧପ୍‌ପାବାଜ ଯେତିକି ବିଶ୍ୱାସଯୋଗ୍ୟ ଏମାନେ ମଧ ସେତିକି । ଏ ଅବସ୍ଥାରେ ଲୋକେ କରିବେ କଣ ?

୧୯୩୭ରେ କଂଗ୍ରେସ ଇଂରେଜଙ୍କର ଠକେଇ ଭାରତ ଶାସନ ଆଇନ ଅନୁସାରେ ନିର୍ବାଚନ ଲଢ଼ି ମନ୍ତ୍ରୀମଣ୍ଡଳ ଗଢ଼ିବା ପରି ଲୋକେ ଏ ପଞ୍ଚାୟତିରାଜ ଭିତରେ ପଶନ୍ତୁ । ଲୋକେ ଏକାଠି ବସି ନିଜର ସଚ୍ଚୋଟ ଓ କର୍ମଠ ପ୍ରାର୍ଥୀ ବାଛି ଓ୍ୟାର୍ଡ଼ମେମ୍ବର, ସରପଞ୍ଚ ଆଦି ଆସନରେ ବସାନ୍ତୁ । ଗ୍ରାମସଭା ଗଢ଼ି ଗାଁର କାରବାର ନିଜ ହାତକୁ ନିଅନ୍ତୁ । ଗାଁର ଯାହା ଜନ୍ମଗତ ଅଧିକାର, ଯଥା ଗାଁର ଜଳ, ଜଙ୍ଗଲ ଓ ଜମି ଉପରେ, ତାକୁ ସାବ୍ୟସ୍ତ କରନ୍ତୁ । ଗାଁର ଅନାବାଦୀ, ଗୋଚର, ଜଙ୍ଗଲ ଆଦିର ରକ୍ଷଣାବେକ୍ଷଣ ଓ ଉନ୍ନତିର ଦାୟିତ୍ୱ ଗ୍ରାମସଭା ନିଅନ୍ତୁ । ଏ ଅଧିକାର ସାବ୍ୟସ୍ତ କରିବା, ତାର ପ୍ରତିରୋଧ କରିବା ପାଇଁ ପ୍ରସ୍ତୁତ ହୁଅନ୍ତୁ ।

ସରକାରଙ୍କୁ ଓ ସମସ୍ତଙ୍କୁ ଜଣେଇ ଦିଅନ୍ତୁ ଯେ ଗ୍ରାମସଭାର ବିନା ପରାମର୍ଶ ଓ ବିନାନୁମତିରେ ଗାଁରେ ବ୍ଲକ ବା ସରକାର କୌଣସି ଯୋଜନା କାର୍ଯ୍ୟକାରୀ କରିପାରିବେ ନାହିଁ । ଏବଂ ଗ୍ରାମସଭା ଯାହାକୁ ମଞ୍ଜୁରି ଦେବ ସେ କାମ ଗ୍ରାମସଭାର ତତ୍ତ୍ୱାବଧାନରେ ହେବ । ଗାଁ ଜଙ୍ଗଲକୁ ବଢେଇବ ଓ ସେଥିରେ ଠିକାଦାର ଓ ଅନ୍ୟ ବାହାର ଲୋକଙ୍କୁ ପୂରାଇ ଦେବ ନାହିଁ । ଗାଁକୁ ଆସୁଥିବା ସରକାରୀ କର୍ମଚାରୀଙ୍କ ସହିତ ଯାହା କିଛି ବାର୍ତ୍ତାଳାପ ତାହା ଗ୍ରାମସଭାର ଅଧିକାର ପ୍ରାପ୍ତ ପ୍ରତିନିଧି କରିବେ, ଯେ ଇଚ୍ଛା ସେ ନୁହେଁ ।

ଗାଁ ଗ୍ରାମଶିଳ୍ପର ବିକାଶ କରି ସମସ୍ତଙ୍କୁ କାମ ଯୋଗାଇବା ଯୋଜନା କରିବେ । ସେ ସବୁ ଶିଳ୍ପର ସୁରକ୍ଷା କରିବେ । ତନ୍ତୀମାନଙ୍କୁ କାମ ଯୋଗାଇବାକୁ ଗାଁରେ ସୂତା କଟାଇବେ, କଳ ଲୁଗା ବର୍ଜନ କରି ଏହି ଖଦୀ ସମସ୍ତେ ପିନ୍ଧିବେ । ଚିନି ବର୍ଜନ କରି ଗୁଡ଼ ତିଆରି ଓ ବ୍ୟବହାର କରିବେ । ଗୁଡ ରନ୍ଧା ଉପରେ କଟକଣା ଥିବ ତ ତାକୁ ଅମାନ୍ୟ କରିବେ । କେବଳ ଚାଉଳ କଳକୁ ଧାନ ବିକିବାର ନିୟମ ଥିବ ତ ତାକୁ ଉଠେଇ ଦେବାର ଦାବୀ କରିବେ ଓ ଦରକାର ହେଲେ ସେ କଟକଣା ନ ମାନି ଧାନ ଚାଉଳ କିଣାବିକା କରିବେ ।

ଗାଁ କଳି ଗାଁରେ ତୁଟାଇବେ । ଗାଁ ସ୍କୁଲରେ ଯେପରି ଠିକ୍ ପାଠପଢ଼ା ହୁଏ, ପିଲାମାନେ ନୀତିମାନ ହୁଅନ୍ତି ତାହା ଦେଖିବେ । ଗାଁକୁ ସଫାସୁତୁରା ରଖିବେ ଓ ଅଳିଆରୁ ଉତ୍କୃଷ୍ଟ ଖତ ତିଆରି କରି ବିଲାତୀ ସାରକୁ ବର୍ଜନ କରିବେ । ଗାଁ ବିହନର ସୁରକ୍ଷା କରିବେ । କମ୍ପାନୀ

ବିହନ ପାଇରେ ପଡ଼ି ସେମାନଙ୍କ ଗୋଲମମୀ ଡ଼ାକି ଆଣିବେ ନାହିଁ ।

ଏହିପରି ଗାଁର ଓ ପଡ଼ିଶା ଗାଁମାନଙ୍କର କଲ୍ୟାଣ ପାଇଁଯାହା ଆବଶ୍ୟକ ତାହା କରିଯିବେ । ମାତ୍ର ଦିଲ୍ଲୀ ଓ ଭୁବନେଶ୍ୱରରେ ଗାଁମାନଙ୍କୁ ଉଜାଡ଼ିବାରେ, ଲୋକଙ୍କୁ କାଙ୍ଗାଳ କରିବାରେ ମାତିଥିବା ଲୋକଙ୍କର ଶାସନ ଚାଲିଥିବ ଓ ଗାଁମାନେ ସ୍ୱୟଂସବଳ ହୋଇ ବଞ୍ଚିବେ ଏହା ହୋଇପାରିବ ନାହିଁ । ''ଗାଁରେ ଆମେ ସରକାର, ରାଜଧାନୀରେ ଆମ ସରକାର ।'' ଏହି ନୀତିକୁ କାର୍ଯ୍ୟକାରୀ କରିବା ପାଇଁ ପ୍ରତି ନିର୍ବାଚନ ମଣ୍ଡଳୀର ଲୋକେ ସଂଗଠିତ ହୋଇ ନିର୍ବାଚନମାନଙ୍କରେ ଆପଣାର ସତ୍, କର୍ମଠ, ବୁଦ୍ଧିମାନ ଓ ଦଳମାନଙ୍କର ପାଇରେ ନ ପଡ଼ିବା ପ୍ରାର୍ଥୀ ଛିଡ଼ା କରି ଓ ଜିତାଇ ଦିଲ୍ଲୀ ଓ ଭୁବନେଶ୍ୱରରେ ଚାଷୀ, ମୂଲିଆ ଓ କାରିଗରଙ୍କର ପ୍ରକୃତ ପ୍ରତିନିଧିଙ୍କ ସରକାର ଗଢି ବର୍ତ୍ତମାନର ସାରା ବ୍ୟବସ୍ଥାକୁ ଓଲଟାଇବାକୁ ହେବ । ଏହିପରି ଭାବରେ ଲୋକେ ପଞ୍ଚାୟତିରାଜର ସରକାରୀ ବ୍ୟବସ୍ଥାକୁ ଦଖଲ କରି ନିଜ କାମରେ ଲଗାଇ ପାରିବେ ।

**ମନମୋହନଚୌଧୁରୀ, ଜାନୁୟାରୀ - ୧୯୯୬**

# ନାଗପୁର ଝଣ୍ଡା ସତ୍ୟାଗ୍ରହ

**ଶ୍ରୀ ଚନ୍ଦ୍ର ଶେଖର ଛାୟଳ**

୧୯୪୨ ଅଗଷ୍ଟ ୮ ତାରିଖରେ ଭାରତରୁ ଇଂରେଜ ଶାସନର ଚୂଡ଼ାନ୍ତ ଅପସାରଣ ଦାବୀ କରି ଯେଉଁ ଜାତୀୟ କଂଗ୍ରେସ ''ଭାରତ ଛାଡ଼'' ଆହ୍ୱାନ ଦେଇଥିଲେ, ସେହି କଂଗ୍ରେସର ସ୍ଥାପନା ମୂଳରେ ଜଣେ ସ୍ୱାଧୀନଚେତା ବ୍ରିଟିଶ୍ ପ୍ରଶାସକ ମିଃ ହ୍ୟୁମ୍‌ଙ୍କର ପ୍ରେରଣା ଥିଲା, ଏହା ବାସ୍ତବିକ ବଡ଼ ବିଚିତ୍ର ମନେହୁଏ । ତାଙ୍କରି ପ୍ରେରଣାରେ ୧୮୮୫ ଡ଼ିସେମ୍ବର ୨୮ ତାରିଖରେ ବମ୍ବେ ନଗରୀରେ ୭୨ ଜଣ ପ୍ରତିନିଧିଙ୍କୁ ନେଇ ଶ୍ରୀ ଉମେଶ ଚନ୍ଦ୍ର ବାନାର୍ଜିଙ୍କ ସଭାପତିତ୍ୱରେ ଅଖିଳ ଭାରତ ଜାତୀୟ କଂଗ୍ରେସ ଜନ୍ମ ଲାଭ କରିଥିଲା । ସ୍ୱାଧୀନତା ନୁହେଁ, ଉଚ୍ଚ ଚାକିରୀରେ ଭାରତୀୟଙ୍କ ପ୍ରବେଶାଧିକାର ଥିଲା କଂଗ୍ରେସର ଲକ୍ଷ୍ୟ । ତେଣୁ, କଂଗ୍ରେସର ନିଜର ହୋଇ କୌଣସି ଜାତୀୟ ପତାକାର ପରିକଳ୍ପନା ନ ଥିଲା । ବିଲାତ ଦେଶର ପତାକା ୟୁନିୟନ ଜ୍ୟାକ୍‌କୁ ନିଜର ପତାକା ରୂପେ କଂଗ୍ରେସ ବରଣ କରିନେଇ ଥିଲେ ।

ଘଟଣାକ୍ରମେ ବହୁ ସ୍ୱାଧୀନତା ଲିପ୍ସୁ ନବ ଯୁବକ କଂଗ୍ରେସରେ ଯୋଗ ଦେଇ ସ୍ୱାଧୀନତା ପ୍ରାପ୍ତି ଲକ୍ଷ୍ୟରେ କଂଗ୍ରେସ ଆଭିମୁଖ୍ୟକୁ ପରିବର୍ତ୍ତନ କରିଥିଲେ ସତ, ମାତ୍ର ୟୁନିୟନ ଜ୍ୟାକ୍‌କୁ କଂଗ୍ରେସ ଛାଡ଼ି ପାରିଲା ନାହିଁ ।

## ସ୍ୱତନ୍ତ୍ର ପତାକା ପାଇଁ ବିଚାର

ବିଧାତାର ନିର୍ଦ୍ଦେଶରେ ଭାରତର ଅଗଣିତ ମୂକ ଦରିଦ୍ର ଜନସାଧାରଣଙ୍କ ଆଶା ଆକାଂକ୍ଷାର ପ୍ରତୀକ ରୂପେ ଭାରତ ରାଜନୈତିକ ଗଗନରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ରୂପେ ଉଦ୍‌ଭାସିତ ହେଲେ ଆମର ପରମ ପ୍ରିୟ ବାପୁଜୀ - ମହାତ୍ମା ଗାନ୍ଧୀ । ଦୃଷ୍ଟି ତାଙ୍କର ଥିଲା ସୁଦୂର ପ୍ରସାରୀ, ସହରରୁ ଗ୍ରାମ୍ୟାଭିମୁଖୀ । ଭାରତର ସାଢେ ୭ ଲକ୍ଷ ଗାଁ ଗହଳ କଂଗ୍ରେସ ମନ୍ତ୍ରରେ ସଂଜୀବିତ ନ ହେଲେ ଦୁର୍ଦ୍ଧର୍ଷ ଇଂରେଜ ଶାସନକୁ ହଟାଇବା ଅସମ୍ଭବ । ଏହି ଲକ୍ଷ୍ୟରେ ସେ କଂଗ୍ରେସକୁ ରୂପ ଦେବା ପାଇଁ ବଦ୍ଧ ପରିକର ହେଲେ । ଆମ ଗାଁ ଗହଳର କୋଟି କୋଟି ଜନତା କଂଗ୍ରେସ କଥା ବୁଝିବେ । କଂଗ୍ରେସ ମଧ୍ୟ ବର୍ତ୍ତିତାରେ ଜନନୀ ଜନ୍ମଭୂମିକୁ ଚିହ୍ନିବେ ଓ ଜନ୍ମଭୂମିର ଚଳନ୍ତି ପ୍ରତିମା ରୂପେ ଏକ ସ୍ୱତନ୍ତ୍ର ପତାକା ଉଡ଼ାଇବେ ତେବେ ଯାଇ କଂଗ୍ରେସ ସ୍ୱାଧୀନତା ଯୁଦ୍ଧ ଜିଣିବାର ପଥ ସୁଗମ ହେବ ।

## ପରମ୍ପରା ପ୍ରତି ସମ୍ମାନ

ସୁତରାଂ ସର୍ବୋଦୌ ଲୋଡ଼ା ପଡ଼ିଲା ଏକ ଜାତୀୟ ପତାକା । ''ୟଂ ଇଣ୍ଡିଆ'' ଜରିଆରେ ମହାତ୍ମାଜୀ ଜନମତ ଲୋଡ଼ିଲେ । ଶିଳ୍ପ, କଳାକାର, ଐତିହାସିକ ଓ ଦେଶ ଭକ୍ତମାନଙ୍କୁ ପତାକାର ରୂପରେଖ ଦେବାକୁ ଆହ୍ୱାନ କଲେ । ୧୮୫୭ ମସିହା ସିପାହୀ ବିଦ୍ରୋହର ସବୁଜ ଧ୍ୱଜା, ୧୯୦୮ ଅଗଷ୍ଟ ୧୮ ତାରିଖରେ ଜର୍ମାନ ରାଜଧାନୀ ବର୍ଲିନ ନଗରୀ ଷ୍ଟୁଟ୍‌ଗାଟ୍ ଠାରେ ଅନୁଷ୍ଠିତ ଏକ ଆନ୍ତର୍ଜାତିକ ସମାଜବାଦୀ କଂଗ୍ରେସରେ ମ୍ୟାଡ଼ାମ୍ କମା ଓ ସ୍ୱାମୀଜୀ କୃଷ୍ଣ ବର୍ମାଙ୍କ ପ୍ରେରଣା ବଳରେ ଆତ୍ମପ୍ରକାଶ କରିଥିବା ପ୍ରବାସୀ ଭାରତୀୟମାନଙ୍କର ସର୍ବ ପ୍ରଥମ ତ୍ରିରଙ୍ଗ ପତାକା ଓ ହୋମ୍‌ରୁଲ୍ ଆନ୍ଦୋଳନରେ ଡ଼କ୍ଟର ଶ୍ରୀମତୀ ଆନିବେଶାନ୍ତଙ୍କ ଦ୍ୱାରା ବ୍ୟବହୃତ ନବପଟ୍ଟାଯୁକ୍ତ ଧ୍ୱଜାଗୁଡ଼ିକୁ ଅନୁଧ୍ୟାନକୁ ନିଆଗଲା ।

## ମନଲାଖି ପତାକା ତ୍ରିରଙ୍ଗ ଝଣ୍ଡା

ପରିଶେଷରେ ସବୁଦିଗରୁ ମନଲାଖି ହେଲାଭଳି ଏକ ତ୍ରିରଙ୍ଗ ଝଣ୍ଡା ସ୍ୱାଧୀନତା ସଂଗ୍ରାମର ସାର୍ବଜନୀନ ଅହିଂସକ ଆୟୁଧ ଚରଖାକୁ ବକ୍ଷରେ ଧାରଣ କରି କଂଗ୍ରେସ ପତାକା ରୂପେ ସ୍ୱୀକୃତି ଲାଭ କଲା । ଏହି ପତାକାର ନିମ୍ନ ଭାଗରେ ଥିଲା ନାଲି, ମଧ ଭାଗରେ ସବୁଜ ଓ ଶୀର୍ଷ ଭାଗରେ ଶ୍ୱେତ । ଏହି ରଙ୍ଗଗୁଡ଼ିକ ଯଥାକ୍ରମେ ହିନ୍ଦୁ, ମୁସଲମାନ ଓ ଇତର ସଂଖ୍ୟା ଲଘିଷ୍ଠ ଗୋଷ୍ଠିଙ୍କର ପ୍ରତୀକ ଥିଲା । ଏହି ପ୍ରତ୍ୟେକ ପ୍ରସ୍ତ ପରସ୍ପର ସୀବନ ସୂତ୍ରରେ ସଂଶ୍ଳିଷ୍ଟ ଥିବାରୁ ଭାରତୀୟମାନଙ୍କର ଘନିଷ୍ଠ ସାଂପ୍ରଦାୟିକ ଏକତା ଓ ସମାନ ନାଗରିକ ଅଧିକାର ସୂଚାଉ ଥିଲା ।

## ଇଉନିୟନ୍ ଜ୍ୟାକ୍‌ର ଅପସାରଣ

୧୯୨୦ ଡିସେମ୍ବର ୨୭ ତାରିଖ । କଂଗ୍ରେସକୁ ୩୬ବର୍ଷ ପୂରି ଯାଉଥାଏ । କଂଗ୍ରେସର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଉଥାଏ ଅହମ୍ମଦାବାଦରେ । ଏହି ଅଧିବେଶନରେ ପ୍ରଥମ ହୋଇ ଉତ୍ତୋଳିତ ହେଲା କଂଗ୍ରେସର ନବ-ପ୍ରସୂତ ଚରଖା ଲାଞ୍ଛିତ ତ୍ରିରଙ୍ଗା ଝଣ୍ଡା । ଦୀର୍ଘ ୩୬ ବର୍ଷ ଧରି ଉଡ଼ି ଆସିଥିବା ୟୁନିୟନ୍ ଜ୍ୟାକ୍‌କୁ କଂଗ୍ରେସରୁ ହଟାଇ ଦିଆଗଲା । କଂଗ୍ରେସ ଇତିହାସରେ ଆରବ୍‌ଧ ହେଲା ଏକ ସ୍ୱତନ୍ତ୍ର ଅଧ୍ୟାୟ ।

## ସରକାରଙ୍କ ପ୍ରମାଦ

ଏହି ଐତିହାସିକ ଘଟଣାର ମହତ୍ତ୍ୱ ଜନସାଧାରଣ ଉପଲବ୍‌ଧି କରିବାପୂର୍ବରୁ ପତାକା ବିଷୟରେ ଚେତନଶୀଳ ଇଂରେଜ ସରକାର ସ୍ୱାଧୀନତା ଆନ୍ଦୋଳନରେ ସ୍ୱତନ୍ତ୍ର ପତାକାର ସୁଦୂର ପ୍ରସାରୀ ପ୍ରଭାବ ଶୀଘ୍ର ହୃଦୟଙ୍ଗମ କରିନେଲେ । କଂଗ୍ରେସ ତଥା କଂଗ୍ରେସର ଏହି ତ୍ରିରଙ୍ଗ ଝଣ୍ଡା ଯେପରି ଜନସାଧାରଣଙ୍କ ଭିତରେପ୍ରବେଶ ଲାଭ କରି ନ ପାରେ ସେଥିପାଇଁ ନାନାଭାବରେ ନାନାସ୍ତରରେ ସରକାରୀ ଦମନଲୀଳା ଓ ଅପପ୍ରଚାର ଆରମ୍ଭ କରି ଦିଆଗଲା ।

## ଏକ ସଂଗଠିତ ପ୍ରତିରୋଧ

ଏଥିରେ କଂଗ୍ରେସର ତେଜବୀର୍ଯ୍ୟ ବଢିଲା ସିନା, କମିଲାନାହିଁ । ସତ୍ୟାଗ୍ରହୀ କଂଗ୍ରେସ କର୍ମୀମାନେ ପତାକାର ମହତ୍ତ୍ୱ ରକ୍ଷା ପାଇଁ କେଉଁଠି ବ୍ୟକ୍ତିଗତ ଭାବରେ କେଉଁଠିବା ସାମୂହିକ ଭାବରେ ନାନା ଅନ୍ୟାୟ ଅତ୍ୟାଚାର ଓ ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ଲାଗିଲେ । ନାଗପୁର ଝଣ୍ଡା ସତ୍ୟାଗ୍ରହ ସେହିପରି ଏକ ସଂଗଠିତ ପ୍ରତିରୋଧ ।

୧୯୨୩ ମଇ ଏକ ତାରିଖ ମଧ୍ୟପ୍ରଦେଶ ରାଜଧାନୀ ନାଗପୁର ସହରର ଏକ ସାଧାରଣ ମାର୍ଗ (ସିଭିଲ ଲାଇନ୍ସ) ମଧ୍ୟଦେଇ ଦଳେ ସ୍ୱୟଂସେବକ ତ୍ରିରଙ୍ଗ ଝଣ୍ଡା ହସ୍ତରେ ଶୋଭାଯାତ୍ରାକରି ଯାଉଥାନ୍ତି । ସହରରେ ବହୁଗୋରା ଲୋକଙ୍କର ବସତିଥାଏ । ଏହି ଗୋରା ବସ୍ତିଦେଇ ଝଣ୍ଡା ଶୋଭାଯାତ୍ରା ପରିଚାଳିତ ହେଲେ ସ୍ୱାଧୀନଚେତା ଶ୍ୱେତାଙ୍ଗମାନଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି ହୋଇପାରେ, ଏହି ଆଶଙ୍କାରେ

ସରକାରୀ କର୍ତ୍ତୃପକ୍ଷ ଶୋଭାଯାତ୍ରାକୁ ବେଆଇନ ଘୋଷଣାକରି ସଂପୃକ୍ତ ଅଂଚଳରେ ଦଣ୍ଡବିଧି ଆଇନର ୧୪୪ଧାରା ଜାରି କରିଦେବାରୁ ସ୍ୱୟଂ ସେବକମାନେ ତହିଁର ପ୍ରତିରୋଧ କଲେ । ଏହି ଶୋଭାଯାତ୍ରାକାରୀ ସତ୍ୟାଗ୍ରହୀ ମାନଙ୍କୁ ପୋଲିସ ଗିରଫ କରିନେଲେ ।

## କଂଗ୍ରେସ କମିଟିର ଦୃଷ୍ଟି ଆକର୍ଷଣ

ନାଗପୁର କଂଗ୍ରେସ କମିଟି ଏଘଟଣାକୁ ଏତିକିରେ ବନ୍ଦକରି ଦେବାକୁ ବିଜ୍ଞ ଜନୋଚିତ ମଣିଲେନାହିଁ । ଜାତୀୟ ପତାକାର ପ୍ରଚଳନ ନୂଆ ହେଉଥିବାରୁ ଏହି ଘଟଣାରେ ଆଖିବୁଜି ଦେଲେ ଅନ୍ୟତ୍ର ଅନୁରୂପ ନିଷେଧାଜ୍ଞା ଜାରି କରିବାରେ ସରକାରୀ ହିମ୍ମତ ବଢିଯିବ ବିଚାରି ଏହି ନିଷେଧାଜ୍ଞାକୁ ଅମାନ୍ୟ କରିବାକୁ ନିଷ୍ପତ୍ତିକଲେ । ଏଥିପାଇଁ ଏକ ଦଫାଓ୍ୱାରୀ ସତ୍ୟାଗ୍ରହୀଙ୍କ ନାମ ତାଲିକାଭୁକ୍ତ କରାଗଲା ।

## ପ୍ରଥମ ସତ୍ୟାଗ୍ରହୀ ଶ୍ରୀମତୀ ସୁଭଦ୍ରା

ଏଲ୍‌ହାବାଦ ସରକାରୀ ସ୍କୁଲରେ ଅଧ୍ୟୟନ କରୁଥିଲେ ଶ୍ରୀମତୀ ସୁଭଦ୍ରା ଦେବୀ । ଅସହଯୋଗ ଆନ୍ଦୋଳନର ଆହ୍ୱାନରେ ସେ ପଢାଛାଡି ବନାରସ ବ୍ରହ୍ମବିଦ୍ୟା ପ୍ରଶିକ୍ଷଣ ସଂସ୍ଥାରେ ଯୋଗ ଦେଇଥିଲେ । ଏତିକିବେଳେ ଝଣ୍ଡା ସତ୍ୟାଗ୍ରହର ବାର୍ତ୍ତା ତାଙ୍କ ପାଖେ ପହଞ୍ଚିଲା । ସେ ନିଜକୁ ପ୍ରଥମ ସତ୍ୟାଗ୍ରହୀ ତାଲିକାରେ ନାମଦେଇ ନାଗପୁର ଆସିଥିଲେ । ଏକ ଶୁଭ ମୁହୂର୍ତ୍ତରେ ଶ୍ରୀମତୀ ସୁଭଦ୍ରା ବିଜୟ ଟୀକା ଗ୍ରହଣକରି ଏକାକିନୀ ଜାତୀୟ ପତାକା ହସ୍ତରେଧରି ବୀର ଦର୍ପରେ ନିଷିଦ୍ଧାଞ୍ଚଳରେ ପ୍ରବେଶ କରନ୍ତେ ତାଙ୍କୁ ଗିରଫକରି ନିଆଗଲା ।

## ରାଜାଜୀଙ୍କ ଆହ୍ୱାନ

ଏହି ଝଣ୍ଡା ସତ୍ୟାଗ୍ରହ ପ୍ରତି ଜନସମର୍ଥନ ଲାଭ କରିବା ପାଇଁ ବଡ଼ ବଡ଼ ସଭା ସମିତିମାନ ଅନୁଷ୍ଠିତ ହେବାକୁ ଲାଗିଲା । ୧୯୨୩ ମଇ ୩୧ । ପ୍ରବୀଣ ରାଜନୀତିଜ୍ଞ, ପ୍ରାଜ୍ଞ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ନାଗପୁର ଆସି ଝଣ୍ଡା ସତ୍ୟାଗ୍ରହର ମହତ୍ତ୍ୱ ବୁଝାଇ ଏକ ଜ୍ୱାଳାମୟୀ ଭାଷଣରେ ନାଗପୁର ତଥା ଭାରତୀୟ ଜନସାଧାରଣଙ୍କ ବିଚାରଧାରା ବଦଳାଇ ଦେଇଥିଲେ । ତାଙ୍କ ବିଶ୍ଳେଷଣର ସାରମର୍ମ ହେଉଛି :-

## ପତାକାକୁ ସାମାନ୍ୟ କନା ବିଚାର ନାହିଁ

"ଜାତୀୟ ପତାକା" ସାମାନ୍ୟ କନା କେତୋଟିର ସମଷ୍ଟି ନୁହେଁ । ଏହା ଆମ ଜାତୀୟତାର ପ୍ରତୀକ । ଏକଥା ଆମେ ସ୍ୱୀକାର କରୁ ବା ନକରୁ ପ୍ରତିପକ୍ଷ ଏହା ସ୍ୱୀକାର କରିଯାଇଛନ୍ତି । ତେଣୁ ଆମ ବିଚାରର ଏହି ସାମାନ୍ୟ କନାଟି ପାଇଁ ଏତେ ବଡ଼ ଯୁଦ୍ଧର ସୃଷ୍ଟି ହୋଇଛି ଓ ମୋଟା ବେତନଭୋଗୀକର୍ମଚାରୀମାନେ ନ ଖାଇ ନ ପିଇ ଦିନରାତି ଆସି ଜଗି ରହିଛନ୍ତି :-

## ଆଇନର ବ୍ୟଭିଚାରୀଙ୍କୁ ଉଚିତ ଶିକ୍ଷା ଦିଅ

"ସରକାର ନିଜ ହାତରେ ଯେଉଁ ଆଇନ ଗଢିଛନ୍ତି ବେଳ ପଡ଼ିଲେ ତହିଁର ବ୍ୟଭିଚାର (ପ୍ରୋସ୍‌ଟିଟ୍ୟୁସନ୍) କରିବାକୁ ପଛାଉ ନାହାନ୍ତି । ୧୪୪ଧାରା ଆଇନରେ ଅଛି ଯେ ଦୁଇ ବା ତତୋଧିକ ବ୍ୟକ୍ତି ନିଷିଦ୍ଧାଞ୍ଚଳରେ ସମବେତ ହେଲେ ତାହାକୁ ଦୋଷାବହ ବିବେଚନା କରାଯାଏ । ମାତ୍ର ଏକାକିନୀ ଯାତ୍ରା କରିଥିବା ସୁଭଦ୍ରାଦେବୀଙ୍କୁ ସରକାର ଗିରଫ କରିଛନ୍ତି । ଯେଉଁମାନଙ୍କ ବସ୍ତିଦେଇ ଏ ସତ୍ୟାଗ୍ରହ ଚାଲିଛି, ସେହି ଗୋରାମାନଙ୍କ ମଧ୍ୟରେ କେତେଜଣଙ୍କୁ ଆଣି ନ୍ୟାୟାଳୟର ସାକ୍ଷୀଧଡ଼ାରେ ଭର୍ତ୍ତି କରାଗଲେ ସେମାନେ ନିଶ୍ଚୟ ଏହାର ସତ୍ୟତା ସ୍ୱୀକାର କରିବେ ।

## ଜାତୀୟ ସଂହତି ରକ୍ଷାକର

"ଅସଲକଥା ହେଉଛି ଏ ପତାକାରେ ଜାତି ଧର୍ମର ମିଳନକୁ ସରକାର ବରଦାସ୍ତ କରିପାରୁନାହିଁ । ଯଦି ହିନ୍ଦୁ, ମୁସଲମାନ, ପାର୍ଶି, ଇହୁଦୀ ନିଜର ସ୍ୱତନ୍ତ୍ର ପତାକାଟି ମାନଧରି ପରସ୍ପର ବିରୁଦ୍ଧରେ ଚାଲିଥାନ୍ତେ ତେବେ

ବଣ୍ଡଭେଦ ନୀତିର ସମର୍ଥକ ଇଂରେଜ ସରକାରଙ୍କୁ ବଡ଼ ସୁହାଉଥାନ୍ତା । ମାତ୍ର ଆମ ଜାତୀୟ ପତାକାରେ ଜାତୀୟ ସଂହତିକୁ ଦେଖି ସରକାର ପ୍ରମାଦ ଗଣିଲେଣି ।

## ଚରଖାର ଦିବ୍ୟଦୃଷ୍ଟି

"ଆମ ଜାତୀୟ ପତାକାରେ ଚରଖା ଛବି ଅଛି । ଏହା ବଦଳରେ ବାଘ, ସିଂହ, କିମ୍ବା ବନ୍ଧୁକର ଛବିଥିଲେ ସରକାର ଆପତ୍ତି କରି ନ ଥାନ୍ତେ । ମାତ୍ର ୩୦ କୋଟି ଲୋକଙ୍କ ହାତରେ ୩୦ କୋଟି ଚରଖାକୁ ଶକ୍ତି ପ୍ରୟୋଗକରି ଦମନ କରିବା ଅସମ୍ଭବ" । ପ୍ରବଳ ପରାକ୍ରାନ୍ତ ବିଦେଶୀ ସରକାରକୁ ଅର୍ଥ ନୈତିକ ବାସନ୍ଦ ପାଇଁ ଏଥିରେ ଯେଉଁ ବ୍ୟବସ୍ଥା ରହିଛି ସେହିସବୁ ରହସ୍ୟ ଉପଲବ୍ଧିକରି ଜାତୀୟ ପତାକାର ଟେକ ବଜାୟ ରଖିବା ପାଇଁ ଆଇନର ବ୍ୟଭିଚାର ପାଖରେ ମଥା ନତ ନ କରିବା ପାଇଁ ସେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ ।

## କଂଗ୍ରେସର ସ୍ୱୀକାର

ଏହି ଉଦ୍‌ବୋଧନର ଉଦ୍ଦେଶ୍ୟ ବ୍ୟର୍ଥ ହେଲାନାହିଁ । ଜୁଲାଇ ୮,୯,୧୦ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ନାଗପୁରଠାରେ ବସି ଝଣ୍ଡା ସତ୍ୟାଗ୍ରହକୁ ଏକ ମହାଭାରତୀୟ ସତ୍ୟାଗ୍ରହ ରୂପ ପ୍ରଦାନ କଲେ । କଂଗ୍ରେସର ଏହି ଆହ୍ୱାନରେ ଭାରତର ଚାରିଆଡୁ ସତ୍ୟାଗ୍ରହୀମାନେ ତ୍ରିରଙ୍ଗ ଝଣ୍ଡା ହସ୍ତରେ ଧରି ନାଗପୁର ଆସି ସତ୍ୟାଗ୍ରହ ସମରରେ ଝାସ ଦେଲେ । ଆମ ଓଡ଼ିଶାରୁ ଯାଇଥିଲେ ସମ୍ବଲପୁରର ସ୍ୱନାମଧନ୍ୟ ସତ୍ୟାଗ୍ରହୀ ସ୍ୱର୍ଗତଃ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର । ସର୍ଦ୍ଦାର ବଲ୍ଲଭ ଭାଇଙ୍କ ବଡ଼ଭାଇ ଭିଟଲ ଭାଇଙ୍କୁ ୧୦. ୭. ୨୩ରୁ ଏହି ମହାଭାରତୀୟ ସତ୍ୟାଗ୍ରହର ନେତୃତ୍ୱ ନେବା ପାଇଁ ଆହ୍ୱାନ କରାଗଲା । କାର୍ଯ୍ୟତଃ ପଟେଲ ଭାଇ ଦ୍ୱୟଙ୍କ ନେତୃତ୍ୱରେ ଝଣ୍ଡା ସତ୍ୟାଗ୍ରହ ପରିଚାଳିତ ହେଲା । ଅଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟି ବେଜୱାଡ଼ାଠାରେ ବସି ପଟେଲ ଭାଇଦ୍ୱୟଙ୍କ ନେତୃତ୍ୱକୁ ବିଶେଷ ପ୍ରଶଂସା କରିଥିଲେ ।

ଏହି ସତ୍ୟାଗ୍ରହରେ ଅନ୍ୟତମ ସତ୍ୟାଗ୍ରହୀ ରୂପେ ଗିରଫ ହୋଇଥିଲେ ଶେଠ୍ ଯମୁନାଲାଲ ବେଜାଜ ।

ତାଙ୍କ ଉପରେ କରାଯାଇଥିବା ୩ ହଜାର ଟଙ୍କା ଜୋରିମାନା ବାବଦ ତାଙ୍କ ମଟର ଗାଡିକୁ ଜବତ କରାଗଲା । ମାତ୍ର ସ୍ମରଣ ରଖିବାର କଥା ଯେ ଏହି ଗାଡ଼ି ନିଲାମ ଧରିବାକୁ ନାଗପୁର ବା ବ୍ରିଟିଶ ଭାରତରେ କେହି ଜଣେହେଲେ ମିଳିଲେ ନାହିଁ । ଶେଷରେ ଗାଡିଟିକୁ ସୁଦୂର କାଠିଆବାଡ଼ ନିଆଯାଇ ଇଂରେଜଶାସନର ପଦଲେହନ କରୁଥିବା ସେଠା ନରପତିଙ୍କୁ ଧରାଇ ଦିଆଯାଇ ଜରିମାନା ଟଙ୍କା ତାଙ୍କଠାରୁ ଆଦାୟ କରାଯାଇଥିଲା ।

## ଗାନ୍ଧୀ ଦିବସ ପାଳନ ଓ ସତ୍ୟାଗ୍ରହର ସଫଳତା

ଅସହଯୋଗ ଆନ୍ଦୋଳନ ସଂକ୍ରାନ୍ତରେ ମହାତ୍ମାଗାନ୍ଧୀ ଗିରଫ ହୋଇ ୧୯୨୩ ମାର୍ଚ୍ଚ ୧୮ ତାରିଖରେ ୬ବର୍ଷ ଅଶ୍ରମ କାରାଦଣ୍ଡରେ ଦଣ୍ଡିତ ହୋଇଥିବାରୁ ଗାନ୍ଧୀଜୀଙ୍କ ମୁକ୍ତି ଦାବୀ କରି ପ୍ରତି ମାସର ୧୮ ତାରିଖକୁ ଗାନ୍ଧୀ ଦିବସ ରୂପେ ଦେଶବାସୀ ପାଳନ କରୁଥିଲେ । ଝଣ୍ଡା ସତ୍ୟାଗ୍ରହ ବାର୍ତ୍ତାର ବ୍ୟାପକ ପ୍ରଚାର ଲକ୍ଷ୍ୟରେ ପରବର୍ତ୍ତି ଜୁଲାଇ ୧୮ ତାରିଖ ଗାନ୍ଧୀ ଦିବସକୁ ପତାକା ଦିବସ ରୂପେ ପାଳନ କରିବା ପାଇଁ ଅଖିଳ ଭାରତ କଂଗ୍ରେସ କମିଟି ଦେଶବାସୀଙ୍କୁ ଆହ୍ୱାନ କଲେ । ତଦନୁଯାୟୀ ଭାରତର ଚାରିଆଡ଼େ ତ୍ରିରଙ୍ଗ ପତାକାର ବ୍ୟାପକ ବ୍ୟବହାର ଓ ଉତ୍ତୋଳନ ଉତ୍ସବମାନ ଅନୁଷ୍ଠିତ ହେବାକୁ ଲାଗିଲା । ଭାରତର ଗଗନ ପବନ ସତେ ଯେପରି ପତାକା ବନ୍ଦନାରେ ଝଂକୃତ ହୋଇ ଉଠିଲା । ପଟେଲଜୀ ବଜ୍ର ଗମ୍ଭୀର ସ୍ୱରରେ ଘୋଷଣା କଲେ ଯେ ନାଗପୁରରେ ସମବେତ ସମସ୍ତ ସତ୍ୟାଗ୍ରହୀ ଜାତୀୟ ପତାକା ହସ୍ତରେ ଧରି ଏହି ଗାନ୍ଧୀ ଦିବସରେ ସମୂହ ଭାବରେ ନିଷିଦ୍ଧାଞ୍ଚଳରେ ପ୍ରବେଶ କରିବେ । ଏହି ଅଟଳ ଆହ୍ୱାନରେ ନାଗପୁର ଶାସନ-କର୍ତ୍ତୃପକ୍ଷ ବଡ଼ ପ୍ରମାଦ

ଗଣିଲେ । ୧୯୨୩ ଜୁଲାଇ ୧୮ ର ସେହି ଶୁଭ ମୁହୂର୍ତ୍ତ । ଶାସନ କର୍ତ୍ତୃପକ୍ଷ ୧୪୪ ଧାରା ଉଠାଇବାକୁ ବାଧ୍ୟ ହେଲେ । ଏକ ବିରାଟ ପତାକା ଶୋଭାଯାତ୍ରା ବିନା ବାଧାରେ ନିଷିଦ୍ଧାଞ୍ଚଳରେ ପ୍ରବେଶ କଲା । ଝଣ୍ଡା ସତ୍ୟାଗ୍ରହ ସଫଳହେଲା । ସେହି ବର୍ଷ ମୌଲାନା ଆଜାଦଙ୍କ ସଭାପତିତ୍ୱରେ ଦିଲ୍ଲୀଠାରେ ଅନୁଷ୍ଠିତ କଂଗ୍ରେସର ଏକ ବିଶେଷ ଅଧିବେଶନରେ ଏହି ଝଣ୍ଡା ସତ୍ୟାଗ୍ରହୀଙ୍କ ପ୍ରତି ସଶ୍ରଦ୍ଧ ସମ୍ମାନ ଜ୍ଞାପନ କରାଗଲା ।

## ପରିଣତି

### ଜାତୀୟ ପତାକାର ବହୁଳ ପ୍ରସାର

ଝଣ୍ଡା ସତ୍ୟାଗ୍ରହର ଅବସରରେ ଜାତୀୟ ପତାକାର ମହତ୍ତ୍ୱ ଓ ତାହାର ଇଜ୍ଜତ ରକ୍ଷା ପାଇଁ ଆତ୍ମ ବଳିଦାନର ଆବଶ୍ୟକତା ଚାରିଆଡ଼େ ବିଶେଷ ଚର୍ଚ୍ଚା ହେବାର ସୁଯୋଗ ମିଳିଲା । ପତାକା ସତ୍ୟାଗ୍ରହରେ ଯୋଗଦେବା ପାଇଁ ଭାରତର ଅଞ୍ଚଳଗୁଡ଼ିରୁ ସତ୍ୟାଗ୍ରହୀ ସମାବେଶ ଓ ସେମାନଙ୍କର କାରାବାସ ଘଟଣା ସମ୍ବାଦପତ୍ରରେ ବହୁଳ ପ୍ରଚାରିତ ହେବାରୁ ନୂତନ ଜନ୍ମ ପରିଗ୍ରହ କରିଥିବା ତ୍ରିରଙ୍ଗ ପତାକା ଅତି ଅଳ୍ପ ସମୟ ମଧ୍ୟରେ ଭାରତବାସୀଙ୍କ ଜାତୀୟ ପତାକା ରୂପେ ସେମାନଙ୍କ ହୃଦୟରେ ଏକ ସମାନାସ୍ପଦ ଆସନ ଲାଭ କଲା ।

### ହିନ୍ଦୁସ୍ଥାନୀ ସେବାଦଳର ଜନ୍ମ

ନାଗପୁର ବନ୍ଦୀଶାଳାରେ ଭାରତର ଚାରିଆଡୁ ଆସିଥିବା ନେତୃସ୍ଥାନୀୟ ବ୍ୟକ୍ତିମାନେ ସମବେତ ହେବାର ସୁଯୋଗରେ ଜାତୀୟ ପତାକାର ମହତ୍ତ୍ୱ ରକ୍ଷା ତଥା ଆନୁଷ୍ଠାନିକ ଝଣ୍ଡାଭିବାଦନର ତାଲିମ ପାଇଁ ଏକ ଶୃଙ୍ଖଳିତ ସ୍ୱୟଂ ସେବକ ବାହିନୀ ଗଠନର ପରିକଳ୍ପନା କଲେ ।

କାରାମୁକ୍ତି ପରେ ଡଃ ଏନ୍ ଏସ୍ ହାର୍ଡିକର ଏହି ପରିକଳ୍ପନାକୁ ରୂପାୟିତ କରିବାକୁ ଯାଇ ଦିଲ୍ଲୀ କଂଗ୍ରେସରେ ସ୍ୱୟଂ ସେବକମାନଙ୍କର ଏକ ପ୍ରାରମ୍ଭିକ ଅଧିବେଶନ ଆହ୍ୱାନ କରିଥିଲେ । ପରବର୍ତ୍ତୀ କାକିନଡ଼ା କଂଗ୍ରେସ ଅଧିବେଶନରେ ଏକ ଅଖିଳ ଭାରତ ସ୍ୱୟଂ ସେବକ ସମ୍ମେଳନ ଅନୁଷ୍ଠିତ ହୋଇ ହିନ୍ଦୁସ୍ଥାନୀ ସେବାଦଳର ପ୍ରତିଷ୍ଠା ପାଇଁ ପ୍ରସ୍ତାବ ଗ୍ରହଣ କରାଗଲା । ଏହିପରି ଭାବରେ ୧୯୨୩ ଡିସେମ୍ବରରେ ହିନ୍ଦୁସ୍ଥାନୀ ସେବାଦଳ ସଂସ୍ଥା ଜନ୍ମ ଲାଭ କଲା ।

ପଣ୍ଡିତ ଜବାହରଲାଲ ସେବାଦଳର ପ୍ରଥମ ଅଧ୍ୟକ୍ଷ । ମୌଲାନା ସୌକତ ଅଲ୍ଲୀ ଓ ଶ୍ରୀ ସୁଭାଷଚନ୍ଦ୍ର ମଧ୍ୟ ସେବାଦଳରେ ଅଧ୍ୟକ୍ଷତା କରିଛନ୍ତି । ଡଃ ହାର୍ଡ଼ିକର ପ୍ରାରମ୍ଭରୁ ସେବାଦଳରେ ପ୍ରଧାନ ମନ୍ତ୍ରୀତ୍ୱ କରି ଆସିଛନ୍ତି । ୧୯୩୧ରେ ଦଳର ଏକ ଅନ୍ତିମ ସମ୍ମେଳନ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଅନୁଷ୍ଠିତ ହୋଇ ତାଙ୍କରି ଆଦେଶ କ୍ରମେ ଏହା ଜାତୀୟ କଂଗ୍ରେସର ଏକ ଅଂଶରେ ପରିଣତ ହୋଇଛି ।

କଂଗ୍ରେସ ସେବାଦଳ ଏକ ସ୍ୱୟଂ ସେବକ ସଂସ୍ଥା । ୧୯୨୭ରେ ସେବାଦଳ ଚୀନକୁ ଏକ ଚିକିତ୍ସା ଦଳ ପଠାଇ ଆନ୍ତର୍ଜାତିକ ସେବକ ଭାବରେ ନିଜକୁ ପ୍ରମାଣିତ କରାଇ ପାରିଥିଲେ ।

### ସେବାଦଳ ଓ ଜାତୀୟପତାକା

ଜାତୀୟ ପତାକାର ବହୁଳ ପ୍ରଚାର କଳ୍ପେ ହିନ୍ଦୁସ୍ଥାନୀ ସେବାଦଳର ଆଭିମୁଖ୍ୟ ପ୍ରଶଂସନୀୟ । ବେଲଗାଁଓ କଂଗ୍ରେସରେ ଏଥିପାଇଁ ଏକ ବିଧିବଦ୍ଧ ବ୍ୟବସ୍ଥା ମଧ୍ୟ ପ୍ରଣୀତ ହୋଇଥିଲା । ୧୯୨୮ କଲିକତା କଂଗ୍ରେସରେ ସେବାଦଳର ଏକ ସମ୍ମେଳନ ଅନୁଷ୍ଠିତ ହୋଇ ପ୍ରତି ଶାଖା ସମିତି ଓ କଂଗ୍ରେସ କମିଟିକୁ ପରାମର୍ଶ ଦିଆଯାଇଥିଲା ଯେ ପ୍ରତି ମାସର ଶେଷ ରବିବାର ସକାଳ ଘ୮ ବେଳେ ନିୟମିତ ଝଣ୍ଡା ଅଭିବାଦନ ଉତ୍ସବ ପାଳନ କରନ୍ତୁ । ଏହି ପରଂପରା ରକ୍ଷା କରିବା ପାଇଁ ଏବେ ଝଣ୍ଡା ଉତ୍ତୋଳନ ଉତ୍ସବ ଅନୁଷ୍ଠାନର ସମୟ ସକାଳ ୮ଟା ମଧ୍ୟରେହିଁ ରଖା ଯାଇଛି ।

ସ୍ୱାଧୀନତା ସଂଗ୍ରାମକାଳୀନ ମହାଭାରତୀୟ ଜାତୀୟ କଂଗ୍ରେସ ଇତିହାସର ପୃଷ୍ଠା ଏହିପରି ବହୁ ରୋମାଞ୍ଚକର ଘଟଣାରେ ପରିପୂର୍ଣ୍ଣ ।

ସ୍ୱାଧୀନତା ଲାଭ ପରେ ଘଟଣାକ୍ରମେ କଂଗ୍ରେସ ବହୁ ଗୋଷ୍ଠୀରେ ବିଭକ୍ତ ହୋଇ ନିଜର ମୌଳିକତା ହରାଇ ବସିଛି । ବହୁ ରାଜନୈତିକ ଦଳ ମଧ୍ୟ ସୃଷ୍ଟି ହୋଇଛି ଓ ହେବାରେ ଲାଗିଛନ୍ତି । ମାତ୍ର ସ୍ୱାଧୀନତା ସଂଗ୍ରାମୀ କଂଗ୍ରେସ ସମସ୍ତଙ୍କର ଓ ସମସ୍ତେ ତାହାଠାରୁ ଜାତ ।

ଏହି ଦୃଷ୍ଟିରୁ ସମସ୍ତ ରାଜନୈତିକ ସଂସ୍ଥା ଜାତୀୟ ପର୍ବ ପାଳନ ମାଧ୍ୟମରେ ସ୍ୱାଧୀନତା ସଂଗ୍ରାମ ଇତିହାସ ଯଥାର୍ଥ ଆଲୋଚନା, ପର୍ଯ୍ୟାଲୋଚନା ଓ ଅନୁଶୀଳନ ନ କଲେ କାଳକ୍ରମେ ଆମ ସ୍ୱାଧୀନତା ସଂଗ୍ରାମର ରୋମାଞ୍ଚକର ଘଟଣା ଓ ଆତ୍ମବଳିଦାନର କାହାଣୀ ବିସ୍ମୃତି ଗର୍ଭକୁ ଚାଲିଯିବ । ଭବିଷ୍ୟତ ବଂଶଧରଙ୍କ ପାଇଁ ଏହା ଅଶୁଭ ସଂକେତ ।



# ଆଚାର୍ଯ୍ୟ ପୂଜନେ

**କାଳୀନିଧି**

ଧୂଳିମାଟି କୋଳେ ଦେବତା ଖେଳଇ
ଦେଖି ନଦେଖଇ ଜନ
ଧନ୍ୟହୁଏ ପ୍ରାଣ ଜଣା ଅଜଣାରେ
ଲଭିଲେ ତାର ଦର୍ଶନ ॥୧॥

ତାର ଚଲା ପଥ ପୁଣ୍ୟ କଲ୍ୟାଣର
ସ୍ମୃତି ବଡ଼ଦାଣ୍ଡ ପରା
ମାନବର ଲାଗି ଅଯାଚିତ ସ୍ନେହ
ସରଗ ମମତା ଭରା ॥୨॥

ବଚନେ ତାହାରି ଅମର ଅମୃତ
ସବୁରି ଶୁଭ କାମନା
"ଭଲ ଅଛୁଟିରେ" - ଏ ବାଣୀ ପଦକ
କୋଟି କବିତା ମୂର୍ଛନା ॥୩॥

ମାତାର ମମତା ପିତାର ଆଦର୍ଶ
ସଖାର ଶୁଦ୍ଧ ସରାଗ
ଦେଶ ଦଶ ବିଶ୍ୱ ଦକ୍ଷତା ଯାହାର
କେବଳ ଆଶା ନୁରାଗ ॥୪॥

ମାନବତା ଲାଗି ଯେ କାନ୍ଦେ ଜଗତେ
ବ୍ୟାକୁଳତା ଉଠେ ଭରି
ଯୁଗାଚାର୍ଯ୍ୟ ହସେ ଆମରି ମେଳରେ
ଧରି ନ ପାରୁଛ ଧରି ॥୫॥

ଗୀତା ଭାଗବତ ସାରତତ୍ତ୍ୱ ରାଜ
କାୟ ମନୋବାକ୍ୟେ ଝଲେ
ଦିବ୍ୟଭାବ କେତେ ଖୋଜି ବୁଲେ ଦେଖ
ତାର ଶ୍ରୀମୁଖ ମଣ୍ଡଳେ ॥୬॥

ସ୍ନେହ ଶ୍ରଦ୍ଧା ଜ୍ଞାନ ମଧୁର ମିଳନ
ମୂର୍ତ୍ତିମନ୍ତ ହରି ହର
ଅନ୍ତର କମଳ ତବ ପୂଜା ପୁଷ୍ପ
ଘେନ ଆଚାର୍ଯ୍ୟ ପ୍ରବର ॥୭॥

# ଶହୀଦ ସ୍ମୃତି

୧୯୪୦ ମାର୍ଚ୍ଚ ୧୩ ତାରିଖ । ଲଣ୍ଡନ ସହର କାକ୍ସଟନ ହଲରେ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହେଉଥାଏ । ସଭାପତିତ୍ୱ କରିଥାନ୍ତି ଭାରତମନ୍ତ୍ରୀ ଜେଟଲାଣ୍ଡ । ଏହି ସଭାରେ ପଞ୍ଜାବର ପୂର୍ବତନ ଗଭର୍ଣ୍ଣର ମାଇକେଲ ଓ ଡ୍ୱାୟାର ଭାରତ ବିରୋଧରେ ଉତ୍ତେଜନାପୂର୍ଣ୍ଣ ବକ୍ତୃତା ଦେଇ ନିଜ ଆସନରେ ବସି ଯିବାକୁ ଉଦ୍ୟତ ହେଉଥିଲାବେଳେ ମଞ୍ଚ ପାଖରେ ବସିଥିବା ଜଣେ ବୀର ଭାରତୀୟ ଯୁବକ ଲୁଚାଇ ଧରିଥିବା ଏକ ପିସ୍ତଲରୁ ଗୁଳି ଚଳାଇ ତାଙ୍କୁ ହତ୍ୟା କଲେ ।

ଗଭୀର ଆଲୋଡ଼ନ ଓ ଆତଙ୍କ ଭିତରେ ସଭା ଭଣ୍ଡୁର ହୋଇଗଲା । ମାତ୍ର ବିସ୍ମୟର କଥା ଯେ ହତ୍ୟାକାରୀ ଯୁବକ ଫେରାର ହେବାକୁ ପସନ୍ଦ ନକରି ବୀର ଦର୍ପରେ ଦଣ୍ଡାୟମାନ ହୋଇ ରହିଲେ । ତାଙ୍କ ମୁଖରୁ ଶୁଣାଯାଉ ଥାଏ - "ମୁଁ ଓଡ୍ୱାୟାରଙ୍କୁ ହତ୍ୟା କରିଛି । କେହି ଭୟଭୀତ ହୁଅନ୍ତୁ ନାହିଁ ।"

ଏହି ଘଟଣା ସହ ଦୀର୍ଘ ୨୦ ବର୍ଷ ତଳର ଏକ ରୋମାଞ୍ଚକାରୀ ବିଭତ୍ସ କାଣ୍ଡ ସଂପୃକ୍ତ । ସେତେବେଳକୁ ମହାତ୍ମାଗାନ୍ଧୀ ସ୍ୱାଧୀନତା ସଂଗ୍ରାମର କର୍ଣ୍ଣଧାର ହୋଇ ଅହିଂସା ଅସହଯୋଗର ବାର୍ତ୍ତା ପ୍ରଚାର କରୁଥାନ୍ତି ।

ଏହି ବାର୍ତ୍ତାକୁ ଗ୍ରହଣ କରୁଥିବା ଲୋକଙ୍କ ଶପଥ ଗ୍ରହଣ ପାଇଁ ଏକ ଶୁଭ ଦିନ ଧାର୍ଯ୍ୟ କରାଯାଇ ଥାଏ । ସେ ଦିନଟି ଥିଲା ୧୯୧୯ ଅପ୍ରେଲ ୬ ତାରିଖ । ମାତ୍ର କେତେକ ମହତ୍ୱ ଦୃଷ୍ଟିରୁ ଏହାକୁ ପରବର୍ତ୍ତୀ ୧୩ ତାରିଖକୁ ଗଡ଼ାଇ ଦିଆଗଲା । ସେଦିନ ମହାବିଷୁବ ସଂକ୍ରାନ୍ତି । ଭାରତୀୟ ନୂଆବର୍ଷ । ଅମୃତସରସ୍ଥିତ ପାଚେରୀ ଘେରା ଜାଲିଆନା ୱାଲା ବାଗ ନାମକ ଏକ ବିରାଟ ପଡ଼ିଆରେ ୨୦ ହଜାର ନରନାରୀ ସମବେତ ହୋଇ ବୈଶାଖୀ ଉତ୍ସବ ପାଳନ କରୁଥାନ୍ତି । ବିଶିଷ୍ଟ ଜନନାୟକ ଲାଲା ହଂସରାଜଜୀ ଜନତାକୁ ଉଦ୍‌ବୋଧନ ଦେଉଥିବା ଘଟଣା ପଞ୍ଜାବ ଲାଟ୍ ଓଡ୍ୱାୟାରଙ୍କ ହୃତକମ୍ପ ଜାତ କଲା । ତାଙ୍କ ସମର୍ଥନରେ ସେନାପତି ଡ୍ୱାୟାର ଲୋକଙ୍କୁ ପୂର୍ବରୁ କୌଣସି ସତର୍କ ନ କରାଇ ଅବିରାମ ଗୁଳି ବର୍ଷଣ କରିବାକୁ ଲାଗିଲେ । ସରକାରୀ ରିପୋର୍ଟ ଅନୁଯାୟୀ ଏହି ଗୁଳିକାଣ୍ଡରେ ୧୫-୧୬ ଜଣ ନିହତ ହୋଇଥିଲେ । ଏହି ବର୍ବର ହତ୍ୟାକାଣ୍ଡର ପ୍ରତ୍ୟକ୍ଷଦର୍ଶୀ ଥିଲେ ସେହି ବୀର ଯୁବକ - ଯେ କି ସେଦିନ ନରହନ୍ତା ଓଡ୍ୱାୟାରଙ୍କୁ ହତ୍ୟା କରି ପ୍ରତିଶୋଧ ନେଲେ ।

ସେହି ବୀର ଯୁବକଙ୍କର ବୟସ ୪୧ ବର୍ଷ । ନାମ **ଉଦ୍ଧାମ ସିଂହ** । ନରହତ୍ୟା ଅପରାଧରେ ତାଙ୍କୁ ଫାଶୀ ଦଣ୍ଡ ହେଲା । ବିଚାରାଳୟ ସମକ୍ଷରେ ସେ ବୀର ଦର୍ପରେ କହିଥିଲେ- "ମୋ ନାଁ **ରାମମହମ୍ମଦ ସିଂ ଆଜାଦ** । ମୋ ନାମ ରାମ - ମୁଁ ହିନ୍ଦୁ, ମୋ ନାମ୍ ସିଂ - ମୁଁ ଶିଖ୍ । ସର୍ବୋପରି ମୋ ନାମ ଆଜାଦ - (ବହୁ ଧର୍ମ, ବହୁ ଭାଷା, ବହୁ ଗୋଷ୍ଠୀ ଓ ବହୁ ସଂସ୍କୃତିର ମିଳନ ପୀଠ) ମୋ ପବିତ୍ର ଜନ୍ମଭୂମିର ସ୍ୱାଧୀନତା ପାଇଁ ମୁଁ ଉତ୍ସର୍ଗୀକୃତ ।

"ଜାଲିଆନା ୱାଲା ହତ୍ୟା କାଣ୍ଡର ଅପରାଧୀ ଓଡ୍ୱାୟାରଙ୍କୁ ହତ୍ୟା କରି ମୁଁ ଜାତୀୟ କର୍ତ୍ତବ୍ୟ ସଂପାଦନ କରିଛି । ମୋ ପବିତ୍ର ମାତୃଭୂମିର ସ୍ୱାଧୀନତା ଲାଭ ପାଇଁ ମୁଁ ଯେ କୌଣସି ଦଣ୍ଡ ଭୋଗ କରିବାକୁ ପ୍ରସ୍ତୁତ ।" ୧୯୪୦ ଜୁଲାଇ ୩୧ ତାରିଖରେ ସେହି ବୀର ଯୁବକ ହସି ହସି ଫାଶୀ କାଠରେ ଜୀବନ ବିସର୍ଜନ କଲେ । ମରି ମଧ୍ୟ ଅମର ରହିଗଲେ । ପ୍ରତିବର୍ଷ ଅପ୍ରେଲ ୬ ତାରଖରୁ ୧୩ ତାରିଖ - ଜାତୀୟ ସପ୍ତାହ ରୂପେ ପାଳନ କରାଯାଇ ଜାଲିଆନାବାଲା ବାଗର ଶହୀଦବର୍ଗଙ୍କୁ ଦେଶବାସୀ ଭକ୍ତି ଶ୍ରଦ୍ଧାଞ୍ଜଳି ନିବେଦନ କରି ଆସୁଛନ୍ତି ।

ଏହିପରି ଶତ ଶତ ବୀର ପୁରୁଷ ନିଜର ପ୍ରାଣ ବିନିମୟରେ ଭାରତ ମାତାଙ୍କୁ ବିଦେଶୀ ନିଗଡ଼ରୁ ମୁକ୍ତ କରାଇଛନ୍ତି । **ଭଗତ ସିଂ** ଉଦ୍ଧାମ ସିଂଙ୍କ ଠାରୁ ୮ ବର୍ଷ ସାନ । ଜାଲିଆନାବାଲା ବାଗରୁ ରକ୍ତ ରଞ୍ଜିତ ମୁଠାଏ ମାଟି ଧରି ସେ ଶପଥ କଲେ ଯେ ଏହି ହତ୍ୟା କାଣ୍ଡର

ପ୍ରତିଶୋଧ ନେବେ । ସ୍ୱାଧୀନତା ଆନ୍ଦୋଳନକୁ ଖର୍ବ କରିବା ଲକ୍ଷ୍ୟରେ ପ୍ରତୀକ ରାଓଲାଟ ଆଇନକୁ ମଞ୍ଜୁର ନ ଦେବା ପାଇଁ ୧୯୨୯ ଅପ୍ରେଲ ୮ ତାରିଖରେ କେନ୍ଦ୍ର ବିଧାନପରିଷଦର ସଦସ୍ୟବର୍ଗଙ୍କୁ ସଚେତନ କରାଇବା ଲକ୍ଷ୍ୟରେ ବୋମା ନିକ୍ଷେପ ଅପରାଧରେ ତାଙ୍କୁ ଓ ତାଙ୍କ ସହଯୋଗୀ **ସୁଖଦେବ ଓ ରାଜଗୁରୁଙ୍କୁ** ୧୯୩୧ ମାର୍ଚ୍ଚ ୨୩ ତାରିଖରେ ଫାଶୀ ଦିଆଗଲା । ୧୭୫୭ ପଲାସୀ ଯୁଦ୍ଧରେ ନବାବ **ସିରାଜଉଦ୍ଦୌଲା,** ୧୭୯୮ ରେ ମହୀଶୂରର ପରାକ୍ରମୀ ଶାସକ **ଟିପୁ ସୁଲତାନ,** ୧୮୧୭ ଓଡ଼ିଶା ପାଇକ ବିଦ୍ରୋହରେ **ବାମଦେବ ପଟଯୋଷୀ, ନାରାୟଣ ପରମଗୁରୁ, ପର୍ଶୁରାମ ରାଉତରାୟ** ଓ **ସଚ୍ଚିଦାନନ୍ଦ ପଟ୍ଟନାୟକ,** ପ୍ରମୁଖ, ୧୮୫୭ର ପ୍ରଥମ ସଂଗଠିତ ସ୍ୱାଧୀନତା ସଂଗ୍ରାମରେ **ରାଜା ବାହାଦୁର ସାହଙ୍କ** ଆତ୍ମବଳୀ ଦାନ ସହ ଝାନ୍‌ସୀରାଣୀ **ଲକ୍ଷ୍ମୀବାଈ, କନଓ୍ୱାର ସିଂ,** ବଖତ **ଖାଁ,** ଖାଁ **ବାହାଦୁର ଖାଁ** ଓ **ଅହମ୍ମଦୁଲ୍ଲା** ପ୍ରମୁଖ ୨୭ ହଜାର ମୁସଲମାନ ସମ୍ମୁଖ ରଣ କ୍ଷେତ୍ରରେ ପ୍ରାଣ ବିସର୍ଜନ କରିଛନ୍ତି । ସିପାହୀ ବିଦ୍ରୋହର ଅନ୍ୟତମ ତୁଙ୍ଗ ନେତା **ବୀର ସୁରେନ୍ଦ୍ରସାଏଙ୍କ** ଦୁଃସହ ଜୀବନ ଗାଥା ଇତିହାସ ହୋଇ ରହିଛି । ବିପ୍ଳବ ଭୂଇଁ ମେଦିନୀପୁରର ନବ ଯବାନ ଖୁଦିରାମ ମଜାଫରପୁର ଜିଲ୍ଲାଜଜ୍ [illegible] ହତ୍ୟା ପାଇଁ ଉଦ୍ୟମ କରି ୧୯୦୮ ଅଗଷ୍ଟ ୧୧ [illegible] ଫାଶୀ ପାଇଛନ୍ତି । ସରକାରୀ ବିରୋଧୀ ଷଡ଼ଯନ୍ତ୍ରରେ **ସତ୍ୟେନ ବସୁ** ଓ **କାନାଇ ଦତ୍ତ,** ଦକ୍ଷିଣ ଭାରତର ବିପ୍ଳବୀ ନେତା ବଞ୍ଚିଆୟାର, ବଡ଼ଲାଟ ଲର୍ଡ଼ କର୍ଜନଙ୍କ ହତ୍ୟା ଅପରାଧରେ ୧୯୦୯ ଅଗଷ୍ଟ ୧୭ ରେ **ମଦନଲାଲ ଧୀଙ୍ଗ୍ରା,** ୧୯୧୫ ସେପ୍‌ଟେମ୍ବର ୯ ତାରିଖରେ ବାଲେଶ୍ୱର ଚଷାଖଣ୍ଡ ସଂଗ୍ରାମରେ **ବାଘାଯତୀନ, ଚିତ୍ତପ୍ରିୟ, ମନୋରଞ୍ଜନ ଓ ନୀରେନ୍ଦ୍ର,** ଭାରତୀୟ ଉପନିବେଶ ସେନା ବାହିନୀର ନେତା **ସୂର୍ଯ୍ୟସେନ,** ସାଥୀ **ଟେଗ୍ରାବଳ, ବୀଣା ଦାସ** ପ୍ରମୁଖ ଆତ୍ମବଳି ଦାନ କରି ଅମରତ୍ୱ ଲାଭ କରିଛନ୍ତି । ସ୍ୱାଧୀନତା ପ୍ରାପ୍ତି ପାଇଁ ଭାରତୀୟଙ୍କ ଯୋଗ୍ୟତା ପରଖକୁ ଆସିଥିବା ସାଇମନ କମିଶନ ବର୍ଜନ ଆନ୍ଦୋଳନରେ ନେତୃତ୍ୱ ନେଇ ପଞ୍ଜାବ କେଶରୀ **ଲାଲା ଲଜପତ ରାୟ** ନିର୍ମମ ଲାଠି ମାଡ଼ରେ ଆହତହୋଇ ୧୯୨୮ ନଭେମ୍ବର ୨୩ ତାରିଖରେ ପ୍ରାଣପାତ କରିଛନ୍ତି । "ଝଣ୍ଡା ଉଁଚା ରହେ ହମାରା" - ଉଦ୍‌ବୋଧନୀର ସ୍ୱର ସଂଯୋଜକ ଗଣେଶ ଶଙ୍କର ବିଦ୍ୟାର୍ଥୀ ଏକ ସାଂପ୍ରଦାୟକ ଦଙ୍ଗାକୁ ଦମନ କରିବାକୁ ଯାଇ ପ୍ରାଣ ବିସର୍ଜନ କରିଛନ୍ତି । ବ୍ରହ୍ମଦେଶର **ବୌଦ୍ଧଭିକ୍ଷୁ ପୁଙ୍ଗିବିଜୟା** ବନ୍ଦୀ ଜୀବନର ସଂସ୍କାର ଦାବି କରି ୧୬୪ ଦିନ ପ୍ରାୟୋପ ବେଶନରେ ରହି ୧୯୨୯ ସେପ୍‌ଟେମ୍ବର ୨୯ ରେ ଓ ୬୪ ଦିନ ଅନଶନ କରି ୧୯୨୯ ସେପ୍‌ଟେମ୍ବର ୧୩ ରେ ଯତୀନ୍ଦ୍ରନାଥ ଦାସ ପ୍ରାଣ ବିସର୍ଜନ କରିଛନ୍ତି । ଆମ ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଢେଙ୍କାନାଳର **ବାଜିରାଉତ ନଟ, ଧୃଷି** ଓ **ଗୁରି,** ରଣପୁରର **ରଘୁନାଥ ମହାନ୍ତି** ଓ **ଦିବାକର ପରିଡ଼ା,** ନୟାଗଡ଼ର କଷ୍ଟିଚାକୁଆ, ଭାରତର ଅନ୍ତିମ ସ୍ୱାଧୀନତା ସଂଗ୍ରାମ "ଭାରତଛାଡ଼" ରେ ଭାଗ ନେଇ ମେଦିନୀପୁରର ଗାନ୍ଧୀ ବୁଢୀ **ମାତଙ୍ଗିନୀ ହାଜରା,** ଛାତ୍ର ବିପ୍ଳବୀ **ହିମୁ କଲ୍ୟାଣୀ,** ପୁରୀ ଜିଲ୍ଲା ନିମାପଡ଼ାର **ଲଷବ** ମଲିକ, କୋରାପୁଟର **ଲକ୍ଷ୍ମଣ ନାୟକ** ପ୍ରାଣ ବିସର୍ଜନ କରିଛନ୍ତି । ଗଞ୍ଜାମର ମାଷ୍ଟର **ସାନେୟା,** କୋରାପୁଟ ବନ୍ଦୀଶାଳାରେ ୪୦ଜଣ, ନବରଙ୍ଗପୁର ବନ୍ଦୀଶାଳାରେ ୧୨ ଜଣ ସଂଗ୍ରାମୀ ଅକାଳରେ ଟଳି ପଡ଼ିଛନ୍ତି । ବାଲେଶ୍ୱର ଜିଲ୍ଲା ଇରମ ଗୁଳିକାଣ୍ଡକୁ ଦ୍ୱିତୀୟ ଜାଲିଆନାବାଲାବାଗ କୁହାଯା, । ଶ୍ରୀ କମଳା ପ୍ରସାଦ କର ଓ ଗୌରାଙ୍ଗ ଚରଣ ମହାନ୍ତିଙ୍କ ନେତୃତ୍ୱରେ ପରିଚାଳିତ ସଂଗ୍ରାମରେ ୧୯୪୨ ଅଗଷ୍ଟ ୨୮ ରେ **କୁଶ ଚରାଇ** ପ୍ରମୁଖ ୨୮ ଜଣ ଓ ଯାଜପୁର **ବରୀ ଅଞ୍ଚଳ** କାଇମାଟିଆ ଗୁଳି କାଣ୍ଡରେ **ହାଡ଼ିବନ୍ଧୁ, ମାୟାଧର, ସାଇଁଟି ଓ ସାନନ୍ଦ** ପ୍ରମୁଖ ବହୁ ସାଧାରଣ ଜନତା ନିହତ ହୋଇଛନ୍ତି । ଆଜାଦ୍-ହିନ୍ଦ୍-ଫୌଜର **ସର୍ବାଧିନାୟକ ନେତାଜୀ ସୁଭାଷଙ୍କ ଜୀବନାବସାନ** ଏବେ ବି **ରହସ୍ୟାବୃତ୍ତ** ।

୧୯୩୦ ଲବଣ ସତ୍ୟାଗ୍ରହରେ କଟକ ବହୁଗ୍ରାମ ନିବାସୀ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତଃ କୃଷ୍ଣ ଚନ୍ଦ୍ର

ଘୋଷଙ୍କ ପୁତ୍ର **ନିରଞ୍ଜନ** ହଜାରିବାଗ ବନ୍ଦୀଶାଳାରେ, ୨୨ ଜଣ ସତ୍ୟାଗ୍ରହୀ ପାଟଣା କ୍ୟାମ୍ପ ଜେଲ୍‌ରେ ଓ ସତ୍ୟାଗ୍ରହୀ **ମଧୁସୂଦନ ଦାସ** କଟକ ବନ୍ଦୀଶାଳାରେ ପ୍ରାଣତ୍ୟାଗ କରିଛନ୍ତି ।

ଭାରତୀୟ ଶହୀଦବର୍ଗଙ୍କ ଆତ୍ମବଳି ଦାନରେ ଅଭିଭୂତ ହୋଇ ମିଃ ଚର୍ଚ୍ଚିଲଙ୍କ ପରି ଭାରତ ବିଦ୍ୱେଷୀ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ଯେ - ଭାରତୀୟ ମାନଙ୍କର ଏକମାତ୍ର ଶିକ୍ଷା ହେଉଛି ଆତ୍ମବଳି ଦାନ । ଏହା ଦେଶାତ୍ମ ବୋଧ ଇତିହାସରେ ସର୍ବୋତ୍କୃଷ୍ଟ ବାଣୀ ରୂପେ ପ୍ରଶଂସନୀୟ ରହିବ ।''

ଏହିପରି ବହୁ ସଂଗ୍ରାମୀ ଓ ଶହୀଦଙ୍କ ପ୍ରାଣ ବିନିମୟରେ ୧୯୪୭ ଅଗଷ୍ଟ ୧୫ରେ ଆମେ ବିଦେଶୀ କବଳରୁ ମୁକ୍ତ ହୋଇ ସ୍ୱାଧୀନ ହେଲୁ ସତ, ମାତ୍ର ସ୍ୱରାଜ୍ୟ ଅଦ୍ୟାବଧି ମିଳିପାରିଲା ନାହିଁ । ନେତାଜୀ ସୁଭାଷଙ୍କ ଦ୍ୱାରା **ଜାତିର ଜନକ** ରୂପେ ଅଭିହିତ **ମହାତ୍ମା ଗାନ୍ଧୀ** ସଦ୍‌ଭାବ ଓ ସଂପ୍ରୀତି ରକ୍ଷା କରିବାକୁ ଯାଇ ୧୯୪୮ ଜାନୁୟାରୀ ୩୦ରେ ପ୍ରାର୍ଥନା ମଣ୍ଡପରେ ଜଣେ ଅସହିଷ୍ଣୁ ଆତତାୟୀର ଗୁଳିରେ ନିହତ ହୋଇ ଶହୀଦତ୍ୱ ଲାଭ କଲେ । ତାଙ୍କୁ ହରାଇ ତାଙ୍କ କଳ୍ପିତ ସ୍ୱରାଜ-ସୌଧ ଅପୂର୍ଣ୍ଣାଙ୍ଗ ରହିଯାଇଛି ।

ଆମ ଦେଶର ସ୍ୱାଧୀନତା ଓ ସାର୍ବଭୌମତ୍ୱ ରକ୍ଷା ପାଇଁ ଆମର ବୀର ସୈନିକମାନେ ଖରା, ବର୍ଷା, ଶୀତ କାକରକୁ ଭ୍ରୁକ୍ଷେପ ନକରି ଜୀବନ ପଣ କରି ସଦା ଜାଗ୍ରତ ରହିଛନ୍ତି । ସେମାନେ ଆମର ନମସ୍ୟ । ପ୍ରସଙ୍ଗ କ୍ରମେ ହାବିଲଦାର ହମିଦ୍‌ଙ୍କୁ ଆମେ ଅବଶ୍ୟ ସ୍ମରଣ କରିବା । ୧୯୬୨ ଅକ୍ଟୋବର ୨୦ । ସୀମାରେଖା ମ୍ୟାକମୋହନଲାଇନ୍‌କୁ ଟପି ପଡ଼ୋଶୀ ଚୀନ ଆମ ପବିତ୍ର ଭାରତ ଭୂଇଁକୁ ମାଡ଼ି ଆସିଲା ବେଳେ ହମିଦ୍‌ଙ୍କ ନେତୃତ୍ୱରେ ଭାରତୀୟ ବାହିନୀ ସେମାନଙ୍କ ଗତିରୋଧ କଲେ । ଚାରୋଟି ଶିଶୁ ସନ୍ତାନଙ୍କ ମୋହକୁ ଏଡ଼ି ଦେଇ ବୀର ହମିଦ୍ ସମ୍ମୁଖ ରଣ କ୍ଷେତ୍ରରେ ପ୍ରାଣପାତ କରି ପ୍ରମାଣ କରି ଗଲେ ଯେ - ''ଜନନୀ ଜନ୍ମଭୂମି ଶ୍ଚ ସ୍ୱର୍ଗାଦପି ଗରୀୟସୀ ।''

ସବୁ ଜାତି ଓ ସବୁ ଦେଶରେ ମଣିଷ **ପରି** ମଣିଷ ଅଛନ୍ତି । ୧୯୬୮ ଜାନୁୟାରୀରେ ଢ଼ାକାସ୍ଥିତ **ନାରାୟଣ** ଗଞ୍ଜରେ ସାଂପ୍ରଦାୟିକ ଦଙ୍ଗାର ଅବସାନ **ପାଇଁ ୨୮** ବର୍ଷ ବୟଷ ଢ଼ାକା ମହାବିଦ୍ୟାଳୟର **ଦର୍ଶନ-ଅଧ୍ୟାପକ** **ମହାମାନ୍ୟ ନୋରାଜ** ଆଗେଇ ଆସି **ସେହି** ଦଙ୍ଗା ଗୋଳ ମଧ୍ୟରେ ପ୍ରାଣପାତ କଲେ । **କଳା-ଗୋରା** ଭେଦର ଅବସାନ ପାଇଁ ଅହିଂସକ ସଂଗ୍ରାମ**ରେ ମାର୍କିନ**-ଗାନ୍ଧୀ **ମାର୍ଟିନ ଲୁଥର କିଂ** ଓ ପ୍ରେସିଡ଼େଣ୍ଟ **ଜନ୍ କେନେଡ଼ି** ଅସଂହିଷ୍ଣୁ ଲୋକଙ୍କ ହାତରେ ବଳି ପଡ଼ିଛନ୍ତି । ୧୯୬୩ ଜାନୁୟାରୀ ୧୫ **ତାରିଖରେ** ମହାନଦୀ ଉପରେ ନରାଜଠାରେ ନିର୍ମା**ଣଧୀନ** ଏକ ବିରାଟ ପୋଲରେ ବିସ୍ଫୋରଣ ଘଟି ପ**ଞ୍ଚାଙ୍କ ପାଣ୍ଡଲା** ଗ୍ରାମର ୪୬ ଜଣ ଖଟିଖିଆ ପ୍ରାଣ **ହରାଇ**ଛନ୍ତି । ଚାଷନଲା ଖଣିରେ ହଠାତ୍ ଦିନେ ଜଳପାବନ **ଘଟି** ୩୭୫ ଜଣ ଶ୍ରମ ରତ ଶ୍ରମିକଙ୍କ ଜୀବନ ଦୀପ ଆଖି**ପିଛୁଳା**କେ ଲିଭିଯାଇଛି । ମାନବୀକ ମୂଲ୍ୟବୋଧର ପ୍ରତୀ**କ** ତଥା ସମୂହ କଲ୍ୟାଣ କର ଯୋଜନାରେ **ଏତାଦୃଶ** ଜୀବନାବସାନକୁ ଆମେ ନିଶ୍ଚିତ ସ୍ମରଣ କରି**ବା** । ଆସନ୍ତୁ ଏହି ଶୁଭ ଅବସରରେ ସ୍ୱାଧୀନତା ସଂଗ୍ରାମ, **ନବଭାରତ** ନିର୍ମାଣ ତଥା ଭାରତର ସର୍ବଭୌମତ୍ୱ **ରକ୍ଷା** ପାଇଁ ପ୍ରାଣପାତ କରୁଥିବା ବୀରମାନଙ୍କୁ ତଦ୍‌ଗତ ହୃଦୟରେ ସ୍ମରଣ କରିବା ଓ ସେମାନଙ୍କ ଆଶିଷ ଭିକ୍ଷା **କରି** ଧନ୍ୟ ହେବା

ଶହୀଦ ବର୍ଗଙ୍କୁ ଭକ୍ତି ଶ୍ରଦ୍ଧାଞ୍ଜଳି **ନିବେଦନ**ପାଇଁ ପରମ ଶହୀଦ ମହାତ୍ମା ଗାନ୍ଧୀଙ୍କ ନିଧନ ଦିବ**ସ ଜାନୁ**ୟାରୀ ୩୦ ତାରିଖକୁ ଶହୀଦ - ଦିବସ ରୂପେ **ସର୍ବତ୍ର** ପାଳନ କରାଯାଉଛି । (ସର୍ବୋଦୟ ମେଳା, ପୁରୀ)

**ଇଂରାଜୀ ଜ୍ଞାନ ବ୍ୟତୀତ ଭଦ୍ର ସମାଜରେ ପ୍ରବେଶ ଲାଭ ଅସମ୍ଭବ ଏ ଭାବନା ବାଳକ ବାଳିକାଙ୍କ ଠାରେ ଜାଗ୍ରତ କରାଇ ବା ଦ୍ୱାରା ପୁରୁଷ ଜାତି, ବିଶେଷତଃ ନାରୀ ଜାତି ପ୍ରତି ଅବମାନନା କରାଯାଉଛି ।**

# ବୁନିୟାଦି ଶିକ୍ଷା

## ମୌଳିକ ଶିକ୍ଷା

ଇନ୍ଦୁଭୂଷଣ ମିଶ୍ର

୧୯୪୧ ମସିହା କଥା । ସେତେବେଳେ ମୁଁ କଟକ ଟ୍ରେନିଙ୍ଗ କଲେଜର ଛାତ୍ର । ପୂଜା ଛୁଟି ପୂର୍ବରୁ ଆମ୍ଭେ କେତେଜଣ ଛାତ୍ର, ଅଧ୍ୟାପକ ଶ୍ରୀ ରାମଚନ୍ଦ୍ର ମହାପାତ୍ର ଏବଂ ଅଧ୍ୟାପକ ରାମନାରାୟଣ ମହାନ୍ତି ଯାଇଥିଲୁ ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟ ଦେଖିବାପାଇଁ । ସେଠାରେ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ ଏବଂ ରମାଦେବୀଙ୍କ ପ୍ରଚେଷ୍ଟାରେ ଗାନ୍ଧୀ ବିଚାର ଅନୁସରଣରେ ଗୋଟିଏ ମୌଳିକ ପ୍ରାଥମିକ ବିଦ୍ୟାଳୟ ଆରମ୍ଭ ହୋଇଥିଲା ୧୯୩୯ ମସିହାରେ । ସେଇ ବିଦ୍ୟାଳୟଟିରେ ଅନ୍ୟାନ୍ୟ ଗୁରୁଜୀଙ୍କ ସହିତ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାରଣା ଏବଂ ଶ୍ରୀଯୁକ୍ତ ଫକୀର ମିଶ୍ର ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ଥିଲେ । ବହୁତ ବାଳକ ବାଳିକା ପାଠ ପଢ଼ିବାକୁ ଆସୁଥିଲେ । ଗାନ୍ଧୀ ନୀତିରେ ନୂଆ ଢଙ୍ଗରେ ଶିକ୍ଷା-ଦାନ ପଦ୍ଧତିର ଅନୁଧ୍ୟାନ କରିବାକୁ ଆମେମାନେ ଯାଇଥିଲୁ । କିନ୍ତୁ ସେଠାରେ ଅଳ୍ପ ସମୟ ମଧ୍ୟରେ ପିଲାମାନଙ୍କର ପ୍ରଫୁଲ୍ଲତା ସ୍ୱଚ୍ଛନ୍ଦ ଆତ୍ମପ୍ରକାଶ ଏବଂ ସାମୂହିକ କାର୍ଯ୍ୟମାନ ଦେଖି ଆମ୍ଭେମାନେ ଅତୀବ ପ୍ରୀତ ହେଲୁ । ପିଲାମାନେ ସଫେଇ, କୃଷି, ସୂତାକଟା, ପାର୍ଥନା, ଡ୍ରିଲ ଓ ବ୍ୟାୟାମ ଆଦି କାର୍ଯ୍ୟ ଜରିଆରେ ଶିକ୍ଷାଲାଭ କରୁଥିଲେ । ଶ୍ରେଣୀଗୃହରେ ପାଠ ପଢ଼ିବା ଏବଂ ବାହାରେ ନାନା ପର୍ଯ୍ୟବେକ୍ଷଣ ଜରିଆରେ ଶିକ୍ଷାଲାଭ କରିବା ଆଦିର ପ୍ରଚଳନ ମଧ୍ୟ ଥିଲା । ବିଦ୍ୟାଳୟଟି ଥିଲା ଗୋଟିଏ ସମାଜ । ସେଥିରେ ପିଲାମାନେ ସାମୂହିକ ଜୀବନ ଯାପନ କରିବାର ପ୍ରଣାଳୀ ଶିକ୍ଷାଲାଭ କରୁଥିଲେ । ପ୍ରଧାନମନ୍ତ୍ରୀ, କୃଷିମନ୍ତ୍ରୀ, ସଫେଇ ମନ୍ତ୍ରୀ ଆଦି ମନ୍ତ୍ରୀମାନଙ୍କର ମାସକର କାର୍ଯ୍ୟ-ବିବରଣୀ ପାଠ ଶୁଣି ଆମ୍ଭେମାନେ ଏ ନୂତନ ଶିକ୍ଷାର ମହତ୍ତ୍ୱ ବହୁ ପରିମାଣରେ ହୃଦୟଙ୍ଗମ କରିପାରିଲୁ । ବ୍ରାହ୍ମଣୀ ନଦୀର କୂଳରେ ପିଲାମାନେ ନିଜେ ନିଜେ ସଙ୍ଗଠିତ ହୋଇ ଯେଉଁ ଡ୍ରିଲ ଏବଂ କ୍ରୀଡ଼ା ପ୍ରଦର୍ଶନ କଲେ ତାହା ଏ ପର୍ଯ୍ୟନ୍ତ ମୋର ମନେ ଅଛି । ଶରତ ଭାଇ ଓ ଫକୀର ମିଶ୍ରଙ୍କ ସହିତ ଏହି ନୂତନ ଶିକ୍ଷା ପଦ୍ଧତିର ପ୍ରତ୍ୟକ୍ଷ କାର୍ଯ୍ୟାବଳୀ ସମ୍ବନ୍ଧରେ କିଛି ଆଲୋଚନା କଲୁ । ଆମର ହୃଦବୋଧ ହେଲା ଯେ ମୌଳିକ ଶିକ୍ଷା ପ୍ରଚଳନଦ୍ୱାରା ଶିଶୁ ଅବସ୍ଥାରୁ ଆମ ଦେଶର ପିଲାମାନଙ୍କୁ ଉତ୍ତମ ରୂପେ ଗଢ଼ି ହେବ ଏବଂ ସେମାନେ ସୁନାଗରିକ ଭାବେ ନିଜକୁ, ସମାଜକୁ ଏବଂ ଦେଶକୁ ସୁଚାରୁ ରୂପେ ଚଳାଇବାରେ କ୍ଷମ ହେବେ ।

ମୁଁ ୧୯୪୨ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଫୁଲବାଣୀର ତତ୍କାଳୀନ ସରକାରୀ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କରୁଥିଲି । ୧୯୪୭ ମସିହାରେ ଜନସାଧାରଣଙ୍କ ଦାବୀ ଏବଂ ମୋର ପ୍ରଚେଷ୍ଟାରେ ମଧ୍ୟ ଇଂରାଜୀ ବିଦ୍ୟାଳୟଟି ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା । ତତ୍କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ଲିଙ୍ଗରାଜ ମିଶ୍ର ମଧ୍ୟଇଂରାଜୀ ବିଦ୍ୟାଳୟଟି ପରିଦର୍ଶନ କରି ପିଲାମାନଙ୍କର ପାଠ ଓ କାର୍ଯ୍ୟାବଳୀରେ ଅତି ସନ୍ତୋଷ ପ୍ରକାଶ କରି ମୌଳିକ ଶିକ୍ଷା ପ୍ରଣାଳୀରେ ତାଲିମ ପାଇଁ ସେବାଗ୍ରାମ ଯିବାପାଇଁ ମୋତେ ମନୋନୀତ କରିଥିଲେ ।

ମୁଁ ଜୁନ ଜୁଲାଇ ମାସରେ ମୌଳିକ ଶିକ୍ଷାରେ ପ୍ରାଥମିକ ତାଲିମ ପାଇବାପାଇଁ ଅନୁଗୁଳ ଆସିଲି । ଅନୁଗୁଳ ପ୍ରାଥମିକ ଶିକ୍ଷକ ଟ୍ରେନିଙ୍ଗ ସେଣ୍ଟରଟି ମୌଳିକ ଶିକ୍ଷା ତାଲିମ କେନ୍ଦ୍ରରେ ପରିଣତ ହୋଇଥାଏ । ସେଠାରେ ମୁଁ ତିନିମାସ ରହି ଶ୍ରୀଯୁକ୍ତ ଗୌରିଚନ୍ଦ୍ର ପାଢ଼ୀଙ୍କ ତତ୍ତ୍ୱାବଧାନରେ କେତେକ ଜୁନିୟର ବେସିକ ସ୍କୁଲ ଗୁରୁଜୀଙ୍କ ସହିତ ତିନିମାସ ତାଲିମ ପାଇଲି । ଗୌରବାବୁ ଥିଲେ ଜଣେ ଅତି ସୁଶୃଙ୍ଖଳ ନୀତିବାନ ଏବଂ ଦୃଢ଼ମନା ଲୋକ । ସେ ମୌଳିକ ଶିକ୍ଷା ସମ୍ବନ୍ଧରେ

ମୋତେ ମୋଟାମୋଟି ଭାବେ ଗୋଟିଏ ସ୍ପଷ୍ଟ ଧାରଣା ଦେଇଥିଲେ । ତାପରେ ମୁଁ ଗଲି ସେବାଗ୍ରାମ ।

ମୁଁ ସେବାଗ୍ରାମରେ ପହଞ୍ଚିଲା ବେଳକୁ ଓଡ଼ିଶାରୁ ଆହୁରି ଆଠ ଦଶଜଣ ଶିକ୍ଷକ ମଧ୍ୟ ତାଲିମ ପାଇଁ ସେଠାରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଥିଲେ ଉଦୟନାଥ ଆଚାର୍ଯ୍ୟ, ବାମନ ମିଶ୍ର, ହରେକୃଷ୍ଣ ମହାନ୍ତି, ଆଦିକନ୍ଦ ନାୟକ ଇତ୍ୟାଦି । ସେବାଗ୍ରାମରେ ଆମ୍ଭେମାନେ ପାଞ୍ଚମାସ ରହିଲୁ । ସେତେବେଳେ ସେବାଗ୍ରାମରେ ଇ.ଡବ୍ଲ୍ୟୁ ଆର୍ଯ୍ୟନାୟକମ୍ ଥିଲେ ସେକ୍ରେଟାରୀ ଏବଂ ତାଙ୍କର ପତ୍ନୀ ଆଶାଦେବୀ ଥିଲେ ପ୍ରିନ୍ସିପାଲ । ଆମ୍ଭମାନଙ୍କ ପରି ଭାରତବର୍ଷର ସବୁ ପ୍ରଦେଶରୁ ଓ ନେପାଳରୁ ମଧ୍ୟ ଶିକ୍ଷକ ଶିକ୍ଷୟତ୍ରୀମାନେ ଏଇ ନୂତନ ଶିକ୍ଷା ପଦ୍ଧତିରେ ତାଲିମ ନେବାପାଇଁ ସେଠାରେ ଏକତ୍ରିତ ହୋଇଥିଲେ । ସେଠାରେ ଆମେମାନେ ଗୋଟିଏ ସର୍ବଭାରତୀୟ ସାମୂହିକ ଜୀବନ ଯାପନ କରିବାର ସୁଯୋଗ ପାଇଲୁ । ସୂତାକଟା, ସଫେଇ, କୃଷି, ରୋଷେଇ, ବାସନମଜା ଓ ନାଚଗୀତ ଆଦି ସାଙ୍ଗକୁ ରୀତିମତ ପାଠପଢ଼ାର ମଧ୍ୟ ବ୍ୟବସ୍ଥା ଥିଲା । ବିନୋବାଭାବେ, ଜେ.ସି. କୁମାରାପ୍ପା, କାକା କଲେଲକର ଏବଂ ସନ୍ଥ ଟୁକ୍‌ଡୋଜୀଙ୍କ ପରି ମହାପୁରୁଷମାନେ ଆମ୍ଭମାନଙ୍କୁ ଶ୍ରେଣୀଗୃହରେ ଦେଶର ଅର୍ଥନୀତି ଏବଂ ସେମାନଙ୍କ ସଙ୍ଗେ ଆମେ ବହୁତ ଆଲୋଚନା କରିବାର ସୁବିଧା ପାଇଥିଲୁ । ତା'ଛଡ଼ା ଦେଶ ବିଦେଶରୁ ବହୁ ଶିକ୍ଷାବିତ୍ ଓ ସମାଜସେବୀ ସେଠାକୁ ଆସୁଥିବାରୁ ଆମ୍ଭେମାନେ ସେମାନଙ୍କର ସାନ୍ନିଧ ଲାଭ କରିପାରିଥିଲୁ ।

ଗାନ୍ଧିଜୀଙ୍କ ସେବାଗ୍ରାମକୁ ଆସିବାକୁ ଆଉ ଦୁଇଦିନ ଥାଏ, ସେ ଆତତାୟୀର ଗୁଳିରେ ପ୍ରାଣତ୍ୟାଗ କଲେ । ଏଇ ଦାରୁଣ ନିର୍ମମ ବାର୍ତ୍ତା ସେବାଗ୍ରାମର ନୟୀ ତାଲିମ ଏବଂ ଅନ୍ୟାନ୍ୟ ଅନୁଷ୍ଠାନମାନଙ୍କରେ ପହଞ୍ଚିଲା ମାତ୍ରେ ଏକ ପ୍ରକାର ଅଦ୍ଭୁତ ନିସ୍ତବ୍ଧତା ଲକ୍ଷ୍ୟ କରାଯାଇଥିଲା । ସେଠାରେ କାନ୍ଦବୋବାଳି, ଅସ୍ଥିରତା ବା କାହାରିକୁ ବିଚଳିତ ହେବାର ଦେଖାଯାଇ ନଥିଲା । ଦୈନିକ କାର୍ଯ୍ୟକ୍ରମ ତା' ବାଟରେ ଚାଲିଥିଲା । କୌଣସି ଶୋକ-ସଭାସମିତି ଇତ୍ୟାଦିର ବନ୍ଦୋବସ୍ତ ହୋଇନଥିଲା । ଏହା ଧୈର୍ଯ୍ୟର ଗୋଟିଏ ବଳିଷ୍ଠ ଉଦାହରଣ । କେତେ ଦିନ ପରେ ବିନୋବାଙ୍କ ପୌନାର ଆଶ୍ରମ ପାଖ ଧାମ ନଦୀରେ ଗାନ୍ଧିଜୀଙ୍କ ଚିତା-ଭସ୍ମ ବିସର୍ଜନ କରାଗଲା । ସେଥିରେ ହଜାର ହଜାର ଲୋକଙ୍କ ମଧ୍ୟରେ ଆମ୍ଭେମାନେ ଉପସ୍ଥିତ ରହି ଭଜନ ଓ ପ୍ରାର୍ଥନାରେ ଭାଗ ନେଇଥିଲୁ । ୧୯୪୮ ମସିହା ମାର୍ଚ୍ଚ ମାସ ଆରମ୍ଭ । ସମସ୍ତ ନିରାପତ୍ତା ମଧ୍ୟରେ ସେବାଗ୍ରାମର ଖଦୀ ବିଦ୍ୟାଳୟରେ ପ୍ରଥମ ସର୍ବସେବା-ସଂଘର ଅଧିବେଶନ ବସିଲା । ରାଜେନ୍ଦ୍ର ପ୍ରସାଦ, ନେହେରୁ ଓ ଆଜାଦଙ୍କଠାରୁ ଆରମ୍ଭ କରି ଭାରତର ଚତୁର୍ଦ୍ଦିଗରୁ ସ୍ୱାଧୀନତା-ସଂଗ୍ରାମୀ ଓ କଂଗ୍ରେସ କର୍ମୀମାନେ ଯୋଗ ଦେଇଥିଲେ । ସେଥିରେ ଯୋଗ ଦେବାର ସୁଯୋଗ ଆମ୍ଭେମାନେ ମଧ୍ୟ ପାଇଥିଲୁ । ମାର୍ଚ୍ଚ ମାସରେ ପାଞ୍ଚମାସର ତାଲିମ ଶେଷ କରି ଆମ୍ଭେ ଓଡ଼ିଶାର ଶିକ୍ଷକମାନେ ଫେରି ଆସିଲୁ ।

ଓଡ଼ିଶା ଫେରି ଆସିଲାପରେ ମୋତେ ନବରଙ୍ଗପୁର ମୌଳିକ ଶିକ୍ଷା ତାଲିମ କେନ୍ଦ୍ରର ପ୍ରଧାନ-ଶିକ୍ଷକ ରୂପେ ନିଯୁକ୍ତି ଦିଆଗଲା । ମୁଁ ସେଇ ତାଲିମ କେନ୍ଦ୍ରରେ ୧୯୪୮ ମସିହା ଜୁଲାଇ ମାସରେ ଯୋଗ ଦେଲି । ପ୍ରଥମେ ମୋର ସହକାରୀ ଶିକ୍ଷକ ଥିଲେ ଶ୍ରୀଯୁକ୍ତ ବାମନ ମିଶ୍ର ଏବଂ ଶ୍ରୀ ବିଦ୍ୟାଧର ମିଶ୍ର । ସ୍କୁଲଘର କହିଲେ ଥିଲା କେବଳ ପାଞ୍ଚୋଟି ହଲ୍ । କଞ୍ଚା ଇଟାର କାନ୍ଥ ଏବଂ ପାଳ ଛପର । ଉପର ଚାଳଟି ବାଉଁଶ ତିଆରି ଏବଂ ଅତି ଦୁର୍ବଳ । ଛପରଟି କେବଳ କୁଟାରେ ଆବୃତ । କେନ୍ଦ୍ରଟି ନବରଙ୍ଗପୁର ବାସିନ୍ଦା ପୂର୍ବତନ ଏମ୍.ଏଲ୍.ଏ. ବଳଭଦ୍ର ସାମନ୍ତରାୟଙ୍କ ପ୍ରଦତ୍ତ ଦଶ ଏକର ଗଡ଼ାଣିଆ ଅନୁର୍ବର ଜମି ଉପରେ ଥିଲା । ଘରଗୁଡ଼ିକରେ ଏବଂ ପାର୍ଶ୍ୱବର୍ତ୍ତୀ ଜାଗାରେ ବହୁ ସଂଖ୍ୟାରେ ବାସ କରୁଥିଲେ ଉଈ, କଙ୍କଡ଼ା-ବିଛା ଏବଂ ଗଣା ସାପ । ଏମାନଙ୍କ ସହିତ ବରାବର ସଂଘର୍ଷ କରିବାକୁ ପଡ଼ିଥିଲା ଆମକୁ ପ୍ରାୟ ତିନି

ବର୍ଷା କେନ୍ଦ୍ର ହତା ମଧ୍ୟରେ ପାଣିର ବ୍ୟବସ୍ଥା ନଥିବାରୁ ଆମ ସମସ୍ତଙ୍କୁ ନିକଟସ୍ଥ ଗ୍ରାମର ଗୋଟିଏ ଟୋଟାରେ ୧ କି.ମି. ଦୂରରେ ଥିବା କୂଅ ଉପରେ ନିର୍ଭର କରିବାକୁ ପଡୁଥିଲା। କେନ୍ଦ୍ର ନିକଟରେ ଥିବା ଗୋଟିଏ ଛୋଟ ପୋଖରୀରେ ବର୍ଷା ଦିନେ ଗାଧୁଆ ପାଧୁଆ ଚାଲିଯାଉଥିଲା।

ତାଲିମ କେନ୍ଦ୍ରଟି ଥିଲା ନବରଙ୍ଗପୁର ନିକଟସ୍ଥ ଟିଗିଣାନୀଗୁଡ଼ା ଓ କଇଗୁଡ଼ା ମଧ୍ୟବର୍ତ୍ତୀ ଗଡ଼ାଣିଆ ଅନୁର୍ବର ଜାଗାରେ। ନବରଙ୍ଗପୁର ସହରରୁ ଆମ କେନ୍ଦ୍ର କିମ୍ବା ସେ ଅଞ୍ଚଳର ଗାଁଗୁଡ଼ିକୁ ରାସ୍ତା ନଥିଲା। ସହରକୁ ଲାଗି ଗୋଟିଏ ନାଳ ଥିଲା। ସେ ନାଳଟି ଇନ୍ଦ୍ରାବତୀ ନଦୀରେ ମିଶୁଥିଲା। ଲୋକେ ନାଳ ପାର ହୋଇ ବିଲ ବାଟେ ଯିବା ଆସିବା କରୁଥିଲେ। ବେଶୀ ବର୍ଷା ହେଲେ ଆସିବା ବିଲକୁଲ୍ ବନ୍ଦ ହୋଇ ଯାଉଥିଲା। ଆମେ ଜୟପୁର ରାଜାଙ୍କ ମ୍ୟାନେଜରଙ୍କୁ କହି ଗୋଟିଏ ଲମ୍ବା କାଠ ଗଡ଼ ପକାଇ ଯିବା ଆସିବା ବନ୍ଦୋବସ୍ତ କଲୁ। ଥରେ ପ୍ରବଳ ବର୍ଷାରେ ନାଳଟି ଉଚ୍ଛୁଳି କାଠଗଡ଼କୁ ଭସାଇ ନେଲା ଇନ୍ଦ୍ରାବତୀ ନଦୀକୁ। କିନ୍ତୁ ଆମ ଯୁବ ଗୁରୁଛାତ୍ରମାନେ ପ୍ରବଳ ଚେଷ୍ଟା କରି କାଠ ଗଡ଼ଟି ରାତି ଅଧରେ ଉଦ୍ଧାର କରିଥିଲେ। ସେଇ ରାତିରେ ନବରଙ୍ଗପୁରରେ ଚଉଦ ଇଞ୍ଚ ବର୍ଷା ହୋଇଥିଲା ବୋଲି ଜଣାଗଲା। ଆର ଦିନ ସକାଳେ ଏସ୍.ଡି.ଓ. ମହାଶୟ ବୁଝିଲେ।

ପାଞ୍ଚ ବର୍ଷ ମଧ୍ୟରେ ଗୋଟିଏ ଛାତ୍ରାବାସ ଘରର ଚାଳ ଦୁଇଥର ଉଡ଼ିଯାଇ ନିକଟସ୍ଥ ଉଜାଘର ପୋଖରୀରେ ପଡ଼ିଯାଇଥିଲା। ଏହିପରି ଦୈବୀ ଦୁର୍ବିପାକ ମଧ୍ୟରେ କଷ୍ଟରେ ଚଳୁଥିଲେ ମଧ୍ୟ ଆମେ ସମସ୍ତେ ଅପାର ଆନନ୍ଦ ଲାଭ କରୁଥିଲୁ। ସେତେବେଳେ ଆମ ଭିତରେ ଥିଲା ଅଦମ୍ୟ ଶକ୍ତି ଓ ଉତ୍ସାହ। ପଞ୍ଚତିରିଶ ଜଣ ଅନ୍ତେବାସୀ ଗୁରୁ ଓ ଗୁରୁଛାତ୍ରଙ୍କର ଯୁବଶକ୍ତି ଓ ଆନନ୍ଦ ଉତ୍ସାହ ଏଇ ଗୋଷ୍ଠୀ ଜୀବନକୁ ସରସ ଓ ଆଦର୍ଶ କରୁଥିଲା।

କେନ୍ଦ୍ର ସ୍ଥାପିତ ହେବାର ମାତ୍ର ତିନି ଚାରିମାସ ପରେ ତତ୍‌କାଳୀନ ଏମ୍.ଏଲ୍.ଏ. ସ୍ୱର୍ଗତ ସଦାଶିବ ତ୍ରିପାଠୀ ଏବଂ ଗଭର୍ଣ୍ଣର ଆସଫ୍ ଅଲ୍ଲୀ ସ୍କୁଲ ପରିଦର୍ଶନରେ ଯାଇଥିଲେ। ଗଭର୍ଣ୍ଣରଙ୍କୁ ହାତୀରେ ଯିବାକୁ ପଡ଼ିଥିଲା। ଗଭର୍ଣ୍ଣର ସାହେବ ମାଟିଘର ଏବଂ କୁଟା ଛପର ଦେଖି ବିରକ୍ତି ପ୍ରକାଶ କରିଥିଲେ। ତାଲିମ କେନ୍ଦ୍ରପାଇଁ କୌଣସି ସିଲାବସ ନାହିଁ ବୋଲି ତାଙ୍କର ଧାରଣା ଥିଲା। ମୁଁ ତାଙ୍କୁ ଖଣ୍ଡିଏ ସିଲାବସ ଦେଲି। କେତେଜଣ ଗୁରୁଛାତ୍ରଙ୍କୁ ଜ୍ୱରରେ ପଡ଼ିଥିବା ଦେଖି ସେ ବିରକ୍ତି ପ୍ରକାଶ କରିଥିଲେ। ମୋଟ ଉପରେ ସେ ବାହ୍ୟ ବାତାବରଣ ଦେଖି ଅସନ୍ତୋଷ ପ୍ରକାଶ କଲେ। ଗୋଟି ଜାଗାରେ ରଖାଯାଇଥିବା ଆମ ବଗିଚାର ପନିପରିବା ଦେଖି ସଦାଶିବ ତ୍ରିପାଠୀ କାବା ହୋଇଗଲେ। ଭାବିଲେ ସେଗୁଡ଼ିକ ହାଟରୁ କିଣାଯାଇଥିଲା। କିନ୍ତୁ ବଗିଚାଟି ଦେଖି ସେ ଆମକୁ ବହୁତ ପ୍ରଶଂସା କଲେ। ଗୋଟିଏ ଛୋଟ ସଭାର ଆୟୋଜନ କରାଯାଇଥିଲା। ତହିଁରେ ଗଭର୍ଣ୍ଣର ବେସିକ ଏଜୁକେଶନ ସମ୍ବନ୍ଧରେ ପ୍ରଥମେ ଉର୍ଦ୍ଦୁ ଏବଂ ପରେ ପରେ ଇଂରାଜୀରେ ଅତି ସୁନ୍ଦର ଭାବରେ ବୁଝାଇଥିଲେ।

କେତେ ଦିନ ପରେ ମୁଁ ସଦାଶିବ ତ୍ରିପାଠୀଙ୍କଠାରୁ ଖଣ୍ଡିଏ ଚିଠି ପାଇଲି। ସେଥିରେ ସେ ମୋର ଏବଂ ଅନ୍ୟ ଗୁରୁଜୀଙ୍କର ପ୍ରଶଂସା କରିଥିଲେ ଏବଂ ଗଭର୍ଣ୍ଣର ସାହେବ ଆମମାନଙ୍କୁ ସମାଲୋଚନା କରିଥିବାରୁ ପରେ ଅନୁତପ୍ତ ହୋଇ ସଦାଶିବ ବାବୁଙ୍କ ଜରିଆରେ ତାଙ୍କର ମନ୍ତବ୍ୟପାଇଁ ଦୁଃଖ ପ୍ରକାଶ କରି ଆମକୁ ଜଣାଇ ଦେଇଥିଲେ।

ଦ୍ୱିତୀୟ ବର୍ଷ ଜୁଲାଇ ମାସ ବେଳକୁ ଶିକ୍ଷକମାନଙ୍କ ପାଇଁ ଛଅଟି ଅବାସ ଗୃହ ଓ ଅଫିସ ଘର ତିଆରି ହୋଇଥିଲା। କିନ୍ତୁ ସେଇ ମାଟି ଓ ଚାଳ ଘର। କିନ୍ତୁ ଆମ ହତା ମଧ୍ୟରେ କୂଅ ବନ୍ଧା କାମ ସରି ଯାଇଥିଲା।

ଯା ଭିତରେ ଆମର ପ୍ରି-ବେସିକ ସ୍କୁଲର ଶିଶୁମାନଙ୍କ ପାଇଁ ଶିକ୍ଷା ଜୁନିୟର ବେସିକ ସ୍କୁଲ କେନ୍ଦ୍ର

ଓ ଗୁରୁ ତାଲିମ କେନ୍ଦ୍ରର କାର୍ଯ୍ୟ ବହୁତ ଆଗେଇ ଯାଇଥିଲା । ଆମର ବାଡ଼ି ବଗିଚା ଚାଷବାସ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ କିନ୍ତୁ ଚାରିଆଡ଼େ ପ୍ରଚାର ହେଲା ଯେ ଏଠାରେ କେବଳ ନାଚଗୀତ, ଖେଳ, କୃଷି, ପାଇଖାନା ସଫେଇ ଆଦିରେ ଶିକ୍ଷା ଦିଆଯାଏ । ପାଠପଢ଼ା କଥା କେହି ଆଉ ବୁଝିପାରିଲେ ନାହିଁ । ଗାଁ ଲୋକେ ଭାବିଲେ ତାଙ୍କ ପିଲାମାନଙ୍କୁ ମାର୍ଚ୍ଚିଙ୍ଗ, ଡ୍ରିଲ ଆଦି ଶିଖାଇ ଆମେ ମିଲିଟାରିକୁ ପଠାଇଦେବୁ । ନବରଙ୍ଗପୁର, ଜୟପୁର ଏବଂ କୋରାପୁଟର କେତେକ ବୁଦ୍ଧିଜୀବୀ ଆମ କାର୍ଯ୍ୟକୁ ନବୁଝି ନିନ୍ଦା କରିବାର ଆମେ ଜାଣିଲୁ । କେତେକ ପାଠପଢ଼ା ସରକାରୀ କର୍ମଚାରୀ ଗୁପ୍ତ ଭାବେ ଆମ କେନ୍ଦ୍ରକୁ ଆସିଲେ । ଏବଂ ଆମ କାର୍ଯ୍ୟାବଳୀକୁ ଅଜାଣତରେ ଲକ୍ଷ୍ୟ କଲେ । ଜୟପୁର ରଜା ବିକ୍ରମ ଦେଓ ତାଙ୍କର ଜାମାତା ସିଂଦେଓ ଆମର ସେଣ୍ଟର ପରିଦର୍ଶନ କରିଥିଲେ । ଥରେ ଜଣେ ଗୁପ୍ତରେ ଧରାପଡ଼ିଗଲେ । ମୁଁ ତାଙ୍କୁ କିଏ ବୋଲି ପଚାରିବାରୁ ସେ ଜିଲ୍ଲା କଲେକ୍ଟର ଅଫିସ୍‌ର ଜଣେ ପଦସ୍ଥ କର୍ମଚାରୀ ବୋଲି କହିଲେ ଏବଂ କହିଲେ "ମୁଁ ସକାଳୁ ଆସି ଆପଣମାନଙ୍କ କାର୍ଯ୍ୟାବଳୀ ଦେଖି ଅତ୍ୟନ୍ତ ପ୍ରୀତ ଓ ମୁଗ୍ଧ ହୋଇଛି । ଖାଲି କୃଷି ଓ ପରିଷ୍କାର ପରିଚ୍ଛନ୍ନତା ନୁହେଁ ଜୁନିୟର ବେସିକ ସ୍କୁଲର ପାଠପଢ଼ା ସମ୍ବନ୍ଧରେ ମଧ୍ୟ ମୋର ଗୋଟିଏ ଦୃଢ଼ ଧାରଣା ହେଲା । ଆଜି ଜନ୍ମାଷ୍ଟମୀ ସମ୍ବନ୍ଧୀୟ ଆଲୋଚନାରେ ଭାଗ ନେଇ ପିଲାଏ ଯେପରି ଭାବରେ ଶୁଦ୍ଧ ଓଡ଼ିଆରେ କହିଲେ ସେଥିରେ ମୁଁ ସମ୍ପୂର୍ଣ୍ଣ ମୁଗ୍ଧ । ଆଦିବାସୀ ପିଲେ ପ୍ରାଥମିକ ସ୍ତରରେ ଶିକ୍ଷାରେ ଏତେ ଦୂର ଅଗ୍ରଗତି କରିଥିବେ ବୋଲି ମୋର ଧାରଣା ନଥିଲା ।

ସୁତରାଂ ଆସ୍ତେ ଆସ୍ତେ ଲୋକେ ଆମର କାର୍ଯ୍ୟାବଳୀକୁ ଠିକ୍ ରୂପେ ବୁଝିବାକୁ ଆରମ୍ଭ କଲେ । ସହରରେ ଖେଳକୁଦ ପ୍ରତିଯୋଗିତା ହେଲା । ଆମର ଆଦିବାସୀ ହରିଜନ ପିଲାମାନେ ତହିଁରେ ଭାଗ ନେଲେ । ସହରର ଉଚ୍ଚ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ପିଲାଏ ଏବଂ ମିଶନ ସ୍କୁଲର ପିଲାଏ ମଧ୍ୟ ଯୋଗ ଦେଇଥିଲେ । ଦେଖାଗଲା, ଆମ ବେସିକ ସ୍କୁଲର ମୁଷ୍ଟିମେୟ ଛାତ୍ରଛାତ୍ରୀ ଅର୍ଦ୍ଧାଧିକ ପୁରସ୍କାର ପାଇଗଲେ । ଏପରିକି ଅଙ୍କ ଦୌଡ଼ରେ ମଧ୍ୟ ସହରୀ ପିଲାଙ୍କୁ ଜିଣିଗଲେ ।

କୋରାପୁଟ ଡି.ଆଇ. ମହାଶୟ ବୁଲିଥର ଆମ କେନ୍ଦ୍ରକୁ ଆସି କେନ୍ଦ୍ରର କାର୍ଯ୍ୟାବଳୀ ଓ ଶ୍ରେଣୀ ଶିକ୍ଷା ଦେଖି ସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ମୌଳିକ ଶିକ୍ଷାର ପ୍ରଶଂସା କରିଥିଲେ । ଥରେ ମୁଁ ଡି.ଆଇ. ମହାଶଙ୍କ ସଙ୍ଗରେ ବରିଗୁମା ଯାଇଥିଲି । ସେଠାରେ ପରମ୍ପରାଗତ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଏବଂ ତା' ପାଖକୁ ଲାଗିଥିବା ଗୋଟିଏ ଜୁନିୟର ବେସିକ୍ ସ୍କୁଲ ଦେଖିଲୁ । ଆମଠାରୁ ସୂଚନା ପାଇ ସ୍କୁଲର ବିଗତ ମାସର କୃଷିମନ୍ତ୍ରୀ ଗଲା ମାସରେ ହୋଇଥିବା କୃଷି କାର୍ଯ୍ୟର ବିବରଣୀଟି ପଢ଼ିଲେ । ପନି ପରିବାରଗୁଡ଼ିକର ନାଁ, ପରିମାଣ ଓ ତହିଁର ବିକ୍ରୟ ଲବ୍ଧ ଅର୍ଥ, କେତେଜଣ ପିଲା କେତେ ଦିନ କାମ କରିଥିଲେ, ମଞ୍ଜି କେଉଁଠାରୁ କେତେ ଦାମ୍‌ରେ କିଣାଯାଇଥିଲା ଏବଂ ଚାରା କିପରି ପ୍ରସ୍ତୁତ କରାଯାଇଥିଲା ଇତ୍ୟାଦିର ସଠିକ୍ ବିବରଣୀ ଦେଲେ । ଏଥିରେ ଡି.ଆଇ. ମହାଶୟ ବାସ୍ତବ ଜୀବନରେ ଏଇ ଶିକ୍ଷାଦ୍ୱାରା ଶିଶୁମାନଙ୍କର ଅଗ୍ରଗତିକୁ ହୃଦୟଙ୍ଗମ କରିପାରି ମୌଳିକ ଶିକ୍ଷାର ପ୍ରଶଂସା କଲେ ।

ଆମ କେନ୍ଦ୍ରକୁ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ତାଙ୍କର ଜ୍ୟେଷ୍ଠା କନ୍ୟା ଉତ୍ତରା ଏବଂ ଜାମାତା ନାରାୟଣ ଦେଶାଇ ଆସିଥିଲେ । ସେମାନେ ନବରଙ୍ଗପୁରର ସର୍କିଟ ହାଉସକୁ ନଯାଇ ଆମ କେନ୍ଦ୍ରରେ ସେଇ ମାଟି ଘରେ ରାତ୍ରି ଯାପନ କଲେ । ସେଦିନ ସଂଧ୍ୟାରେ ଗୁରୁ-ଛାତ୍ର ଓ ପ୍ରି-ବେସିକ ଏବଂ ବେସିକ୍ ସ୍କୁଲ୍ ଶିଶୁମାନଙ୍କ ଦ୍ୱାରା ମନୋରଞ୍ଜନର କାର୍ଯ୍ୟକ୍ରମ କରାଯାଇଥିଲା । ଏବଂ ଗୋଟିଏ ପଂକ୍ତି ଭୋଜନର ବ୍ୟବସ୍ଥା ମଧ୍ୟ ହୋଇଥିଲା । ଆମେ ସେଇ ରାତ୍ରି ଭୋଜନ ନିମନ୍ତେ କେତେକ ସରକାରୀ କର୍ମଚାରୀ, ଲୁଥରାନ୍ ଚର୍ଚ୍ଚର ପାଦ୍ରୀ ଏବଂ ଗ୍ରାମବାସୀଙ୍କୁ ନିମନ୍ତ୍ରଣ କରିଥିଲୁ । ଖାଦ୍ୟ ସାମଗ୍ରୀଗୁଡ଼ିକ ଆମ କେନ୍ଦ୍ରର ବିଲ

ବଗିଚାରୁ ଆମରି ଛାତ୍ରମାନଙ୍କ ଦ୍ୱାରା ଉତ୍ପାଦିତ ଚାଉଳ, ଡାଲି, ତେଲ, ପନିପରିବା, ଶାଗ ଇତ୍ୟାଦିରେ ପ୍ରସ୍ତୁତ ହୋଇଥିଲା । ସମସ୍ତେ ତଳେ ବସି ଖଲିପତ୍ରରେ ଭୋଜନ କଲେ ।

ମୁଖ୍ୟମନ୍ତ୍ରୀ ନବବାବୁ ଶୀଘ୍ର ଭୋଜନ ସାରିଦେଇ ମୁଁ ଦେଖିଲାବେଳକୁ ଗୋଟିଏ ବେତା ଧରି ସେଥିରେ ଜଣ ଜଣ କରି ସମସ୍ତଙ୍କଠାରୁ ଖଲିପତ୍ର ସଂଗ୍ରହ କରୁଥିଲେ । ଇଏ କ'ଣ କରୁଛନ୍ତି ବୋଲି ପଚାରିବାରୁ ସେ କହିଲେ "ଆପଣ ଜାଣିନାହାନ୍ତି ଏଇଟି ଗୋଟିଏ ସହଜ ଉପାୟ । ବେତାରେ ଖଲିପତ୍ରଯାକ ସଂଗ୍ରହ କରି ଏଗୁଡ଼ିକ ନେଇ ମୁଁ ଆପଣଙ୍କ କମ୍ପୋଷ୍ଟ ଗାଡ଼ରେ ପକେଇଦେବି । ତାହେଲେ ସମସ୍ତେ ଜଣ ଜଣ କରି ଅଇଁଠା ପତ୍ର ଧରି କମ୍ପୋଷ୍ଟ ଗାଡ଼ ପାଖକୁ ଯିବାକୁ ପଡ଼ିବନି ।" ଏହା ଦେଖି ମୁଁ ଜାବା ହେଲି ଏବଂ ଭଲ ଉପାୟଟିଏ ଶିଖିଲି ।

ପରଦିନ ସକାଳୁ ମୁଖ୍ୟମନ୍ତ୍ରୀ ଆମ ବଗିଚା ବୁଲିଗଲେ । ମୁଁ ତାଙ୍କୁ ଅଳୁଗଛ ପୋଡ଼ି ଯାଇଥିବାର କହିଲି ଏବଂ କହିଲି ଯେ, କୃଷି ବିଭଗ କର୍ମଚାରୀଙ୍କ ପରାମର୍ଶରେ ରୋଗ ଦମନ କରିବାପାଇଁ ମୁଁ ପେରୁନକ୍ସ୍ ଔଷଧ ପକାଇଥିଲି । ବୋଧହୁଏ ଭାଗମାପ ବେଶୀ ହୋଇଗଲା । ମୁଖ୍ୟମନ୍ତ୍ରୀ କହିଲେ କୃଷି ବିଭାଗ ଲୋକଙ୍କୁ ପଚାରି ଆପଣ ଭୁଲ କରିଛନ୍ତି । ସେମାନଙ୍କୁ କିଛି ଜଣା ନାହିଁ ।

ସାଧାରଣ ରୋଗପାଇଁ ଆମେ କେତେଗୁଡ଼ିଏ ଔଷଧ ରଖୁଥାଉ । ବେଳେବେଳେ ଗାଁ ଲୋକେ ଔଷଧପାଇଁ ଆମପାଖକୁ ଆସନ୍ତି । ଔଷଧ ପାଇଁ ଆସିବା ଲୋକଙ୍କ ସଂଖ୍ୟା ବଢ଼ିବାରୁ ଆମେ ତାଙ୍କୁ ଡାକ୍ତରଖାନା ଦେଖେଇଦେଲୁ । ଆଦିବାସୀ ଲୋକେ ସାଧାରଣତଃ ଡାକ୍ତରଖାନାକୁ ଯାଉନଥିଲେ । ଥରେ ଜଣେ ଆଦିବାସୀ ଲୋକଙ୍କୁ ଚିଠି ଖଣ୍ଡିଏ ଏବଂ ଶିଶିଟିଏ ଦେଇ ଡାକ୍ତରଖାନାକୁ ପଠାଇଲି । ସେ କିନ୍ତୁ ଆମ କେନ୍ଦ୍ରରୁ ଖଣ୍ଡେ ବାଟ ଯାଇ ଚିଠିଟି ଫିଙ୍ଗିଦେଇ ଶିଶିଟି ସାଙ୍ଗରେ ନେଇ ଘରକୁ ଚାଲିଗଲା । ଏକଥା ମୁଁ ପରେ ଜାଣିଲି ।

ଥରେ ନିକଟସ୍ଥ ରଙ୍ଗମାଟିଗୁଡ଼ା ଗ୍ରାମର ଚର୍ଚ୍ଚରେ ପ୍ରାର୍ଥନା ସଭା ହେଉଥିଲା । ସେ ପ୍ରାର୍ଥନା ସଭାକୁ ସେମାନେ ଗୋରା ପାଦ୍ରୀମାନଙ୍କୁ ଡାକିବା ସାଙ୍ଗେ ସାଙ୍ଗେ ଆମ କେନ୍ଦ୍ରର ସମସ୍ତ ଗୁରୁଜୀ ଏବଂ ଗୁରୁଛାତ୍ରମାନଙ୍କୁ ଡାକିଥିଲେ ଏବଂ ଆମ୍ଭମାନଙ୍କୁ ବହୁତ ଆଦର ସମ୍ମାନ ଦେଖାଇଥିଲେ ।

ଆମ କେନ୍ଦ୍ରର ଜୁନିୟର ବେସିକ ଏବଂ ପ୍ରି-ବେସିକ ସ୍କୁଲର ଗୁରୁଜୀମାନେ ଅତି ନିଷ୍ଠାର ସହିତ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଗ୍ରାମବାସୀମାନଙ୍କ ସହ ଅତି ସୁସମ୍ପର୍କ ଏବଂ ଆତ୍ମୀୟତା ସ୍ଥାପନ କରିପାରିଥିଲେ । କୃଷି ବିଭାଗ ତରଫରୁ ତାଙ୍କର କ୍ଷେତ୍ର-ପ୍ରଦର୍ଶନ ଫାର୍ମରେ ଆମକୁ ଗୋଟିଏ ଏକର ଧାନ ଜମି ଦିଆଯାଇଥିଲା । ଆମର ଶଗଡ଼ ବଳଦ ଲଙ୍ଗଳ ଇତ୍ୟାଦି ଥିଲା ଏବଂ ସେଇ ଏକରକ ଜମିରେ ଧାନ କରି ଆମେ ତାକୁ ଅମଳ କରି ତଦର୍ଜିତ ଧନକୁ ସ୍କୁଲ ପାଣ୍ଠିରେ ମିଶାଇଥିଲୁ । ଥରେ ମୋର ଅନୁରୋଧରେ କୃଷି ବିଭାଗର Field Man ଆସିଥିଲେ । ଆମ ଶିକ୍ଷକ ଓ ଗୁରୁଛାତ୍ରମାନେ ଧାନ ରଖୁଥିଲାବେଳେ ସେହି ଭଦ୍ରଲୋକ ହିଡ଼ ଉପରେ ଥାଇ ଆମକୁ ଆଦେଶ ନିର୍ଦ୍ଦେଶ ଦେଉଥିଲେ । ସେ ଦାମିକା ଯୋତା ପିନ୍ଧିଥିଲେ ଏବଂ ଗୋଡ଼ କାଦୁଅ ହେବା ଭୟରେ ଧାନକ୍ଷେତକୁ ଓହ୍ଲାଇ ଆମ ସଙ୍ଗେ ମିଶିବାକୁ କୁଣ୍ଠାବୋଧ କରିଥିଲେ । ସୁତରାଂ ଶରୀର ଶ୍ରମ କରିବା ଏବଂ ଶରୀର ଶ୍ରମର ମର୍ଯ୍ୟାଦା ବୃଦ୍ଧି ଦେଶକୁ ଚରମ ଦୁର୍ଦ୍ଦଶାରୁ ରକ୍ଷା କରିପାରିବା ପାଇଁ ମୌଳିକ ଶିକ୍ଷାଦ୍ୱାରା ହିଁ ସମ୍ଭବପର ବୋଲି ମନକୁ ଆସିଲା ।

ନବରଙ୍ଗପୁର ପାଖ ଆଖ ସଘନ ଅଞ୍ଚଳରେ ପଞ୍ଚତିରିଶିଟି ବେସିକ ସ୍କୁଲ ସ୍ଥାପନ କରାଯାଇଥିଲା । ଏଥିରେ S.D.O. ତହସିଲଦାର ବିଶେଷ କରି ଗ୍ରାମବାସୀମାନେ ବହୁତ ସହଯୋଗ କରିଥିଲେ । ଭୂମିଦାନ ଏବଂ ଘର ତିଆରି ଗ୍ରାମବାସୀଙ୍କ ଦ୍ୱାରା ହିଁ ହୋଇଥିଲା । ତିନି ଚାରିଟି ଗାଁରେ ଲୋକେ ନିଜେ ନିଜେ ସ୍କୁଲପାଇଁ କୂଅ ଖୋଳି ପଥରରେ ବାନ୍ଧି ଦେଇଥିଲେ ।

ସେମାନଙ୍କୁ କେବଳ ପ୍ରତ୍ୟେକ କୂଅପାଇଁ ସିମେଣ୍ଟ ଓ ମିସ୍ତ୍ରୀ ବାବଦକୁ ଚାରିଶହ ଟଙ୍କା କରି ସାହାଯ୍ୟ ଦିଆଯାଇଥିଲା ।

ମୋଟ ଉପରେ ସଫେଇ, ବଗିଚା, ଗୀତନାଚ ଓ ପାଠପଢ଼ା ସାଙ୍ଗକୁ ଗ୍ରାମ ସଂଗଠନ ପ୍ରତି ମଧ୍ୟ ଆମେ ଦୃଷ୍ଟି ଦେଉଥିଲୁ । ପ୍ରଥମେ ପ୍ରଥମେ ମୌଳିକ ଶିକ୍ଷା ପଦ୍ଧତିକୁ ଶିକ୍ଷିତ ତଥା ଗ୍ରାମବାସୀମାନେ ଭୁଲ ବୁଝିଥିଲେ ମଧ୍ୟ କ୍ରମେ କ୍ରମେ ପସନ୍ଦ ଓ ଗ୍ରହଣ କରିଥିଲେ । ଏହା ଆମ ନିଷ୍ଠା ଓ ପରିଶ୍ରମର ଫଳ ବୋଲି ମାନିବାକୁ ହେବ ।

୧୯୫୨ ମସିହାର ଶେଷ ଆଡ଼କୁ ଓଡ଼ିଶାର ରାଜ୍ୟପାଳ ଫଜଲ ଅଲ୍ଲୀ ଆମ ତାଲିମ କେନ୍ଦ୍ରର ପରିଦର୍ଶନ କରିଥିଲେ । ସେତେବେଳେ କୌଣସି ସାଜସଜ୍ଜା ଫୁଲମାଳ ବା ସଭା ସମିତିର ବନ୍ଦୋବସ୍ତ କରାଯାଇ ନଥିଲା । ତାଲିମକେନ୍ଦ୍ର ଏବଂ ପିଲାଙ୍କ ସ୍କୁଲ ଦୈନନ୍ଦିନ କାର୍ଯ୍ୟକ୍ରମ ଅନୁଯାୟୀ ସାଧାରଣଭାବେ ଚାଲୁଥିଲା ସେଇ ମାଟି କାନ୍ଥ ଓ ଛଣ ଛପର ଘରେ । ରାଜ୍ୟପାଳ ଏବଂ ତାଙ୍କ ଗହଣରେ ଆସିଥିବା ଅଙ୍ଗରକ୍ଷୀ ଏବଂ ଅନ୍ୟ ଅଫିସରମାନେ ବୁଲିବୁଲି ଶିକ୍ଷା ଦାନ ପର୍ଯ୍ୟବେକ୍ଷଣ କରିଥିଲେ । ବଡ଼ କୌତୁକର କଥା, ଆମ୍ବ ଗଛ ମୂଳେ ଡିକି, କୁଲେଇ, ବାଲିଗଦା ଓ ଦୋଳିରେ ଖେଳୁଥିବା ଆଦିବାସୀ ଓ ହରିଜନ ଶିଶୁମାନେ ରାଜ୍ୟପାଳ ଏବଂ ତାଙ୍କ ଅଙ୍ଗ ରକ୍ଷକ ବିଶାଳବପୁ, ଏନାକମଣି ମହାନ୍ତିଙ୍କୁ ଆନନ୍ଦରେ କୁଣ୍ଢେଇ ପକେଇଥିଲେ । ରାଜ୍ୟପାଳ କିଛି ସମୟ ପାଠପଢ଼ା ଦେଖି ଶିକ୍ଷକ ଓ ପିଲାମାନଙ୍କ ସାଙ୍ଗରେ କଥାବାର୍ତ୍ତା କରିଥିଲେ । ଏବଂ ସେ ବିଦାୟ ନେଲାବେଳକୁ ମତେ କୁଣ୍ଢେଇ ପକେଇ କହିଲେ ଯେ ସେ ତାଙ୍କ ଜୀବନରେ ଦେଖିଥିବା ସ୍କୁଲଗୁଡ଼ିକ ମଧ୍ୟରେ ଏଇ ସ୍କୁଲଟି ଥିଲା ସର୍ବୋତ୍ତମ । ମୁଁ ତାଙ୍କୁ ଆଁ କରି ଚାହିଁଲି ଏବଂ କହିଲି ଯେ ରାଜ୍ୟପାଳ ବୋଧହୁଏ ଏହା ପୂର୍ବରୁ କୌଣସି ଭଲ ସ୍କୁଲ ଦେଖିନାହାନ୍ତି । ଯା'ହେଉ ରାଜ୍ୟପାଳ ବିଦାୟ ନେଲାବେଳେ ଜାଣିଲେ ଯେ ତହିଁ ଆରଦିନ ମୁଁ ସେଠାରୁ ବିଦାୟ ନେଇ ଅନ୍ୟତ୍ର ଯାଉଛି । ମୋର ବରପାଲିକୁ ଆସିଥିବା ଆମେରିକାନ୍-ବନ୍ଧୁ-ସେବାସଂଘ ତରଫରୁ ଆରମ୍ଭ ହେବାକୁ ଯାଉଥିବା ଗ୍ରାମ ବିକାଶ କେନ୍ଦ୍ରରେ କାର୍ଯ୍ୟ କରିବାର ଠିକ୍ ହୋଇଯାଇଥିଲା । ମୁଁ ସରକାରୀ କର୍ମକ୍ଷେତ୍ରରୁ ଡେପୁ୍ୟଟେସନରେ ଯାଇ ବରପାଲିରେ ଯୋଗ ଦେଉଥିବା କଥା ଶୁଣି ରାଜ୍ୟପାଳ ଖୁସି ହେଲେ ।

ମୌଳିକ ଶିକ୍ଷାର କେବଳ ଯେ ଶିଶୁମାନଙ୍କୁ ମଣିଷ କରି ଗଢ଼ିବ, ତା'ନୁହେଁ । ମନୁଷ୍ୟ-ସମାଜର ସାମଗ୍ରିକ ବିକାଶ ଏହାର ଲକ୍ଷ୍ୟ । ତେଣୁ ଖାଲି ସଫେଇ ବା ବଗିଚା କଲେ ହେବ ନାହିଁ, ଶିକ୍ଷକମାନଙ୍କୁ ଅଗାଧ ପାଣ୍ଡିତ୍ୟର ଅଧିକାରୀ ହେବାକୁ ପଡ଼ିବ ଏବଂ ଛାତ୍ରମାନଙ୍କ ମଧ୍ୟରେ ବଳିଷ୍ଠ ସାଧାରଣ ଜ୍ଞାନ ଏବଂ ବୈଜ୍ଞାନିକ ଦୃଷ୍ଟି କୋଣରୁ ସବୁ ଜିନିଷକୁ ବିଚାରକୁ ନେଇ ଛାତ୍ରମାନଙ୍କ ମଧ୍ୟରେ ବ୍ୟବହାରିକ ଉପଲବ୍ଧି ଓ ବିକାଶ ପାଇଁ ଉଦ୍ଦେଶ୍ୟ ରଖି ତଦନୁଯାୟୀ କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିବ । ଗାନ୍ଧିଜୀଙ୍କ କହିବା ଅନୁସାରେ ଜୀବନପାଇଁ ଜୀବନ ମାଧ୍ୟମରେ ଶିକ୍ଷା ହିଁ ମୌଳିକ ଶିକ୍ଷା । "Basic education is for life, so it must be given through life." ଛାତ୍ରଛାତ୍ରୀ ହେଉ ବା ଯେ କୌଣସି ମନୁଷ୍ୟ ହେଉ ତାକୁ ଜୀବନପାଇଁ ପ୍ରସ୍ତୁତ କରିବାକୁ ହେଲେ ଜୀବନ ଯାପନ ପ୍ରଣାଳୀ ମାଧ୍ୟମରେ ହିଁ ଶିକ୍ଷା ଦେବାକୁ ହେବ । ବ୍ୟବହାରିକ ଓ ସାମାଜିକ ନୀତି ଓ ଚାଲିଚଳନ ମାଧ୍ୟମରେ ହିଁ ଶିକ୍ଷାର ପ୍ରାରମ୍ଭ ଓ ପ୍ରଗତି ହେବା ସର୍ବଥା ବାଞ୍ଛନୀୟ ।

ଆମ ଦେଶରେ ଅଧିକାଂଶ ଲୋକ ହାତ ଗୋଡ଼ ଲଗାଇ ଶରୀର ଶ୍ରମ କରନ୍ତି ଏବଂ ଦେଶର ଉତ୍ପାଦନରେ ସାହାଯ୍ୟ କରନ୍ତି । ଆଉ କିଛି ପାଠପଢ଼ା ଲୋକ ଲେଖାପଢ଼ା ଦିଗରେ ମୁଣ୍ଡ ଖର୍ଚ୍ଚ କରନ୍ତି । ଏହିପରି ଭାବରେ ଆମ ସମାଜରେ ମୁଣ୍ଡରୁ ଗଣ୍ଡିଟି ଅଲଗା ହୋଇ ଯାଉଛି । ଏହିପରି ହେବାଦ୍ୱାରା ସମାଜଟି ପୂର୍ଣ୍ଣାଙ୍ଗ ହୋଇପାରି ନାହିଁ ।

ଏହାକୁ ହୃଦୟଙ୍ଗମ କରି ଆମ ଶିକ୍ଷାବିତ୍‌ମାନେ Vocational education ଏବଂ work experi-

ence ଇତ୍ୟାଦି ପାଠପଢ଼ା କ୍ଷେତ୍ରରେ ପ୍ରୟୋଗ କରିବାକୁ ଚେଷ୍ଟା କଲେ । Vocational edcation ର ଯାହା ଲୋକହସା ଦଶା ତାହା ଆମେ ଆଖିରେ ଦେଖୁଛୁ । ଶିକ୍ଷାର +୨ ସ୍ତରରେ work experience ପ୍ରତି ଜୋର ଦେବାପାଇଁ ପ୍ରସ୍ତାବ ଉଠିଛି । ସେଥିପାଇଁ ଥରେ ଗୋଟିଏ କମିଟି ଗଢ଼ାଗଲା । ମୁଁ ସେଥିରେ ଜଣେ ସଦସ୍ୟ ଥିଲି । ମୁଁ କହିଲି ଯେ ଛାତ୍ରମାନେ ପ୍ରଥମେ ଘରେ ଏବଂ ବିଦ୍ୟାଳୟରେ କିଛି ଶରୀରଶ୍ରମ କରି ଶ୍ରମର ମର୍ଯ୍ୟାଦା ବୁଝନ୍ତୁ । ଘରେ ସେମାନେ ବାପାମାଙ୍କୁ କାର୍ଯ୍ୟରେ ସାହାଯ୍ୟ କରନ୍ତୁ । ବିଦ୍ୟାଳୟରେ ସଫେଇ କାର୍ଯ୍ୟ, ପନିପରିବା ଚାଷ, ଫୁଲଗଛ ଲଗାଇବା, ବାଡ଼ ବୁଜିବା, ବିଦ୍ୟାଳୟ ଗୃହର ଛୋଟ ଛୋଟ ମରାମତି କାର୍ଯ୍ୟ ଇତ୍ୟାଦି କରନ୍ତୁ ଏବଂ ଏଥିରେ ବିଦ୍ୟାଳୟର ଅଧକ୍ଷ ଏବଂ ଶିକ୍ଷକମାନେ ଅଗ୍ରଣୀ ହୁଅନ୍ତୁ । ସେମାନେ ଝାଡ଼ୁଣୀ ମୁଠାଏ ଧରି କାମ କଲେ ଛାତ୍ରମାନେ ନିଶ୍ଚୟ କାମରେ ଲାଗିବେ । ଏକଥା ମୁଁ କେବଳ ବେସିକ ସ୍କୁଲରେ ନୁହେଁ ଉଚ୍ଚ ବିଦ୍ୟାଳୟଗୁଡ଼ିକରେ ମଧ୍ୟ ପରୀକ୍ଷା କରି ସୁଫଳ ଲାଭ କରିଛି । କେବଳ ଦେଖେଇ ହେବାପାଇଁ କୌଣସି ଗାଁରେ ଛାତ୍ରମାନେ କିଛି ସମୟ ଗାଁ ଗଣ୍ଡାକୁ ଯାଇ ଝାଡ଼ୁଣୀ ମୁଠା ବା ଫାଉଡ଼ାଟେ ଧରି ଦେଲେ ତା'ର ମୂଲ୍ୟ କିଛି ନାହିଁ । ମୁଁ ଗୋଟିଏ ବିଶ୍ୱବିଦ୍ୟାଳୟ ଓ ଆଉ ଗୋଟିଏ ମହାବିଦ୍ୟାଳୟର N.S.S. Camp ରେ ଯୋଗ ଦେଇ ଦେଖିଲି ଏହା ଗୋଟିଏ ପ୍ରହସନ । କୌଣସି ଶିକ୍ଷକ ଏହି କ୍ୟାମ୍ପକୁ ଯାଆନ୍ତି ନାହିଁ କିମ୍ବା ଗଲେ ଛାତ୍ରମାନଙ୍କ ସହ ଯୋଗ ଦିଅନ୍ତି ନାହିଁ ଏବଂ ଛାତ୍ରମାନେ ଯେଉଁ ଶ୍ରମ କରନ୍ତି ତା'ର କିଛି ମୂଲ୍ୟ ନଥାଏ । ଗ୍ରାମବାସୀଙ୍କ ସହ ସେମାନଙ୍କର କିଛି ସମ୍ବନ୍ଧ ନଥାଏ । ଛାତ୍ରମାନେ ଗଣ୍ଡିଏ ଗଣ୍ଡିଏ ଖାଇ ଗାଁର ଚତୁର୍ପାର୍ଶ୍ୱରେ ବୁଲି ବୁଲି ମଳତ୍ୟାଗ କରନ୍ତି । ମଳରୁ କି ରୋଗ ହୁଏ ବୋଲି ପଚାରିବାରୁ ଛାତ୍ରମାନେ ଯାଦୁ, କାଛୁ, ବସନ୍ତ ରୋଗ ହୁଏ ବୋଲି ପଚାରିବାରୁ ମୁଁ ଛାତ୍ରମାନଙ୍କର ଏହି ଅବସ୍ଥା ଜାଣି ବଡ଼ ବିସ୍ମିତ ଓ ଦୁଃଖିତ ହେଲି ।

କମିଟିରେ ମୁଁ ଉପରୋକ୍ତ ପ୍ରସ୍ତାବ ଦେବାରୁ ଗୋଟିଏ ବଡ଼ ସରକାରୀ ବାଳିକା ମହାବିଦ୍ୟାଳୟର ଅଧ୍ୟକ୍ଷା କହିଲେ ଯେ ତାଙ୍କ କଲେଜରେ ଶିକ୍ଷୟିତ୍ରୀମାନେ କେତେବେଳେ କଲେଜକୁ ଆସନ୍ତି ଏବଂ କଲେଜରୁ ଯାଆନ୍ତି ସେ ଜାଣନ୍ତି ନାହିଁ । ସେମାନେ ଯେ ବିଦ୍ୟାଳୟରେ ସଫେଇ ବା ଅନ୍ୟାନ୍ୟ କାମ କରିବାକୁ ବାହାରିବେ, ଏକଥା ସେ ଚିନ୍ତା କରିପାରୁ ନାହାନ୍ତି । ଏକଥା ଶୁଣି ମୁଁ ସେଦିନଠାରୁ ସେ କମିଟିରୁ ଆପେ ଆପେ ଓହରି ଆସିଲି ।

ଆମ ଦେଶର ପ୍ରଚଳିତ ଶିକ୍ଷା ଜୀବନ ପାଇଁ ପ୍ରସ୍ତୁତ କରିବାରେ କୌଣସି ପ୍ରେରଣା ବା ସାହାଯ୍ୟ କରେ ନାହିଁ । ଏହି ସମସ୍ୟାର ସମାଧାନ ପାଇଁ ଏକମାତ୍ର ସୂତ୍ର ବୁନିୟାଦୀ ତାଲିମ ବା ମୌଳିକ ଶିକ୍ଷା । ଉନ୍ନତ ଦେଶମାନଙ୍କରେ ଉଚ୍ଚ ଶିକ୍ଷିତ ଲୋକେ ଯେ କୌଣସି କାର୍ଯ୍ୟ କରୁଥିଲେ ମଧ୍ୟ ଶରୀର ଶ୍ରମକୁ ତାଙ୍କ ଦୈନନ୍ଦିନ ଜୀବନର ଏକ ପ୍ରଧାନ ଅଙ୍ଗ ବୋଲି ଗ୍ରହଣ କରି ନେଇଥାନ୍ତି । ଆମ ଶିକ୍ଷିତ ଲୋକେ ବାହାରକୁ ଯାଇ ଏସବୁ ଦେଖୁଥିଲେ ମଧ୍ୟ କିଛି ଶିଖୁ ନାହାନ୍ତି । ଏହାହିଁ ଦୁର୍ଭାଗ୍ୟ । ଆସନ୍ତୁ ଏବେ ବିଚାର କରିବା ଏଇ ଶିକ୍ଷାନୀତି ପ୍ରଚଳିତ ହେବାରେ କି କି ବାଧା ଦେଖା ଦେଲା ।

୧୯୫୭-୫୮ ମସିହାର କଥା । ମୁଁ ସେତେବେଳେ ସମ୍ବଲପୁର ଓ ସୁନ୍ଦରଗଡ଼ ଜିଲ୍ଲାର ଡିଷ୍ଟ୍ରିକ ସୋସିଆଲ ଏଜୁକେଶନ ଅର୍ଗାନାଇଜର ଥାଏ । ମୋର ଅଫିସ୍ ଥିଲା ସମ୍ବଲପୁର ସହରରେ । ମୋର କାମ ଥିଲା ବ୍ଲକମାନଙ୍କୁ ଯାଇ ସାମାଜିକ ଶିକ୍ଷାର ଅଗ୍ରଗତି ପାଇଁ ବ୍ଲକମାନଙ୍କରେ ଥିବା ସୋସିଆଲ ଏଜୁକେଶନ ଅର୍ଗାନାଇଜରମାନଙ୍କର କାମରେ ସାହାଯ୍ୟ କରିବା ।

ଥରେ ଜିଲ୍ଲା କଲେକ୍ଟରଙ୍କର ଆଦେଶ କ୍ରମେ ମୁଁ ଜଣେ ମହାନ ଶିକ୍ଷାବିତ୍ ଡଃ ଆର୍.କେ.ସିଂହଙ୍କୁ ହୀରାକୁଦ ଏବଂ କେତେକ ବ୍ଲକ ଅଞ୍ଚଳ ବୁଲେଇ ନେବାକୁ ଯାଇଥିଲି । ସେତେବେଳେ ଡଃସିଂ ଭାରତ ସରକାରଙ୍କର ପଞ୍ଚବାର୍ଷିକ ଯୋଜନାରେ ଶିକ୍ଷା

ପରାମର୍ଶଦାତା ଥିଲେ । ହିରାକୁଦ ପରିଦର୍ଶନ ପରେ ଡଃ ସିଂଙ୍କର ବୁର୍ଲା ସର୍କିଟ ହାଉସରେ କେତେଜଣ ଇଞ୍ଜିନିୟରଙ୍କ ସାଙ୍ଗରେ ଦେଖା ହେଲା, ସେ ସେମାନଙ୍କ ପାଖେ ବେସିକ ଏଜୁକେଶନର ବହୁତ ନିନ୍ଦା କଲେ ।

ମୌଳିକ ଶିକ୍ଷା ବିରୁଦ୍ଧରେ ତାଙ୍କର କ୍ରମାଗତ ବିଷୋଦ୍‌ଗାର ମୋର ଅସହ୍ୟ ହେଲା । ଫେରିଲାବେଳକୁ ବାଟରେ ମୁଁ ତାଙ୍କୁ ପଚାରିଲି, "ଆପଣ ଏ ଦେଶର ଜଣେ ଉଚ୍ଚ ଶିକ୍ଷିତ ଲୋକ । ବହୁଦେଶ ବିଦେଶକୁ ଯାଇ ଶିକ୍ଷା ଲାଭ କରିଛନ୍ତି ଏବଂ ବହୁ ଜ୍ଞାନ ଆହରଣ କରିଛନ୍ତି । ଏ ଦେଶର ଶିକ୍ଷାନୀତିକୁ ଆପଣଙ୍କର କି ଅବଦାନ ଅଛି ? ଆପଣ ସୁଟ୍‌ବୁଟ୍ ଟାଇ ପିନ୍ଧିବା ଶିଖିଲେ । ଏ ଦେଶର ଶିଶୁମାନଙ୍କୁ ଏ ଫର ଏରୋପ୍ଲେନ, ବି ଫର ବ୍ୟାଟ୍, ଆଇ ଫର ଇଗ୍‌ଲୁ, ଜେଡ୍ ଫର ଜେବ୍ରା ଇତ୍ୟାଦି ଶିଖାଇଲେ । ଯେତେକ ବିଦେଶୀ ଖେଳନା ଆମର ଶିଶୁ ଶ୍ରେଣୀମାନଙ୍କରେ ଆସି ଜମା ହେଲା । ଆମର ଗରିବ ମଫସଲ ଅଞ୍ଚଳର ଶିଶୁମାନେ ଏରୋପ୍ଲେନ ଆଉ ଜେବ୍ରା ବିଷୟରେ କ'ଣ ଶିକ୍ଷା ଆରମ୍ଭ କରିବେ ?" ତାପରେ ମୁଁ ତାଙ୍କୁ ବୁଝାଇବାକୁ କହିଲି ଦେଖନ୍ତୁ, ଶିକ୍ଷାର କେତେଗୁଡ଼ିଏ ମୌଳିକ ନୀତି ଅଛି । ସେଥିରୁ ପ୍ରଧାନ ହେଲା from known to unknown, education starts from where we are ଏବଂ positive approach ଇତ୍ୟାଦି । ଆଦିବାସୀ ପିଲାଟିଏ ଏରୋପ୍ଲେନ, ଆପ୍‌ଲ ଆଉ ଜେବ୍ରାରୁ ପାଠ ଆରମ୍ଭ ନ କରି ତା' ଗାଁର ଚାରକୋଳି, ଶଗଡ଼, ବଳଦ, ପଶୁପକ୍ଷୀ ଜଙ୍ଗଲ ଇତ୍ୟାଦିରୁ ପାଠ ଆରମ୍ଭ କରିବା ଉଚିତ । ଏହା ଗୋଟିଏ ଅତି ସାଧାରଣ କଥା । ଆପଣ ଏଗୁଡ଼ିକ ବୁଝି ପାରୁନାହାନ୍ତି କାହିଁକି ? ସେ ଚୁପ୍ ହେଲେ ।

ମୁଁ ବୁଝିପାରିଲି ଯେ ସରକାରଙ୍କର ଉଚ୍ଚ ପଦ ପଦବୀରେ ଥିବା କର୍ମଚାରୀମାନଙ୍କୁ ଏଇ ଶିକ୍ଷା ନୀତିର ମହନୀୟତା ଓ ଆବଶ୍ୟକତା ସମ୍ବନ୍ଧେ ଯଥେଷ୍ଟ ଧାରଣା ନଦେଇ କେବଳ ଆଦେଶ ବଳରେ ଶିକ୍ଷାନୀତିର ପ୍ରବର୍ତ୍ତନ କରିଥିବାରୁ ତା'ର ଦଶା ଏପରି ହେଲା । ଆମ ଓଡ଼ିଶାରେ ମୌଳିକ ଶିକ୍ଷାର ସୁଫଳ ଯଥେଷ୍ଟ ପରିମାଣରେ ଉପଲବ୍ଧ ହେଲେ ମଧ୍ୟ କେତେକ ଉପରସ୍ଥ କର୍ମଚାରୀ ଏହାର ବିରୋଧ ଏବଂ ବିଦ୍ରୁପ ମଧ୍ୟ କରୁଥିଲେ । ଏପରି ହେବାର କାରଣ ହେଲା ଆମର ମନ୍ତ୍ରୀ ଓ କେତେକ ରାଜନୈତିକ ବ୍ୟକ୍ତି ଗାନ୍ଧୀଙ୍କ ନାଁରେ ଏଇ ଶିକ୍ଷାର ପ୍ରବର୍ତ୍ତନ କରିଦେଲେ ସିନା କିନ୍ତୁ ସେମାନେ ଶିକ୍ଷା ବିଭାଗ କର୍ମଚାରୀ ଏବଂ ବୁଦ୍ଧିଜୀବୀମାନଙ୍କୁ ଏ ସମ୍ବନ୍ଧରେ ସମ୍ୟକ ଧାରଣା ଦେଇ ନଥିଲେ ଏବଂ ସେମାନଙ୍କର ଏହି ଶିକ୍ଷାନୀତି ପ୍ରତି ବିଶ୍ୱାସ ଓ ଆଗ୍ରହ ଜନ୍ମାଇ ପାରିନଥିଲେ ।

ମୌଳିକ ଶିକ୍ଷାର ଆଉ ଗୋଟିଏ ବାଧା ହେଲା ଏଥିରେ କାର୍ଯ୍ୟରତ ଅନେକ ସରକାରୀ କର୍ମୀ କେବଳ ଚାକିରୀ ଓ ଦରମା ଲୋଭରେ ଏଇ କ୍ଷେତ୍ରରେ ପ୍ରବେଶ କରିଥିଲେ । ଏହି ଶିକ୍ଷା ପଦ୍ଧତିକୁ କାର୍ଯକାରୀ କରିବାରେ ତାଙ୍କର ଆନ୍ତରିକତା ନଥିଲା । ସେତେବେଳେ ଯେଉଁ ବହୁ ଜୁନିୟର ବେସିକ ସ୍କୁଲ ଗାଁ ଗହଳିରେ ସ୍ଥାପିତ ହେଲା, ସେଗୁଡ଼ିକର ଶିକ୍ଷକମାନେ ସରକାରୀ କର୍ମୀ ହିସାବରେ ପରିଗଣିତ ହେଲେ । ସୁତରାଂ ସ୍କୁଲ ପରିଚାଳନା ଖର୍ଚ୍ଚ ବଢ଼ିଗଲା । ସରକାରଙ୍କ ଉପରେ ସ୍କୁଲଗୁଡ଼ିକ ବୋଝ ହୋଇ ପଡ଼ିଲେ ବୋଲି ସରକାର ଅନୁଭବ କଲେ ।

ମୌଳିକ ଶିକ୍ଷା ପଦ୍ଧତି ବା ବେସିକ ଏଜୁକେସନ ସତ୍ ଏବଂ ଚିରନ୍ତନ ନୀତି ଉପରେ ଆଧାରିତ ହୋଇଥିବାରୁ, ଏହାକୁ ଆମେ ଦିନେ ନା ଦିନେ ବୁଝିବା ଏବଂ ନିର୍ମମ ଭାବେ ଗ୍ରହଣ କରିବା ବୋଲି ମୋର ବିଶ୍ୱାସ । ଅନ୍ୟଥା ଆମର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଜୀବନ ବିପନ୍ନ ହେବ । ଏଥିରେ ସନ୍ଦେହ ନାହିଁ ।

ଆଜିର ବିଚାର-

ମେହନତ୍ କରନା ଶିଖୋ
ଓ ଲିଖ୍‌ନେ ପଢ଼ନେ ୱାଲୋଁ

ବହୁତ ପ୍ରଚାର ପୁଣି କୋଳାହଳ,
ଲାଗିଅଛି ଦେଖ ଏବେ,
ନୀରକ୍ଷର ଯେତେ ମୂଲିଆ ମଜଦୂର,
ସଭିଏ ପାଠ ପଢ଼ିବେ ।

ଧୋବଧାଉଳିଆ ବାବୁମାନେ କିନ୍ତୁ,
ଚଉକିରେ ଛନ୍ତି ବସି,
କାଗଜରେ ଖାଲି ଯାଉଛନ୍ତି ରାମ୍ପି,
ଦେଶଟ ଗଲାଣି ଭାସି ।
ଗଣ୍ଡିଟି ଅଲଗା ରଖିଦେଇ ବାବୁ,
ମୁଣ୍ଡରେ କରନ୍ତି କାମ,
ମୂଲିଆ ମଜଦୂର ଗଣ୍ଡିକୁ ଲଗାଇ
କରୁଛନ୍ତି ଉତ୍ପାଦନ ।

ଏ ଦେଶରେ ଖାଲି କବନ୍ଧ ମାଦେଳୀ,
ଗଣ୍ଡିରୁ ମୁଣ୍ଡଟା ଭିନ୍ନ,
ଲେଖାପଢ଼ା ବାବୁ ଯେତେ ଅଛ ଶୁଣ,
କର ହେ ଶରୀର ଶ୍ରମ ।

ବାବୁମାନେ ଯଦି କର ପରିଶ୍ରମ,
ଲଗାଇଣ ହାତଗୋଡ଼
ଧରିବେ ସିଲଟ ପୋଥି ଜାଣିଥାଅ,
ମେହନତୀ ମଜଦୂର ।

ମୁଣ୍ଡଗଣ୍ଡି ମିଶି କାମରେ ଲାଗିଲେ,
ବଢ଼ିବ ପାଠର ମୂଲ,
ତେଣୁ ପାଠପଢ଼ା ବାବୁମାନେ ଧର,
କୋଡ଼ି ଫାଉଡ଼ା ଶାବଳ ।

ଦେଖିବ ତୁମର ବୁଦ୍ଧି ହୋଇଯିବ,
ନିଶ୍ଚିତେ ବଡ଼ ପାକଳ,
ମୂଲିଆ ହାକିମ ମଧ୍ୟେ ନ ରହିବ,
ଆଉ ଯେ ଏତେ ଅନ୍ତର ।

ପାଠପଢ଼ା ଲୋକେ ପରିଶ୍ରମ କର,
ଖଟିଖିଆ ପାଠ ପଢ଼,
ହାତପାଦ ମୁଣ୍ଡ ହୋଇଗଲେ ଏକ,
ଗରିବୀ ହୋଇବ ଦୂର ।



ବାପୁଜୀନଗର, ଭୁବନେଶ୍ୱର

## ବାପୁଜୀ

ତୁମରି କଥା କାନରେ ବାଜି ଧ୍ୱମେଇ ଗଲା ଲୁହ
ମଣିଷ ନୁହଁ ବାପୁଜୀ ତୁମେ ସରଗ ପୁରୀ ଦିଅଁ... ॥୦॥

ମିଛ କପଟ ଏଡ଼ିବା ପାଇଁ ସତକୁ କଲ ସାଥୀ
ତୁମରି ଡାକ ସାହସ ଦେଲା ଟାଣୁଆ ହେଲା ଛାତି
ଆରତ ବେଳେ ଭାରତ ଭୂଇଁ ଅହିଂସା ନୀତି ପାଳି
ବଇରି ଛନ୍ଦା ଲୁହା ଶିକୁଳି ଗୋଡ଼ରେ ଦେଲା ଦଳି
ତୋପ କମାଣ ଖଣ୍ଡା ବନ୍ଧୁକ ତଳକୁ କଲା ମୁହଁ
ସରଗ ପୁର ଦିଅଁ ବାପୁଜୀ ମଣିଷ ତୁମେ ନୁହଁ ॥୧॥

ଗୋଟିଏ ଛବି କୋଟିଏ ହୋଇ ସବୁରି ମନେ ନାଚେ
ସେହି ଛବିଟି ମନଭିତରୁ ଡର ଡରଛ ପୋଛେ
ତୁମ ବିହୁନେ ବାହୁନି କାନ୍ଦେ ପାଣି ପବନ ମାଟି
ତୁମ ବିହୁନେ ଧୂଆଁ ଧୂମାଳେ ଆକାଶ ଯାଏ ଘୋଟି
ଅରଘ ଘେନି ସରଗ ଦେଶୁଁ ଆଶିଷ ଢାଳି ଦିଅ ।
ମଣିଷ ନୁହଁ ବାପୁଜୀ ତୁମେ ସରଗ ପୁରୀ ଦିଅଁ ॥୨॥



# ରଚନାତ୍ମକ ଶିକ୍ଷକ-ତାଲିମ ଶିବିର

**ଶ୍ରୀ ଚନ୍ଦ୍ରଶେଖର ନାୟକ**

ପୁରୀ ଜିଲ୍ଲାବୋର୍ଡ କଂଗ୍ରେସ ହାତକୁ ଯିବା ପରେ ପ୍ରାଇମେରୀ ସ୍କୁଲ ଗୁଡ଼ିକୁ ଜାତୀୟ ଭାବରେ ଉଦ୍‌ବୁଦ୍ଧ କରିବା ପାଇଁ ମୌଳିକ ଶିକ୍ଷା ଛାଞ୍ଚରେ ଗଢ଼ିବା ଦିଗରେ କର୍ମକର୍ତ୍ତାମାନଙ୍କ ଦୃଷ୍ଟି ଆକୃଷ୍ଟ ହୋଇଥିଲା । ପୁରୀଜିଲ୍ଲା କଂଗ୍ରେସ କମିଟି ଓ ଜିଲ୍ଲାବୋର୍ଡ ସଦସ୍ୟଙ୍କର ଏକ ମିଳିତ ବୈଠକ ଗଲାବର୍ଷ ତିତିପ (ପାରିକୁଦ) ଠାରେ ବସିବା ବେଳେ ଏ ପ୍ରସଙ୍ଗ ଆଲୋଚିତ ହୋଇ ଯାହା ସିଦ୍ଧାନ୍ତ ହେଲା ତାର ପରିଣାମରେ ଏକ ରଚନାତ୍ମକ ଶିକ୍ଷକ ତାଲିମ ଶିବିର ଗଲାବର୍ଷ ଅଗଷ୍ଟ ମାସରେ ଆରମ୍ଭ କରାଗଲା (୧୯୪୬ ଅଗଷ୍ଟ) । ପାଠ୍ୟକ୍ରମ ଠିକ କରିବା ଦାୟିତ୍ୱ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଶ୍ରୀ ଗୋବିନ୍ଦ ତ୍ରିପାଠୀ, ଶ୍ରୀ ଚନ୍ଦ୍ରଶେଖର ନାୟକ ଓ ବଂଶୀଧର ମଙ୍ଗରାଜଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ତଦନୁଯାୟୀ ଏକ ସଂକ୍ଷିପ୍ତ ପାଠ୍ୟକ୍ରମ ଉପରେ ପ୍ରଥମ ଶିବିରଟି ଆରମ୍ଭ କରାଗଲା । ଗୋପବନ୍ଧୁ ସେବାସଦନର ପୂଜ୍ୟ ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁଙ୍କ ଶୁଭାଶିଷ ନେଇ ପୁରୀଜିଲ୍ଲା କଂଗ୍ରେସ କମିଟିର ମାନନୀୟ ସଭାପତି, ଶ୍ରୀଯୁକ୍ତ ଲୋକନାଥ ମିଶ୍ର ଶିବିରର ଶୁଭ ଦେଇଥିଲେ ଓ କଟକ ଜିଲ୍ଲାବୋର୍ଡର ଚେୟାରମ୍ୟାନ, ଶ୍ରୀଯୁକ୍ତ ସୁଧୀରଚନ୍ଦ୍ର ଘୋଷ ଉଦ୍‌ଯାପନ ଉତ୍ସବରେ ପୁରୋଧା ହୋଇଥିଲେ ।

ପ୍ରତି ଶିବିରର କାର୍ଯ୍ୟକାଳ ଏକ ମାସ । ଗୋଟିଏ ଠାରେ ସୀମାବଦ୍ଧ ନ ରହି ଗାଁ ଭିତରେ ଠାଏ ଠାଏ ଅନୁଷ୍ଠିତ ହେଉଛି । ଶ୍ରୀ ଚନ୍ଦ୍ରଶେଖର ନାୟକ ଓ ବଳରାମ ପାଇକରାୟ ଶିବିର ପରିଚାଳନା ଦାୟିତ୍ୱ ଗ୍ରହଣ କରିଛନ୍ତି ।

ଭୋର ୪ଟାରୁ ରାଷ୍ଟ୍ରୋତ୍ତୋଳନ ପରେ ଉପାସନା, ସଫାଇ, ସେବାଦଳ କାୟଦାରେ ଡ୍ରିଲ, ମାର୍ଚ୍ଚିଂ, ଜୟ ଜୟକାର - ଝଣ୍ଡା ବନ୍ଦନା, ତୁନାଇ, ଧୁନାଇ, ଟକଲୀ, ଧନୁଷ୍ଟକଲୀ ଓ କିସାନ ଚରଖାରେ କତାଇ, ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଏକତ୍ର ସ୍ୱହସ୍ତପାକରେ ଭୋଜନ, ଭୋଜନ ପୂର୍ବରୁ ଦୈନିକ ମନ୍ତ୍ରପାଠ, ଭିଣା ଧନୁଷ୍ଟକଲୀ ସଜଡ଼ା, ଚଲ୍ଲାଣମାନ, ଓଜନ ଯନ୍ତ୍ର ତିଆରି, ଗ୍ରାମର ସୁଲଭ ଡେଙ୍ଗମୂଳରେ ତାତ୍କାଳିକ ରୋଗନିବାରକ ଔଷଧ, ଚୂର୍ଣ୍ଣକ, ମଲମ ତିଆରି, ଏ ସମ୍ପର୍କରେ ଯଥା ସମ୍ଭବ ଟିପ୍‌ପଣୀ, ଖଦୀ ବିଜ୍ଞାନ, ଖଦୀ ଅର୍ଥନୀତି ଆଲୋଚନା ଓ ଟିପ୍‌ପଣୀ, ଖଡ଼ା ପାଇଖାନା ବ୍ୟବହାର, ଜାତୀୟ ନିଶାଣର ଇତିହାସ, ଝଣ୍ଡା ସତ୍ୟାଗ୍ରହ, ଝଣ୍ଡାବନ୍ଦନାର ବିଧିବିଧାନ ଟିପ୍‌ପଣୀ, ଯଥାସମ୍ଭବ ଗ୍ରାମସଫାଇ ଓ ପରିକ୍ରମଣ ଜାତୀୟ ସଙ୍ଗୀତ ଶିକ୍ଷା ଇତ୍ୟାଦି ବ୍ୟବହାରିକ ଓ ବୌଦ୍ଧିକ ଉଭୟ କାମରେ ଶିବିର ପ୍ରତ୍ୟହ ପରିଚାଳିତ ହୁଏ ।

କେନ୍ଦ୍ରକାଳ ଭିତରେ ଏକ ପରିବାର ଭଳି ଚଳିବା ବିଶେଷତଃ ଏକତ୍ର ସ୍ୱହସ୍ତ ପାକରେ ଭୋଜନ ବ୍ୟବସ୍ଥା ଶିବିରର ପ୍ରଥମ ସର୍ତ୍ତ ଥିବାରୁ ଶିକ୍ଷକମାନଙ୍କୁ ଆଣିବାରରେ ବାଧବାଧକତା କରାଯାଏ ନାହିଁ । ଯେଉଁମାନେ ଶିବିରର ସମସ୍ତ ନିୟମ ମାନି ଚଳିବାକୁ ପ୍ରତିଶ୍ରୁତ, ସେହିମାନଙ୍କୁ ମାସେ ସବୈତନିକ ଛୁଟି ଦିଆଯାଏ । ଅନେକ ସ୍ଥଳରେ କଂଗ୍ରେସ କର୍ମୀମାନଙ୍କ ସହାୟତା ନିଆଯାଇ ଶିକ୍ଷକମାନଙ୍କର ମାସକର ଖୋରାକ ସେହି ଗ୍ରାମବାସୀଙ୍କଠାରୁ ମଧ୍ୟ ଆଦାୟ କରାଯାଏ । ଅନ୍ୟଥା ଶିକ୍ଷକମାନେ ନିଜେ ଖୋରାକ ବହନ କରନ୍ତି । ମାସ ମଧ୍ୟରେ କୌଣସି ଛୁଟି ଦିଆଯାଏ ନାହିଁ ।

ଶିବିରର ପାଠ୍ୟ-କ୍ରମ ଓ ଶୃଙ୍ଖଳାରେ ଆବଦ୍ଧ ରହି ଶିକ୍ଷାର୍ଥୀମାନେ ଘରକଥା ମଧ୍ୟ ଭୁଲିଯାନ୍ତି ଓ ଦିନ କେତେବେଳେ ସରିଯାଏ ଜଣା ପଡ଼େ ନାହିଁ । ପରିସମାପ୍ତ ଉତ୍ସବରେ ବିଗତ କେନ୍ଦ୍ରର ଶିକ୍ଷାର୍ଥୀମାନଙ୍କୁ ପ୍ରମାଣପତ୍ର ଦିଆଯାଏ । ଏଥିପାଇଁ ଶିବିରର କାର୍ଯ୍ୟକାଳ ଭିତରେ ଶିକ୍ଷାର୍ଥୀମାନଙ୍କୁ ପରୀକ୍ଷା କରାଯାଇଥାଏ ଓ ସ୍କୁଲରେ ସେମାନଙ୍କ କାର୍ଯ୍ୟ ଦେଖିସାରିବା ପରେ ପ୍ରମାଣପତ୍ର ପ୍ରସ୍ତୁତ ହୁଏ ।

ଶିକ୍ଷକମାନେ ତାଲିମ ଶିବିରରୁ ଫେରି ସ୍କୁଲରେ ଲବ୍ଧ ଶିକ୍ଷାର ବିନିଯୋଗ କିପରି କରୁଛନ୍ତି ତାହା ଅବଗତ

ହେବାପାଇଁ ଜିଲାବୋର୍ଡ ତ୍ରୈମାସିକ ବିବରଣୀ ସ୍ୱରୂପ ଏକ ପ୍ରଶ୍ନାବଳୀ ଛପାଇ ନିର୍ଦ୍ଦେଶନାମା (Circular) ଆକାରରେ ପ୍ରଦାନ କରନ୍ତି । ହସ୍ତକର୍ମ ପିରିଏଡ଼କୁ କେବଳ ସୂତାକଟାରେ ପର୍ଯ୍ୟବେସିତ କରିବାପାଇଁ ନିର୍ଦ୍ଦେଶ ଦିଆଯାଇଛି । ବିଭାଗୀୟ ପାଠ୍ୟକ୍ରମରେ ପରିବର୍ତ୍ତନ କରାଯାଇ ନ ଥିବାରୁ ଅସୁବିଧା ଭୋଗିବାକୁ ପଡୁଛି । ତଥାପି ପଦ୍ୟାବୃତ୍ତି ପିରିଏଡ଼ରେ ଜାତୀୟ ସଙ୍ଗୀତ ଶିକ୍ଷା, ପ୍ରତି ଶୁକ୍ରବାର ଝଣ୍ଡାବନ୍ଦନା, ଶନିବାର ଡ୍ରିଲ ଓ ସଫାଇ କରିବାପାଇଁ ବ୍ୟବସ୍ଥା କରା ଯାଇଛି ।

ମାନ୍ୟବର ଶିକ୍ଷାମନ୍ତ୍ରୀ, ରାଜସ୍ୱମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀ ମହୋଦୟଗଣ ଏଭଳି ଶିବିରମାନ ପରିଦର୍ଶନ କରି ସ୍ୱେଚ୍ଛାଧୀନ ପାଣ୍ଠିରୁ ଯାହା ସାହାଯ୍ୟ କରିଛନ୍ତି ସେହି ଅର୍ଥରେ ତାଲିମ ଶିକ୍ଷକମାନଙ୍କୁ କତାଇ ଯନ୍ତ୍ରମାନ ସାହାଯ୍ୟ କରାଯାଇଛି । ମୋଟ ଟ ୫୭୫/ ଏ ଦିଗରେ ଆଜସୁଦ୍ଧା ବ୍ୟୟିତ ହୋଇଛି ।

ପୂଜ୍ୟପାଦ ଆଚାର୍ଯ୍ୟ ହରିହରଙ୍କ ପ୍ରତ୍ୟକ୍ଷ ପରାମର୍ଶ ଓ ନିର୍ଦ୍ଦେଶ ଦ୍ୱାରା ଶିବିର ପରିଚାଳନା କରାଯାଏ । ବିଶିଷ୍ଟ ଜନନାୟକମାନଙ୍କୁ ଛାଡ଼ିଦେଲେ ମଧ ଶିକ୍ଷା ବିଭାଗୀୟ ଡିରେକ୍ଟର, ଇନିସ୍‌ପେକ୍ଟର ଓ ଭୂତପୂର୍ବ ପୁରୀ ଜିଲ୍ଲା କଲେକ୍ଟର ପ୍ରମୁଖ ସରକାରୀ କର୍ମୀମାନେ ଶିବିର ପରିଦର୍ଶନକରି ସୁମନ୍ତବ୍ୟ ପ୍ରକାଶ କରିଛନ୍ତି ଓ ସ୍ଥାୟିତ୍ୱ ଓ ସଫଳତା କାମନା କରିଛନ୍ତି ।

ବର୍ତ୍ତମାନ ସୁଦ୍ଧା ସର୍ବମୋଟ ୬ଟି ଅଧିବେଶନରେ ୧୪୭ ଜଣ ଶିକ୍ଷକ ଏଭଳି ତାଲିମ ଶିବିରରେ ଯୋଗଦେଇ ଫେରିଛନ୍ତି । ଏମାନଙ୍କ ମଧରୁ ଓଡ଼ିଶା ସରକାରଙ୍କ ମୌଳିକ ତାଲିମ ଶିବିର ରାମଚନ୍ଦ୍ରପୁର ଓ ଅନୁଗୋଳରେ ୭ ଜଣ ଯୋଗଦେଇ ଦକ୍ଷତାର ସହ ଅନୁଭବ ଦେଇଛନ୍ତି । ତାଲିମ ଶିକ୍ଷକମାନେ ଅଗଷ୍ଟ ୧୫, ସ୍ୱାଧୀନତା ଉତ୍ସବ ଓ ଗାନ୍ଧିଜୟନ୍ତୀରେ ଯଥେଷ୍ଟ ଭାଗ ନେଇଛନ୍ତି । ଜିଲାବ୍ୟାପୀ ସବିଧି ଝଣ୍ଡାବନ୍ଦନା ଏମାନଙ୍କ ଦ୍ୱାରା ହିଁ ସଫଳ ହୋଇଥିଲା ।

ଏମାନଙ୍କ ପ୍ରଚାର ଓ କାମ ଫଳରେ ଗାଁ ଗହଳରେ ଗଡ଼ା ପାଇଖାନାର ପ୍ରଚଳନ ଏକ ଅଭିନବ ଘଟଣା । ସାମାଜିକ କୁସଂସ୍କାର ଦୂର କରିବାରେ ମଧ ସେମାନେ ପଛଉ ନାହାନ୍ତି । ଗତ ଗୋପବନ୍ଧୁ ଶ୍ରାଦ୍ଧ ବାସରରେ ବାଣପୁର ସର୍କଲ ରାମେଶ୍ୱର କେନ୍ଦ୍ର ସ୍କୁଲର ତାଲିମ ଶିକ୍ଷକ ଶ୍ରୀ ବୈଦ୍ୟନାଥ ରଥ, ସେ ଗାଁର ତାଲିମ ଶିକ୍ଷକ ଶ୍ରୀ ଭୀମରଥ, ଲକ୍ଷ୍ମୀଧର ସାମନ୍ତସିଂହାର, ବିଶ୍ୱନାଥ ପଟ୍ଟନାୟକଙ୍କ ପୂର୍ଣ୍ଣ ସମର୍ଥନ ପାଇ ସ୍କୁଲର ୧ମ ଶିକ୍ଷକ ଶ୍ରୀଜଗନ୍ନାଥ ପଟ୍ଟଯୋଷୀ ମନ୍ଦାକିନୀ ନଦୀ କୂଳରେ ସମବେଦ ସବର୍ଣ୍ଣ ଓ ହରିଜନ ସମସ୍ତଙ୍କ ହସ୍ତରେ ପାତ୍ରି କୁଶବଟୁ ଦେଇ ତର୍ପଣ କରାଇ ନେଲେ । ଏ ଅଭିନବ ଅପ୍ରତ୍ୟାଶିତ ଘଟଣାରେ ଗାଁରେ ଚହଳ ପଡ଼ିଗଲା । ପଟ୍ଟଯୋଷୀଜୀଙ୍କୁ ପୌରହିତ୍ୟରୁ ବାସନ୍ଦ କରିବା ପାଇଁ ସମସ୍ତେ ଧମକ ଦେଇଥିଲେ । ମାତ୍ର ସେ ଦୃଢ଼ ରହିବାରୁ ତୀବ୍ର ମନୋଭାବ କିଛି ଦିନ ପରେ ବୁଦ୍‌ବୁଦ ପରି କୁଆଡ଼େ ଉଭେଇ ଗଲା । ବେଗୁନିଆ ସର୍କଲ ଧଉଳିମୁହଁ ନି:ପ୍ରା: ସ୍କୁଲ ଶିକ୍ଷକ ଶ୍ରୀ ବାଞ୍ଛାନିଧି ଘଟୁଆରୀ ଏକ ନୈଶ ବିଦ୍ୟାଳୟ ଆରମ୍ଭ କରିଛନ୍ତି । ହରିଜନ ସବର୍ଣ୍ଣ ମିଶି ୧୨ ଜଣ ଏଥିରେ ପଢ଼ନ୍ତି । ଏମାନଙ୍କ ବୟସ ୧୫ ରୁ ୨୯ ବର୍ଷ ଭିତରେ । ହିସାବ ଓ ଗଣନା ଏମାନେ ଶିଖିଗଲେଣି । ଗ୍ରାମବାସୀ କୋଠରୁ କେରୋଶିନ ଦିଅନ୍ତି । ଶିକ୍ଷାର୍ଥୀମାନେ ଶିକ୍ଷକଙ୍କୁ ପାରିଶ୍ରମିକ ଯାଚିଲେ ସୁଦ୍ଧା ସେ ନେଉ ନାହାନ୍ତି । ପିପିଲି ସର୍କଲ ପିପିଲି ନି:ପ୍ରା: ଶିକ୍ଷକ ଶ୍ରୀ ନରହରି ମହାପାତ୍ର ସ୍ୱାଧୀନତା ଉତ୍ସବ ଦିନ ଯେପରି ଆୟୋଜନ ଓ ଝଣ୍ଡା ବନ୍ଦନା କରିଥିଲେ ଜିଲା କଂଗ୍ରେସ କମିଟି ପ୍ରେରିତ ସଭାପତି ଶ୍ରୀକୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ସେଥିରେ ମୁଗ୍ଧ ହୋଇ ଯାଇଛନ୍ତି । ବାଣପୁର ବାଳିକା ସ୍କୁଲରେ ପ୍ରତି ଝିଅଙ୍କର ଗୋଟିଏ କରି ଟକଲୀ ଚାଲୁଛି । ପିପିଲି ସର୍କଲ ହୁମର ସ୍କୁଲ ଶିକ୍ଷକ ଶ୍ରୀ କାଶିନାଥ ଦାଶ ଗାନ୍ଧିଜୟନ୍ତୀରେ କର୍ମୀମାନଙ୍କ ବାକ୍‌ସ ଚରଖା ସହ ଟକଲୀରେ ପ୍ରତିଯୋଗିତ କରି ୩ୟ ପୁରସ୍କାର ଲାଭ କରି ପାରିଛନ୍ତି । ବ୍ରହ୍ମଗିରି ସର୍କଲ ମଇନ୍ଦିପୁର ଶିକ୍ଷକ ଶ୍ରୀହରିହର ଦାଶ ସେ ଗ୍ରାମରେ ସମସ୍ତଙ୍କ ବାଡ଼ିରେ ପାଇଖାନା କରାଇ ଦେଇ ପାରିଛନ୍ତି । ଗାନ୍ଧୀଜୟନ୍ତୀ ପାଇଁ ତାଲିମ ଶିକ୍ଷକଙ୍କଠାରୁ ଟ ୨୧୦୧୬ ଓ ସୂତା ୨୧୩ ଗୁଣ୍ଡି ଭେଟି ସ୍ୱରୂପ ମିଳିବ । ●●●

("ଗ୍ରାମସେବକ" ଦ୍ୱାଦଶ ସଂଖ୍ୟାରୁ ଗୃହୀତ)

# କ୍ରାନ୍ତିକାରୀ ଶିକ୍ଷା

ଶ୍ରୀ ଶରତ ଚନ୍ଦ୍ର ମହାରଣା

ଗାନ୍ଧୀଜୀ ସ୍ୱରାଜ ଅର୍ଥରେ ସର୍ବଦା ରାଷ୍ଟ୍ରୀୟ ବା ଜାତୀୟ ଶିକ୍ଷାକୁ ଚିନ୍ତା କରୁଥିଲେ । ସେ ଭାବୁଥିଲେ, ଯେଉଁ ଶିକ୍ଷା ଭାରତର ୭ ଲକ୍ଷ ଗ୍ରାମର ବୁଭୁକ୍ଷୁ ଜନସାଧାରଣଙ୍କର ସମସ୍ୟାର ସମାଧାନ କରି ପରିବ ନାହିଁ, ତାହା ଜାତୀୟ ବା ରାଷ୍ଟ୍ରୀୟ ଶିକ୍ଷା ପଦବାଚ୍ୟ ନୁହେଁ ।

ଅକ୍ଟୋବର ୧୯୩୮ରୁ ୧୫ ମାର୍ଚ୍ଚ, ୧୯୩୯ ପର୍ଯ୍ୟନ୍ତ ୱାର୍ଧାରେ ସରକାରୀ ବିଦ୍ୟାମନ୍ଦିର ଟ୍ରେନିଂ ସ୍କୁଲିଂରେ ମୁଁ ରାଷ୍ଟ୍ରୀୟ ବୁନିୟାଦି ଶିକ୍ଷାରେ ହିନ୍ଦୁସ୍ଥାନୀ ତାଲିମ ସଂଘଙ୍କ ଦ୍ୱାରା ପରିଚାଳିତ ଟ୍ରେନିଂ ନେଇଥିଲି । ଜାକୀର ହୁସେନ ରିପୋର୍ଟରେ ଲେଖାଅଛି ଯେ ଦୁଇ ବର୍ଷଏହି ଶିକ୍ଷା ଚାଲିଲେ; ସେଥିରୁ ଆବଶ୍ୟକ ଉପାଦାନ ଆପଣା ଛାଏଁ ମିଳି ପାରିବ । ରାମଚନ୍ଦ୍ରପୁରରେ ଆମ୍ଭେମାନେ ସରକାରୀ ପ୍ରୟୋଗ କରିବାବେଳେ ଜାକୀର ହୁସେନ କମିଟିର ଅଧିକାଂଶ ସଦସ୍ୟଙ୍କୁ (ଶିକ୍ଷାବିତ୍‌ମାନଙ୍କୁ) ମୁଁ ଆବଶ୍ୟକ guide booksର ତାଲିକା ଆଦି ଦେବା ପାଇଁ ପତ୍ର ଲେଖିଥିଲି, ମାତ୍ର କାହାରିଠାରୁ ଉତ୍ତର ପାଇ ନଥିଲି ।

ଭାରତ ସ୍ୱାଧୀନ ହେବା ପୂର୍ବରୁ କୌଣସି ସରକାରୀ ବା ସାହାଯ୍ୟପ୍ରାପ୍ତ ଶିକ୍ଷାନୁଷ୍ଠାନରେ ରାଷ୍ଟ୍ରୀୟ ପତାକା ଉଡ଼ାଇବା ନିଷିଦ୍ଧ ଥିଲା । ମାତ୍ର ଆମ୍ଭେମାନେ ପ୍ରାୟ ପ୍ରତିଦିନ ସେହି ରାଷ୍ଟ୍ରୀୟ ପତାକା ଉତ୍ତୋଳନ କରିବା ଓ ଧ୍ୱଜାବନ୍ଦନ ଆଦି କରିବାର ଅଭ୍ୟାସ ରାମଚନ୍ଦ୍ରପୁର ସ୍କୁଲରେ କରୁଥିଲୁ । ଏଥିରେ କୌଣସି ସରକାରୀ ଉଚ୍ଚ କର୍ମଚାରୀ ଆମକୁ ବାଧା ଦେଉ ନଥିଲେ । ଏକମାତ୍ର Public Schoolର ହେଡ୍‌ମାଷ୍ଟର Mr. Footକୁ ମୁଁ ପତ୍ର ଲେଖିଥିଲି । ପତ୍ରର ଉତ୍ତରରେ ସେ ଇଂରାଜୀ ଛାପା ଗୋଟିଏ booklet ପଠାଇ ଦେଇଥିଲେ । ସେଥିରୁ ଆମ୍ଭେମାନେ ଦେଖିଲୁ ଯେ ତାଙ୍କର Public Schoolରେ ଭାରତର ଜାତୀୟ ପତାକା ଉଡ଼ା ଯାଉଥିଲା ଓ ଛାତ୍ରମାନେ ବନ୍ଦେ ମାତରମ୍ ଜାତୀୟ ସଙ୍ଗୀତ ଗାନ କରୁଥିଲେ ।

ରାମଚନ୍ଦ୍ରପୁର ଅଭ୍ୟାସ ବିଦ୍ୟାଳୟରେ ୮ ବର୍ଷର ଛାତ୍ରୀଟିଏ Mass drillରେ ସେହି ସ୍କୁଲ୍‌ର ଓ ଅନ୍ୟ ପ୍ରାୟ ୧୨ଟି ମୌଳିକ ସ୍କୁଲ୍‌ର ମୋଟ ୪୫୦ ଜଣ ଛାତ୍ରଛାତ୍ରୀଙ୍କୁ ଆଦେଶ (command) ଦେଇଥିଲା । ଏହା ଦେଖି, ଶିକ୍ଷା ନିର୍ଦ୍ଦେଶକ ଶ୍ୟାମଚନ୍ଦ୍ର ତ୍ରିପାଠୀ ଓ ଜିଲ୍ଲା ଶିକ୍ଷା ନିରୀକ୍ଷକ ପ୍ରମୁଖ ବହୁତ ପ୍ରଶଂସା କରିଥିଲେ ଏବଂ ସାଧାରଣ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟରେ ଏହା ପ୍ରବର୍ତ୍ତନ କରିବାକୁ ମନସ୍ଥ କରିଥିଲେ । ଜଣେ ଶିକ୍ଷା ପରିଦର୍ଶକ ପୁନାଠାରେ Western India Physical Association ଦ୍ୱାରା ପ୍ରଦର୍ଶିତ ଏହିପରି mass drill ଦେଖି ଆସି ରାମଚନ୍ଦ୍ରପୁର ସରକାରୀ ମୌଳିକ ପ୍ରଶିକ୍ଷଣ ବିଦ୍ୟାଳୟର କ୍ରୀଡ଼ା ଶିକ୍ଷକ ଶ୍ରୀ ନିର୍ମଳ ଚନ୍ଦ୍ର ସାବତଂକୁ ସୂଚନା ଦେଇଥିଲେ । ରାମଚନ୍ଦ୍ରପୁର ଟ୍ରେନିଂ ସ୍କୁଲ୍‌ର କେତେ ଜଣ ଛାତ୍ର ଥର ଥର କରି ତିନୋଟି ଜୀଅଂତା ଗୋଖର ସାପ କୌଶଳ କ୍ରମେ ଧରି କାଚ show case ରେ ରଖିଥିଲେ । ଗୋଟିଏ ବଡ଼ ଠେକୁଆ ମଧ ପିଲାମାନେ ପାଳିଥିଲେ । ସରକାରୀ ଟ୍ରେନିଂ ସ୍କୁଲ୍‌ରେ ଅଣୁବୀକ୍ଷଣ ଯନ୍ତ୍ର, ମ୍ୟାଗ୍ନିଫାଇଂଗ୍ ଗ୍ଲାସ୍ ବିଲାତି ଷାର ଗ୍ଲୋବ୍ ଓ orrery ମଧ ଥିଲା । ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ପିଲାମାନେ ମଧ ଏହା ସାହାଯ୍ୟରେ ମନୁଷ୍ୟର ରକ୍ତ କଣିକା, ରାତିରେ ନିର୍ମଳ ଆକାଶରେ ଗ୍ରହ ନକ୍ଷତ୍ରର ଗତିବିଧି ଏବଂ ପୃଥିବୀ ଚାରି ପାଖରେ ଚନ୍ଦ୍ର ବୁଲୁଥିବା ଓ ସୂର୍ଯ୍ୟ ଚାରି ପାଖରେ ପୃଥିବୀ ବୁଲୁଥିବା ଦେଖି ଆନନ୍ଦିତ ଓ ବିସ୍ମିତ ହେଉଥିଲେ । କେବେ କେବେ ଅଭିଭାବକମାନେ ଦେଖି ଖୁସି ହେଉଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଉପଲବ୍ଧି କରୁଥିଲେ ଯେ ସେମାନଙ୍କର ପିଲାମାନେ ବଗିଚାକାମ କରିବା, ତୁଳା ବାଛିବା,

ଭିଣିବା ଓ ତୂଟା କାଟି ... ରେ କିଛି ସାହାଯ୍ୟ କରିବା ସହିତ ସମବାୟ ପଦ୍ଧତି ମାଧ୍ୟମରେ ପାଠ ମଧ୍ୟ ପଢୁଛନ୍ତି ।

ବ୍ରାହ୍ମଣୀ ନଦୀର ଦକ୍ଷିଣ କୂଳରେ ଥିବା ଶୁକଳ, ହାଟ ସାହି, ରାମପୁର, ଚନ୍ଦନପୁର ଆଦି ପଢ଼ା ଗାଁରୁ ନୌକାରେ ନଦୀ ପାରି ହୋଇ, ଉତ୍ତର କୂଳରେ ଥିବା ରାମଚନ୍ଦ୍ରପୁର ବେସିକ୍ ସ୍କୁଲରେ ପିଲାମାନେ ପଢୁଥିଲେ । ଥରେ ଇନ୍ଦ୍ରମଣି ମଲ୍ଲ ନାମରେ ଗୋଟିଏ ଦଶ/ଏଗାର ବର୍ଷର ଛାତ୍ରକୁ ନାଉରୀ ନୌକାରେ ପ୍ରଥମ ଭଡ଼ାରେ ନ ନେବାରୁ, ସେ ନଦୀକୁ ଡିଆଁ ମାରି ପହଁରିବାକୁ ଲାଗିଲା । କାଳେ ସେ ବୁଡ଼ିଯିବ ବା ସୁଅରେ ଭାସିଯିବ ବୋଲି ଆଶଂକା କରି ନାଉରୀ ତାହା ପାଖେ ପାଖେ ନୌକା ଚଳାଇଲେ ସୁଦ୍ଧା ଇନ୍ଦ୍ରମଣି ଡଙ୍ଗାକୁ ଉଠିଲା ନାହିଁ ଓ ନଈ ପହଁରି ପାରି ହେଲା ।

ବିଲାତରେ ଉଚ୍ଚ ଶିକ୍ଷାପ୍ରାପ୍ତ କଟକ ଟ୍ରେନିଂ କଲେଜର ଅଧ୍ୟାପକ ଶ୍ରୀଯୁକ୍ତ ଶ୍ରୀରାମଚନ୍ଦ୍ର ମହାପାତ୍ର ଓ ଶ୍ରୀଯୁକ୍ତ ରାମନାରାୟଣ ମହାନ୍ତି ଅକ୍ଟୋବର ୩୦, ୧୯୪୦ରେ ରାମଚନ୍ଦ୍ରପୁର ମୌଳିକ ଓ ପ୍ରଶିକ୍ଷଣ ବିଦ୍ୟାଳୟ ଦୁଇ ଦିନ ପରିଦର୍ଶନ କରିଥିଲେ । ଛାତ୍ରଛାତ୍ରୀମାନଙ୍କ ସହ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ । ସେ ... ପରିଦର୍ଶନ ମନ୍ତବ୍ୟରେ ଲେଖିଥିଲେ,- "xxx The education imparted here is that which is given in free countries." (ସାଧାରଣତଃ ସ୍ୱାଧୀନ ଦେଶମାନଙ୍କରେ ଯେଉଁ ପ୍ରକାର ଶିକ୍ଷା ଦିଆଯାଏ, ଏଠାରେ ତାହାହିଁ ଦିଆଯାଉଛି) । ଶିକ୍ଷା ନିର୍ଦ୍ଦେଶକ ଏ ତ୍ରିପାଠୀ ତା୨.୧.୧୯୪୧ ରୁ ୫.୧.୪୧ ପର୍ଯ୍ୟନ୍ତ ବରୀ ଅଂଚଳର ଟ୍ରେନିଂ ସ୍କୁଲ୍ ଓ କେତୋଟି ମୌଳିକ ବିଦ୍ୟାଳୟ ପରିଦର୍ଶନ କଲେ । ସେତେବେଳେ ଯାତାୟତର ସୁବିଧା ନଥିଲା । ସେ ଆଗରୁ ଆମକୁ ପରିଦର୍ଶନ ପ୍ରୋଗ୍ରାମ୍ ଦେଇ ନଥିଲେ । ଖରସ୍ରୋତା ନଦି ଓ ବ୍ରାହ୍ମଣୀ ନଦୀ ପାରି ହେବା ଓ ପାଟ ଭିତରେ ଆସିବା ପାଇଁ ସେ ସୁକିନ୍ଦା ରାଜାଙ୍କର ହାତୀରେ ଆସିଥିଲେ । ଡେରାଡୁନ ପବ୍ଲିକ୍ ସ୍କୁଲରେ ପଢୁଥିବା ତାଙ୍କର ଦୁଇ ପୁତ୍ର ଚୂଡ଼ାମଣି ଓ ନୀଳମଣି ମଧ୍ୟ ତାଙ୍କ ସହ ଆସିଥିଲେ । ଆମ୍ଭେମାନେ ଛାତ୍ରଛାତ୍ରୀମାନଙ୍କୁ ନାନାବିଧ ପ୍ରଶ୍ନ ଯାହାର ଯାହା ଇଚ୍ଛା ହେଉଥିଲା - କରିବା ପାଇଁ ଉତ୍ସାହିତ କରୁଥିଲୁ । କେତେକ ଛାତ୍ର ତାଙ୍କୁ ପଚାରିଲେ- 'ଏ ହାତୀର ଓଜନ କେତେ ? ଏ ହାତୀ କଅଣ କଅଣ ଖାଏ ? କେତେ ପରିମାଣରେ ଖାଏ ? ଇତ୍ୟାଦି । ତାଙ୍କ ପୁଅମାନେ ତ୍ରିପାଠି ସାହେବଙ୍କୁ - ସନ୍ଧ୍ୟାବେଳେ ହାତୀରେ ବସି ମୁକ୍ତ ଆକାଶ ତଳେ ବୁଲୁଥିବାବେଳେ - ଗ୍ରହ ନକ୍ଷତ୍ର ଆଦିର ନାମ, ଗତିବିଧି ସଂବଧରେ ମଧ୍ୟ ପଚାରୁଥିଲେ । ଟ୍ରେନିଂ ସ୍କୁଲ୍‌ର ପୁସ୍ତକାଗାରରେ ଥିବା ସେ ସଂବଧୀୟ ଇଂରାଜୀ ବହିରୁ ପଢ଼ି ସେମାନଙ୍କର ଉତ୍ତର ଛାଏଁ ଛାଏଁ ପାଇଥିଲେ ଓ ଆନନ୍ଦିତ ହୋଇଥିଲେ । ଶ୍ରୀ ତ୍ରିପାଠୀ ଖୋଲାଖୋଲି ଭାବରେ ଛାତ୍ରମାନଙ୍କ ସହ କଥାବାର୍ତ୍ତା ଓ ଆଲୋଚନା କଲେ ଏବଂ ଏହି ନୂତନ ଶିକ୍ଷାର ଦୋଷ ଗୁଣ ଦର୍ଶାଇଲେ । ତ୍ରିପାଠୀ ସାହେବ ଆଗରୁ ଅନୁମାନ କରି ପାରିଥିଲେ ଯେ ଓଡ଼ିଶା ସରକାର ଏହି ଶିକ୍ଷା ପ୍ରୟୋଗକୁ ଆଉ ଚଳାଇବେ ନାହିଁ । ସେଥିପାଇଁ ସେ ଦକ୍ଷିଣ ଓଡ଼ିଶାର ଇନ୍‌ସ୍ପେକ୍ଟର ହରିହର ମିଶ୍ରଙ୍କୁ ସୂଚନା ଦେଇଥିଲେ ଯେ ସେ ଶୀଘ୍ର ବରୀ ଅଞ୍ଚଳରେ ଚାଲିଥିବା ସେହି ପ୍ରୟୋଗକୁ ଦେଖି ଆସନ୍ତୁ ।

୨୭ ଜାନୁୟାରୀ, ୧୯୪୧ ମସିହାରେ ଶ୍ରୀଯୁକ୍ତ ହରିହର ମିଶ୍ର ବରୀ ଆସି କହିଲେ "Sarat, your education begins with some political bias" ମୁଁ ରେଭେନ୍ସା କଲେଜ୍‌ରେ ୧୯୨୬-୨୭ ରେ I. Sc. ପଢୁଥିବାବେଳେ ପଶ୍ଚିମ ଛାତ୍ରାବାସରେ ରହୁଥିଲି । ଶ୍ରୀଯୁକ୍ତ ମିଶ୍ର ଇଂରାଜୀରେ ଏମ୍.ଏ. ସେହି କଲେଜ୍‌ରେ ପଢୁଥିଲେ ଓ ସେହି 'ଛାତ୍ରାବାସ'ରେ ରହୁଥିଲେ, perfect ଥିଲେ, ଆମେ ମେସ୍‌ରେ ଏକା ଖାଉଥିଲୁ । ସେହି ହେତୁରୁ ସେ ମତେ ଅତି ଆଦର କରୁଥିଲେ । ମୁଁ ତାଙ୍କର ପ୍ରଥମ ସାକ୍ଷାତରେ ଏପରି ପ୍ରଶ୍ନ ଶୁଣି, ତତ୍‌କ୍ଷଣାତ ପଚାରିଲି, "Sir, please tell me the name of a free country in the world, the education of which does not have a political bias ?"

ସେ ଅନ୍ୟ ଆଲୋଚନା କଲେ ଏବଂ ବରୀରେ ଥିବା ଅରଟ ତିଆରି ସରଂଜାମ କାର୍ଯ୍ୟାଳୟ, ରମାଦେବୀଙ୍କର ଆଶ୍ରମ (ସେବା ଘର), ମହୁବାଙ୍କ ଆଦି ଦେଖି ସାଇକେଲ୍‌ରେ ରାମଚନ୍ଦ୍ରପୁର ଆସିଲେ । ରାମଚନ୍ଦ୍ର ପୁରରେ ସେତେବେଳେ ପ୍ରଥମ ଓ ଦ୍ୱିତୀୟ ଦଳର ଗୁରୁଛାତ୍ରମାନଙ୍କର ଟ୍ରେନିଂ ସମାପ୍ତ ପରେ ଟ୍ରେନିଂ ସ୍କୁଲ୍ ବନ୍ଦ ଥିଲା । କେବଳ ଅଭ୍ୟାସ ବିଦ୍ୟାଳୟ ଓ ଆଉ ୧୪ଟି ଗ୍ରାମରେ ସରକାରୀ ବେସିକ୍ ସ୍କୁଲ୍ ରହିଥିଲା । ମିଶ୍ର ମହାଶୟ- ସମୟ ଅଭାବରୁ - କେବଳ ରାମଚନ୍ଦ୍ର ପୁରର ଅଭ୍ୟାସ ବିଦ୍ୟାଳୟଟି ପରିଦର୍ଶନ କଲେ । ଶିକ୍ଷକ ଶ୍ରୀ କାହ୍ନୁ ଚରଣ ମହାନ୍ତି B.A. C.T, ଶ୍ରୀ ଲାଲମୋହନ ପ୍ରଧାନ matric basic trained ଙ୍କ ସହ ଆଲୋଚନା କଲେ ଏବଂ ୧ମରୁ ୩ୟ ସୋପାନର ଛାତ୍ରଛାତ୍ରୀମାନଙ୍କୁ ନାନା ପ୍ରଶ୍ନ କଲେ, ଧନ୍ଦାକାର୍ଯ୍ୟ ଦେଖିଲେ, ରେକର୍ଡ ସଂକ୍ଷେପରେ ଯାଞ୍ଚ କଲେ । ସେ ବିଦାୟ ନେବା ପୂର୍ବରୁ ମତେ କହିଲେ- ''ତୁମେ ଏହି ନୂତନ ଶିକ୍ଷା ଓ ପ୍ରଚଳିତ (ପୁରୁଣା) ଶିକ୍ଷା ସମ୍ବନ୍ଧରେ ଗୋଟିଏ ତୁଳନାତ୍ମକ ଲେଖା ମୋତେ ପଠାଇବ । ସେହି ୨୭-୧-୧୯୪୧ରେ ସରକାରଙ୍କଠାରୁ ପତ୍ର ପାଇଲି ଯେ ଓଡ଼ିଶା ସରକାର ଏହି ଶିକ୍ଷା ପ୍ରୟୋଗକୁ ସଂପୂର୍ଣ୍ଣ ରୂପେ ବନ୍ଦ କରି ଦେଇଛନ୍ତି । କର୍ମଚାରୀମାନଙ୍କୁ ଏକ ନୋଟିସ୍ ଦେଇଦିଅ । ତା ୫ ମାର୍ଚ୍ଚ ୧୯୪୧ରେ ରେଭେନ୍ସା କଲେଜ୍‌ର Physics Dept. ର demonstratior ଶ୍ରୀ ଶରତ ଚନ୍ଦ୍ର ଘୋଷ ରାମଚନ୍ଦ୍ରପୁରକୁ ଆସି, ଦାୟିତ୍ୱ ନେଲେ । ଶ୍ରୀ କାହ୍ନୁ ଚରଣ ମହାନ୍ତି ବିଂଝାରପୁର ସର୍କଲ୍‌ର ସ.ଇ. ରହି, ସ୍ଥାବର ଜିନିଷପତ୍ରର ଦାୟିତ୍ୱରେ ରହିଲେ ।

ତା ୧ ମାର୍ଚ୍ଚ, ୧୯୪୧ ରୁ ଉତ୍କଳ ମୌଳିକ ଶିକ୍ଷା ପରିଷଦର ମାର୍ଗ ଦର୍ଶନ ଓ ପରିଚାଳନାରେ ବେସରକାରୀ ପ୍ରୟୋଗ ଆରମ୍ଭ ହେଲା । ଆଚାର୍ଯ୍ୟ ହରିହର ପରିଷଦର ସଭାପତି ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀ ସଂପାଦକ ରହିଲେ । ୧୮ ଜଣ ଶିକ୍ଷକ ଓ କେତେଜଣ ରଚନାତ୍ମକ କର୍ମୀ ଏହି ନୂଆ ପ୍ରୟୋଗରେ ସ୍ୱତଃ ସାମିଲ ହେଲେ । ଶ୍ରୀମତୀ ରମା ଦେବୀ ଚୌଧୁରୀ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ରାଧାନାଥ ରଥ, ଲକ୍ଷ୍ମୀ ନାରାୟଣ ସାହୁ ପ୍ରମୁଖ ସଦସ୍ୟ ରହିଲେ ଏବଂ ଚାନ୍ଦା ଭେଦା କରି ଓ ସମସ୍ତ ଗ୍ରାମବାସୀଙ୍କର ସାହାଯ୍ୟରେ ଏ ପ୍ରୟୋଗକୁ ଚଳାଇଲେ । ତା ୬-୪-୧୯୪୧ ରେ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀଙ୍କୁ ଅଧ୍ୟକ୍ଷତାରେ ରାମଚନ୍ଦ୍ରପୁରଠାରେ ଉତ୍କଳ ମୌଳିକ ଶିକ୍ଷା ପରିଷଦ ଆନୁଷ୍ଠାନିକ ଭାବରେ ଗଠିତ ହୋଇଥିଲା ।

ଶ୍ରୀ ଶରତ ଚନ୍ଦ୍ର ମହାରଣା ମଙ୍ଗଳବାର ତା୨୮.୧.୧୯୪୧ ସରସ୍ୱତୀ ପୂଜା ଦିନ ତାଙ୍କର ସ୍ଥାୟୀ ଚାକିରୀ କଟକ ସଦର ସର୍କଲର ସବ୍ ଇନ୍ସପେକଟର ଅଫ ସ୍କୁଲ୍‌ରୁ ଓ ତା ୧୨-୨-୧୯୪୧ ବୁଧବାର ଦିନ ତାଙ୍କର ଅସ୍ଥାୟୀ ଚାକିରୀ ଅର୍ଗାନାଇଜର ଅଫ ବେସିକ୍ ଏଜୁକେସନରୁ ଇସ୍ତଫା ଦେଲେ । ସେ ସରକାରଙ୍କର ସିଦ୍ଧାନ୍ତର ପ୍ରତିବାଦ କରିବାର ଯୌକ୍ତିକତା ଅନୁଭବ କରି ନଥିଲେ କି ଇସ୍ତଫା ଆଦୌ ତାହା ଉଲ୍ଲେଖ କରି ନଥିଲେ । କେତେକ ଆଗ୍ରହୀ ଶିକ୍ଷକ ପ୍ରଥମେ ସେମାନଙ୍କର ଆଗ୍ରହ ଓ ବେସରକାରୀ ପ୍ରୟୋଗରେ ସାହସିକତା ଦେଖାଇବାକୁ ଆସିଲେ । ଶ୍ରୀମତୀ ରାମା ଦେବୀ ମଧ୍ୟ ଏଥିରେ ଆଗ୍ରହାନ୍ୱିତା ହେବାପରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଏହାକୁ କାର୍ଯ୍ୟତଃ ସମର୍ଥନ କଲେ ।

କାକା କାର୍ଲେରକର ଓ ହିନ୍ଦୁସ୍ତାନୀ ତାଲିମ ସଙ୍ଘର ସହକାରୀ ସଂପାଦିକା ଶ୍ରୀମତୀ ଆଶାଦେବୀ ଅନ୍ୟ କାର୍ଯ୍ୟରେ ବରୀ ଅଞ୍ଚଳକୁ ଆସି ଶିକ୍ଷକମାନଙ୍କ ସହ କଥାବାର୍ତ୍ତା କଲେ ଏବଂ ଓଡ଼ିଶାରେ ଏହି ପ୍ରୟୋଗକୁ ହିନ୍ଦୁସ୍ଥାନୀ ତାଲୀମ ସଙ୍ଘେ ଆର୍ଥିକ ସାହାଯ୍ୟ ଦେବା ପାଇଁ ସୁପାରିଶ କରିବାରୁ ସଂଘ ମାସିକ ଟ ୬୦୦/- ଆର୍ଥିକ ସାହାଯ୍ୟ ପାଇଲା । ଏହି ବେସରକାରୀ ଉଦ୍ୟମକୁ ପ୍ରଶଂସା କରି ମହାତ୍ମା ଗାନ୍ଧୀ ୧୪.୨.୪୧ରେ ରମା ଦେବୀଙ୍କ ପାଖକୁ ପତ୍ର ମାଧ୍ୟମରେ ଜଣାଇଲେ ଯେ ଏ ପ୍ରୟୋଗ ସଫଳ ହେଲେ ଏକ ମହାନ ସେବା ହେବ ।

ତା ୮ ଅଗଷ୍ଟ, ୧୯୪୨ ରେ କଂଗ୍ରେସ

''ଭାରତଛାଡ଼'' ପ୍ରସ୍ତାବ ଗ୍ରହଣ କରିବାରୁ ମହାତ୍ମାଗାନ୍ଧୀ ପ୍ରମୁଖ ନଅ ତାରିଖରୁ ଗିରଫ ହୋଇଗଲେ । ଅନ୍ୟାନ୍ୟ ଅଂଚଳ ତଥା ବରୀ ଅଂଚଳରେ ମଧ ଜଣାଶୁଣା କଂଗ୍ରେସ ଲୋକ ଗିରଫ ହୋଇଗଲେ । ବେସରକାରୀ ପ୍ରୟୋଗର କର୍ମୀମାନେ ଏହି ପରିସ୍ଥିତିରେ ଏ ପ୍ରୟୋଗକୁ ଚଳାଇବା ଅସମ୍ଭବ ମନେ କରି ତା ୧୬ ଅଗଷ୍ଟ ୧୯୪୨ରେ ଅନୁଷ୍ଠିତ ସେମାନଙ୍କର ବୈଠକରେ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ କରି ଏ ପ୍ରୟୋଗକୁ ବନ୍ଦ କରି ଦେଲେ ଏବଂ ''ଭାରତଛାଡ଼'' ଆନ୍ଦୋଳନରେ ପୂର୍ଣ ପ୍ରାଣରେ ଝାସ ଦେଲେ । ଏହି ଆନ୍ଦୋଳନରେ ତା ୨୬-୮-୪୨ରେ କାଇପଡ଼ାଠାରେ ପୋଲିସ୍‌ର ନିର୍ମମ ଗୁଳିକାଣ୍ଡରେ ହାଡ଼ିବନ୍ଧୁ ପଣ୍ଡା ସାଉଁଟି ମଲିକ, ମାୟାଧର ଭୂୟାଁ, ସାନନ୍ଦ ସ୍ୱାଇଁ ଓ ୭ ବର୍ଷ ବୟସର ଅବଳା ନାୟକ, ଶହୀଦ ହେଲେ ଓ ତିନି ଜଣ ଆହତ ହେଲେ । ଅନ୍ୟାସିପୁର ବେସରକାରୀ ମୌଳିକ ସ୍କୁଲ୍‌ର ୧୧ ବର୍ଷ ବୟସର ଛାତ୍ର ସୁପ୍ରଭାତ ଦେଙ୍କ ବାମ ହାତରେ ଗୁଳି ଫୁଟି ବାହାରି ଯାଇଥିଲା । ଅନ୍ୟ ମୌଳିକ ସ୍କୁଲର ଛାତ୍ର ଶ୍ରୀମାନ ରାଧାଶ୍ୟାମ ବେଉରିଆ, ମୁକ୍ତେଶ୍ୱର ବେଉରିଆ, କରୁଣାସିଂଧୁ ଖୁଣ୍ଟିଆ ଆଦିକୁ ପୋଲିସ୍ ଗିରଫ୍ କରିଥିଲା ।

ଘଟଣାଚକ୍ରରେ ୧୯୪୬ ମସିହାରେ ଓଡ଼ିଶାରେ ପୁଣି କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଆଚାର୍ଯ୍ୟ ହରିହର ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ସାକ୍ଷାତ କଲେ । ପଣ୍ଡିତ ଲିଙ୍ଗରାଜ କହିଥିଲେ - ''ଇନ୍ସପେକ୍ଟର ସଚ୍ଚିଦାନନ୍ଦ ରାୟ ଓ ଡିରେକ୍ଟର ଶ୍ୟାମଚରଣ ତ୍ରିପାଠୀ ୧୯୪୦ ଓ ୧୯୪୧ରେ ବରୀ ଅଞ୍ଚଳରେ ସରକାରୀ ମୌଳିକ ଶିକ୍ଷା ପ୍ରୟୋଗ ଦେଖି ଯେଉଁ ଗୁପ୍ତ ରିପୋର୍ଟ ଦେଇଥିଲେ, ସେଥିରେ ଏପର କୌଣସି ଦୋଷ ସେମାନେ ଦେଖି ନଥିଲେ, ଯାହା ଫଳରେ ସେହି ପ୍ରୟୋଗକୁ ବନ୍ଦ କରିବାର କଥା । ମାତ୍ର ହବାକ୍ ସାହେବଙ୍କର କ୍ରୋଧ ହେତୁରୁ ଓଡ଼ିଶା ସରକାର ତାକୁ ବନ୍ଦ କରି ଦେଇଥିଲେ ।

ରାମପୁରର ଶ୍ରୀ ଗୋବିନ୍ଦ ସାମଲ ଗାନ୍ଧୀ ବିଚାରରେ ଚଳୁଥିଲେ, ରଚନାତ୍ମକ କାର୍ଯ୍ୟ କରୁଥିଲେ, ସରକାରୀ ଯୋଜନାରେ ମୌଳିକ ଶିକ୍ଷା ପାଇଁ ଜାଗା ଦାନ କରିଥିଲେ । ସରକାର ଏହି ଯୋଜନା ବନ୍ଦ କରିଦେବା ପରେ ସେ ଛାତ୍ର ଓ ଅଭିଭାବକମାନଙ୍କୁ ପଚାରି ମତ ସଂଗ୍ରହ କରିଥିଲେ- ସେମାନେ କହିଥିଲେ- ଏ ଶିକ୍ଷା ଆମର ପିଲାଙ୍କୁ ଖାଇବା ଓ ପିନ୍ଧିବା ପାଇଁ ଉତ୍ପାଦନ କରିବାକୁ ଶିକ୍ଷା ଦେଉଥିଲା । ଗାନ୍ଧୀଜୀ ଠିକ୍ ଏହି କଥା ଆଗରୁ ଫକର ଭାଷଣରେ ବ୍ୟକ୍ତ କରିଥିଲେ ଗାନ୍ଧୀଜୀଙ୍କ ମତରେ ''The inner meaning and objective of the new education is we have to make of this training school for winning freedom and for the solution of our ills.'' ବରୀ ଅଞ୍ଚଳରେ ଆମ୍ଭେମାନେ ସରକାରୀ କର୍ମଚାରୀ ଭାବରେ, ସରାକାରୀ କର୍ମଚାରୀ ଭାବରେ, ସରକାରୀ ଯୋଜନାରେ ସାରକାରୀ ଟଙ୍କାରେ ଏ ପ୍ରୟୋଗ କରିବାବେଳେ ଗାନ୍ଧୀଜୀଙ୍କର ସେହି କଥାକୁ ମନେ ରଖିଥିଲୁସା ମାର୍ଚ୍ଚ ୧୯୪୧ରୁ ତା ୧୬-୮-୪୨ ।ଏ ଲୋକଶକ୍ତିରେ, ବେସରକାରୀ ଭାବରେ ତାଙ୍କର ବାକ୍ୟକୁ କାର୍ଯ୍ୟରେ ପରିଣତ କରିବାର ଅଧିକ ସୁଯୋଗ ପାଇଥିଲୁ ।

କେବଳ ଭାରତବର୍ଷର ସ୍ୱାଧୀନତା ପ୍ରାପ୍ତି ଏହି ରାଷ୍ଟ୍ରୀୟ ଶିକ୍ଷାର ଧେୟ ନଥିଲା । ଗାନ୍ଧୀଜୀଙ୍କ ମହାପ୍ରୟାଣ ପୂର୍ବରୁ ତା୨୮-୧-୧୯୪୮ରେ ଗାନ୍ଧୀଜୀ ତାଙ୍କର ଅନ୍ତିମ ଇଚ୍ଛା ପତ୍ରରେ ଯାହା କଂଗ୍ରେସଠାରୁ ଓ ଭାରତବାସୀଙ୍କ ଠାରୁ ଆଶା କରିଥିଲେ, ତାକୁ ସାକାର କରିବା ମଧ ଏହି ଶିକ୍ଷାର ସୁଦୂର ପ୍ରସାରୀ ଲକ୍ଷ୍ୟ ବୋଲି ମନେ ହୁଏ । ସେଥିପାଇଁ ଦେଶ ସ୍ୱାଧୀନ ହେବା ପରେ ଆଚାର୍ଯ୍ୟ ବିନୋବାଙ୍କର କ୍ରାନ୍ତିକାରୀ ଭୂଦାନ-ଗ୍ରାମଦାନ ଯଜ୍ଞରେ ୧୯୫୧ ମସିହାରୁ ବରୀ ଅଞ୍ଚଳର ଓ ଓଡ଼ିଶାର ଅନ୍ୟାନ୍ୟ କେତେକ ଅଞ୍ଚଳର ମୌଳିକ ଶିକ୍ଷାର ଗୁରୁଜୀମାନେ ଓ ଉତ୍ତର-ଉତ୍ତମ ବୁନିଆଦି ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ତତ୍‌ପୂର୍ବରୁ ହିନ୍ଦୁ ମୁସଲମାନ ଦଙ୍ଗା ପରେ ସେବାଗ୍ରାମ ବୁନିଆଦି କେନ୍ଦ୍ରର ଓଡ଼ିଶାର ଛାତ୍ରମାନେ ମଧ୍ୟ ଶରଣାର୍ଥୀ ଶିବିର ଗୁଡ଼ିକରେ ଦକ୍ଷତା ସହକାରେ କାର୍ଯ୍ୟ କରିଥିଲେ । ବରୀ ଅଞ୍ଚଳର କେତେକ ଗୁରୁଜୀ ଗ୍ରାମବାସୀମାନଙ୍କ ମଧ୍ୟରୁ କେତେଜଣ ବିଚାରବାନ ଲୋକଙ୍କର ସାହାଯ୍ୟରେ 'ସମନ୍ୱୟ ସମିତି' ଗଢ଼ି ଲୋକଙ୍କ ମଧ୍ୟରେ ଲାଗିଥିଲା ମାଲି ମୋକଦ୍ଦମା ଓ ଅଶାଂତିର ଆପୋଷ ସମାଧାନ କରିଥିଲେ ।

ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତା ୨୬ - ୬ -୧୯୭୫ରୁ ଜରୁରୀ ପରିସ୍ଥିତି ଜାରୀ କରିବାରୁ ଦେଶବ୍ୟାପୀ ଗଭୀର ଆଲୋଡନ ସୃଷ୍ଟି ହୋଇଥିଲା । ସେତେବେଳେ ଏହି ଶିକ୍ଷାରେ ପୂର୍ବତନ କେତେ ଜଣ ଛାତ୍ର ଓ ଗୁରୁଜୀ ମଧ୍ୟ ଏହାର ପ୍ରତିରୋଧ କରିଥିଲେ ।

ମୋର ଧାରଣା ଯେ ଯଦି ଆମ୍ଭେମାନେ ଗାନ୍ଧୀଜୀଙ୍କର ଏହି କ୍ରାନ୍ତିକାରୀ ଶିକ୍ଷାର ପ୍ରକୃତ ମର୍ମ ବୁଝି କାର୍ଯ୍ୟକରୁ, ତେବେ ବର୍ତ୍ତମାନ ଚାଲିଥିବା ଉଦାରୀକରଣ, ଜଗତି କରଣ ଆଦି ପ୍ରକ୍ରିୟାରେ ବହୁରାଷ୍ଟ୍ରୀୟ କମ୍ପାନିମାନେ ଭାରତକୁ ବାହାରିଛନ୍ତି, ତାକୁ ପ୍ରତିରୋଧ କରିବା ପାରିବା । ଏହି ଶୋଷଣ ଓ ପୁଞ୍ଜିବାଦ ଶକ୍ତିକୁ ପ୍ରତିହତ କରିବା ପାଇଁ ଗାନ୍ଧୀ-ବିନୋବା ଜୟପ୍ରକାଶଙ୍କର ପଂଥା ଏବଂ 'ଅସହଯୋଗ ଓ ସତ୍ୟାଗ୍ରହ' - ଯାହା ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରେ ଶିକ୍ଷାରେ ପ୍ରୟୋଗ କରୁ କରୁ ଆବିଷ୍କାର କରିଥିଲେ- ପ୍ରକୃଷ୍ଟ ଅଟେ । ●●●



## କି ହେବ ଏ ସ୍ୱରାଜ୍ୟ

କି ହେବ ସେ ସ୍ୱରାଜ୍ୟ ଘେନି ଯେବେ ମୋର ନପୂରେ ପେଟ
ଖଟି ଖଟି ମଲେଣି ମୂଲିଆ ଚାଷଜମି ଦାନା-କନା ନିଅଣ ॥୦॥
ଅଧମାଣେ ଜମି ଜଣକା
କୋରଖରେ ସେ ପୁଣି ବିକା
ଗାଁର ସଭିଏଁ କରଜ କରନ୍ତି ଜଣେ ଦୁଇଜଣ ବମ୍ଭେଇ ଶେଠ ॥୧॥
ମୋ ଭାଇର ବାଟିକୁ ବାଟି
ଅମାର ତା ପଡୁଛି ଫାଟି
ମୋର ଚାଳ ନାହିଁ ଛପର ତାଟି ମୋ ଭାଇ ଶୋଉଛି ପଲଙ୍କ ଖଟ ॥୨॥
ବସ ପଛେ ଲାଟ୍ ଆସନେ
ମନ୍ତ୍ରୀ ହୁଅ ନୂଆ ଶାସନେ
ଚାଷୀ ଯେ ତିମିରେ ଚାଷୀ ସେ ତିମିରେ ସୁଖ ସଙ୍ଗେ କେବେ ହବକି ଭେଟ... ॥୩॥
ଧଳା ସ୍ଥାନେ କଳା କରତା
ହୁଅ ପଛେ ଦୈବ ବିଧାତା
ଧନୀ କି ଦରିଦ୍ର ଭେଦ କି ଘୁଞ୍ଚିବ ବଡ଼ବଡ଼ିଆଙ୍କ ନଜର ଛୋଟ ॥୪॥



# ରଚନାତ୍ମକ ସଂସ୍ଥା

## ସର୍ବୋଦୟ ସମାଜ ଓ ସର୍ବ ସେବାସଂଘ

ଅନ୍ନପୂର୍ଣ୍ଣା ମହାରଣା

୩୦ ଜାନୁଆରୀ ୧୯୪୮ ମସିହାରେ ମହାତ୍ମା ଗାନ୍ଧୀଙ୍କ ଦେହାବସାନ ଘଟିଲା । ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଅନୁମୋଦିତ୍ ପନ୍ଥାରେ ଯେଉଁ ହଜାର ହଜାର ଦେଶ ସେବକ ସେବିକା ରଚନାତ୍ମକ କାର୍ଯ୍ୟ କରୁଥିଲେ, ସେମାନେ ମହାତ୍ମା ଗାନ୍ଧୀଙ୍କ ଅନ୍ତେ ସ୍ୱାଧୀନ ଭାରତରେ ସେମାନଙ୍କର କାର୍ଯ୍ୟପନ୍ଥା ଓ ଭୂମିକା ବିଷୟରେ ଆଲୋଚନା୍ କରିବା ପାଇଁ ୧୯୪୮ ମସିହା ମାର୍ଚ୍ଚ ମାସରେ ୧୩ ତାରିଖରେ ସେବାଗ୍ରାମରେ ଏକ ସମ୍ମିଳନୀରେ ଏକତ୍ର ହେଲେ । ବାବୁ ରାଜେନ୍ଦ୍ର ପ୍ରସାଦ ଏହି ରଚନାତ୍ମକ କର୍ମୀ-ସମ୍ମିଳନୀରେ ଅଧକ୍ଷତା କରିଥିଲେ । ସର୍ବଶ୍ରୀ କିଶୋରଲାଲ ମଶ୍ରୁୱାଲା, କକାକାଲେକର, ଜେ.ସି.କୁମାରପ୍ପା, ଶ୍ରୀକୃଷ୍ଣଦାସ ଜାଜୁ, ଇଡବ୍‌ଲ୍ୟୁ ଆର୍ଯ୍ୟନାୟକମ୍, ଦାଦା ଧର୍ମାଧିକାରୀ, ବିନୋବାଭାବେ ପ୍ରମୁଖ ଗାନ୍ଧୀଜୀଙ୍କର ଅନ୍ତରଙ୍ଗ ସହକର୍ମୀ ଓ ପଣ୍ଡିତ ଜବାହର ଲାଲ ନେହେରୁ ରାଜନୈତିକ କ୍ଷେତ୍ରରେ ତାଙ୍କ ଭଳି ପୋଖତ ଗାନ୍ଧୀଜୀଙ୍କ ସହକର୍ମୀମାନେ ଏହି ସମ୍ମାଳନୀରେ ଯୋଗ ଦେଇଥିଲେ । ଏହି ସମ୍ମେଳନ ନିର୍ଣ୍ଣୟ ନେଇ ଯେଉଁମାନେ ଗାନ୍ଧୀଜୀଙ୍କ ସିଦ୍ଧାନ୍ତରେ ବିଶ୍ୱାସ କରନ୍ତି, ସେମାନେ ଆପଣା ମଧ୍ୟରେ ଗୋଟିଏ ଭ୍ରାତୃମଣ୍ଡଳୀ ଗଠନ କରିବେ ।

୧) **ନାମ**-ଏହି ମଣ୍ଡଳୀର ନାମ ସର୍ବୋଦୟର ସମାଜ ହେବ ।

୨) **ଉଦ୍ଦେଶ୍ୟ** - ସତ୍ୟ ଓ ଅହିଂସାର ମୂଳଦୁଆ ଉପରେ ପ୍ରତିଷ୍ଠିତ ଏପରି ଏକ ସମାଜ ଗଠନ କରିବାର ଉଦ୍ୟମ କରାଯିବ, ଯହିଁରେ ଜାତିଭେଦ ରହିବ ନାହିଁ, କେହି କାହାରିକୁ ଶୋଷଣ କରିବାର ଅବକାଶ ନଥିବ ଏବଂ ସେ ସମାଜରେ ବ୍ୟକ୍ତି ଓ ଗୋଷ୍ଠୀ ଉଭୟଙ୍କର ସର୍ବାଙ୍ଗୀନ ବିକାଶର ପୂର୍ଣ୍ଣ ଅବକାଶ ରହିବ ।

୩) **ମୌଳିକ ସିଦ୍ଧାନ୍ତ** - ସାଧ୍ୟ ପରି ସାଧନାର ଶୁଦ୍ଧତା ବାବଦରେ ଆଗ୍ରହ ।

୪) ଏହି ଉଦ୍ଦେଶ୍ୟ ପୂରଣ କରିବା ପାଇଁ ନିମ୍ନଲିଖିତ ବିଷୟଗୁଡ଼ିକ କାର୍ଯ୍ୟକାରୀ କରିବାକୁ ହେବ:- ୧-ସାମ୍ପ୍ରଦାୟିକ ଏକତା, ଅସ୍ପୃଶ୍ୟତା ନିବାରଣ, ୩- ଜାତିଭେଦ-ନିରାକରଣ, ୫- ଖଦୀ ଓ ଅନ୍ୟଗ୍ରାମୋଦ୍ୟୋଗ, ୬- ଗ୍ରାମ ସଫାଇ, ୭- ମୌଳିକ ଶିକ୍ଷା ୮- ସ୍ତ୍ରୀ ଓ ପୁରୁଷ ଉଭୟଙ୍କର ସମାନ ଅଧିକାର ଓ ସମାନ ମର୍ଯ୍ୟାଦା, ୯- ସ୍ୱାସ୍ଥ୍ୟରକ୍ଷ୍ୟା ଓ ପରିଚ୍ଛନ୍ନତା, ୧୦- ଭାରତୀୟ ଭାଷାଗୁଡ଼ିକରେ ବିକାଶ, ୧୧- ସଂକୀର୍ଣ୍ଣ ପ୍ରାଦେଶିକତା ନିବାରଣ ୧୨- ରାଷ୍ଟ୍ରଭାଷାର ପ୍ରସାର, ୧୩-ଆର୍ଥିକ ସମାନତା, ୧୪-କୃଷିର ଉନ୍ନତି, ୧୫-ଶ୍ରମିକ ସଂଗଠନ, ୧୬- ଆଦିବାସୀ ସେବା, ୧୭- ଛାତ୍ର ସଂଗଠନ, ୧୮- କୁଷ୍ଠରୋଗୀ-ସେବା, ୧୯-ସଂକଟତ୍ରାଣ ଓ ଆର୍ତ୍ତସେବା ୨୦-ଗୋସେବା, ୨୧- ପ୍ରାକୃତିକ ଚିକିତ୍ସା, ୨୨-ଏହି ଧରଣର ଅନ୍ୟକାର୍ଯ୍ୟ ।

୫) **ସେବକଙ୍କ ରେଜିଷ୍ଟ୍ରାର** - ଏହି ସର୍ବୋଦୟ ସମାଜଭୁକ୍ତ ବ୍ୟକ୍ତିଙ୍କୁ ସର୍ବୋଦୟ ସେବକ କୁହାଯିବ । ଉପରୋକ୍ତ ମୌଳିକ ସିଦ୍ଧାନ୍ତ ଓ ଉଦ୍ଦେଶ୍ୟକୁ ସ୍ୱୀକାର କରିବାକୁ ଯେଉଁ ବ୍ୟକ୍ତି ଉଦ୍ୟତ ହେବେ ସେ ସର୍ବୋଦୟ ସମାଜର ସଂପାଦକଙ୍କୁ ନିମ୍ନଲିଖିତ ପ୍ରକାରେ ପତ୍ରଲେଖି

ନିଜର ନାମ ଓ ଠିକଣା ପଠାଇବେ, ଯଦ୍ୱାରା ସର୍ବୋଦୟ ସମାଜର ରେଜିଷ୍ଟରରେ ତାଙ୍କର ନାମ ଓ ଠିକଣା ରେଜିଷ୍ଟରଭୁକ୍ତ ହେବ ।

**ପତ୍ରର ନମୁନା:**

ପ୍ରିୟବନ୍ଧୁ,

ସର୍ବୋଦୟ ସମାଜର ଉଦ୍ଦେଶ୍ୟ ଓ ମୌଳିକ ସିଦ୍ଧାନ୍ତକୁ ମାନୁଛି ଏବଂ ତଦନୁସାରେ କାର୍ଯ୍ୟ କରିବା ପାଇଁ ଚେଷ୍ଟା କରୁଛି । ମୋର ନାମ ସର୍ବୋଦୟ ସମାଜର ସେବକ ତାଲିକାରେ ରେଜିଷ୍ଟରଭୁକ୍ତ କରିବାକୁ ଅନୁରୋଧ କରୁଅଛି ମୋର ପୂରା ନାମ ............. ଗ୍ରାମ ...... ଡାକଘର ....... ଜିଲ୍ଲା......... ପ୍ରଦେଶ ।

ମୋର ଓ ମୋ କାମର ପରିଚୟ ଏ ପତ୍ରର ପଛପଟେ ଦିଆଯାଇଛି

ବୟସ....... ତାରିଖ......... ସ୍ୱାକ୍ଷର.......

ପରିଚୟ - ଶୈକ୍ଷଣିକ ଯୋଗ୍ୟତା ଓ ଅନ୍ୟ ଦକ୍ଷତା : ସେବାକାର୍ଯ୍ୟ ଜୀବନବୃତ୍ତ ସଂକ୍ଷେପରେ ।

୬) ସର୍ବୋଦୟ ଦିବସ, ସର୍ବୋଦୟ ମେଳା ଓ ସର୍ବୋଦୟ ସମ୍ମିଳନୀ ।

(କ) ସର୍ବୋଦୟ ବିଚାରର ବ୍ୟାପକ ପ୍ରଚାର କରିବା ପାଇଁ ଜାନୁଆରୀ ତିରିଶ ତାରିଖ ଦିନ ସର୍ବତ୍ର ସର୍ବୋଦୟ ଦିବସ ପାଳିତ ହେବ ।

(ଖ) ଫେବୃଆରୀ ବାର ତାରିଖ ଦିନ ଦେଶର ଯେଉଁ ସ୍ଥାନମାନଙ୍କରେ ମହାତ୍ମା ଗାନ୍ଧୀଙ୍କ ଚିତାଭସ୍ମ ବିସର୍ଜିତ ହୋଇଛି, ସେଠାରେ ସର୍ବୋଦୟ ମେଳା ହେବ ।

(ଗ) ସେବକମାନଙ୍କର ପରସ୍ପର ସହିତ ସଂପର୍କ ରକ୍ଷା ଓ ବିଚାର ବିନିମୟ ପାଇଁ ପ୍ରତିବର୍ଷ ଫେବୃଆରୀ ଶେଷ ସପ୍ତାହରେ ସର୍ବୋଦୟ ସମ୍ମିଳନୀ ଅନୁଷ୍ଠିତ ହେବ ।

୭) ଏହି ସର୍ବୋଦୟ ସମାଜ ଏକ ପରାମର୍ଶ ଦାତା ସଂଗଠନରୂପେ କାର୍ଯ୍ୟ କରିବ । ଏହା କୌଣସି ଅନୁଷ୍ଠାନକୁ ଆଦେଶ ଦେବ ନାହିଁ ।

୮) କାର୍ଯ୍ୟ ସଂଚାଳନା କରିବା, ସେବକ ମାନଙ୍କର ନାମ ତାଲିକା ରଖିବା, ଦେଶବିଦେଶର ସର୍ବୋଦୟ ସେବକଙ୍କ ସହିତ ସଂପର୍କ ସ୍ଥାପନ ଓ ପତ୍ରବ୍ୟବହାର କରିବା, ସର୍ବୋଦୟ ଦିବସ, ସର୍ବୋଦୟ ମେଳା ଓ ସର୍ବୋଦୟ ସମ୍ମିଳନୀ ବିଷୟରେ ଆବଶ୍ୟକ ସୂଚନା ସେବକମାନଙ୍କୁ ଦେବା ନିମନ୍ତେ ଏହି ସର୍ବୋଦୟ ସମାଜରେ ଜଣେ ସଂପାଦକ ରହିବେ ।

## ପ୍ରଥମ ସର୍ବୋଦୟ ସମ୍ମେଳନ

୧୯୪୯ ମସିହା ମାର୍ଚ୍ଚମାସରେ ବାବୁ ରାଜେନ୍ଦ୍ର ପ୍ରସାଦଙ୍କ ଅଧ୍ୟକ୍ଷତାରେ ମଧ୍ୟ ପ୍ରଦେଶର ରାଉଠାରେ ପ୍ରଥମ ସର୍ବୋଦୟ ସମ୍ମିଳନୀ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀ ଅନୁଭବ କଲେ ଯେ ଦେଶର ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାର ରଚନାତ୍ମକ କାର୍ଯ୍ୟ କରୁଥିବା ସର୍ବୋଦୟ ସେବକମାନଙ୍କୁ ସେମାନଙ୍କ କାର୍ଯ୍ୟ ବିଷୟରେ ମାର୍ଗଦର୍ଶନ ଦେବା ପାଇଁ ଅଭିଜ୍ଞ ବିଶେଷଜ୍ଞମାନଙ୍କ ଏକ ଆୟୋଜନକାରୀ ନିଖିଳ ଭାରତୀୟ ସଂଗଠନ ରହିବା ଆବଶ୍ୟକ । ସମସ୍ତଙ୍କର ସର୍ବ ପ୍ରକାର ସେବା କରିବା ହିଁ ସେହି ସଂଗଠନର ଧ୍ୟେୟ ହେବ । ଏହି ଆଲୋଚନାର ଫଳ ସ୍ୱରୂପ ସର୍ବସେବା ସଂଘ ଗଠିତ ହେଲା ଏବଂ ସର୍ବୋଦୟ ସମାଜ ସହିତ ତାହାର ସଂପର୍କ ସ୍ଥାପିତ ହେଲା ।

**ସର୍ବୋଦୟ ମିତ୍ର** - ସତ୍ୟ ଓ ଅହିଂସାର ମୌଳିକ ବିଚାରକୁ ମାନୁଥିବା ଯେ କୌଣସି ବ୍ୟକ୍ତି ଯଦି ସର୍ବ-ସେବା-ସଂଘର କାର୍ଯ୍ୟକ୍ରମ ପ୍ରତି ସହାନୁଭୂତି ଓ ସହଯୋଗ ମୂଳକ ମନୋବୃତ୍ତି ପୋଷଣ କରୁଥିବେ, ସେ ସର୍ବୋଦୟ ମିତ୍ର ହୋଇ ପାରିବେ । ନିଜର ଏହି ଭାବନାର ପ୍ରତୀକ ସ୍ୱରୂପ ଜିଲ୍ଲା ସର୍ବୋଦୟ ମଣ୍ଡଳ ବା

ପ୍ରାଦେଶିକ ସର୍ବୋଦୟ ମଣ୍ଡଳ ଅଥବା ସର୍ବ-ସେବା-ସଂଘକୁ ବର୍ଷକୁ ପାଞ୍ଚଟଙ୍କା ଦେବେ । ସର୍ବୋଦୟ ମିତ୍ରର ସଦସ୍ୟତା ପତ୍ର ସର୍ବ-ସେବା-ସଂଘ ପ୍ରସ୍ତୁତ କରିବ ।

**କାର୍ଯ୍ୟାଳୟ** - ସର୍ବ ସେବା ସଂଘରକାର୍ଯ୍ୟାଳୟ ମହାଦେବ ଭାଇ ଭବନ, ପୋ: ସେବାଗ୍ରାମ, ଜି-ଓ୍ୱାର୍ଦ୍ଧା ୪୪୨୧୦୨ ଠାରେ ରହିଛି । ଏହାର ଟେଲିଫୋନ ନମ୍ବର ୮୪୦୬୧ ଅଟେ ।

ପ୍ରତିବର୍ଷ ସର୍ବୋଦୟ ସମ୍ମିଳନୀ ଅନୁଷ୍ଠିତ ହେବା ପୂର୍ବରୁ ସମ୍ମିଳନୀ ପାଇଁ ସ୍ଥିର ହୋଇଥିବା ସ୍ଥାନରେ ସର୍ବ-ସେବା-ସଂଘର ବୈଠକ ବସେ । ଏହି ବୈଠକରେ ଦେଶର ବିଭିନ୍ନ ପରିସ୍ଥିତି ବିଷୟରେ ଆଲୋଚନା କରାଯାଇ କାର୍ଯ୍ୟପନ୍ଥା ସ୍ଥିର ହୋଇ ପ୍ରସ୍ତାବ ଗୃହୀତ ହୁଏ । ପୁଣି ସର୍ବୋଦୟ ସମ୍ମିଳନୀରେ ସେହି ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇ ପ୍ରସ୍ତାବ ଗୃହୀତ ହୁଏ ।

**ଭୂଦାନ-ଯଜ୍ଞ**: ବିନୋବାଜୀ ଏହି ସର୍ବସେବା ସଂଘର ବୈଠକ ଓ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଇ ଲୋକ ସେବକ ଓ ସର୍ବୋଦୟ ସେବକମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ । ୧୯୫୧ ମସିହାରେ ସେ ଶିବରମା ପଲ୍ଲୀ (ହାଇଦ୍ରାବାଦ)ରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେବା ପରେ ଓ୍ୱାର୍ଦ୍ଧା ଅନ୍ତର୍ଗତ ପଓନାର ଆଶ୍ରମକୁ ପଦଯାତ୍ରା କରି ଫେରିବା ବାଟରେ ତେଲଙ୍ଗାନାକୁ ଗଲେ । ସେଠାରେ ଭୂମି-ସମସ୍ୟାକୁ ଘେନି ଯେଉଁ ହିଂସାତ୍ମକ ଆନ୍ଦୋଳନ ଆରମ୍ଭ ହୋଇଥିଲା, ତାହାର ଗତିବିଧି ଅନୁଧ୍ୟାନ କରୁ କରୁ ସେଠାରେ ଭୂଦାନ ଆନ୍ଦୋଳନର ସୂତ୍ରପାତ ହେଲା । ଏହି କାର୍ଯ୍ୟକ୍ରମର ମୌଳିକତା ଓ ଲୋକପ୍ରିୟତାକୁ ଲକ୍ଷ୍ୟ କରି ସର୍ବ-ସେବା-ସଂଘ ଭୂଦା ଆନ୍ଦୋଳନକୁ ସମର୍ଥନ କରି ତାହାକୁ କାର୍ଯକାରୀ କରିବା ପାଇଁ ୧୯୫୨ ମସିହାରେ ସେବାପୁରୀ (ଉତ୍ତର ପ୍ରଦେଶ) ଠାରେ ପ୍ରସ୍ତାବ ଗ୍ରହଣ କଲେ । ସର୍ବୋଦୟ ସମ୍ମିଳନୀରେ ମଧ୍ୟ ଏହି ପ୍ରସ୍ତାବ ଗୃହୀତ ହେଲା ।

ବିନୋବାଜୀଙ୍କ ପଯାତ୍ରା ଓ ସର୍ବୋଦୟ ବିଚାରର ପ୍ରଚାରର ପରିଣାମ ସ୍ୱରୂପ ଲୋକେ ସ୍ୱେଚ୍ଛାରେ ଭୂମିହୀନମାନଙ୍କ ପାଇଁ ଭୂମିଦାନ ଦେଲେ । ସମଗ୍ର ଦେଶ ଓ ବିଦେଶ ଉପରେ ଏହି ଆନ୍ଦୋଳନର ପ୍ରଭାବ ପଡ଼ିଲା ଅହିଂସାତ୍ମକ ଉପାୟରେ ଭୂମି-ସମସ୍ୟାର ସମାଧାନ ହେବାର ସମ୍ଭାବନା ଦେଖା ଦେବାରୁ ଲୋକଶକ୍ତି ଦ୍ୱାରା ଦେଶର ବିଭିନ୍ନ ସମସ୍ୟାର ସମାଧାନ କରିବାର ବିଚାର ବିନୋବାଜୀ ସର୍ବସେବା ସଂଘ ଓ ସର୍ବୋଦୟ ସମ୍ମିଳନୀ ଆଗରେ ରଖିଲେ । ଦେଶରେ ହିଂସା ଶକ୍ତିର ବିରୋଧୀ ଏବଂ ଦଣ୍ଡଶକ୍ତିଠାରୁ ଭିନ୍ନ ଏକ ତୃତୀୟ ଶକ୍ତି-ଲୋକ ଶକ୍ତି ସଂଗଠିତ କରିବା ପାଇଁ ସେ ଡାକରା ଦେଲେ । ସର୍ବସେବା ସଂଘ ଓ ସର୍ବୋଦୟ ସମ୍ମିଳନୀରେ ଏହି ବିଚାରକୁ ସମର୍ଥନ କରି ପ୍ରସ୍ତାବ ଗୃହୀତ ହେଲା ।

୧୯୫୪ - ବେଳକୁ ଉତ୍ତର ପ୍ରଦେଶ ଓ ବିହାରରେ ବିନୋବାଜୀଙ୍କ ପଦଯାତ୍ରା ଫଳରେ ଲକ୍ଷାଧିକ ଏକର ଜମି ଭୂମିହୀନମାନଙ୍କ ପାଇଁ ସଂଗୃହୀତ ହେଲା । ଏହି ବିପ୍ଳବକୁ ସଫଳ କରିବା ପାଇଁ ବୋଧଗୟାରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ବିନୋବାଜୀ "ଭୂଦାନ ମୂଳକ ଗ୍ରାମୋଦ୍ୟୋଗପ୍ରଧାନ ଅହିଂସକ କ୍ରାନ୍ତି" ନିମନ୍ତେ ନିଜର ଜୀବନ ଉତ୍ସର୍ଗ କରିବେ ବୋଲି ଘୋଷଣା କଲେ । ଜୟପ୍ରକାଶ ନାରାୟଣଙ୍କ ସମେତ ଦେଶର ଶହ ଶହ ସର୍ବୋଦୟ ସେବକ ମଧ୍ୟ "ଜୀବନଦାନର" ସଂକଳ୍ପ ଗ୍ରହଣ କଲେ ।

**ଶାନ୍ତି ସେନା ମଣ୍ଡଳ:** କ୍ରମେ ବିନୋବାଜୀ ଅହିଂସାତ୍ମକ ପଦ୍ଧତିରେ ସମାଜ ପରିବର୍ତ୍ତନ ଏକ ସମଗ୍ର ଚିତ୍ର ସର୍ବସେବା ସଂଘ ଓ ସର୍ବୋଦୟ ସମାଜ ଆଗରେ ଉପସ୍ଥାପନ କଲେ । ଶାସନ ବ୍ୟବସ୍ଥାକୁ ବିକେନ୍ଦ୍ରିତ କରିବା ଦୃଷ୍ଟିରୁ ଦେଶରେ ଲୋକଶକ୍ତିରେ ଶାନ୍ତିରକ୍ଷା କରିବାର ବିଚାର ସେ ଦେଶ ଆଗରେ ରଖିଲେ । ମହାତ୍ମାଗାନ୍ଧୀ ୧୯୩୮ ମସିହାରେ ଡେଲାଙ୍ଗ ନିକଟସ୍ଥ ବେରବୋଇ ଗାନ୍ଧୀସେବା ସଂଘ ସମ୍ମିଳନୀରେ ସାମ୍ପ୍ରଦାୟିକ ଅଶାନ୍ତି ୦୦୦ସନ୍ଦର୍ଭରେ ଶାନ୍ତି-ସେନା

କଥା କହିଥିଲେ ଏବଂ ୧୯୪୬-୪୭ରେ କଲିକତାରେ ସାଂପ୍ରଦାୟିକ ହଣାକ ବେଳେ ବେଳେ ନିଜେ ଅହିଂସାତ୍ମକ ଉପାୟରେ ସେଠାରେ ଶାନ୍ତି ସ୍ଥାପନ କରିଥିଲେ । ମହାତ୍ମାଗାନ୍ଧୀଙ୍କର ଏହି ବିଚାର ଓ କାର୍ଯ୍ୟକୁ ବ୍ୟାପକ ଭାବରେ କାର୍ଯ୍ୟାନ୍ୱିତ କରିବା ଉଦ୍ଦେଶ୍ୟରେ ଦେଶରେ ସର୍ବ-ସେବା-ସଂଘ, ଶାନ୍ତି-ସେବା ମଣ୍ଡଳ ଗଠନ କଲେ ।

ସର୍ବୋଦୟ ଆନ୍ଦୋଳନକୁ ଜନ ଆଧାରିତ କରିବା ଉଦ୍ଦେଶ୍ୟରେ

**ସର୍ବୋଦୟ ପାତ୍ର**

**ସର୍ବସେବା ସଂଘ** - ବିନୋବାଜୀଙ୍କର ତନ୍ତ୍ରମୁକ୍ତି ନିଧିମୁକ୍ତି ଓ ସର୍ବୋଦୟ ପାତ୍ର ସ୍ଥାପନ ବିଚାରକୁ ମଧ ସମର୍ଥନ କଲେ ଏବଂ ୧୯୬୩ରେ ରାୟପୁର ସର୍ବୋଦୟ ସମ୍ମିଳନୀରେ ଶ୍ରମଦାନ, ଗ୍ରାମାଭିମୁଖୀ ଖଦୀ ଓ ଶାନ୍ତି-ସେନା-ଏହି ତ୍ରିବିଧ କାର୍ଯ୍ୟକ୍ରମକୁ କାର୍ଯ୍ୟାନ୍ୱିତ କରିବା ସର୍ବ-ସେବା-ସଂଘ ଓ ସର୍ବୋଦୟ ସମ୍ମିଳନୀରେ ଗୃହୀତ ହେଲା ।

**ବୈଚାରିକ ଆକ୍ରମଣର ମୁକାବିଲା-**

୧୯୬୨ରେ ଚୀନ ଭାରତ ସଂଘର୍ଷ ସମୟରେ ଭାରତ ଉପରେ ଚୀନର ବୈଚାରିକ ପ୍ରଭାବକୁ ଲକ୍ଷ୍ୟ କରାଯାଇ ଚୀନ୍ ଦେଶରେ ହିଂସାତ୍ମକ ଉପାୟରେ ଭୂମି-ସମସ୍ୟାର ସମାଧାନ ହୋଇଥିବାରୁ ଭାରତବର୍ଷରେ ଅହିଂସାତ୍ମକ ଉପାୟରେ ଭୂମି ସମସ୍ୟାର ସମାଧାନ କରି ଚୀନ୍‌ର ବୈଚାରିକ ଆକ୍ରମଣର ମୁକାବିଲା କରିବା ପାଇଁ ସର୍ବସେବା ସଂଘ ଦେଶବାସୀଙ୍କୁ ଆହ୍ୱାନ କରିଥିଲେ ।

୧୯୭୫ ମସିହାରେ ଜରୁରୀକାଳୀନ ପରିସ୍ଥିତିର ବିରୋଧ କରି ସର୍ବସେବା ସଂଘର ବହୁ ସଦସ୍ୟ କାରାଦଣ୍ଡ ଭୋଗ କରିଥିଲେ ।

ଏହି ରୂପେ ସର୍ବ-ସେବା-ସଂଘ ଦେଶରେ ବିଭିନ୍ନ ସମୟରେ ଦେଖା ଦେଉଥିବା ବିଭିନ୍ନ ସମସ୍ୟାର ସମାଧାନ ଅହିଂସାତ୍ମକ ପଦ୍ଧତିରେ କରିବା ପାଇଁ ମାର୍ଗଦର୍ଶନ ଦେଇଥାନ୍ତି । ସଂପ୍ରତି ବହୁରାଷ୍ଟ୍ରୀୟ କୋମ୍ପାନୀ ମାନଙ୍କର ଆଗମନ ଓ ସେମାନଙ୍କ ପ୍ରାଦୁର୍ଭାବରେ ଭାରତର ସ୍ୱାଧୀନତା ବିପନ୍ନ ହେବାକୁ ଯାଉଥିବାରୁ ଏବଂ ଦେଶରେ ଏକ ବିକଟ ଆର୍ଥିକ ସଂକଟର ସମ୍ଭାବନା ଦେଖା ଦେଉଥିବାରୁ ସଂଘ ଏହି କୋମ୍ପାନୀମାନଙ୍କ ଦ୍ୱାରା ଉତ୍ପାଦିତ ବସ୍ତୁଗୁଡ଼ିକ ବର୍ଜନ କରି ସ୍ୱଦେଶୀ ଦ୍ରବ୍ୟ ଉତ୍ପାଦନ ଓ ଗ୍ରାମେ ଗ୍ରାମେ ଗ୍ରାମସଭା ସ୍ଥାପନ କରି ଗ୍ରାମର ଶାନ୍ତି ରକ୍ଷା, ଶିକ୍ଷା, ଜଳଜଙ୍ଗଲ ଜମିର ସଂରକ୍ଷଣ ଓ ନିଶାନିବାରଣ ଲୋକଶକ୍ତି ଦ୍ୱାରା କରିବା ପାଇଁ ଦେଶବାସୀଙ୍କୁ ଆହ୍ୱାନ କରିଛନ୍ତି ।

ମୋଟ ଉପରେ ମହାତ୍ମାଗାନ୍ଧୀ ତାଙ୍କର ଦେହାବସାନର ପୂର୍ବଦିନ ରାତିରେ ଲୋକଶକ୍ତି ନିର୍ମାଣ ପାଇଁ କାର୍ଯ୍ୟ କରିବାକୁ ଯେଉଁ ଇଚ୍ଛା-ପତ୍ର ତିଆରି କରିଥିଲେ, ତାହାକୁ ଆଖି ଆଗରେ ରଖି ସର୍ବସେବା ସଂଘ ନିଜର କର୍ମପନ୍ଥା ଧାର୍ଯ୍ୟ କରି ଅଗ୍ରଗତି କରୁଛନ୍ତି ।



ବାଖରାବାଦ, କଟକ

She intelectual and moral satisfaction that I failed to gain from the utilitarianism of Bentham and Mik, the revolutionary methods of marks and Lenin, the social contract theory of Hobbes, "the back to nature" optimism of Rousseau and Superman philosophy of Nietzsche, I found in the nonviolent resistance philosophy of Gandhi. - **Martine Luther King**

# କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ

## (ଉତ୍କଳ ଶାଖା)

**ଶ୍ୟାମଳୀ ପତି**

୧୯୪୪ ଫେବୃୟାରୀ ୨୨ ତାରିଖ ଶିବରାତ୍ରୀ ବୁଧବାର ମହାତ୍ମା ଗାନ୍ଧୀଙ୍କ ଧର୍ମପତ୍ନୀ ଲୋକମାତ କସ୍ତୁରବା "ଭାରତ ଛାଡ଼" ଆନ୍ଦୋଳନରେ ସ୍ୱାମୀଙ୍କ ସହ ଆଗାର୍ଖାଁ ପ୍ରାସାଦରେ ଅଟକବନ୍ଦୀ ଥିବାବସ୍ଥାରେ ପରଲୋକ ପ୍ରାପ୍ତ ହେଲେ । ୧୯୪୪ ମଇ ୬ ତାରିଖରେ ଗାନ୍ଧୀଜୀଙ୍କ କାରାମୁକ୍ତି ପରେ କସ୍ତୁରବାଙ୍କ ସ୍ମୃତିରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ୧ କୋଟି ୩୦ ଲକ୍ଷ ଟଙ୍କା ସଂଗ୍ରହ କରି ଗାନ୍ଧୀଜୀଙ୍କୁ ତାଙ୍କ ଜନ୍ମବାସରରେ ଉପହାର ଦେଇଥିଲେ । ଏହି ଉପହାର କସ୍ତୁରବାଙ୍କ ସ୍ମୃତିରେ କେବଳ ଗ୍ରାମାଞ୍ଚଳ ଅବହେଳିତ ଶିଶୁ ଓ ମହିଳାମାନଙ୍କ କଲ୍ୟାଣ ପାଇଁ ବିନିଯୋଗ ହେବ ବୋଲି ଗାନ୍ଧିଜୀ ଘୋଷଣା କଲେ ।

୧୯୪୫ ଅପ୍ରେଲ ୧ ତାରିଖରେ ସେବାଗ୍ରାମରେ ମହାତ୍ମା ଗାନ୍ଧୀଙ୍କ ଅଧ୍ୟକ୍ଷତାରେ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ ଜନ୍ମଲାଭ କଲା । ୧୯୫୧ ମସିହାରେ ମଧ୍ୟପ୍ରଦେଶ ପବ୍ଲିକ ଟ୍ରଷ୍ଟ ଆକ୍ଟ ଅନୁ[illegible] ପଞ୍ଜିକୃତ ହେଲା । ତଦବଧି ଭାରତର ୨୨ଟି ରାଜ୍ୟ[illegible]ୀୟ ଶାଖା ଗୁଡ଼ିକ ଏହି କେନ୍ଦ୍ରୀୟ ନିଧି ଦ୍ୱାରା ପରିଚାଳିତ ହେଉଅଛି ।

ଗାନ୍ଧୀଜିଙ୍କ ମନୋନୟନରେ ମା' ରମାଦେବୀ ୧.୪.୪୬ ରୁ ଉତ୍କଳ ଶାଖାର ଦାୟିତ୍ୱ ଗ୍ରହଣ କଲେ । ପ୍ରଥମେ ଏହାର ପ୍ରାନ୍ତୀୟ ଦପ୍ତର ବରୀ ଅଞ୍ଚଳରେ ରାମଚନ୍ଦ୍ରପୁରରେ ଥିଲା । ସେଠାରେ କେତେକ ଅଳ୍ପବୟସର ଝିଅମାନଙ୍କୁ ନେଇ ଏକ "କନ୍ୟାଶ୍ରମ" ସ୍ଥାପିତ ହୋଇଥିଲା । ମହିଳାମାନଙ୍କ ପାଇଁ "ସେବା ପ୍ରବେଶ" ତାଲିମ ମଧ୍ୟ ଆରମ୍ଭ ହୋଇଥିଲା । ଦାୟିତ୍ୱରେ ଥିଲେ ଶ୍ରୀଯୁକ୍ତା ଅନ୍ନପୂର୍ଣ୍ଣା ମହାରାଣା ଓ ଶକୁନ୍ତଳା ଦାସ । ପରବର୍ତ୍ତୀ ସମୟରେ କଟକ ଜିଲ୍ଲା ସତ୍ୟଭାମାପୁର (କୁଳବୃଦ୍ଧ ମଧୁସୂଦନଙ୍କ ଗାଁ)କୁ ଦପ୍ତର ସ୍ଥାନାନ୍ତରିତ ହେଲା ।

କସ୍ତୁରବା ଟ୍ରଷ୍ଟ ଉତ୍କଳଶାଖା ଆନୁକୂଲ୍ୟରେ ଗ୍ରାମସେବିକା, କନ୍ୟାଶ୍ରମ, ପୂର୍ବ ବୁନିୟାଦି ଶିକ୍ଷିକା, ଆରୋଗ୍ୟ ସେବିକା, ବୁଣାଇ, ଟାଇପ ରାଇଟିଙ୍ଗ, ସ୍ୱାସ୍ଥ୍ୟ ଶୁଶ୍ରୁଷା, ସ୍ୱଳ୍ପ ମିୟାଦୀ ଶିକ୍ଷା, କୁଷ୍ଠରୋଗ ଚିକିତ୍ସା, ଶାନ୍ତିସେନା, ଆଦିବାସୀ ସେବା ତାଲୀମ ସଙ୍ଗକୁ ପ୍ରୌଢ଼ା ନାରୀଶିକ୍ଷା ସଙ୍ଗମ, ସ୍ତ୍ରୀ ଶକ୍ତି ଜାଗରଣ, ଶିଶୁମେଳା, ଗ୍ରାମସେବିକା କାର୍ଯ୍ୟ ଆଦି ଗ୍ରାମାଞ୍ଚଳରେ ପ୍ରତିଷ୍ଠିତ ହେଲା । ଏବେ କଟକ, ପୁରୀ, ସମ୍ବଲପୁରୀ, ଯାଜପୁର, କେଉଁଝର, ଭଦ୍ରଖ, ମୟୂରଭଞ୍ଜ ଓ ରାୟଗଡ଼ା ଜିଲ୍ଲାରେ ୧୦ଟି କେନ୍ଦ୍ରରେ ବାଲବାଡ଼ି ଓ ଆରୋଗ୍ୟ ସେବାକେନ୍ଦ୍ର ଖୋଲାଯାଇଛି । ନବରଙ୍ଗପୁର ଜିଲ୍ଲା ବିଜାପୁର ନିକଟବର୍ତ୍ତୀ ଆଖପାଖ ଗ୍ରାମରେ ଶ୍ରୀମତୀ ନୟନା ମାଝି ନିଶାମୁକ୍ତି, ଜଳ, ଜଙ୍ଗଲ ସୁରକ୍ଷା ମହିଳା ସଂଗଠନ, କାମମାନ କରୁଅଛନ୍ତି ।

ଗ୍ରାମାଞ୍ଚଳରେ ପ୍ରାର୍ଥନା ମଣ୍ଡଳ, ମହିଳା ମଣ୍ଡଳ, ପ୍ରୌଢ଼ଶିକ୍ଷା କେନ୍ଦ୍ର, ଇମୁନାଇଜେସନ, ମହିଳାସଭା, ଚେତନା ଶିବିର, ଆନନ୍ଦ ମେଳା, ପ୍ରତ୍ୟେକ କେନ୍ଦ୍ରରେ ପରାମର୍ଶଦାତା ସମିତି ଗଠନ, ରିଲିଫକାର୍ଯ୍ୟ, ବିପନ୍ନ ଅଞ୍ଚଳରେ ଖାଦ୍ୟ ଓ ଔଷଧ ବଣ୍ଟନ କାର୍ଯ୍ୟ ମଧ୍ୟ ପରିଚାଳିତ ହେଉଛି । ଏହି ଟ୍ରଷ୍ଟ ଅଧୀନରେ ୬୭ ଜଣ ସେବିକା କାର୍ଯ୍ୟ କରୁଛନ୍ତି । ଟ୍ରଷ୍ଟ ତରଫରୁ ପ୍ରକାଶିତ କସ୍ତୁରବାଙ୍କ ଜୀବନୀ, ସର୍ବଧର୍ମ ପ୍ରାର୍ଥନା, ମଙ୍ଗଳ ପ୍ରଭାତ, ବା- ବାପୁ ଫଟୋ, ସ୍ତ୍ରୀ ଶକ୍ତି ଜାଗରଣ ଆଦି ପୁସ୍ତକ ଗୁଡ଼ିକ ସେବିକାମାନେ ବିକ୍ରୟ କରିବା ସଙ୍ଗେ ସଙ୍ଗେ ସାହିତ୍ୟ ପ୍ରଚାର କରୁଛନ୍ତି । ଅସ୍ପୃଶ୍ୟତା ନିବାରଣ, ଜାତିଭେଦ ଦୂର ଦ୍ୱାରା ପୁଅଝିଅ ମଧ୍ୟରେ ସମତା,

ବିଦେଶୀ ବର୍ଜନ, ଜାତୀୟ ସଂହତି, ଯୌତୁକ ନିରୋଧ, ପରିଷ୍କାର ଓ ପରିଚ୍ଛନ୍ନତା ଉପରେ ଗାଁ ଲୋକଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରୁଛନ୍ତି ।

ଶ୍ରୀଯୁକ୍ତା ଅନ୍ନପୂର୍ଣ୍ଣା ମହାରଣା, ସୁମିତ୍ରା ଚୌଧୁରୀ, ଅନ୍ନପୂର୍ଣ୍ଣା ଦାସ, ରମ୍ଭା ଦେବୀ ଦ୍ୱିତୀୟା, ଡାଃ ତୁଙ୍ଗବିଦ୍ୟା ଦେବୀ ଓ କୃଷ୍ଣ ବଲ୍ଲଭୀ ରଥଙ୍କ ପ୍ରତିନିଧିତ୍ୱରେ ଟ୍ରଷ୍ଟ କାର୍ଯ୍ୟ ହୋଇ ଆସୁଅଛି । ଅତୀତରେ ୪ ବେଲା ବାନାର୍ଜୀ ଅନ୍ୟତମ ପ୍ରତିନିଧି ଥିଲେ ।

ଟ୍ରଷ୍ଟର କାର୍ଯ୍ୟ ଆରମ୍ଭବେଳେ ନିରକ୍ଷରା ଯୁବତୀମାନେ ୬ ମାସ ମଧ୍ୟରେ ଘରକରଣା ଶିକ୍ଷା ଅର୍ଜନ କରି ଅନ୍ୟମାନଙ୍କ ପ୍ରେରଣାର ଉତ୍ସ ହୋଇଥିଲେ । ସେବିକାମାନେ ଆଦିବାସୀ ଅଞ୍ଚଳରେ ବଣପାହାଡ଼ରେ ରହି ଦାନ୍ତ ଘସିବା ଏବଂ ଝାଡ଼ା ଯାଇ ଶୌଚହେବା ଭଳି ମାମୁଲି କାମ ମା ପିଲାକୁ ଶିଖାଇଲା ଭଳି ଆଦିବାସୀମାନଙ୍କୁ ଶିଖାଉଥିଲେ । ସେହି ସେବିକାମାନଙ୍କ ନିଷ୍ଠାପରତା ଯୋଗୁ ଯକ୍ ରୂପକ ସାଘାଂତିକ ରୋଗ ଅପସରି ଯାଇଥିଲା । ଗାଁ ଗାଁ ବୁଲି ସୂତାକଟା ଶିକ୍ଷା ଶିବିର ଓ ନିଶାମୁକ୍ତି କାମ କରୁଥିଲେ । ଗ୍ରାମାଞ୍ଚଳରେ ମା ରମାଦେବୀ ଘରକୋଣରେ ରହିଥିବା ଝିଅବୋହୂଙ୍କୁ ଧନ୍ଦାମୂଳକ କାମ ଶିକ୍ଷାଦେଇ ସେମାନଙ୍କ ଅନ୍ତର୍ନିହିତ ଗୁଣର ବିକାଶ ସାଧନ ପୂର୍ବକ ସମାଜରେ ସୁପ୍ରତିଷ୍ଠିତ କରାଇପାରୁଥିଲେ ।

ଗାନ୍ଧିଜୀ କହୁଥିଲେ ଗ୍ରାମାଞ୍ଚଳରେ ମହିଳାମାନଙ୍କ ଅସୀମ ଧୈର୍ଯ୍ୟ ଓ ସହନଶୀଳ ଶକ୍ତି ରହିଛି ଯାହା ଫଳରେ ଅସାଧ୍ୟକୁ ସେମାନେ ସାଧନ କରିପାରିବେ । ଏହି ନାରୀ ଶକ୍ତିର ଜାଗରଣ ପାଇଁ ଟ୍ରଷ୍ଟର ସେବିକାମାନଙ୍କ ଅବଦାନ ନିଶ୍ଚିତ ପ୍ରଶଂସାର୍ହ ।

୧୯୭୨ ମସିହାରୁ ରାଜ୍ୟ ସରକାର ଟ୍ରଷ୍ଟକୁ ଅନୁଦାନ ଦେଉଛନ୍ତି । ଭାରତ ସରକାରଙ୍କ ଠାରୁ ମଧ୍ୟ ଅନୁଦାନ ମିଳୁଛି । ଭଗିନୀ ଅନୁଷ୍ଠାନ ଏବଂ ସାଧାରଣ ଲୋକେ ସାହାଯ୍ୟ ସହାନୁଭୂତି ପ୍ରଦର୍ଶନ କରୁଛନ୍ତି । ସେମାନଙ୍କ ପାଖେ କୃତଜ୍ଞତା ଜଣାଉ ଅଛି ।



## ଆଓ ପ୍ୟାରେ ଭାୟୋଁ...

ଆଓ ପ୍ୟାରେ ଭାୟୋଁ...
ଆଓ ସବ୍ ମାତୃଭୂମି...
ଆଓ କ୍ରାନ୍ତିକାରୀୟୋଁ
ବନ୍ଧ ମୁକ୍ତିକେ ଲିୟେ ॥୧॥

ନେହିଁ ଡରେଙ୍ଗେ ହମ୍ କିସିସେ
ଧର୍ମ ଯୁଦ୍ଧ କରନେବାଲେ
ଆୟେ ଘୋର ଆପଦା
ହମ୍ ତୋ ନିଡର ହୟେଁ ସଦା ॥୨॥

ଜୟ ତୁ ଜନନୀ ଜନ୍ମଭୂମି
ଜୟ ତୁ ଜୟ ସ୍ୱରାଜ୍ୟ-ବିଭବ
ଜୟତୁ ଲୋକ ନନ୍ଦିନୀ
ଜୟତୁ ଭୁବନ ମୋହିନୀ ॥୩॥

ବୋଲୋ ସକଲ ଭାରତୀୟ
ବୋଲୋ ଏକ ସାଥ ମିଲକର
ମନ୍ତ୍ର ବନ୍ଦେ ମାତରମ୍
ଜୟ ସ୍ୱତନ୍ତ୍ର ଭାରତମ୍ ॥୪॥

କମର କଷକେ ନିକଲ ପଡ଼େ
ଅମର ଦେଖକର ହୋବେ ଚକିତ
ଶାନ୍ତି ଯୁଦ୍ଧକେ ଲିୟେ
ହମସେ ମିଲନ୍‌କେ ଲିୟେ ॥୫॥



# ନବଜୀବନ ମଂଡଳ

ସ୍ୱାଧୀନ ଭାରତରେ ସାମାଜିକ ଓ ଆର୍ଥିକ ପରିବର୍ତ୍ତନ ପାଇଁ ଜନ ଜାଗରଣ ଓ ଜନ ଆନ୍ଦୋଳନର ଆବଶ୍ୟକତା ଅନୁଭବ କରି ଗାନ୍ଧି କଳ୍ପିତ ଶୋଷଣହୀନ ଶାସନମୁକ୍ତ ସମାଜ ଗଠନ କଳ୍ପେ ୧୯୪୮ ଅକ୍ଟୋବର ୨୪ ତାରିଖରେ ଆଚାର୍ଯ୍ୟ ହରିହରଙ୍କ ଅଧକ୍ଷତାରେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ଆବାହକତ୍ୱରେ କଟକରେ ଅନୁଷ୍ଠିତ ବୈଠକରେ ଏହି ସଂସ୍ଥାର ଜନ୍ମ । ୰ସାରଂଗଧର ଦାସ, ଆଚାର୍ଯ୍ୟ ହରିହର, ଈଶ୍ୱରଲାଲ ବ୍ୟାସ, ପଣ୍ଡିତ କୃପାସିନ୍ଧୁ ହୋତା, ରମାଦେବୀ ଭରତଚନ୍ଦ୍ର ମହାନ୍ତି, ମାଳତୀ ଚୌଧୁରୀ, ଉପେନ୍ଦ୍ର ପ୍ରସାଦ ମହାପାତ୍ର ବିଶ୍ୱନାଥ ପଟ୍ଟନାୟକ, ରାଜକୃଷ୍ଣ ବୋଷ ଓ ନବକୃଷ୍ଣ ଚୌଧୁରୀଙ୍କୁ ନେଇ ୧୨ ଜଣ ବିଶିଷ୍ଟ କାର୍ଯ୍ୟକାରୀ କମିଟି ଗଠିତ ହେଲା । ଗଡ଼ଜାତ ପ୍ରଜାମଣ୍ଡଳ ତଥା ସମାଜବାଦ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ସ୍ୱର୍ଗତ ସାରଂଗଧର ଦାସ, ପ୍ରତିଷ୍ଠାତା-ସଂପାଦକ ରହିଲେ ।

ଦୀର୍ଘ ୪୮ ବର୍ଷ ଧରି ଏହି ସଂସ୍ଥା ନିଷ୍ପେଷିତ ଆଦିବାସୀ ତଥା ଦୁର୍ବଳ ଶ୍ରେଣୀ ଲୋକମାନଙ୍କୁ ନିରବଚ୍ଛିନ୍ନ ସେବା ଦେଇ ଆସିଛି । କୋରାପୁଟ, ଗଂଜାମ ଫୁଲବାଣି, କେନ୍ଦୁଝର, ସୁନ୍ଦରଗଡ଼, ମୟୂରଭଂଜ ଢ଼େଙ୍କାନାଳ, ଅନୁଗୁଳ ଓ ନୂଆପଡ଼ାର ଅଗମ୍ୟ ଆଦିବାସୀ ଅଂଚଳରେ ସାଚେତନତା ସୃଷ୍ଟି ତଥା ଆତ୍ମ ନିଯୁକ୍ତିର ସୁବିଧା ସୁଯୋଗ ଯୋଗାଇବା ପାଇଁ ଏହି ସଂସ୍ଥା ନିଷ୍ଠାପର ସେବା କରି ଆସୁଛି ।

ସଂସ୍ଥା ଯେଉଁସବୁ କାର୍ଯ୍ୟ ହାତକୁ ନେଇଛନ୍ତି ସେଗୁଡ଼ିକ ହେଲା ୧) ଅବିଭକ୍ତ କୋରାପୁଟ ଜିଲ୍ଲାରେ ଗୋତି ପ୍ରଥାର ଉଚ୍ଛେଦ, ୨) ମାତୃମଙ୍ଗଳ କେନ୍ଦ୍ର ସ୍ଥାପନ ୩) ଗଂଜାମ ଜିଲ୍ଲାରେ ମଠାଦାରୀ ପ୍ରଥାର ଉଚ୍ଛେଦ ୪) ଭୂଦାନ ଆଂଦୋଳନରେ ସକ୍ରିୟ ଅଂଶଗ୍ରହଣ ୫) ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ସହାୟତାରେ 'ଯକ୍ଷ୍ମା' ରୋଗର ନିରାକରଣ, ୬) ଭୟଂକର ମରୁଡ଼ିଗ୍ରସ୍ତ ଆଠମଲ୍ଲିକ ଓ ହିନ୍ଦୋଳ ଅଞ୍ଚଳରେ ଅକ୍ସଫାମ୍ ଓ ସର୍ବୋଦୟ ରିଲିଫ କମିଟି ସହଯୋଗରେ ଗୃହନିର୍ମାଣ ଓ ଜଳସେଚନ କାର୍ଯ୍ୟରେ ସହାୟତା ପ୍ରଦାନ ୮) ଜନ ସାକ୍ଷରତା ସାଧନ କେନ୍ଦ୍ର ପରିଚାଳନା ।

ପ୍ରସଂଗ କ୍ରମେ ଉଲ୍ଲେଖ କରାଯାଉଛି କି ୧୯୫୦-୫୧ ମସିହାରେ ରଂତ ଲେଇ ଠାରେ ହୁକୁମ୍ ଜନିତ ମହାମାରୀରେ ପ୍ରାୟ ୫ ହଜାର ନିରୀହ ଲୋକ ମୃତ୍ୟୁ ବରଣ କରିଥିଲେ । ଏହି ଅଂଧ ବିଶ୍ୱାସ ବିରୁଦ୍ଧରେ ନବଜୀବନ ମଂଡଳ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ହୁକୁମ ଦେଉଥିବା ନେପାଳୀବାବାଙ୍କୁ ସେଠାରୁ ହଟାଇ ପାରିଥିଲା ।୧୯୬୪ ମସିହାରେ ସଂଗଠିତ ସାଂପ୍ରଦାୟିକ ଦଙ୍ଗାରେ ରାଉରକେଲାର ବିଶ୍ରା ଅଞ୍ଚଳରେ ନିହତ ମୁସଲମାନ ପୁରୁଷଙ୍କ ହତ୍ୟା ଜନିତ ପରିସ୍ଥିତିରେ ବିଧବା ଓ ଶିଶୁମାନଙ୍କୁ ଥଇଥାନ ପାଇଁ ସେବାକେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା । ତାବଲା ନାମକ ଏକ ପାହାଡ଼ିଆ ଗ୍ରାମରେ ପୁରୁଷମାନେ ମଦ ଖାଇ ଅକାଳ ମୃତ୍ୟୁ ବରଣ କରିଥିବା ଫଳରେ ୮୫ ଲୋକଙ୍କ ଭିତରେ ୫୦ ଜଣ ବିଧବା । ସେଠାରେ ସଂସ୍ଥା ଏକ ସେବା କେନ୍ଦ୍ର ଖୋଲିଛନ୍ତି । ମୁଖ୍ୟତଃ ମଦ ବର୍ଜନ କାମ ଚାଲିଛି ।

ସଂପ୍ରତି ଶ୍ରୀ ଅନୀଲ କୁମାର ଘୋଷ ସଭାପତି, ଶ୍ରୀମତୀ ଧୋବେନ୍ଦ୍ରୀ ମହାପାତ୍ର କାର୍ଯ୍ୟକାରୀ ସଭାପତି ଶ୍ରୀ ସର୍ବେଶ୍ୱର ନାୟକ ସାଧାରଣ ସଂପାଦକ, ଗୋଲୋକ ଚରଣ ପାତ୍ର କୋଷାଧ୍ୟକ୍ଷ, ଶ୍ରୀ ଜୟକୃଷ୍ଣ ମହାନ୍ତି, ଆଡ଼ଭୋକେଟ୍ ଗରୁ ମହାନ୍ତି, ରବି ଦାସ, ଲୋକନାଥ ପ୍ରଧାନ, ସୁବାସିନୀ ପଣ୍ଡା ନଟବର ପ୍ରଧାନ, ବିନାୟକ ପତୀ ପ୍ରମୁଖ ୧୫ ଜଣଙ୍କୁ ନେଇ ଗଠିତ ମଣ୍ଡଳର କାର୍ଯ୍ୟକାରୀ ସମିତରେ ଶ୍ରୀମତୀ ମାଳତୀ ଚୌଧୁରୀ ଉପଦେଷ୍ଟା ରୂପେ ରହିଛନ୍ତି ।

ଢେଙ୍କାନାଳ, ଅନୁଗୁଳ, କଂଧମାଳ, ଗଜପତି, ନୂଆପଡ଼ା, ସୁନ୍ଦରଗଡ଼, ପ୍ରଭୃତି ଆଦିବାସୀ ଅଞ୍ଚଳରେ ମଣ୍ଡଳରେ ୨୫୬ ଜଣ କର୍ମୀ ଧାର୍ଯ୍ୟ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ●●●

(୧୯୯୫-୯୬ ବର୍ଷର ମଣ୍ଡଳର ବାର୍ଷିକ ବିବରଣୀରୁ ସୃହୀତ)

# ସର୍ବୋଦୟ ସମିତି

ଶ୍ରୀ ଅକ୍ଷୟ କୁମାର ମହାନ୍ତି

ଭୂଦାନ ଯଜ୍ଞର ପ୍ରବର୍ତ୍ତକ ଆଚାର୍ଯ୍ୟ ବିନୋବା ୧୯୫୫ ମସିହାରେ କୋରାପୁଟ ଜିଲ୍ଲାରେ ୧୨୨ ଟି ପଦଯାତ୍ରା କରିଥିଲେ । ତାଙ୍କୁ ହଜ ଗ୍ରାମଦାନ ମିଳିଲା ଓ ତାହା ସାରା ପୃଥିବୀର ଦୃଷ୍ଟି ଆକର୍ଷଣ କରିଥିଲା । ଗ୍ରାମଦାନ ଗ୍ରାମଗୁଡ଼ିକୁ ଗାନ୍ଧି-ବିନୋବାଙ୍କ ଆଦର୍ଶରେ ଗଠନ କରିବା ନିମନ୍ତେ ଅଖିଳ ଭାରତ ସର୍ବ ସେବା ସଂଘ ୮ ଆନା ସାହେବ ସହସ୍ର ବୁଦ୍ଧେଂକ ନେତୃତ୍ୱରେ ଗଠନ ମୂଳକ କାର୍ଯ୍ୟ ଆରଂଭ କଲେ । ଏହି କାର୍ଯ୍ୟକ୍ରମରେ ନାରାୟଣପାଟଣାରେ ଏକ କ୍ଷେତ୍ର ସମିତି ଗଠିତ ହେଲା । ସର୍ବଶ୍ରୀ ବିଶ୍ୱନାଥ ପଟ୍ଟନାୟକ (ଆଜ୍ଞା) ଓ ବୃନ୍ଦାବନ ଚନ୍ଦ୍ର ଜେନା ନିୟାମକ ମଣ୍ଡଳୀରେ ରହିଲେ । ଖଦୀ କମିଶନ ସେଠାରେ ଏକ ସଘନ କ୍ଷେତ୍ର ଯୋଜନା ଆରଂଭ କଲେ । ୧୯୬୮ ମସିହାରେ ରାଜ୍ୟ ଖଦୀ ବୋର୍ଡର ବିଘଟନ ଯୋଗୁଁ ନବରଙ୍ଗପୁର, ରାୟଗଡ଼ା ଓ କଳାହାଂଡ଼ି ଜିଲ୍ଲାର ଖଦୀ କର୍ମୀମାନେ ଏଥିରେ ସାମିଲ ହେଲେ । ଘଟଣାକ୍ରମେ ଏହା 'ସର୍ବୋଦୟ ସମିତି' ନାମରେ ୨୦-୩-୭୧ ରୁ ସରକାରୀ ସିରସ୍ତାରେ ପଞ୍ଜିକୃତ ହେଲା ।

ସର୍ବୋଦୟ ସମିତିର ସଦର ମହକୁମା କୋରାପୁଟରେ ରହିଛି । ସମିତି ଆଦିବାସୀମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି, ସୁଲଭ ଖାଉଟି ଭଣ୍ଡାର, ବଣ ବାଣିଜ୍ୟ ସମବାୟ ସମିତି, ଖଦୀ ଓ ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ, ଶିକ୍ଷା ପ୍ରସାର, ସ୍ୱାସ୍ଥ୍ୟ ସେବା, ପୁଷ୍ଟି ଆହାର କାର୍ଯ୍ୟକ୍ରମ, ଗୃହ ନିର୍ମାଣ, କୃଷି ବିକାଶ ଯୋଜନା ଓ ମହିଳା କଲ୍ୟାଣାଦି କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ।

କୋରାପୁଟ ଜିଲ୍ଲାରେ ଭୟଙ୍କର ଗୋତି ପ୍ରଥା ଥିଲା । ସାହୁକାର ମାନେ ବେଳ ଭଣ୍ଡି ଆଦିବାସୀମାନଙ୍କୁ ଋଣ ଯନ୍ତାରେ ପକାଇ ଭୂସମ୍ପତ୍ତି ଓ ଫସଲ ସବୁ ଲୁଟି ନେବା ପରେ ପୁରୁଷାନୁକ୍ରମେ ନିଜ ପାଖେ ସେମାନଙ୍କୁ ଗୋତି ଖଟାଉଥିଲେ । ଆଦିବାସୀମାନେ ଏପରି ଭୀତତ୍ରସ୍ତ ରହୁଥିଲେ ଯେ କୌଣସି ବାହାର ଲୋକଙ୍କୁ ଗ୍ରାମରେ ଦେଖିଲେ ଘର ଛାଡ଼ି ଜଙ୍ଗଲରେ ଯାଇ ଲୁଚୁଥିଲେ । ସ୍ୱାସ୍ଥ୍ୟ ସେବାର କୌଣସି ବ୍ୟବସ୍ଥା ନଥିବାରୁ ଏପରିକି ଦାନ୍ତ ଘଷୁ ନଥିବାରୁ ଓ ଝାଡ଼ା ଯାଇ ଶୌଚ ହେଉ ନଥିବାରୁ ବିଭିନ୍ନ ରୋଗ ସହ ମାରାତ୍ମକ 'ଯକ୍ଷ୍ମା' ରୋଗରେ ଲୋକେ ମୃତ୍ୟୁ ମୁଖରେ ପଡ଼ୁଥିଲେ । ୮ ମା ରମା ଦେବୀ ଓ ପୂଜ୍ୟା ମାଳତୀ ଚୌଧୁରୀଙ୍କ ନିର୍ଦ୍ଦେଶକ୍ରମେ କସ୍ତୁରବା ଟ୍ରଷ୍ଟ, ଓ ଉତ୍କଳ ଜନ ଜୀବନ ମଂଡଳର କର୍ମୀମାନେ ଆଦିବାସୀ ଗ୍ରାମମାନଙ୍କୁ ଆସି ସ୍ୱାସ୍ଥ୍ୟ ସେବା ଓ ନିର୍ଭୀକତା ଶିକ୍ଷା ଦେଲେ । ଶାନ୍ତି ସେନା ଶୋଭାଯାତ୍ରା ମଧ୍ୟ ଅନୁଷ୍ଠିତ ହେଲା । ସମିତିର ନିଷ୍ଠାପର ଉଦ୍ୟମ ଫଳରେ ଆଜି ଆଦିବାସୀ ମାଇଙ୍କ ଆଗରେ ଛିଡ଼ା ହୋଇ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ତୁଣ୍ଡ ଫିଟାଇବାର ସାହସ ଅର୍ଜନ କରି ପାରିଛନ୍ତି । ପାଞ୍ଚଟି ଖାଉଟି ଭଣ୍ଡାରରେ ଚାଉଳ, କିରୋସିନି, ଲୁଣ ଭଳି ଅତ୍ୟାବଶ୍ୟକ ଜିନିଷ ପତ୍ର ଯୋଗାଇ ଦିଆଯାଉଛି । ସେମାନଙ୍କ ଦ୍ୱାରା ଉତ୍ପାଦିତ ତେନ୍ତୁଳି, ଝାଡୁ, ଖଲିପତ୍ର ଆଦିକୁ ଗଣ ବାଣିଜ୍ୟ ସମିତି ମାଧ୍ୟମରେ ଉଚିତ ମୂଲ୍ୟରେ, କିଣା ଯାଉଛି । ଏହା ସରକାରଙ୍କ ଦ୍ୱାରା ମାନ୍ୟତା ପ୍ରାପ୍ତ ହୋଇଛି । ସୂତା କଟା, ଲୁଗା ବୁଣା, ମହୁ ଓ ହଳଦୀ ଚାଷ, ମସଲାଗୁଣ୍ଡ, ବଡ଼ି, ପାଂପଡ଼ ଓ ପାଉଁରୁଟିତିଆରି ତୈଳବୀଜ ସଂଗ୍ରହ, ତେଲ ଘାଣି, କାଠ କାମ, ମାଟି ଶିଳ୍ପ, ଚମଡ଼ା ସଂଗ୍ରହ, ବନୌଷଧି ସଂଗ୍ରହ, ଗୋବର ଗ୍ୟାସ୍ ପ୍ଲାଣ୍ଟ ଇତ୍ୟାଦି ମାଧ୍ୟମରେ ଆତ୍ମନିଯୁକ୍ତି ଯୋଗାଇ ଦିଆଯାଇ ପାରୁଛି । ବାଳବାଡ଼ି କେନ୍ଦ୍ର ଓ ପ୍ରାକ୍- ବିଦ୍ୟାଳୟ ଶିକ୍ଷା କାର୍ଯ୍ୟକ୍ରମ ଦ୍ୱାରା ଶିଶୁ ମାନଙ୍କୁ ସ୍କୁଲକୁ ଯିବାର ଅଭ୍ୟାସ କରାଯାଉଛି । ଶିଶୁ ସଦନ, କନ୍ୟାଶ୍ରମ ଓ ଶିଶୁ ଶ୍ରମିକ ବିଦ୍ୟାଳୟ ସମିତି ଚଳାଉଛନ୍ତି । ଶହେଟି ରାତ୍ରି ପାଠଶାଳାରେ ୨୫ଶହ ଛାତ୍ରଛାତ୍ରୀ

ଅଧ୍ୟୟନ କରୁଛନ୍ତି ୧୮୦ଟି ଶିବିର ଓ ୪ଟି ପ୍ରଦର୍ଶନୀ ଅନୁଷ୍ଠାନ କରି ସ୍ୱାସ୍ଥ୍ୟ ସେବା ଯୋଗାଉଛନ୍ତି । ଭିଡ଼ିଓ କ୍ୟାସେଟ୍ ଓ ପଥପ୍ରାନ୍ତ ନାଟକ ବ୍ୟବସ୍ଥା ମଧ୍ୟ କରାଯାଉଛି । ବଂଧୁଗାଁ ବ୍ଲକ୍‌ର ପେଦାଲଡ଼ା ଗ୍ରାମଟି ସଂପୂର୍ଣ୍ଣ ପୋଡ଼ି ଯାଇଥିବାରୁ ୩୦ଟି ପରିବାରଙ୍କ ପାଇଁ ବାସଗୃହ ନିର୍ମାଣ କରାଯାଇଛି । ବୋରିଗୁମ୍ମା ଓ ବୈପାରିଗୁଡ଼ା ବ୍ଲକ୍‌ର ୨୨ଟି ଗ୍ରାମରେ ଜଳଛାୟ ପ୍ରକଳ୍ପ ଦ୍ୱାରା କୃଷି ପନିପରିବା ଚାଷର ବ୍ୟବସ୍ଥା ହୋଇଛି । ମହିଳା ମଣ୍ଡଳ ଗଢ଼ାଯାଇ ସେମାନଙ୍କ ଦ୍ୱାରା ନିଶା ନିବାରଣ କରାଯାଉଛି । ଧର୍ମଗଡ଼ଠାରେ ଦୁଃସ୍ଥ ଓ ସଂକଟଗ୍ରସ୍ତ ମହିଳାଙ୍କ ଥଇଥାନ ପାଇଁ ଶିକ୍ଷର ବ୍ୟବସ୍ଥା ହୋଇଛି ।

କୋରାପୁଟ, ନବରଂଗପୁର, କଳାହାଣ୍ଡି ଓ ସୋନପୁର ଜିଲ୍ଲାରେ ସର୍ବୋଦୟ ସମିତି ଏହିସବୁ ପ୍ରକଳ୍ପ ହାତକୁ ନେଇ ସର୍ବୋଦୟ ସମାଜ ଗଠନ ଲକ୍ଷ୍ୟରେ ଆଗେଇ ଚାଲିଛି । ନୂଆଦିଲ୍ଲୀସ୍ଥିତ ଭାରତୀୟ ଆଦିମ ଜାତି ସେବକ ସଂଘର ଅଙ୍ଗୀଭୂତ ଓ ଖଦୀ ଓ ଗ୍ରାମ୍ୟଶିଳ୍ପ ଆୟୋଗ ଦ୍ୱାରା ସଂସ୍ଥା ପ୍ରମାଣିତ ହୋଇଛି ।



## ନେତାଜୀ

ସେଦିନ ଛୁଇଁଲା ଏଇ ଭୂଇଁ ପରେ ଛୋଟ ଛୋଟ ଦୁଇ ପାଦ
ସେ ଆଜି ଗୋଟିଏ ସାରା ଭାରତରେ କୋଟିନିଧି ସମ୍ପଦ ।୧।

ସେଦିନର ସେହି ସାଧକ ଅପାର-ସଂସାର ବୈରାଗୀ
ଆଜି ସେ ଦଳିତ-ଜାତି ହିତ ଲାଗି ସିଦ୍ଧ ଚରମ ତ୍ୟାଗୀ ।୨।

ସେଦିନ ବିଦେଶୀ ଅଧ୍ୟାପକର ଆଗେ ଉଦ୍ଧତ ଯୁବା
ସେ ଆଜି ଭାରତ ଭୁକ୍ତ ଦୁଆରେ ଯୋଦ୍ଧୃବେଶରେ ଉଭା ।୩।

ସେଦିନ ସ୍ୱାଗତ ସମ୍ଭାଷଣରେ ହୀନ ନଉକର-ସାହୀ
ଧରିଥିଲା ଯା'ରେ ତାହାରି ଆଗିରେ ତାକେ ଆଜି ତ୍ରାହି ତ୍ରାହି ।୪।

ସେଦିନ ନଗରୀରାଣୀ କଲିକତା ବରିଥିଲା ଯାରେ ସ୍ୱାମୀ
ସେ ଆଜି ଦୁଃଖିନୀ ଭାରତ ମାତାର ଏକାକୀ ଅନ୍ତର୍ଯ୍ୟାମୀ ।୫।

ଭାରତର ଏହି ଗାରଦ ଭିତରେ ମାରି ନପାରିଲା ଶ୍ୱାସ
ସ୍ୱାଧୀନ ଭାରତେ ଫେରିବ ବୋଲି ତା ଅଜ୍ଞାତ ବନବାସ ।୬।

ଚାଳିଶ କୋଟି ଏ ଦଳିତ ଜାତିର ଦେବତା ହୋଇଛି ଆଜି
ନେତାଜୀ ! ନେତାଜୀ ! ଡାକରେ ସତେକି ଆକାଶ ପଡୁଛି ଭାଜି ।୭।

କାହିଁରେ ନେତାଜୀ ! ନେତାଜୀ ! ନେତାଜୀ ! ତଥାପି ପଡୁଛି ଡାକ
ତଥାପି ନେତାଜୀ ପାଗଳ ହୋଇଛି ଆଜି ଏ ଅବନୀଯାକ ।୮।

ନେତାଜୀ ! ନେତାଜୀ ! କଥା ନୁହେଁ ଖାଲି ନେତାଜୀ ଗୋଟାଏ ପଣ
ଗୋଲାମ ଜାତିର ଧର୍ମ କେବଳ ଶତ ସମ୍ମୁଖେ ରଣ.... ।୯।

ନେତାଜୀ ! ନେତାଜୀ ! ନୁହେଁ ସେ ଶରୀରୀ ନେତାଜୀ ଗୋଟିଏ ବ୍ରତ
ଜୀଅନ୍ତା ମଣିଷ ମଣ୍ଡପେ ଦିଏ ସେ ମରଣର ଇଙ୍ଗିତ.... ।୧୦।

ନେତାଜୀ ! ନେତାଜୀ ! ନୁହେଁରେ ସେ ନେତା ସେ ମହା ବଳୀଦାନ
ତାହାରି ନାଲିରେ ଯାଉଛି ଚାଲି ଏ ଭାରତରେ ଅପମାନ...
ଭାରତରେ ଅପମାନ... ।୧୧।



# ଉତ୍କଳଗାନ୍ଧୀ ସ୍ମାରକ ନିଧି

ଶ୍ରୀ ଶୋଭାକର ସ୍ୱାଇଁ

ଉତ୍କଳ ଗାନ୍ଧୀ ସ୍ମାରକ ନିଧିର ସ୍ଥାପନା ହୁଏ ୧୯୫୦ ରେ । ୧୯୫୯ ପର୍ଯ୍ୟନ୍ତ ନିଧିର ସମସ୍ତ କାର୍ଯ୍ୟକଳାପର ପରିଚାଳନା କେନ୍ଦ୍ରୀୟ ଗାନ୍ଧୀ ସ୍ମାରକ ନିଧିଙ୍କର ତତ୍ତ୍ୱାବଧାନରେ ହୋଇ ଆସୁଥିଲା । ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀଙ୍କ ମାର୍ଗଦର୍ଶନ ଏବଂ ତାଙ୍କ ପରିବାର ସଭିଙ୍କର ଗାନ୍ଧୀ କାର୍ଯ୍ୟପ୍ରତି ସମର୍ପିତ ଜୀବନ ପ୍ରଣାଳୀ ଯୋଗୁଁ ରାଜ୍ୟର ବିଭିନ୍ନ ସହର ଓ ଗ୍ରାମାଞ୍ଚଳରେ ଗାନ୍ଧୀ ସ୍ମାରକ ନିଧିର କାର୍ଯ୍ୟକଳାପ ଲୋକପ୍ରିୟ ହୋଇ ପାରିଥିଲା । ୧୯୫୯ରେ ଗଠିତ ରାଜ୍ୟ ପରିଚାଳନା ସମିତିର ପ୍ରଥମ ବୈଠକରେ ସ୍ୱନାମଧନ୍ୟା ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ମାଳତୀ ଚୌଧୁରୀ ଅଧ୍ୟକ୍ଷତା କରିଥିଲେ । ଗ୍ରାମସେବା କେନ୍ଦ୍ର ଓ ତତ୍ତ୍ୱ ପ୍ରଚାରକେନ୍ଦ୍ର ମାଧ୍ୟମରେ ଗାନ୍ଧୀବିଚାର ଏବଂ ରଚନାତ୍ମକ କାର୍ଯ୍ୟକ୍ରମର ପ୍ରସାର ହିଁ ମୁଖ୍ୟ କାର୍ଯ୍ୟକ୍ରମ ଥିଲା । ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ, ନିଧିକୁ ପୂର୍ଣ୍ଣ ସହଯୋଗ କରୁଥିଲେ । ଗାନ୍ଧୀ ରଚନାବଳୀର ଅନୁବାଦ ଓ ପ୍ରକାଶନର ଦାୟିତ୍ୱ ଗ୍ରହଣ ନିଧିର ଅନ୍ୟ ଏକ କାର୍ଯ୍ୟ । ଅତୀତରେ ବ୍ରହ୍ମପୁରରେ ଶ୍ରୀ ଶ୍ରୀବସ ନାୟକ ଓ ପୁରୀରେ ୰ କଣ୍ଟୁରି ଚରଣ ନାୟକ ତତ୍ତ୍ୱ ପ୍ରଚାରକ ଥିଲେ ।

୧୯୭୧ ମସିହାରେ ଲୋକନୀତି ପ୍ରଚାର ଓ ଜମିଦାର ସାହୁକାରଙ୍କ ଅତ୍ୟାଚାର ବିରୁଦ୍ଧରେ ନକ୍ସଲବାଦୀ ଆନ୍ଦୋଳନ ପ୍ରଭାବିତ ଓଡ଼ିଶାର ଦକ୍ଷିଣ ସୀମାନ୍ତରେ ଶାନ୍ତିସେନା ଗଠନ ଓ ଜନସାଧାରଣଙ୍କ ମଧ୍ୟରେ ଶାନ୍ତି ସୌହାର୍ଦ୍ଦ୍ୟ ଫେରାଇ ଆଣିବାରେ ନିଧିର କର୍ମୀମାନେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ ।

୧୯୭୦-୭୧ ମସିହାରେ ଭାରତ-ବଙ୍ଗଳାଦେଶ ଯୁଦ୍ଧ ସମୟରେ ପୂର୍ବ ପାକିସ୍ଥାନରୁ ପଳାଇ ଆସି ପଶ୍ଚିମ ବଙ୍ଗରେ ଆଶ୍ରୟ ନେଇଥିବା ଶରଣାର୍ଥୀ ମାନଙ୍କର ବିଭିନ୍ନ ସମସ୍ୟା ସମାଧାନ ପାଇଁ ମା' ରମାଦେବୀଙ୍କ ନେତୃତ୍ୱରେ ଡାକ୍ତର, ନର୍ସ, ସ୍ୱେଚ୍ଛାସେବୀ ଆଦିଙ୍କୁ ନେଇ ଏକ ସେବାବାହିନୀ ସେଠାକୁ ଯାଇ ଦକ୍ଷତାପୂର୍ଣ୍ଣ ସେବା ଦ୍ୱାରା ପ୍ରଶଂସା ଅର୍ଜନ କରିଥିଲେ ।

୧୯୭୫ରେ ଜରୁରୀକାଳୀନ ପରିସ୍ଥିତି ବିରୁଦ୍ଧରେ ଲୋକଚେତନା ଓ ଗଣ ସଂଗ୍ରାମର ସମସ୍ତ ସାମ୍ମୁଖ୍ୟରେ ଉତ୍କଳ ଗାନ୍ଧୀ ସ୍ମାରକନିଧି ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ୧୯୮୮ରେ ଗାନ୍ଧୀ ସ୍ମାରକ ନିଧିର ଅଧ୍ୟକ୍ଷ ଶ୍ରୀ ମନମୋହନ ଚୌଧୁରୀ ନିଜର ବ୍ୟକ୍ତିଗତ କାର୍ଯ୍ୟରେ ଆମେରିକା ଗସ୍ତ କରିଥିଲେ ମଧ୍ୟ ସେଠାରେ ବିଭିନ୍ନ ସଭାସମିତିରେ ଗାନ୍ଧିଜୀଙ୍କ ନୈତିକ ମୂଲ୍ୟବୋଧର ପ୍ରଚାର ପାଇଁ ବ୍ୟାଖ୍ୟାନ ପ୍ରଦାନ କରିଥିଲେ ।

ଉତ୍କଳ ସର୍ବୋଦୟ ମଣ୍ଡଳଙ୍କ ସହିତ ପୂର୍ଣ୍ଣ ସହଯୋଗ ରକ୍ଷାକରି ଗ୍ରାମସ୍ୱରାଜ୍ୟ ଓ ସମତାମୁଖୀ ସମାଜ ଭିତ୍ତିକ ନୂଆ ରାଜନୀତିରେ ଉତ୍ସାହୀ ଯୁବଜନଙ୍କ ସନ୍ଧାନ କରିବା ସହ ସେମାନଙ୍କୁ ଅନୁପ୍ରାଣିତ କରିବାପାଇଁ ନିଧି ଆଗେଇ ଚାଲିଛି ।

"ସର୍ବୋଦୟ" ପାକ୍ଷିକ ପତ୍ରିକାର ପ୍ରକାଶନ ଦାୟିତ୍ୱ ନିଧି ଗ୍ରହଣ କରିଛି । ଦେଶ ବିଦେଶର ବିଭିନ୍ନ ସମସ୍ୟା ଏବଂ ଏହାର କୁଫଳରୁ ମଣିଷ ଜାତିକୁ ସମ୍ଭାବ୍ୟ ବିପଦରୁ ରକ୍ଷା କରିବା ପାଇଁ ଲୋକମତ ସୃଷ୍ଟି କରିବାରେ ସାମୟିକ ପ୍ରଚାର ପତ୍ର ଓ ସଭା ସେମିନାର ଦ୍ୱାରା ଜନ ସଚେତନତା ସୃଷ୍ଟି କରି ଆସୁଛି ।

୧୯୬୬ ଫେବୃୟାରୀ ୬ ତାରିଖରେ ପୁନର୍ଗଠିତ ରାଜ୍ୟ କମିଟିର ପ୍ରଥମ ବୈଠକରେ ନିର୍ଦ୍ଧାରଣ ଅନୁଯାୟୀ ମା ରମାଦେବୀ ନିଧିର ଅଧ୍ୟକ୍ଷ ଓ ୰ ନନ୍ଦିକିଶୋର ଦାସ ସମ୍ପାଦକ ପଦରେ ଅବସ୍ଥାପିତ ହେଲେ । ଅତଃପର ଭିନ୍ନ ସମୟରେ ସର୍ବଶ୍ରୀ ମନମୋହନ ଚୌଧୁରୀ, ଫକୀର ମିଶ୍ର ଓ ମହମ୍ମଦ ବାଜି ଅଧ୍ୟକ୍ଷତା ଓ ରତନଦାସ, ରାମଚନ୍ଦ୍ର ଜେନା ସମ୍ପାଦକତ୍ୱ କରିଛନ୍ତି ୧୯୮୮ରୁ ଅଦ୍ୟାବଧି ଶ୍ରୀ ମନମୋହନ ଚୌଧୁରୀ ଅଧ୍ୟକ୍ଷ ଓ ଶ୍ରୀ ପ୍ରହ୍ଲାଦ କୁମାର ସିଂହ ସମ୍ପାଦକ ରହିଛନ୍ତି । କଟକ ବାଖରାବାଦରେ ନିଧିର ସଦର କାର୍ଯ୍ୟାଳୟ ରହିଛି ।

ବାଖରାବାଦ, କଟକ-୨

# ଗୁଣନିଧି ଭବନ, ଗୌଡ଼ିଆସାହି, କଟକ

ଶ୍ରୀ ଶିବପ୍ରସାଦ ଜେନା

ଶ୍ରୀ ଗୁଣନିଧି ମହାନ୍ତି ଓଭରସିଅର ପଦରେ ସରକାରୀ ଚାକିରୀ କରୁଥିଲେ । ରେଭେନ୍ସା କଲେଜ ସୌଧ ନିର୍ମାଣ ବେଳେ ସେ ସେଠାରେ ନିଯୁକ୍ତ ହୋଇଥିଲେ ।

୧୯୨୧ରେ ସରକାରୀ ଚାକିରୀ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ ଏବଂ ନିରବଚ୍ଛିନ୍ନ ଭାବରେ ୧୯୪୭ ଅଗଷ୍ଟ ପର୍ଯ୍ୟନ୍ତ ସ୍ୱାଧୀନତା ଆନ୍ଦୋଳନ ସହିତ ସମ୍ପୃକ୍ତ ରହି ୧୯୩୦-୩୨୪୨ ମସିହାରେ କାରାବରଣ କଲେ ।

୧୯୩୪ରେ ଗାଁକୁ ଯିବାକୁ ଗାନ୍ଧୀଜୀ ସତ୍ୟାଗ୍ରହୀମାନଙ୍କୁ ନିର୍ଦ୍ଦେଶ ଦେବାରୁ ଗୁଣନିଧି ବାବୁ ପଟିଆ ନିକଟକୁ ଦାଢ଼ୀ ଗ୍ରାମରେ ରହି କୁଟୀର ଶିଳ୍ପର ପ୍ରସାର କାର୍ଯ୍ୟ କଲେ । ପରବର୍ତ୍ତୀ କାଳରେ ନିଖିଳ ଭାରତୀୟ ସ୍ତରରେ ଯେଉଁ ଗ୍ରାମୋଦ୍ୟୋଗ ସମିତି ଗଠିତ ହେଲା, ସେହି ସମିତିର ଉତ୍କଳ ଶାଖାର ସେ ସଂଚାଳକ ହେଲେ ଏବଂ ଖଜୁରୀ ଗୁଡ଼ ରନ୍ଧା ଓ ହାତ ତିଆରୀ ଚଟିର ପ୍ରସାର ଆଦି କାମ କଲେ ।

କଟକ ସହରର ଖୋରିଆ ସହିରେରେ ତାଙ୍କ ପ୍ରାୟ ୨୪ ଡ଼ିସିମିଲର ଜମି ପୌତୃକ ସଂପତ୍ତି ଥିଲା । ସେ ସେହି ଜମିରେ ଘରତିଆରି କରି କାଗଜ ତିଆରି କାମ ଆରମ୍ଭ କରିଥିଲେ । ୧୯୪୨ ରେ ଭାରତଛାଡ଼ ଆନ୍ଦୋଳନ ବେଳେ ମରୀ ରେବୀ ଘରଠାରେ ଗିରଫ ହୋଇ ଅଟକ ବନ୍ଦୀ ହେଲେ । ଖୋରିଆ ଘରେ ଖଦୀ କର୍ମୀ ରାଧାନାଥ ମାହାନ୍ତି ରହି ଖଦୀ ଭଣ୍ଡାର ଗୋଦାମ କଲେ ।

## ଭୂଦାନ ଯଜ୍ଞ ସମିତି

ଓଡ଼ିଶାରେ ଭୂଦାନ ଯଜ୍ଞ ଆନ୍ଦୋଳନରେ ସୂତ୍ରପାତ ୧୯୫୧ରେ ହେଲା । ଗୋପବନ୍ଧୁ ରମାଦେବୀ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ପଦଯାତ୍ରା କରି ଫେରିବା ପରେ କଟକ ଜିଲ୍ଲାର ଖଣ୍ଡ ସହିଠାରେ କର୍ମୀମାନଙ୍କର ଏକ ବୈଠକରେ ଭୂଦାନ ଯଜ୍ଞସମିତି ଗଠିତ ହେଲା । ଏହାର କାର୍ଯ୍ୟାଳୟ ଖୋରିଆ ସାହିରେ ଗୁଣନିଧିବାବୁଙ୍କର ସେହି ଜମିରେ ଥିବା ଘରେ ରହିଲା । ଗୁଣନିଧି ବାବୁ ଭୂଦାନ କାମରେ କୋରାପୁଟ । କେନ୍ଦୁଝରରେ ବୁଲିଲେ ।

## ଗୁଣନିଧି ଭବନ ଟ୍ରଷ୍ଟ-

ଗୁଣନିଧିବାବୁ ଏହି ଜମିକୁ ଖଦୀ ଗ୍ରାମୋଦ୍ୟୋଗ କାମରେ ବିନିଯୋଗ କରିବା ପାଇଁ ସ୍ୱାମୀ ବିଚିତ୍ରାନନ୍ଦଦାସ ଓ ଗୋପବନ୍ଧୁ ଚୌଧୁରୀଙ୍କୁ ହସ୍ତାନ୍ତର କଲେ । ସେମାନେ ଏ ଜମିକୁ ଉତ୍କଳ ଖଦୀ ମଣ୍ଡଳକୁ ହସ୍ତାନ୍ତର କଲେ । ୧୯୭୨ ମସିହାରେ ଏ ଜମିର ରକ୍ଷଣାବେକ୍ଷଣା ପାଇଁ ଗୋଟିଏ ଟ୍ରଷ୍ଟ ଗଠିତ ହୋଇ ସର୍ତ୍ତ ରହିଲା ଯେ ଯେପର୍ଯ୍ୟନ୍ତ ଏ ସ୍ଥାନରେ ସର୍ବୋଦୟ କାର୍ଯ୍ୟ ଚାଲିବ ସେ ପର୍ଯ୍ୟନ୍ତ ଉତ୍କଳ ସର୍ବୋଦୟମଣ୍ଡଳ ଏହାକୁ ଭୋଗ ଦଖଲ କରିବେ । ସର୍ବଶ୍ରୀ ହରମୋହନ ପଟ୍ଟନାୟକ (ସଭାପତି, ସର୍ବୋଦୟମଣ୍ଡଳ) ଓ ବିଶ୍ୱନାଥ ପଟ୍ଟାନାୟକ (ସଭାପତି, ଖଦୀମଣ୍ଡଳ) ଏହାର ଟ୍ରଷ୍ଟ ହେଲେ ।

୧୯୫୧-୫୨ରୁ ,ହିଠାରେ ସର୍ବୋଦୟ କାର୍ଯ୍ୟ ନିରବଚ୍ଛିନ୍ନ ଭାବରେ ଚାଲିଛି । ଗୁଣନିଧିବାବୁଙ୍କର ଦେହାନ୍ତ ପରେ ଶ୍ରୀ ରବିଶଙ୍କର ମହାରାଜ ଓ ଶ୍ରୀମତି ମଣିବେନ୍ ନାନାବଟିଙ୍କ ଆନୁକୂଲ୍ୟରେ ଏହି ସ୍ଥାନର ଘରଗୁଡ଼ିକର ପୁନଃ ସଂସ୍କାର ହେଲା । ସେତେବେଳେ ଏହି ଅନୁଷ୍ଠାନର କାମ ଗୁଣନିଧି ଭବନ ରଖାଗଲା ।

## ଭବନରୁ ମାର୍ଗ ଦର୍ଶନ

୧୯୫୫ରେ ବିନୋବା ପଦଯାତ୍ରାର ବ୍ୟବସ୍ଥା ଓ ପୁରୀ ସର୍ବୋଦୟ ସମ୍ମିଳନୀ ଆୟୋଜନ ୧୯୫୭ରେ ନିଧିମୁକ୍ତି ପ୍ରୟୋଗ ୧୯୫୮ ଶାନ୍ତିସେନା କାର୍ଯ୍ୟାରମ୍ଭ, ସର୍ବୋଦୟ ପାତ୍ର ଆଦି ସର୍ବୋଦୟ ଆନ୍ଦୋଳନର

ଯାବତୀୟ କାର୍ଯ୍ୟକ୍ରମ ଏହିଠାରୁ ପ୍ରସାରିତ ହେଲା । ବିଭିନ୍ନ ଅଞ୍ଚଳରୁ ଆସୁଥିବା ନୂଆନୂଆ ଲୋକଙ୍କୁ ତାଲୀମ ଦେବା କାର୍ଯ୍ୟ ଶ୍ରୀ ଫକିର ମିଶ୍ରଙ୍କ ସଂଚାଳନାରେ ହେଉଥିଲା ।

ଗାନ୍ଧୀ କସ୍ତୁରବା ଜନ୍ମ ଶତାବ୍ଦୀ ପରିପ୍ରେକ୍ଷିରେ ଗାନ୍ଧୀ ରଚନାବଳୀ ସଂପଦନା ଶ୍ରୀ ଶରତ ଚନ୍ଦ୍ର ମହାରଣା ଏଠାରେ କରିଥିଲେ । ଗାନ୍ଧୀ ସ୍ମରକ ନିଧି ଏହାର ପ୍ରକାଶକ ହେଲେ ଗାଁ ଗହଳରୁ ଆସୁଥିବା ବେଲ୍ଲା ପରିଡ଼ା,ପାର୍ବତୀ ଦାସ, ପଦ୍ମକେଶରୀ ଦେବୀ ଆଦି ବହୁ ଶହିକା ରାମାଦେବୀଙ୍କ ସଂଚଳନାରେ ଏଠାରେ ତାଲିମ ପାଇଲେ । ବିପଦଗ୍ରସ୍ତ ମହିଳା ମାନଙ୍କୁ ଅସମୟରେ ଆଶ୍ରଣ ଦେବାରେ ଏହି ଗୁଣନିଧି ଭବନ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି ।

୧୯୬୬ କଳାହାଣ୍ଡି ଦୁର୍ଭିକ୍ଷ ୧୯୬୭ର ବାତ୍ୟା ୧୯୬୮ ରେ ଆଠୋଟି ଜିଲ୍ଲାରେ ମରୁଡ଼ି ୧୯୬୯ରେ ହିନ୍ଦୁମୁସଲମାନ ଗଣ୍ଡଗୋଳ , ୧୯୭୧ ରେ ବାଂଲା ଦେଶରୁ ଆଗତ ଶରଣାର୍ଥୀଙ୍କ ସେବା ଗଞ୍ଜାମର ହିନ୍ଦୁ ଖୀଷ୍ଟିଆନ୍ କଳହ ଜମ୍ମୁଅଂଚଳର ତଲିଆ ବଙ୍ଗାଳୀ କଳହ । ରାଉରକେଲା ଅଶାନ୍ତିରେ ଶାନ୍ତି ସ୍ଥାପନ ବାଲେଶ୍ୱର ର ବଳଙ୍ଗିତ ଗଂଗାହାର ବନ୍ୟା ୧୯୬୪ର ପ୍ରଖ୍ୟାତ ଛାତ୍ର ଆନ୍ଦୋଳନ ୧୯୭୫ ରେ ଜରୁରୀ କାଳୀନ ପରିସ୍ଥିତିର ବିରୋଧ ଓ ରିଲିଫ କାମ ଆଦି ବିଭିନ୍ନ ସମୟରେ ବିଭିନ୍ନ ସମସ୍ୟାର ସମାଧାନ ପାଇଁ ବାଟ ଖୋଜିବା ଓ ସମାଧାନ କରିବାର ବିଚାର ଗୁଣନିଧି ଭବନରେ ହୋଇ ଆସିଛି ।

ଆଚାର୍ଯ୍ୟହରିହର ଓ ଈଶ୍ୱର ଲାଲ ଦାସ ଓ ପଣ୍ଡିତ କୃପାସିନ୍ଧୁ ମିଶ୍ର ମହାଶୟ ଙ୍କ ଜୀବନୀ ଶ୍ରୀ ଅନାଦି ନାୟକଙ୍କ ଦ୍ୱାରା ଏହିଠାରେ ସମ୍ପାଦିତ ହୋଇଛି ।

### ଏବର ସ୍ଥିତି

ବର୍ତ୍ତମାନ ଏଠରେ ଆଚାଯ୍ୟହରିହର ମେମୋରିଆଲ ଟ୍ରଷ୍ଟ, ରାମାଦେବୀ ଚୋଧୁରୀ ମେମୋରିଆଲ୍ ଟଷ୍ଟ ଉତ୍କଳ ଖଦୀ ମଣ୍ଡଳର ଖଦୀ ଭଣ୍ଡାର ସର୍ବୋଦୟ ରିଲିଫ କମିଟି, ଉତ୍କଳ ସର୍ବୋଦୟ ମଣ୍ଡଳର କାର୍ଯ୍ୟାଳୟ ଏଠାରେ ରହିଛି ଏବଂ ଗୋଟିଏ ଶିଶୁ ଶିକ୍ଷ୍ୟା ମନ୍ଦିର ମଧ ଚାଲିଛି ।

ଏହି ଗୁଣନିଧି ଭବନର ରକ୍ଷଣା ବେକ୍ଷଣା ଓ ଉତ୍କଳ ସର୍ବୋଦୟ ମଣ୍ଡଳର କର୍ମୀମାନଙ୍କର ନିର୍ବାହ ସଂପୂର୍ଣ୍ଣ ରୂପେ ଜନ ଆଧାରିତ ଅଟେ । ଉତ୍କଳ ସର୍ବୋଦୟ ମଣ୍ଡଳର କର୍ମୀମାନଙ୍କୁ ନିମ୍ନୋକ୍ତ ଲୋକସେବକ ନିଷ୍ଠାପତ୍ରରେ ସାକ୍ଷାତ କରିବାକୁ ହୁଏ ।

### ନିଷ୍ଠାପତ୍ର

୧. ମୁଁ ସର୍ବସେବା ସଂଘର ଉଦ୍ଦେଶ୍ୟକୁ ଉତ୍ତମଣୂପେ ବୁଝିଛି । ସେଥିପ୍ରତି ମୋର ପୂର୍ଣ୍ଣନିଷ୍ଠା ଅଛି ମୋଲି ମୁଁ ଏତଦ୍‌ଦ୍ୱାରା ଘୋଷଣାକରୁଛି ।

୨. ମୁଁ ସତ୍ୟ, ଅହିଂସା, ଉତ୍ପାଦକ ଶରୀର ଶ୍ରମ ଓ ସମାନତାର ଜୀବନ ମୂଲ୍ୟକୁ ସ୍ୱୀକାର କଲେ ଏବଂ ତାହାକୁ ମୋ ଜୀବନରେ କାର୍ଯ୍ୟାନ୍ୱିତ କରିବା ପାଇଁ ପୂରାପୂରି ଚେଷ୍ଟା କରିବି । ନିଜର ବସ୍ତ୍ର ପାଇଁ ମୁଁ ପ୍ରମାଣିତ ଖଦୀ ବ୍ୟବହାର କରିବି । ମୁଁ ଜୀବନରେ ମଦ ଓ ମାଦକ ଦ୍ରବ୍ୟକୁ ନିଶିଦ୍ଧ କରିବି ଓ ଛୁଆଁ ମାନିବି ନାହିଁ ।

୩. ଲୋକନୀତି ଦ୍ୱାରା ହିଁ ଯଥାର୍ଥ ଲୋକତନ୍ତ୍ର ସ୍ଥାପିତ ହୁଏ ଏବଂ ତାହାରି ଦ୍ୱାରା ପ୍ରତି ବ୍ୟକ୍ତିର ବାସ୍ତବ ସ୍ୱାଧିନତା ମିଳିପାରେ ବୋଲି ମୁଁ ବିଶ୍ୱାସ କରେ । ଏହି ଦୃଷ୍ଟିରୁ ମୁଁ କୌଣସି ରାଜନୀତିକ ଦଳର ସଦସ୍ୟ ହେବି ନାହିଁ କି କୌଣସି କ୍ଷମତାହିନ ପଦର ପ୍ରତ୍ୟାଶୀ ହେବିନାହିଁ । ମୁଁ ଲୋକତନ୍ତ୍ରର ବୁନିୟାଦୀ ମୂଲ୍ୟଗୁଡ଼ିକୁ ରକ୍ଷା କରିବାକୁ ଓ ସ୍ଥାପନୀ କରିବାକୁ ଉଦ୍ୟମ କରିବି ।

୪. ମୁଁ ସମାଜରେ ସବୁଠାରୁ ତଳେ ପଡ଼ିଥିବା ବ୍ୟକ୍ତି କଥା ଆଖି ଆଗରେ ରଖି ସମାଜରେ ନିଃସ୍ୱାର୍ଥ ସେବା କରିବି, କୌଣସି ଉଦ୍ଦେଶ୍ୟ ସାଧନ ନିମନ୍ତେ ଅଶୁଦ୍ଧ ଉପାୟ ଅବଲମ୍ବନ କରିବି ନାହିଁ ।

୫. ମୁଁ ସଦସ୍ୟଶୁଳ୍କ ବାବଦରେ ସର୍ବସେବା ସଂଘକୁ ବାର୍ଷିକ ପାଞ୍ଚଟା ବା ଛଅଟା ଗୁଣ୍ଡି ସୂତା ଦେବି ।

## ପୂଜ୍ୟ ଅନ୍ତେବାସୀ ବୃନ୍ଦ

### ଗୁଣନିଧି ଭବନରେ ବିଭିନ୍ନ ସମୟରେ

ଆଚାର୍ଯ୍ୟ ହରିହର ଦାସ, ଗୁଣନିଧି ମହାନ୍ତି, ଗୋପବନ୍ଧୁ ଚୌଧୁରୀ, କୃପାସିନ୍ଧୁ ହୋତା, ରମା ଦେବୀ, ମଂଗଳା ସେନ୍, ଇନ୍ଦିରା ମିଶ୍ର, ରମ୍ଭାଦେବୀ ଦୁତିଆ, ପାର୍ବତୀ ଦାସ, ବେଲା ପରିଡା, ପଦ୍ମ ପେଶରୀ ଦେବୀ, ଶୈଳବାଳା ମହାନ୍ତି, ଅନ୍ନପୂର୍ଣ୍ଣା ମହାରଣା, ପ୍ରମିଳାସ୍ୱାଇଁ, ବିଜୟ ଲକ୍ଷ୍ମୀ ମହାନ୍ତି, ମାଳତୀ ଭୋଇ, ସାବିତ୍ରୀ, ଅନ୍ନପୂର୍ଣ୍ଣା ପତି, ଶଶୀରେଖା ସିଂହ, ସଂଯୁକ୍ତା ସାମନ୍ତରାୟ, ସାବିତ୍ରୀ ଦେବୀ, ଲକ୍ଷ୍ମୀ ଦେବୀ, ସୁନ୍ଦରମଣି ଦେବୀ, ଉର୍ମିଳା ସାହୁ, ସୁଭଦ୍ରା ସ୍ୱାଇଁ, ଫକୀର ମିଶ୍ର, ସୁରେନ୍ଦ୍ର ନାଥ ମହାନ୍ତି, ହରେକୃଷ୍ଣ ବିଶ୍ୱାଳ, ବିକ୍ରମ କେଶରୀ ବିଶ୍ୱାଳ, ମୈଥିଳୀ ଦେବୀ, ସଂଘମିତ୍ରା ମିଶ୍ର, ଭାରତୀ ମିଶ୍ର, ସଚ୍ଚିଦାନନ୍ଦ ମହାନ୍ତି, ଶ୍ୟାମ ସୁନ୍ଦର ବିଶ୍ୱାଳ, ସୁଧାଂଶୁ ଶେକର ଦାସ, ବସନ୍ତ କୁମାର ସ୍ୱାଇଁ, ଶରତ୍‌ଚନ୍ଦ୍ର ମହାରଣା, ଗୋପାଳ ପ୍ରସାଦ ଦାସ, ଅନାଦି ନାୟକ, ନିର୍ମଳ ଚନ୍ଦ୍ର ରାୟ, ବିନୋଦ ମହାନ୍ତି, କ୍ଷେତ୍ରବାସୀ ପତି, ଯୋଗେଶ ଚନ୍ଦ୍ର ରାଉତ, ଅର୍କକାଶଭାଇ, ବଂଶୀଧର ନାୟକ, କିଶୋର ଚନ୍ଦ୍ର ପ୍ରଧାନ, ହର ମୋହନ ପଟ୍ଟନାୟକ, ନରହରି ସ୍ୱାଇଁ, ରତନ ଦାସ ପ୍ରମୁଖ ଅବସ୍ଥାନ ପୂର୍ବକ ଜନ-ଶକ୍ତି ଜାଗରଣରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି । ପଣ୍ଡିତ କୃପାସିନ୍ଧୁ ହୋତା, ଆଚାର୍ଯ୍ୟ ହରିହର ଗୁଣନିଧି ମହାନ୍ତି, ଗୋପବନ୍ଧୁ ଚୌଧୁରି ଓ ଈଶ୍ୱରଲାଲ ବ୍ୟାସଙ୍କର ଏହି ସାଧନା ପୀଠାରେ ଦେହାନ୍ତ ହୋଇଛି ।

ଗୁଣନିଧି ଭବନ ସେହି ପାବନ ସ୍ମୃତିକୁ ଏବେ ମଧ୍ୟ ବଜାୟ ରଖିପାରିଛି ।

**ସଂପାଦକ, ଉତ୍କଳ ସର୍ବୋଦୟ ମଣ୍ଡଳ,**
**ଗୁଣନିଧି ଭବନ, ଥୋରିଆସାହି, କଟକ-୧**



## ନିସର୍ଗ ନିବାସ

### ଅବିଭକ୍ତ ସମ୍ବଲପୁର ଜିଲ୍ଲାର ସ୍ୱନାମଧନୀ ସର୍ବୋଦୟ ନେତା ୰ମଦନ ମୋହନ

ସାହୁ ନୃସଂହନାଥ ମନ୍ଦିର ପାଖରେ ରଚନାତ୍ମକ କାର୍ଯ୍ୟକ୍ରମର ଆଦର୍ଶ ସଂସ୍ଥାଟିଏ ଗଢ଼ିବାକୁ ମନକଲେ । ଉଚ୍ଚ ସରକାରୀ ମହଲରେ ତାଙ୍କ ରୂପେ ପ୍ରବେଶ ଥିଲା ତାହା ନୁହେଁ । ଜିଲ୍ଲାପାଳ ଭଳି ପଦସ୍ଥ ପ୍ରଶାସନିକ କର୍ମକର୍ତ୍ତା ତାଙ୍କୁ ବହୁତ ସମ୍ମାନ ଦେଉଥିଲେ । ୧୯୭୧ ମସିହାରେ ସମ୍ବଲପୁରର ତଦାନିନ୍ତନ ଜିଲ୍ଲାପାଳ ସୋମନାଥ ମିଶ୍ରଙ୍କୁ ନିଜର ମନକଥା ଜଣାଇବାକୁ ୬ ଏକାର ୮୩ ଡେସିମିଲି ଜମି ନାମମାତ୍ର ସଲାମିରେ ତାଙ୍କୁ ମିଳିଥିଲା । ସେଠରେ ସଂସ୍ଥାଟକୁ ଗଢ଼ି ତୋଳିବାରେ ସ୍ୱାଧିନତା ସଂଗ୍ରାମୀ ଶ୍ରୀ ଅଲେଖ ପାତ୍ରଙ୍କ ଐକାନ୍ତିକ ନିଷ୍ଠାପରତା ଅନସ୍ୱୀକାର୍ଯ୍ୟ । ଶ୍ରୀମାନ ଅଲେଖ ଙ୍କ ଘର ପୁରୀଜିଲ୍ଲା ନୂଆହାଟର ଅଦୂରବର୍ତ୍ତୀ ବିଶୁଳିପଡ଼ା । ଭାରତର ଅନ୍ତିମ ସ୍ୱାଧିନତା ସଂଗ୍ରାମ "ଭାରତଛାଡ଼" ଆନ୍ଦୋଳନରେ ଭାଗନେଇ ସେ ପୁରୀ ବନ୍ଦୀଶାଳାରେ ଥିବାବସ୍ଥାରେ ସେ ସହବନ୍ଦୀ ସହ ବନ୍ଦୀଶାଳାରୁ ଉଭେଇଯାଇ ପ୍ରଶାସନରେ ଆନ୍ଦୋଳନ ଓ ଆନ୍ଦୋଳନ ସୃଷ୍ଟି କରିଥିଲେ । କାରାମୁକ୍ତି ପରେ ରଚନାତ୍ମକ କାର୍ଯ୍ୟକ୍ରମରେ କାର୍ଯ୍ୟକ୍ରମରେ ମନ ନିବେଶ କରି ଭିଟାମାଟିର ମୋହ ଛାଡ଼ି ପଶ୍ଚିମ ଓଡ଼ିଶାକୁ ନିଜର କର୍ମକେନ୍ଦ୍ର ବାଛି ନେଇଥିଲେ । କିଛି ଦିନ ଖଦି କମିଶନର ଦୈନନ୍ଦିନ ଜଣେ ବୈତନିକ କର୍ମୀ ଭାବରେ କାର୍ଯ୍ୟ କରିବା ପରେ ମଦନବାବୁଙ୍କ ସମ୍ପର୍କରେ ଆସିଲେ । ମିଳିଥିବା ଜମି ଉପରେ ସଂସ୍ଥାଟିଏ ତୋଳିବା ପାଇଁ ତାଙ୍କୁ ଅକ୍ଳାନ୍ତ କରିଶ୍ରମ କରିବା ପାଇଁ ପଡ଼ିଲା । ସେତେବେଳେ ସେ ପଦ୍ମପୁରରେ ରହୁଥିଲେ । ଚାକିରି ଜୀବନରେ ସଂଚିତ ସମସ୍ତ ଅର୍ଥକୁ ଏହି ନିର୍ମାଣରେ ବ୍ୟୟକଲେ । ପଦ୍ମପୁରରୁ ଦୀର୍ଘ ୬୦ କି.ମି ସାଇକେଲରେ ଯାତାୟତ କରି ଶ୍ରମିକଙ୍କ ସହ ଶ୍ରମିକ ପରି ମିଶି ସଂସ୍ଥାକୁ ଗଢ଼ି ତୋଳିଛନ୍ତି । ଘଟଣାକ୍ରମେ ଶ୍ରୀମାନ ଅଲେଖ ମଦନ ବାବୁଙ୍କ ଭିଣୋଇ ହୋଇଗଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ କବିରାଜ ଘନଶ୍ୟାମ ପାଣିଗ୍ରାହୀଙ୍କ ପୌରାହିତ୍ୟରେ ବୈବାହିକ ବନ୍ଧନ ସଂପନ୍ନ ହୋଇଥିଲା ।

ସେହି ସଂସ୍ଥାଟିର ନାମ ନିସର୍ଗ ନିବାସ । ସଂପ୍ରତି ବଡ଼ଗଡ଼ ଜିଲ୍ଲାରେ ଅବସ୍ଥିତ । ଅଲେଖ ସପରିବାର ସେଠାରେ ରହନ୍ତି । ଗାନ୍ଧୀ ବିଚାର ଅଧ୍ୟୟନ, ପ୍ରଶିକ୍ଷା ଓ ପ୍ରୟୋଗର ପୀଠ ରୂପେ ନିସର୍ଗ ନୀବାସର ସୁଖ୍ୟାତି ରହିଛି । ଗୋସେବା, ଉନ୍ନତ କୃଷି, ଫୁଲ ଫଳରେ ଓ ଗୋବର ଗ୍ୟାସର ପ୍ରୟୋଗ ସାଙ୍ଗକୁ ଭଳିକି ଭଳି ଗୋଲାପ ଫୁଲର ଚହଲ ପଥଚାରୀମାନଙ୍କୁ ଆକର୍ଷଣ କରେ ।

ଏହି ନିସର୍ଗ ନିବାସକୁ ପ୍ରେରଣାର ଉତ୍ସ ସ୍ୱରୂପ ଗ୍ରହଣ କରି ୧୯୮୬ ମସିହାରେ ସେ ଅଞ୍ଚଳରେ ପୁରୁଷ ସ୍ତ୍ରୀ ନିର୍ବିଶେଷରେ ଅଶେଷ ଭେଷଜ ଗଛ ରାଜିରେ ଭରପୂର ଗନ୍ଧମାର୍ଦ୍ଦନକୁ ଭାଙ୍ଗିରୁଜି ବିପର୍ଯ୍ୟସ୍ତ କରାଉଥିବା ସୁପ୍ରତିଷ୍ଠିତ ବାଲକୋ କମ୍ପାନୀକୁ ଯେପରି ହଟାଇ ଦେଇ ପାରିଲେ ରାଜ୍ୟ ପ୍ରଶାସନରେ ଗଭୀର ବିସ୍ମୟ ଓ ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ସଂଗ୍ରାମରେ ଶ୍ରୀମାନ ଅଲେଖଙ୍କ ସହ ୧୪୦ ଜଣ ମହିଳା ଓ ୪୦ ଜଣ ପୁରୁଷ ସଂଗ୍ରାମୀ ଭାଗନେଇ ଦୀର୍ଘ ୭୧ ଦିନ କାରାବରଣ କରିଥିଲେ । ନିସର୍ଗ ନିବାସ ସେ ଅଞ୍ଚଳରେ ଯାବତୀୟ ଦୁର୍ନୀତି ବିରୁଦ୍ଧରେ ସଦା ଜାଗ୍ରତ । ଗନ୍ଧମାର୍ଦ୍ଦନ ସୁରକ୍ଷାପାଇଁ ବରଗଡ଼ରେ ସମତା ଭବନ ପ୍ରତିଷ୍ଠା କରିଥିବା ଦିଲ୍ଲୀ ବିଶ୍ୱବିଦ୍ୟାଳୟର ସ୍ନାତକ ଶ୍ରୀମାନ ଲିଙ୍ଗରାଜଙ୍କ ନେତୃତ୍ୱରେ ପାରେଶ୍ୱର ପ୍ରଧାନ, ଅନୁପ କୁମାର, ଖଗେଶ୍ୱର ସାହୁ ଓ ରାଜକୁମାର ପ୍ରଣ୍ଡୁଖାଙ୍କୁ ନେଇ ଗଠିତ ଏକ ସ୍ଥାୟୀ କମିଟି ସଚେତ ଜାଗ୍ରତ ଅଛନ୍ତି । ଦଳିତ ଦିଗ୍‌ପେକ୍ଷିତ, ଶଙ୍କିତ ନାଗରିକଙ୍କ ପ୍ରାଣରେ ନିବାସ ଅସୀମ ସାରସ ଓ ପ୍ରେରଣାର ଉତ୍ସ ହୋଇ ରହିଛି ଉତ୍କଳ ସର୍ବୋଦୟ ମଣ୍ଡଳର ଅଧକ୍ଷ ଶ୍ରୀମାନ ଅଲେଖ (୭୫) ଓ ତାଙ୍କ ସହଧର୍ମିଣୀ ଭଗବତୀ(୭୦) ହାତରୁ ଝାଡୁ କୋଡ଼ି ଏବେ ଛାଡ଼ିନାହିଁ ।

ମଦନ ମୋହନ ସାହୁ ଏବେ ଆଉ ଏହି ଧାମରେ ନାହାନ୍ତି । ୦୮।୦୨।୯୮ ରେ ତାଙ୍କର ଦେହାନ୍ତ ହୋଇଛି । ତେବେ ଗନ୍ଧମାର୍ଦ୍ଦନ ପଦଦେଶରେ ଅନ୍ତିମ ଜୀବନ ବିତାଇବା ପାଇଁ ଯେଉଁ ବାସନା ରଖିଥିବଲେ ତାଙ୍କ ଅଶରରରେ ଆତ୍ମା ଏବେ ବି ସେଠାରେ ମାର୍ଗ ଦର୍ଶନ କରୁଛି କହିଲେ, କିଛି ଅତ୍ୟୁକ୍ତି ହେବନାହିଁ ।



**ପ୍ରଭାତ ଫେରୀ**

## ପାହିଲା ରାତି

ପାହିଲା ରାତି, ହେଲା ପାହାନ୍ତି, ଚାଲଗୋ ଭଉଣୀ, ଚାଲମୋ ଭାଇ
ଗାଇ ଗାଇ ଚାଲ ଜାତୀୟ ଗୀତି ॥୦॥

ଦେଶ ଚଉଦିଗେ ଶୁଭେ ଚହଳ... ଲହରୀ ପରାଏ ଲୋକ ଗହଳ,
ଲକ୍ଷ ଲକ୍ଷ ପ୍ରାଣେ ଫୁଟି ଉଠେ ଆଜି ... ଜାତୀୟ ପ୍ରୀତି , ଜାତୀୟ ପ୍ରୀତି ॥୧॥

ସ୍ୱାଧୀନତା ଲାଗି କରିସମର ... ପ୍ରାଣ ଢାଳିଥିଲେ ଯେତେ ଅମର
ବଉଦ ଉଡ଼ାକୁ ଉଲ୍ଲାସ ପ୍ରଗଣେ ... ଆଜି ଚାହାନ୍ତି, ଆଜି ଚହାନ୍ତି ... ॥୨॥

ସଜଫୁଲ ବାସ ଛୁଟେ ଗଗନେ ... ଜାତୀୟ ପତକା ଉଡ଼େ ଗଗନେ
ଗୋଟି ଗୋଟି ହୋଇ ମା ମନେ ପଡ଼ଇ ... ଅତୀତ ସ୍ମୃତି, ଅତୀତ ସ୍ମୃତି ॥୩॥

ଜଗତ ମଙ୍ଗଳ ଆମର ଲକ୍ଷ୍ୟ ... ଆମେ ଜଗତର ଜନ ସେବକ
ପ୍ରତିରକ୍ତ ବିନ୍ଦୁ ଲୋଡ଼ଇ ଆମର ... ଜଗତ ଶାନ୍ତି ଜଗତ ଶାନ୍ତି ॥୪॥



# ମୃତ୍ୟୁଞ୍ଜୟୀ

## ଅନ୍ତିମ ଜୟନ୍ତୀରେ ଭାବନା

୧୯୪୭ ମସିହା ଅକ୍ଟୋବର ୨ ତାରିଖ । ଆଜି ହେଉଛି ମହାତ୍ମାଗାନ୍ଧିଙ୍କର ଜନ୍ମ ଦିବସ । ୧୨୫ ବର୍ଷ ବଞ୍ଚିବେ ବୋଲି ଇଚ୍ଛା ପୋଷଣ କରିଥିବା ବାପୁ ଆଜି ୭୯ ବର୍ଷ ବୟସରେ ପଦାର୍ପଣ କଲେ । ସାଂପ୍ରତିକ ପରିସ୍ଥିତିକୁ ଦେଖିବାପରେ ଆଉ ଅଧିକ ଦିନ ବଞ୍ଚିବାକୁ ଚାହୁଁ ନାହାନ୍ତି ବୋଲି ସେ ସୂଚାଇ ଦେଇଥିଲେ । ସେ କହୁଥିଲେ 'ଭଗବାନଙ୍କୁ ମୋର ଏକ ପ୍ରାର୍ଥନା ସେ ଶୀଘ୍ର ମୋତେ ଏ ମର ସଂସାରରୁ ନେଇଯାଆନ୍ତୁ । ସେ ଯେଉଁ ଭାରତକୁ ଭଲ ପାଉଥିଲେ, ତାହାର ଅବମୂଲ୍ୟାୟନ ଆରମ୍ଭ ହୋଇଛି । ଏହି ଅଧଃପତନ ପ୍ରକ୍ରିୟା ଚୂଡ଼ାନ୍ତ ହେବାପୂର୍ବରୁ ସେ ମୃତ୍ୟୁ ଚାହାନ୍ତି ବୋଲି ବାପୁ ପାର୍ଥନା ସଭାରେ ବାରମ୍ବାର କହିଥିଲେ । ଲୋକମାନଙ୍କର ପାଶବିକ ମନୋବୃତ୍ତିରେ ପରିବର୍ତ୍ତନ ପାଇଁ ଆଉ ଏକ ଅନଶନ କରିବାକୁ ସେ ଚାହୁଁ ନଥିଲେ । ଏହା ସତ୍ତ୍ୱେ ନିଜର ଆତ୍ମଶୁଦ୍ଧି ପାଇଁ ସେ ଅକ୍ଟୋବର ୧ ସନ୍ଧ୍ୟାରୁ ୨୪ ଘଣ୍ଟିଆ ଅନଶନ ଆରମ୍ଭ କରିଥିଲେ । ଆଜି ମଧ ପ୍ରତିଦିନ ପରି ସେ ଭୋର ୩ଟାରେ ଉଠି ନିତ୍ୟ କର୍ମ ସାରି ସକାଳ ପ୍ରାର୍ଥନା ଓ ଗୀତାପାଠ ଆଦି କରିଥିଲେ । ପିଲାବେଳର ଅନେକ କଥା ତାଙ୍କର ମନେ ପଡ଼ିଲା । ବିଦ୍ୟାଳୟରେ ଅନୁଷ୍ଠିତ ଏକ ନାଟକରେ ହରିଶ୍ଚନ୍ଦ୍ର ଭୂମିକାରେ ଅବତୀର୍ଣ୍ଣ ହୋଇଥିବାବେଳେ ତାଙ୍କର ଯେଉଁ ଅନୁଭୂତି ତାହା ମଧ ମନେ ପଡ଼ିଥିଲା; ସେ କହୁଥିଲେ ସମସ୍ତେ କାହିଁକି ହରିଶ୍ଚନ୍ଦ୍ରଙ୍କ ପରି ସତ୍ୟବାଦୀ ହେଉ ନାହାନ୍ତି । ପୁଣି ତାଙ୍କର ମନେ ପଡ଼ିଗଲା ୧୮୮୩ରେ ସେ କସ୍ତୁରବାଙ୍କୁ ବିବାହ କରିଥିଲେ । ୧୮୮୮ରେ ପାଠ ପଢ଼ିବାକୁ ଲଣ୍ଡନ ଗଲେ, ୧୮୯୦ରେ ଏଡ୍‌ଉଇନ ଆଇନଷ୍ଟାଇନଙ୍କ ଦ୍ୱାରା ଇଂରାଜୀରେ ଅନୁବାଦିତ ଭଗବଦ୍‌ଗୀତା ପାଠ, ୧୮୯୩ରେ ସାଉଥ ଆଫ୍ରିକାରେ ଓକିଲାତି, ୧୮୯୬ରେ ଅହିଂସାବ୍ରତ ଆରମ୍ଭ, ୧୯୦୪ରେ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣ ବିଦ୍ୱେଷୀ ସରକାର ବିରୋଧରେ ଆନ୍ଦୋଳନ ସଙ୍ଗଠନ କରିବା ଏବଂ ୧୯୧୫ରେ ଭାରତ ଆଗମନ ଓ ତାହାପରେ ନିରବଚ୍ଛିନ୍ନ ଭାବେ ବ୍ରିଟିଶ ସରକାର ବିରୋଧରେ ସ୍ୱାଧୀନତା ପାଇଁ ସଂଗ୍ରାମ । ସବୁ ଜନ୍ମଦିନରେ ଗାନ୍ଧିଜୀଙ୍କର ଦେହ ପ୍ରାୟତଃ ଭଲ ରହେନାହିଁ । ଆଜି ମଧ ଜୋରରେ କାଶ ହେଲା । ସାବରମତୀରେ ତାଙ୍କର ୫୦ ତମ ଜନ୍ମ ବାର୍ଷିକୀ ପାଳନ କରାଯାଉଥିବା ବେଳେ ଦେହ ଏତେ ଖରାପ ହୋଇଥିଲା ଯେ ତାଙ୍କର ପୁଅମାନଙ୍କ ପାଖକୁ ଆସିବା ପାଇଁ ତାରବାର୍ତ୍ତା ପଠାଯାଇଥିଲା । ସେ ଭଲ ହୋଇଯିବେ ବୋଲି ଭଗବାନଙ୍କ ଉପରେ ତାଙ୍କର ଦୃଢ଼ ଆସ୍ଥା ଥିଲା ଏବଂ ସେ ଭଲ ହୋଇ ଯାଇଥିଲେ । ଏବେ ଜୀବନପ୍ରତି ତାଙ୍କର ବିତୃଷ୍ଣା ଜନ୍ମିଛି । ଆଜି ଜନ୍ମ ଦିନରେ ତାଙ୍କୁ ସମ୍ବର୍ଦ୍ଧନା ପାଇଁ ଗଭର୍ଣ୍ଣର ଜେନେରାଲ ମାଉଣ୍ଟ ବ୍ୟାଟେନ, ତାଙ୍କ ପତ୍ନୀ, ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ, ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସମେତ ବହୁ ବିଶିଷ୍ଟ ବ୍ୟକ୍ତି ବିରଳା ଭବନ ଆସିଥିଲେ । ସମସ୍ତେ ତାଙ୍କର ଦୀର୍ଘଜୀବନ କାମନା କରୁଥିବାବେଳେ ବାପୁଙ୍କ ଓଠରେ ମ୍ଳାନ ହସଟିଏ ଖେଳି ଯାଇଥିଲା ।

ସକାଳେ ଏକ ସ୍ୱତନ୍ତ୍ର ପ୍ରାର୍ଥନା ସଭାହେଲା ଏବଂ ଏଥିରେ ପଣ୍ଡିତ ନେହେରୁ ଓ ଶ୍ରୀ କେଏମ୍ ମୁନ୍‌ସୀ ଯୋଗ ଦେଇଥିଲେ । ବିଭିନ୍ନ ଧର୍ମଗ୍ରନ୍ଥର ଶ୍ଳୋକ ପାଠ କରାଯାଇଥିଲା । ଭାରତ ଓ ପାକିସ୍ଥାନ ଶାନ୍ତିରେ ରହିବା ପାଇଁ ଗାନ୍ଧି ପ୍ରାର୍ଥନା କରିଥିଲେ । ଦେଶବିଦେଶରୁ ବହୁ ଶୁଭେଚ୍ଛାବାର୍ତ୍ତାମାନ ଆସିଥିଲା । ତେବେ ସବୁବାର୍ତ୍ତା ମଧ୍ୟରେ ଶ୍ରୀମତୀ ସରୋଜିନୀ ନାଇଡୁଙ୍କର ବାର୍ତ୍ତା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଥିଲା । ସେ ଲେଖିଥିଲେ ଆଜି ଗାନ୍ଧିଜୀ କାହିଁକି ସମଗ୍ର ପୃଥିବୀର ସର୍ବୋଚ୍ଚ ନୈତିକ ଶକ୍ତିର ପ୍ରତିନିଧି ହୋଇଛନ୍ତି ? ଛୋଟିଆ ମଣିଷଟିଏ, ଦୁର୍ବଳ

ଶରୀର, ଧନ ସଂପତ୍ତି ବୋଇଲେ କିଛି ନାହିଁ, ସାଂସାରିକ ଗୁରୁତ୍ୱ ନାହିଁ । ଏହା ସତ୍ତ୍ୱେ ସମ୍ରାଟ ମାନଙ୍କଠାରୁ ସେ ମହାନ, ଏହି ବର୍ଷମାନଙ୍କ ମଧ୍ୟରେ ସେ ଅନେକ ଦୁର୍ଭେଦ୍ୟ ଶକ୍ତିର ସମ୍ମୁଖୀନ ହୋଇଛନ୍ତି । ସାମ୍ରାଜ୍ୟର ପତନ ଘଟାଇଛନ୍ତି । ମୃତ୍ୟୁକୁ ଜୟ କରିଛନ୍ତି, ସେ ପ୍ରହେଳିକା ସୃଷ୍ଟି କରି ସମସ୍ତଙ୍କୁ ଚମତ୍କୃତ କରିଛନ୍ତି । ଈଶ୍ୱର ପରି ଲୋକେ ତାଙ୍କୁ ମାନନ୍ତି । ଜନସାଧାରଣଙ୍କ ହୃଦୟ ଓ ମନକୁ ସେ ପ୍ରଭାବିତ କରିଛନ୍ତି । ଏହାର କାରଣ ହେଉଛି ମାନବଜାତିର ମହାନ ଶିକ୍ଷକ ଗୁରୁମାନଙ୍କ ସହ ତାଙ୍କୁ ତୁଳନା କରାଯାଏ । ନୈରାଶ୍ୟ ହୃଦୟରେ ସେ ଆଶା ଭରିଦିଅନ୍ତି, ଭୀରୁ ମନରେ ଶତସିଂହର ବଳ ସୃଷ୍ଟି କରନ୍ତି, ପତିତମାନଙ୍କୁ ଉତ୍ଥାନ କରନ୍ତି ଏବଂ ମାନବିକତା ଓ ପବିତ୍ରତା ହରାଇ ଥିବା ଜଘନ୍ୟ ଶକ୍ତିମାନଙ୍କୁ ସେ ଭଲବାଟକୁ ଆଣି ପାରିଛନ୍ତି । ଗାନ୍ଧି ମୋର ନେତା, ବନ୍ଧୁ ଓ ପିତା ତାଙ୍କୁ ମୁଁ ପ୍ରଣାମ କରୁଛି । ବନ୍ଧୁ ରାଜାଜୀ ତାଙ୍କ ବାର୍ତ୍ତାରେ ଲେଖିଥିଲେ 'ନୈରାଶ୍ୟର ଏହି ଘୋର ଅନ୍ଧକାରରେ ମାତ୍ର ଗୋଟିଏ ବତି ଜଳୁଛି ଏବଂ ସେହି ବତି ହେଉଛନ୍ତି ମହାତ୍ମା ଗାନ୍ଧି । ସେ ହେଉଛନ୍ତି ଭାରତରେ ଶାନ୍ତିର ସ୍ତମ୍ଭ' ।

ସନ୍ଧ୍ୟାରେ ପ୍ରାର୍ଥନା ସଭାରେ ବାପୁ କହିଲେ, '୧୯୧୫ରେ ଭାରତକୁ ପ୍ରତ୍ୟାବର୍ତ୍ତନ କରିବା ଦିନଠାରୁ ସାଂପ୍ରଦାୟିକ ସଦ୍‌ଭାବ ପାଇଁ ମୁଁ କାର୍ଯ୍ୟ କରି ଆସୁଛି । ମୁଁ ଭାବୁଛି ଯେ ଯଦିଓ ଆମର ଧର୍ମ ହେଉଛି ଭିନ୍ନ ଏହା ସତ୍ତ୍ୱେ ଆମେ ସବୁ ଭାଇ ଭାଇ ପରି ଚଳି ପାରିବା । ଆଜି ମୁଁ ଦେଖୁଛି ଆମେ ସବୁ ପରସ୍ପରର ଶତ୍ରୁ ହୋଇ ଯାଇଛେ । ଏପରି ସ୍ଥଳେ ଭାରତରେ ମୋର ସ୍ଥାନ କେଉଁଠି । ମୋର ଆଉ ବଞ୍ଚିରହିବାରେ କ'ଣ ଅଛି । ଆଉ ୧୨୫ ବର୍ଷ ବଞ୍ଚିବା କଥା ମୁଁ ଭାବୁନାହିଁ । ମତେ ୭୯ବର୍ଷ ହେଲା । ଏଥିରେ ମୁଁ ଅତ୍ୟନ୍ତ ଦୁଃଖିତ । ଯେଉଁମାନେ ମତେ ବୁଝିଛନ୍ତି ସେମାନଙ୍କୁ ମୁଁ ଜଣାଇ ଦେବାକୁ ଚାହେଁ ଯେ ଆମ ଭିତରେ ଥିବା ପାଶବିକ ମନୋବୃତ୍ତି ଆମେ ତୁରନ୍ତ ତ୍ୟାଗ କରିବା ଉଚିତ । ଯଦି ଆପଣମାନେ ପ୍ରକୃତରେ ମୋର ଜନ୍ମଦିନ ପାଳନ କରିବାକୁ ଚାହାନ୍ତି ତେବେ ସାଂପ୍ରଦାୟିକ ଦଙ୍ଗାଠାରୁ ଦୂରରେ ରହି ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା ପାଇଁ କାର୍ଯ୍ୟ କରନ୍ତୁ । ଯଦି ଆପଣଙ୍କ ମନରେ କ୍ରୋଧ ଅଛି, ତେବେ ତାହା ଆପଣମାନେ ଦୂର କରନ୍ତୁ । ଯଦି ଆପଣମାନେ ଏତିକି ମନେ ରଖିବେ, ତେବେ ତାହା ଅତି ଉତ୍ତମ ହେବ । ଏହା ହିଁ ଆଜି ମୁଁ ଆପଣମାନଙ୍କୁ କହିବାକୁ ଚାହେଁ । ●●●

(୧୯.୧୦.୯୭ ତାରିଖ "ସମାଜ"ରୁ ଗୃହୀତ)

## ଭାଗ୍ୟ ବିଧାତା

ଆମେ ଆମ ଦେଶ ଭାଗ୍ୟ ବିଧାତା
ଆମ ଭାଗ୍ୟ ଲିପି ଆମେ ନଲେଖିଲେ ଲେଖି ନପାରିବେ ବିଧାତା ॥୦॥

ଆମେ ଆମ ଦେଶ ଭଲ ପାଇବୁ
ଆମେ ଦେଶ ଲାଗି ଜୀବନ ଦେବୁ
ପଞ୍ଚଶୀଳ-ବ୍ରତ ପାଳିବୁ ସତତ
ନକରିବୁଁ କାରେ ଶତ୍ରୁତା ---(୧)

ଆମେ ଗୀତା ଭାଗବତ ପଢ଼ିବୁଁ
ଆମେ ମିଛ କହିବାକୁ ଡରିବୁଁ
ଆମ ପିତାମାତା ଗୁରୁଜନ ପାଶେ
ଦେଖାଇବୁ ସଦା ନମ୍ରତା ---(୨)

ଆମେ ବେଦ ବାଇବେଲ କୋରାନ
ସବୁ ପଢ଼ି ଦେଖାଇବୁ ସମ୍ମାନ
କୌଣସି ଧର୍ମେ ନିନ୍ଦା ନକରିବୁ
ଆଚରିବୁ ସଦା ନମ୍ରତା ---(୩)

ଆମ ଭାଇକଥା ଆମେ ବୁଝିବୁ
ଆମ ଦେଶ ଆମେ ନିଜେ ଶାସିବୁ
କାହାରି ହାତକୁ ଆମ ଭାଗ୍ୟଡୋରୀ
ଦେବୁ ନାହିଁ ଧ୍ରୁବ ଏକଥା ---(୪)



# ମୃତ୍ୟୁଂଜୟୀ ଗାନ୍ଧୀ

ମୂଳଲେଖା : ଏମ୍.ଏସ୍.କୁନେଜା
ଅନୁବାଦ : ସୁମିତ୍ରା ଚୌଧୁରୀ

ଯଦି କେହି ସମାଜର ସେବା କରିବାକୁ ଚାହାନ୍ତି ଏବଂ ସବୁ ବେଳରେ ନ୍ୟାୟ ବାଟରେ ଚାଲନ୍ତି ତାହେଲେ ତାଙ୍କୁ ନିଜ ଉପରେ ଶାରୀରିକ ଆକ୍ରମଣ ପାଇଁ ପ୍ରସ୍ତୁତ ରହିବାକୁ ପଡ଼ିବ । ଏହିପରି ଆକ୍ରମଣ ପ୍ରକୃତରେ ଉତ୍ତମ ଏବଂ ଏହାକୁ ପୁରସ୍କାର ବୋଲି ମନେ କରାଯିବା ଉଚିତ । ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କର (୧୮୬୯-୧୯୪୮) ଜନପ୍ରିୟତାର ଗୋଟିଏ ଦିଗ ହେଉଛି ତାଙ୍କର ବିପଦ ସଙ୍କୁଳ ଜୀବନ । ଅର୍ଦ୍ଧଶତାବ୍ଦୀର ଅଧିକ ତାଙ୍କର ସାଧାରଣ ଜୀବନ ଭିତରେ ତାଙ୍କୁ ନ ବୁଝି ପାରୁଥିବା ଲୋକମାନେ ତାଙ୍କୁ ବହୁଥର ଆକ୍ରମଣ ଓ ଧମକ ଦେଇଥିଲେ ଏବଂ ଏସବୁର ଫଳ ମଧ ବିପଦଜନକ ହୋଇଥିଲା । ତଥାପି ସେ ତାଙ୍କର ନିର୍ଦ୍ଦିଷ୍ଟ ପଥରୁ ବିଚ୍ୟୁତ ହୋଇ ନଥିଲେ । ବାସ୍ତବରେ ଏହିସବୁ ବିପଦ ତାଙ୍କୁ ନିଜର ଆକାଂକ୍ଷିତ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ତାଙ୍କର ପ୍ରତିଜ୍ଞାକୁ ବଳବତ୍ତର କରିଥିଲା ।

ଗାନ୍ଧୀଜୀଙ୍କର ଜୀବନ ପ୍ରତି ପ୍ରଥମ ବିପଦ ଆସିଥିଲା ଦକ୍ଷିଣ ଆଫ୍ରିକାର ନାଟାଲ ପ୍ରଦେଶର ଡାରବାନରେ ୧୩ ଜାନୁୟାରୀ- ୧୮୯୬ରେ ଯେତେବେଳେ ସେ ଭାରତରୁ ଜାହାଜରେ ଫେରିଥିଲେ । ଯଦିଓ ସେ ପୂରାପୂରି ନିର୍ଦ୍ଦୋଷ ଥିଲେ ତଥାପି ଶ୍ୱେତକାୟମାନେ ତାଙ୍କୁ ନିମ୍ନଲିଖିତ ଦୋଷରେ ଦୋଷୀ କରିଥିଲେ । "ସେ ଯେତେବେଳେ ଭାରତରେ ଥିଲେ (ଜୁଲାଇ-ନଭେମ୍ବର-୧୮୯୬) ସେତେବେଳେ ସେ ନାଟାଲର ଶ୍ୱେତକାୟମାନଙ୍କର ବହୁତ ନିନ୍ଦାବାଦ କରିଛନ୍ତି, ତାଙ୍କର ଉଦ୍ଦେଶ୍ୟ ହେଉଛି ନାଟାଲରେ ଭାରତୀୟମାନଙ୍କୁ ଆଣି ଭର୍ତ୍ତି କରିବା ଏବଂ ସେ ଦୁଇଟି ଜାହାଜ ଭର୍ତ୍ତି କରି ଭାରତୀୟ ଯାତ୍ରୀ ଆଣିଛନ୍ତି ନାଟାଲରେ ବସବାସ କରେଇବାପାଇଁ ।"

ଗାନ୍ଧୀ ପହଁଞ୍ଚିଲା ମାତ୍ର କେତକେ ଯୁବକ ତାଙ୍କୁ ଚିହ୍ନି ପାରିଲେ ଏବଂ ପାଟି କରିବାକୁ ଲାଗିଲେ, " ଗାନ୍ଧୀ, ଗାନ୍ଧୀ ।" ତାପରେ ସେମାନେ ତାଙ୍କୁ ଟେକା, ପଥର, ପଚା ଅଣ୍ଡା ପକେଇବାକୁ ଲାଗିଲେ । ଜଣେ ତାଙ୍କର ପଗଡ଼ୀ ଛଡ଼େଇ ନେଲେ, ଅନ୍ୟମାନେ ତାଙ୍କୁ ମାଡ଼ ଗୋଇଠା ଦେବାକୁ ଲାଗିଲେ । ଭାଗ୍ୟକ୍ରମେ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟଙ୍କର ସ୍ତ୍ରୀ ଶ୍ରୀମତୀ ଆଲେକ୍‌ଜାଣ୍ଡାର ସେ ବାଟ ଦେଇ ଯାଉଥିଲେ ଏବଂ ସେ ଗାନ୍ଧୀଙ୍କୁ ରକ୍ଷା କରିବାକୁ ଆସିଲେ । ଜଣେ ଭାରତୀୟ ଯୁବକ ଏହା ଭିତରେ ପୁଲିସକୁ ଖବର ଦେଇଥିଲେ ଏବଂ ପୁଲିସ ଗୁରୁତରଭାବରେ ଆହତ ଗାନ୍ଧୀଙ୍କୁ ରୁସ୍ତମଜୀଙ୍କର ଘରକୁ ନେଇଥିଲେ ।

କିନ୍ତୁ ସେ ଗୋରା ଜନତା ଗାନ୍ଧିଜୀଙ୍କୁ ମାରିବା ପାଇଁ ଏତେଦୂର ଜିଦ୍ ଧରିଥିଲେ ଯେ ସେମାନେ ସେ ଘରକୁ ଘେରାଓ କରିଥିଲେ ଏବଂ ପାଟି କରିବାକୁ ଲାଗିଥିଲେ, "ଆମର ଗାନ୍ଧୀଙ୍କୁ ଅବଶ୍ୟ ଦରକାର ।" ଭାଗ୍ୟବଶତଃ ଗାନ୍ଧିଜୀ ସେ ଘରରୁ ଗୋପନରେ ଓ ନିରାପଦରେ ଚାଲି ଯାଇଥିଲେ । ପୁଲିସ୍ ସୁପରିନ୍‌ଟେଣ୍ଡେଣ୍ଟ ଆଲେକ୍‌ଜାଣ୍ଡରାଙ୍କର ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ ହିଁ ଗାନ୍ଧୀ ରକ୍ଷାପାଇ ପାରିଥିଲେ । କାରଣ ସେତେବେଳେ "ଗାନ୍ଧୀ ବୁଢ଼ାକୁ ଖଟା ସେଓ ଗଛରେ ଫାଶୀ ଦିଅ ।" ଗୀତ ଶୁଣେଇ ସେ ଭିଡ଼କୁ ଖୁସି ରଖିଥିଲେ । ଏହିପରି ଭାବରେ ଯେଉଁ ଲୋକଟିର ଦିନେ ଏକ ଐତିହାସିକ ବ୍ୟକ୍ତି ହେବାର ଥିଲା ତାଙ୍କର ଜୀବନ ରକ୍ଷା କରିବାରେ ଏହି ଆଲେକ୍‌ଜାଣ୍ଡରା ଦମ୍ପତି ନିମିତ୍ତ ହୋଇଥିଲେ ।

ଦକ୍ଷିଣ ଆଫ୍ରିକାରେ ଅନ୍ୟାନ୍ୟ ଘଟଣାରେ ମଧ ଗାନ୍ଧିଜୀ ଏହପରି ଆକ୍ରମଣର ସମ୍ମୁଖୀନ ହୋଇଥିଲେ । ବିଶେଷ କରି ୩୧ ଜାନୁୟାରୀ ଓ ୧୦ ଫେବୃୟାରୀ

୧୯୦୮ରେ ଏସିୟାଟିକ୍ ରେଜିଷ୍ଟ୍ରେସନ ଆଇନ ଘଟଣାରେ । ମାର୍ଚ୍ଚ ୨୨, ୧୯୦୭ରେ ଟ୍ରାନସଭାଲ ପାର୍ଲାମେଣ୍ଟରେ ଆଇନ ପାସ୍ ହୋଇଥିଲା ଯେ ଏସିୟାର ଲୋକମାନଙ୍କୁ ନାମ ରେଜେଷ୍ଟ୍ରୀ କରିବାକୁ ହେବ ଏବଂ ଦଶ ଆଙ୍ଗୁଠି ଟିପଚିହ୍ନ ଦେବାକୁ ପଡ଼ିବ । ଗାନ୍ଧୀ ଏହି ଅପମାନଜନକ ଆଇନ ବିରୁଦ୍ଧରେ ଜନ ସତ୍ୟାଗ୍ରହ ଆରମ୍ଭ କଲେ ଏବଂ ୧୦ ଜାନୁୟାରୀ-୧୯୦୮ରେ ବନ୍ଦୀ ହେଲେ । ପୁଣି ଜେନେରାଲ ସ୍ମଟଙ୍କ ସହିତ ସ୍ୱଇଚ୍ଛାରେ ରେଜିଷ୍ଟ୍ରେସନ କରିବାର କଥାରେ ଗୋଟିଏ ରାଜିନାମା ହେବାରୁ ଗାନ୍ଧୀଙ୍କୁ ଛାଡ଼ି ଦିଆଗଲା ।

ଗାନ୍ଧୀ ୩୧ ଜାନୁୟାରୀ ମଧ୍ୟରାତ୍ରିରେ ଜୋହାନ୍ସବର୍ଗରେ ଭାରତୀୟମାନଙ୍କୁ ଏହି ରାଜୀନାମା ବୁଝେଇବା ପାଇଁ ଗୋଟିଏ ସଭାରେ ଭାଷଣ ଦେଲେ । ସେ କହିଲାବେଳକୁ ଶ୍ରୋତାମାନଙ୍କ ଭିତରରୁ ଜଣେ ପଠାଣ ଉଠି ଛିଡ଼ା ହେଲେ ଏବଂ ୧୫,୦୦୦ ପାଉଣ୍ଡରେ ଜେନେରାଲ ସ୍ମଟଙ୍କ ପାଖରେ ସେ ନିଜକୁ ବିକ୍ରୀ କରିଛନ୍ତି ବୋଲି ଗାନ୍ଧୀ ଉପରେ ଦୋଷାରୋପ କଲେ । ସେ ଘୋଷଣା କଲେ ଯେ, "ଆମେ କେବେ ଟିପଚିହ୍ନ ଦେବୁ ନାହିଁ ଏବଂ ଅନ୍ୟମାନଙ୍କୁ ଦିଆଇ ଦେବୁ ନାହିଁ । ମୁଁ ଆଲ୍ଲାର ନାମରେ ପ୍ରତିଜ୍ଞା କରୁଛି ଯେ, ଯେଉଁ ବ୍ୟକ୍ତି ରେଜିଷ୍ଟ୍ରେସନ ପାଇଁ ପ୍ରଥମରେ ଦରଖାସ୍ତ କରିବେ ତାଙ୍କୁ ମୁଁ ଜୀବନରେ ମାରି ଦେବି ।"

ଗାନ୍ଧିଜୀ ଉତ୍ତରରେ କହିଲେ, "ମୃତ୍ୟୁ ତ ଜୀବନରେ ଅନିବାର୍ଯ୍ୟ । ରୋଗ ବା ଅନ୍ୟ କୌଣସି ଭାବରେ ମରିବା ଅପେକ୍ଷା ଜଣେ ଭାଇ ହାତରେ ମରିବାରେ ମୋର କିଛି ଦୁଃଖ ନାହିଁ, ଏବଂ ଏଥିପାଇଁ ଯଦି ମୋର ହତ୍ୟାକାରୀ ପ୍ରତି କ୍ରୋଧରୁ ମୁଁ ମୁକ୍ତ ରହେ ତ ଦିନେ ସେ ବୁଝିପାରିବେ ଯେ ମୁଁ ସଂପୂର୍ଣ୍ଣ ନିର୍ଦ୍ଦୋଷ ।"

ନିଜର ଜୀବନ ପ୍ରତି ଭ୍ରୂକ୍ଷେପ ନ କରି ଗାନ୍ଧୀ, ଇଉସୁଫ ମିଆଁ ଓ ଥାମ୍ବି ନାଇଡୁଙ୍କ ସହ ୧୦ ଫେବୃୟାରୀରେ ଜୋହାନ୍ସବର୍ଗ ରେଜିଷ୍ଟ୍ରେସନ ଅଫିସକୁ ଦଶ ଆଙ୍ଗୁଠିର ଟିପଚିହ୍ନ ଦେଇ ରେଜିଷ୍ଟ୍ରେସନ ସାର୍ଟିଫିକେଟ ଆଣିବାକୁ ଯାଇଥିଲେ । ପ୍ରତିଜ୍ଞାବଦ୍ଧ ପଠାଣମାନେ ମୀର ଆଲାମ ଖାଁଙ୍କର ନେତୃତ୍ୱରେ ଗାନ୍ଧୀଙ୍କୁ ଅନୁସରଣ କଲେ ଏବଂ ଭାରୀ ଠେଙ୍ଗାରେ ତାଙ୍କୁ ଆକ୍ରମଣ କଲେ । ସେ 'ହାୟ ରାମ' ବାକ୍ୟଟି କହି ତଳେ ପଡ଼ିଗଲେ; କିନ୍ତୁ ତାପରେ ବି ସେମାନେ ତାଙ୍କୁ ଲୁହାଛଡ଼ରେ ଓ ବାଡ଼ିରେ ପିଟିଲେ ଏବଂ ଅଚେତ ଓ ରକ୍ତାକ୍ତ ଅବସ୍ଥାରେ ତାଙ୍କୁ ନିର୍ଦ୍ଦୟଭାବରେ ଗୋଇଠା ମାରିଲେ । ତାଙ୍କର ସାଥୀମାନେ ବି ମାଡ଼ ଖାଇଲେ । ଗୁରୁତର ଭାବରେ ଆହତ ଗାନ୍ଧୀଙ୍କୁ ନିକଟସ୍ଥ ଏକ ଅଫିସକୁ ଉଠେଇ ନିଆଗଲା । ତାଙ୍କର ଚେତା ଆସିବା ମାତ୍ରେ ସେ ଆଲାମ ଖାଁ ଏବଂ ତାଙ୍କର ସାଥୀମାନଙ୍କ କଥା ପଚାରିଲେ ।

ଗାନ୍ଧୀ ଆଫ୍ରିକାରେ ଥିବାବେଳେ ତାଙ୍କ ଉପରେ ଶେଷ ଆକ୍ରମଣ ହୋଇଥିଲା ନଭେମ୍ବର ୧୯୦୮ରେ ଜୋହାନ୍ସବର୍ଗ ଜେଲରେ ତାଙ୍କର ଜଣେ ସହ ବନ୍ଦୀଙ୍କ ଦ୍ୱାରା । ୧୯୦୭ ଅକ୍ଟୋବରରେ ଗାନ୍ଧୀ ବିନା ରେଜିଷ୍ଟ୍ରେସନରେ ଟ୍ରାନ୍ସଭାଲ୍ ରେ ପ୍ରବେଶ କରିଥିବାରୁ ଭୋଲକ୍ସ ରାଷ୍ଟ୍ରଯାଇଥିଲେ । ବୁଢ଼ା ଆଙ୍ଗୁଠି ଛାପ ଦେବାକୁ ମନା କରିବାରୁ ସେ ଗିରଫ ହେଲେ ଓ ତିନିମାସ ସଶ୍ରମ କାରାଦଣ୍ଡ ପାଇଲେ । ତାଙ୍କୁ ଜୋହାନ୍ସବର୍ଗ ଜେଲକୁ ପଠେଇ ଦିଆଗଲା ଏବଂ କଠିନ ପରିଶ୍ରମ ଦଣ୍ଡ ପାଇଥିବା କାଫିର (ଦକ୍ଷିଣ ଆଫ୍ରିକାର ନିଗ୍ରୋ ଜାତିର ଲୋକ) ଓ ଭାରତୀୟମାନଙ୍କର ଓୟାର୍ଡରେ ରଖାଗଲା । ସେ ଜେଲର ପାଇଖାନାରେ କବାଟ ନଥାଏ । ଗାନ୍ଧୀ ଯେତେବେଳେ ଏପରି ଗୋଟିଏ ପାଇଖାନାରେ ବସିଥିଲେ ଜଣେ ବଳବାନ, ବେଶ ମୋଟା ତାଜା, ଭୀଷଣ ଚେହେରାର କାଫ୍ରି ଆସି ତାଙ୍କୁ ଉଠି ଆସିବାକୁ କହିଲେ ଏବଂ ଗାଳିଦେବାକୁ ଲାଗିଲେ । ଯଦିଓ ଗାନ୍ଧୀ ତାଙ୍କୁ ଶୀଘ୍ର ଉଠି ଆସୁଛନ୍ତି ବୋଲି କହିଲେ ତଥାପି ସେ ତାଙ୍କୁ ଟେକି ଫୋପାଡ଼ି ଦେଲେ । ଭାଗ୍ୟବଶତଃ ଗାନ୍ଧୀ କବାଟ ବନ୍ଧକୁ ଧରିପକେଇ ସାଂଘାତିକ ଭାବରେ ପଡ଼ିବା ଠାରୁ ରକ୍ଷା ପାଇଗଲେ । ଭାରତୀୟ ବନ୍ଦୀମାନଙ୍କର ଅସହାୟ ଓ ଦୁଃଖିତ ହୋଇ କାନ୍ଦିବା ବ୍ୟତୀତ ଉପାୟ କିଛି ନଥିଲା ।

ଜୀବନର ୨୧ ବର୍ଷ ଦକ୍ଷିଣ ଆଫ୍ରିକାରେ ବିତେଇ ଗାନ୍ଧୀ ଜାନୁୟାରୀ - ୧୯୧୫ରେ ଭାରତ ପ୍ରତ୍ୟାବର୍ତ୍ତନ କଲେ । କଳା ଆଇନ ବୋଲି ପରିଚିତ ରାଉଲଟ ଆଇନ ପାସ ହେବା ପରେ ଭାରତର ରାଜନୈତିକ ବାତାବରଣ ନୂଆ ମୋଡ଼ ନେଇଥିଲା । ଏହି ଆଇନର ପ୍ରତିବାଦରେ ୩୦ ମାର୍ଚ୍ଚ- ୧୯୧୯ରେ, ଗାନ୍ଧୀ ରାଷ୍ଟ୍ରୀୟ ସ୍ତରରେ ସତ୍ୟାଗ୍ରହ ଆରମ୍ଭ କଲେ ଏବଂ ପୁଣି ସେ ସତ୍ୟାଗ୍ରହ ୧୮ ଏପ୍ରିଲରେ ବନ୍ଦ କରିଦେଲେ । ଯେତେବେଳେ ଲୋକେ ବିଶେଷ କରି ପଞ୍ଜାବର ଲୋକମାନେ ଏହି ଆନ୍ଦୋଳନ ହଠାତ୍ ବନ୍ଦ କରିବା କଥା ଜାଣିଲେ ସେମାନେ ବଡ଼ ଆଘାତ ପାଇଲେ ଏବଂ କେତେକ ଯୁବକ ସେ ପଞ୍ଜାବରେ ପଶିଲେ ତାଙ୍କୁ ମାରି ଦେବେ ବୋଲି ଧମକ ଦେଲେ ।

ଏ ଧମକ କଥା ଜାଣି ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି, "କେତେକ କ୍ରୁଦ୍ଧ ପଞ୍ଜାବୀ ଯୁବକ ମତେ ସାମରିକ ଆଇନ ଜାରି ହେବା ପାଇଁ ଦାୟୀ କରୁଛନ୍ତି । ସେମାନେ କହୁଛନ୍ତି ଯେ ଯଦି ମୁଁ ଆଇନଅମାନ୍ୟ ଆନ୍ଦୋଳନ ବନ୍ଦ କରି ନଥାନ୍ତି ତ ଜାଲିୟାଁୱାଲାବାଗ ହତ୍ୟାକାଣ୍ଡ ହୋଇ ନଥାନ୍ତା । ସେମାନଙ୍କ ଭିତରେ କେତେଜଣ ପୁଣି ଯଦି ମୁଁ ପଞ୍ଜାବ ଯାଏ ତ ମତେ ମାରି ଦେବେ ବୋଲି ଭୟ ମଧ ଦେଖେଇବା ଯାଏ ଯାଉଛନ୍ତି ।"

ଭାରତର ସବୁଠାରୁ ବେଶୀ ଅହିଂସ ସମ୍ପ୍ରଦାୟ ଜୈନମାନଙ୍କ ଦ୍ୱାରା ମଧ ଗାନ୍ଧୀଙ୍କୁ ମାରି ଦେବାର ଧମକ ଦିଆଯାଇଥିଲା । ଥରେ ସେ ଗୋଟିଏ ବାଛୁରୀକୁ ମାରି ଦେବାପରି ଏକ ବିତର୍କିତ ବିଷୟରେ ସମ୍ପୃକ୍ତ ହୋଇଥିଲେ । ଡାକ୍ତରଙ୍କୁ ବାଛୁରୀଟିକୁ ଦୂରାରୋଗ୍ୟ ବ୍ୟାଧିରୁ ନିସ୍ତାର କରିବା ପାଇଁ ଇଞ୍ଜେକ୍ସନ ଦେଇ ମାରି ଦେବାକୁ ସେ କହିଥିଲେ । ଗାନ୍ଧିଜୀଙ୍କର ଏହି ଗୁରୁତର ହିଂସା କାର୍ଯ୍ୟ ପାଇଁ ସେ ଖୁବ ସମାଲୋଚିତ ହୋଇଥିଲେ ବିଶେଷକରି ଗାଈକୁ ଯେତେବେଳେ ପବିତ୍ର ଜନ୍ତୁ ବୋଲି ମନେ [illegible]ାଯାଏ । ଏହାର ଭୀଷଣ ପରିଣାମ ହେବରେ [illegible]ିବୀ ଅନେକ ଧମକ ପାଇଥିଲେ ।

ଏପରି କି ଜଣେ ବନ୍ଧୁ ତାଙ୍କୁ ଚିଠି ଲେଖିଲେ- "ଯଦି ଏହା ବଦଳରେ ଆପଣଙ୍କୁ ମୁଁ ହତ୍ୟା ନକରେ ତ ମୁଁ ଜୈନ ହୋଇ ରହିବି ନାହିଁ ।"

ସବୁଠାରୁ ଯେଉଁ ତିକ୍ତ ଓ ସ୍ଥାୟୀ ବିରୋଧ ଗାନ୍ଧୀଜୀ ତାଙ୍କର ସାଧାରଣ ଜୀବନରେ ସାମ୍ନା କରିଥିଲେ ସେ ହେଉଛି ସନାତନୀ ହିନ୍ଦୁ ମାନଙ୍କଠାରୁ । ଗାନ୍ଧୀ ୧୯୩୪ରେ ହରିଜନ ଯାତ୍ରା ଆରମ୍ଭ କରିଥିଲେ । ବିଭିନ୍ନ ସ୍ଥାନରେ ନାନା ପ୍ରକାର ଉପାୟରେ ଅନ୍ଧ ବିଶ୍ୱାସୀ ହିନ୍ଦୁମାନେ ତାଙ୍କୁ ମାରି ଦେବାକୁ ଚାହୁଁଥିଲେ । ୨୫ ଜୁନରେ ଗାନ୍ଧୀ ରକ୍ଷା ପାଇଗଲେ କାରଣ ସେ ପଛ ଗାଡ଼ିରେ ଥିଲେ । ମହାରାଷ୍ଟ୍ର କଂଗ୍ରେସ କମିଟିର ଭୂତପୂର୍ବ ଅଧ୍ୟକ୍ଷ ଶ୍ରୀ ଭୂପତି କରଙ୍କର ସହ ସାତଜଣ ଲୋକ ଗୁରୁତର ଭାବରେ ଆହତ ହୋଇଥିଲେ । ଜୁଲାଇରେ ଗାନ୍ଧିଜୀ କରାଚି ପହଞ୍ଚିଲାବେଳକୁ ଜଣେ ଲୋକ ଏକ କୁରାଢ଼ୀ ଧରି ତାଙ୍କୁ ମାରିବାକୁ ଆସିଲେ । ସେ ଗାନ୍ଧିଜୀଙ୍କର ଜୀବନ ପ୍ରତି ମାରାତ୍ମକ ଆକ୍ରମଣ କରିବା ପୂର୍ବରୁ ପୁଲିସ ତାଙ୍କୁ ବନ୍ଦୀ କରିଥିଲେ ।

୧୦ ଜୁଲାଇରେ ଗାନ୍ଧିଜୀ ବନାରସ ଆସିଲେ । ସେଠି ସନାତନୀ ଲୋକମାନେ ପଣ୍ଡିତ ଲାଲନାଥ ଓ ବାବା କାଲ ଭୈରବଙ୍କର ନେତୃତ୍ୱରେ ସର୍ବସାଧାରଣରେ ତାଙ୍କର ଛବି ପୋଡ଼ିଥିଲେ ଓ ଉତ୍ତେଜନା ମୂଳକ ପୁସ୍ତିକା ସବୁ ବାଣ୍ଟିଥିଲେ । ସେଠିକାର ସାମାଜିକ ଏବଂ ଧାର୍ମିକ ବାତାବରଣ ଏପରି ଉତ୍ତେଜନାପୂର୍ଣ୍ଣ ହେଲା ଯେ ଜିଲ୍ଲାକର୍ତ୍ତୃପକ୍ଷ ଓ ସମାଜ ସେବୀମାନେ ଗାନ୍ଧିଜୀଙ୍କର ନିରାପତ୍ତା ବିଷୟରେ ସଜାଗ ହୋଇ ଉଠିଲେ ।

ଭାରତ ସ୍ୱାଧୀନତା ଯୁଦ୍ଧର ଶେଷ ପରିଚ୍ଛେଦରେ ସାଂପ୍ରଦାୟିକ ସମସ୍ୟା ଗୁରୁତର ହୋଇ ଉଠିଥିଲା । ଏମ୍. ଏ. ଜିନ୍ନାଙ୍କର ନେତୃତ୍ୱରେ ପାକିସ୍ତାନ ପାଇଁ ଦାବି ବଳଶାଳୀ ହୋଇ ଉଠିଥିଲା । ଯେତେବେଳେ ଗାନ୍ଧୀ ସାଂପ୍ରଦାୟିକ ପ୍ରଶ୍ନନେଇ ଜିନ୍ନାଙ୍କୁ ଭେଟିବାକୁ ଯାଉଥିଲେ କେତେଜଣ ହିନ୍ଦୁ ତାହାର ବିରୋଧ କରିଥିଲେ । ୩୧

ଅଗଷ୍ଟ ୧୯୪୪ରେ ପାକିସ୍ତାନ ବିରୋଧୀ ମଞ୍ଚର (ବମ୍ବେ) ନଅ ଜଣ ସ୍ୱେଚ୍ଛାସେବକ ୱାର୍ଦ୍ଧା ଯାଇଥିଲେ ଏବଂ ସେବାଗ୍ରାମ ଆଶ୍ରମରୁ ଗାନ୍ଧୀଙ୍କୁ ଜିନାଙ୍କ ସହ ସାକ୍ଷାତ କରିବାକୁ ନ ଛାଡ଼ିବା ପାଇଁ ପିକେଟିଂ କରିଥିଲେ । ସବୁ ସ୍ୱେଚ୍ଛାସେବକମାନେ ଗିରଫ ହୋଇଥିଲେ । ଯେତେବେଳେ ତାଙ୍କର ନେତା, ଏଲ.ଜି.ଥରେଙ୍କୁ ପୁଲିସ ଖାନତଲାସ କରିଥିଲେ ତାଙ୍କଠାରୁ ସାତ ଇଞ୍ଚ ଲମ୍ବା ଧାରୁଆ ଛୁରା ମିଳିଥିଲା ।

ଶେଷରେ ଗାନ୍ଧିଜୀଙ୍କୁ ବମ୍ବେ ନେବା ପାଇଁ ସ୍ୱତନ୍ତ୍ର ଟ୍ରେନ ୱାର୍ଦ୍ଧା ଛାଡ଼ିଲା ଏବଂ ଟ୍ରେନରେ ଖାକସାର ମୁସଲମାନ ସ୍ୱେଚ୍ଛାସେବକମାନଙ୍କୁ ଜଗୁଆଳୀ ରଖାଗଲା ଏବଂ ବ୍ରିଟିଶ ସୈନ୍ୟ ଦ୍ୱାରା ସୁରକ୍ଷିତ କରାଗଲା ।

ଯେତେବେଳେ ସାଂପ୍ରଦାୟିକ ଗଣ୍ଡଗୋଳ ଖୁବ୍ ଜୋରଦାର ହୋଇ ଉଠିଥିଲା ଗାନ୍ଧୀ କଲିକତା ଓ ଦିଲ୍ଲୀକୁ ତାଙ୍କର କାର୍ଯ୍ୟ ପାଇଁ ପ୍ରଧାନ ସ୍ଥାନ କରିଥିଲେ । ନିଜର ନିରାପତ୍ତା ପାଇଁ ବ୍ୟାକୁଳ ଲୋକେ ଗାନ୍ଧୀଙ୍କ ନିକଟରେ ଗଣ୍ଡଗୋଳ କରିବାକୁ ଚାହୁଁଥିଲେ, ଅନେକ ସମୟରେ ତାଙ୍କର ସଭାରେ ବାଧା ଦେଉଥିଲେ । ସେ ଯେଉଁଠାରେ ରହୁଥିଲେ ସେଠି ଟେକା ପକାଉଥିଲେ ଏବଂ 'ଗାନ୍ଧୀ ମରୁ' ବୋଲି ମଧ ବାରମ୍ବାର ପାଟି କରୁଥିଲେ । ଏହିପରି ଲୋକଙ୍କ ଭିତରେ କେତେଜଣ ଗାନ୍ଧୀ ଯେଉଁ ଟ୍ରେନ୍‌ରେ କଲିକତାରୁ ଦିଲ୍ଲୀ ଯାଉଥିଲେ ସେହି ଟ୍ରେନ୍ ଉପରେ ୭ ସେପ୍‌ଟେମ୍ବର-୧୯୪୭ରେ ବୋମା ପକେଇ ଥିଲେ ।

୧୯୪୮ରେ ୧୩ ଜାନୁୟାରୀ ଠାରୁ ୧୮ ଜାନୁୟାରୀ ଯାଏ ଦିଲ୍ଲୀରେ ବିରଲାଭବନଠାରେ ଗାନ୍ଧିଜୀଙ୍କର ସୁପ୍ରସିଦ୍ଧ ଉପବାସ ଗାନ୍ଧୀ କେବଳ ଦିଲ୍ଲୀର ସାଂପ୍ରଦାୟିକ ଶାନ୍ତି ପାଇଁ ହିଁ କରି ନଥିଲେ ମାତ୍ର ଦିଲ୍ଲୀ ଛାଡ଼ି ଯାଇଥିବା ମୁସଲମାନମାନଙ୍କର ଖାଲି ଘରେ ପୁଣି ସେମାନଙ୍କୁ ଅବସ୍ଥାପିତ କରିବା ଏବଂ ଅପବିତ୍ର ହୋଇଥିବା ମସଜିଦଗୁଡ଼ିକୁ ପୁଣି ପୁନରୁଦ୍ଧାର କରି ସେମାନଙ୍କୁ ବ୍ୟବହାର କରିବାକୁ ଦେବା ମଧ ସେ ଚାହିଁଥିଲେ । ଏହା ବ୍ୟତୀତ ପାକିସ୍ଥାନ କାଶ୍ମୀର ଆକ୍ରମଣ କରିଥିଲେ ସୁଦ୍ଧା ପୂର୍ବରୁ ହୋଇଥିବା ଚୁକ୍ତିକୁ ମାନି ଭାରତ ପାକିସ୍ଥାନକୁ ୫୫ କୋଟି ଟଙ୍କା ଦେଉ ଦେଉ ବୋଲି ସେ ଚାହିଁଥିଲେ । ବହୁ ସଂଖ୍ୟକ ସଂପ୍ରଦାୟର ଏକ ବଡ଼ ଅଂଶ ସ୍ପଷ୍ଟ ଭାବରେ ମନେ କରୁଥିଲେ ଯେ ଗାନ୍ଧୀଜୀଙ୍କର ମନୋଭାବ ସେମାନଙ୍କର ସ୍ଥିତି ପ୍ରତି କ୍ଷତିକାରକ ଏବଂ କେତେକ ଯୁବକ ହିନ୍ଦୁ ମହାସଭାବାଲା, ନାଥୁରାମ ଗଡସେ, ଏନ.ଡ଼ି.ଆପ୍ଟେ ଏବଂ ସେମାନଙ୍କର ବନ୍ଧୁମାନେ ମହାତ୍ମାଙ୍କୁ ମାରିଦେବା ପାଇଁ ସ୍ଥିର କ'ଲେ ।

ଏହିପରି ପରିସ୍ଥିତିରେ ଯେତେବେଳେ ହିନ୍ଦୁଧର୍ମାନ୍ଧତା ସର୍ବୋଚ୍ଚ ଶିଖରରେ ପହଞ୍ଚିଲା ସେତେବେଳେ ଜାନୁୟାରୀ ୨୦ ତାରିଖ, ୧୯୪୮ରେ ବିରଲା ଭବନଠାରେ ଗାନ୍ଧୀଜୀଙ୍କର ପ୍ରାର୍ଥନା ସଭାରେ ମଦନଲାଲ ପାହ୍ୱା ଦ୍ୱାରା ଏକ ବୋମା ବିସ୍ଫୋରଣ କରାଯାଇଥିଲା । ଏହି ପ୍ରୟାସ୍ ବିଫଳ ହୋଇଥିବାରୁ ୩୭ ବର୍ଷ ବୟସର ଅବିବାହିତ ଯୁବକ ଗଡ଼ସେ ୭୮ ବର୍ଷର ଗାନ୍ଧୀଙ୍କୁ ମାରିବା ପାଇଁ ଶେଷ ଚେଷ୍ଟାର ଯୋଜନା କଲେ ।

୩୦ ଜାନୁୟାରୀ ୧୯୪୮ ଶୁକ୍ରବାର ସନ୍ଧ୍ୟାରେ ଗାନ୍ଧୀଜୀ ତାଙ୍କର କୋଠରିରୁ ବାହାରିଲେ ବିରଲା ଭବନର ହତାରେ ପ୍ରାର୍ଥନା କରିବା ପାଇଁ । ଗାନ୍ଧୀ ହତ୍ୟାର ଚିତ୍ର ତାଙ୍କର ଭାଇ ଗୋପାଳ ଗଡ଼ସେଙ୍କୁ ବର୍ଣ୍ଣନା କରିବାକୁ ଯାଇ ହିନ୍ଦୁ ଧର୍ମାନ୍ଧତାର ପ୍ରତୀକ ନାଥୁରାମ ବିନାୟକ ଗଡ଼ସେ କହିଥିଲେ । "ଡାହାଣ ହାତରେ ମୁଁ ପିସ୍ତଲ ଧରି ହାତ ଯୋଡ଼ିଥିଲି ଏବଂ ନମସ୍ତେ କହିଥିଲି । ବାଁ ହାତରେ ମୁଁ ଝିଅଟିକୁ ଠେଲି ଦେଲି କାରଣ ସେ ଗୁଳି ଯିବାର ରାସ୍ତାରେ ଅସି ଯାଇ ପାରେ ବୋଲି ମୁନେ କରି । ତା'ପରେ ପରେ ଗୁଳି ଟାଲି ଗଲା ନିଜ ବାଟରେ । ମୁଁ ଦୁଇ ରାଉଣ୍ଡ ଗୁଳି ଚଳେଇଥିଲି କି ତିନି ରାଉଣ୍ଡ ଏହା ମୋର ମନେ ନାହିଁ । ଗାନ୍ଧୀ ଗଡ଼ି ଗଲେ ।"

ପୃଥିବୀର ଇତିହାସ ମହାନ ବ୍ୟକ୍ତିମାନଙ୍କର ଯଥା ସକ୍ରେଟିସ୍, ଜୁଲିୟସ ସିଜର, ଲିଙ୍କନ, ଟ୍ରଟ୍‌ସ୍କି, ମାର୍ଟିନ ଲୁଥାର କିଂ ଏବଂ କେନେଡ଼ି ପରି ଲୋକଙ୍କ ହତ୍ୟାରେ

ପୂର୍ଣ୍ଣ । କିନ୍ତୁ ଗାନ୍ଧୀଙ୍କର ହତ୍ୟା ଭିନ୍ନ ପ୍ରକାରର । ତାଙ୍କୁ ୧୮୯୭ ଠାରୁ ୧୯୪୮ ପର୍ଯ୍ୟନ୍ତ ୧୨ଟି ଘଟଣାରେ ମୃତ୍ୟୁର ଭୟ ଦେଖାହୋଇଥିଲା । ବିଭିନ୍ନ ଜାତି ଓ ସଂପ୍ରଦାୟର ଲୋକମାନଙ୍କ ଦ୍ୱାରା ତାଙ୍କୁ ମାରି ଦେବାର ଧମକ ଦିଆ ଯାଇଥିଲା ବା ତାଙ୍କ ଉପରେ ଆକ୍ରମଣ କରାଯାଇଥିଲା; ୧୮୯୭ରେ ଗୋରାମାନଙ୍କ ଦ୍ୱାରା, ୧୯୦୮ରେ ପଠାଣମାନଙ୍କ ଦ୍ୱାରା, ସେହି ୧୯୦୮ରେ ଏକ କଳା ଲୋକଦ୍ୱାରା, ୧୯୧୯ରେ ଶିଖଙ୍କ ଦ୍ୱାରା, ୧୯୨୮ରେ ଜୈନଙ୍କ ଦ୍ୱାରା ଓ ୧୯୩୪,୧୯୪୬ ଓ ୧୯୪୮ରେ ହିନ୍ଦୁଙ୍କ ଦ୍ୱାରା ।

ତଥାପି ସେ ଯେତେବେଳେ ମୃତ୍ୟୁବରଣ କଲେ ସାରା ପୃଥିବୀ କାନ୍ଦିଲେ ।

(୧୯୯୨ ଫେବୃୟାରୀ ୧୫ "ସର୍ବୋଦୟ")

## ପାକିସ୍ଥାନରେ ଗାନ୍ଧୀବାଦ

**ଅନୁବାଦ : ଶ୍ରୀ ରବି ସାହୁ**

କରାଚୀ ସହରର ଔରଙ୍ଗୀ ବସ୍ତି । ଭାରତ ଭାଗ ଭାଗ ହେବା ପରେ ଭାରତରୁ ଆସିଥିବା ଭାରତୀୟ ମୁସଲମାନ, ସିନ୍ଧୀ ଶରଣାର୍ଥୀ 'ମୁହାଜିର', ଆଫଗାନୀ, ପଞ୍ଜାବୀ ଓ ବାଘରୀ ଦରିଦ୍ର ମୁସଲମାନଙ୍କର ଏକ ସହରତଳି ବସ୍ତି । ବାରବର୍ଷ ତଳେ ୯୪,୦୦୦ ପରିବାର ବିଶିଷ୍ଟ ଏହି ଝୋପଡ଼ି କୁଡ଼ିଆ ଜନବସତିରେ ଗୋଟିଏ ବି ପାଇଖାନା ନଥିଲା । ଏହାର ଦଶଲକ୍ଷ ବାସିନ୍ଦା ପ୍ରତିଦିନ ନିତ୍ୟକର୍ମ ସଂପାଦନା କରୁଥିଲେ ଆଖପାଖ ପଡ଼ିଆ ଓ ନାଳନର୍ଦ୍ଦମାରେ । ଏଇଥିରୁ ସେ ବସ୍ତିର ପରିଚ୍ଛନ୍ନତା ତଥା ପରିବେଶର ଅବସ୍ଥା ସହଜେ ଅନୁମେୟ ।

୧୯୮୦ରେ ଏହି ବସ୍ତିବାସୀଙ୍କର ସେବା କରିବା ପାଇଁ ଆଗେଇ ଆସିଲେ ଜଣେ ଖଦୀଧାରୀ ଗାନ୍ଧୀବାଦୀ ଅଖତର୍ ହମିଦ୍ ଖାଁ । ନିରଳସ ଫକୀର ପରି ଦେଖାଯାଉଥିବା ସ୍ୱଚ୍ଛ ଭାଷୀ ଜନାବ୍ ଅଖତର୍ ସାହେବଙ୍କୁ ଦେଖିଲେ କେହି ଭାବିପାରିବ ନାହିଁ ଯେ ଏ ବ୍ୟକ୍ତି ଏକଦା ପାକିସ୍ଥାନର ଜଣେ ପ୍ରଭାବଶାଳୀ ଆଇ.ସି.ଏସ୍. ଅଫିସର ଥିଲେ । ପାକିସ୍ଥାନ ସରକାରଙ୍କ ଗ୍ରାମ ବିକାଶ ବିଭାଗର ପୂର୍ବତନ ସଚିବ ଅଖତର୍ ସାହେବ ଗାନ୍ଧୀଦର୍ଶନରେ ଉଦ୍‌ବୁଦ୍ଧ ହୋଇ ସ୍ୱେଚ୍ଛାରେ ଏହି ପଦବୀରୁ ଅବସର ନେଲେ ଓ ନିଷ୍ପେସିତ ଶ୍ରେଣୀର ସେବା ଜୀବନର ବ୍ରତରୂପେ ଗ୍ରହଣ କରି ସେହି କାମ ପାଇଁ ନିଜର ସମସ୍ତ ସମ୍ପତ୍ତି ଉତ୍ସର୍ଗ କଲେ । କରାଚୀର ଏହି ଔରଙ୍ଗୀ ବସ୍ତି ହିଁ ହେଲା ତାଙ୍କର କର୍ମସ୍ଥଳୀ ଓ ଗାନ୍ଧୀ ଦର୍ଶନର ପରୀକ୍ଷାଗାର ।

ସେଠାରେ କୌଣସି ସାମାଜିକ ସଂସ୍କାର କାର୍ଯ୍ୟକ୍ରମ ନେବା ପୂର୍ବରୁ ଔରଙ୍ଗୀ ବସ୍ତିର ପୂତିଗନ୍ଧମୟ ପରିବେଶରେ ସଂସ୍କାର ଆଣିବା ପ୍ରଥମ କର୍ତ୍ତବ୍ୟ ବୋଲି ସେ ମନେ କଲେ । ଏହି କାର୍ଯ୍ୟକ୍ରମକୁ ଆଧାର କରି "ଲୋକଶକ୍ତିର" ପ୍ରୟୋଗାତ୍ମକ ପରୀକ୍ଷା କରିବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏଣୁ ସେ କୌଣସି ସରକାରୀ ସାହାଯ୍ୟ ନନେଇ ଲୋକସହଯୋଗ ବଳରେ ସେଠାରେ ପ୍ରତିଘରେପାଇଖାନା ତିଆରି କରାଇବା କାର୍ଯ୍ୟକ୍ରମ ଗ୍ରହଣ କଲେ । ତାଙ୍କ ସଂସ୍ଥାର ନିରବଚ୍ଛିନ୍ନ ପ୍ରଚେଷ୍ଟା ଫଳରେ ଆଜି ଔରଙ୍ଗବସ୍ତିର ଶତକରା ଅଣାନବେ ଘରେ ସ୍ୱଚ୍ଛ ପରିଷ୍କାର ପାଇଖାନାର ବ୍ୟବସ୍ଥା ହୋଇ ପାରିଛି । ୬୬ଟି ମହଲାରେ ଥିବା ୩୩୮୯ଟି ଗଳିର ସର୍ବମୋଟ ୪୯,୯୯୨ଟି ଘରେ ପାଇଖାନା ତିଆରି ହୋଇଛି । ଲୋକଶକ୍ତିବଳରେ ସଂଗଠିତ ଏହି କାର୍ଯ୍ୟ ଲୋକଙ୍କ ଭିତରେ ଏକତା ଓ ଆତ୍ମ-ବିଶ୍ୱାସ ବଢ଼ାଇବାରେ ଯଥେଷ୍ଟ ସାହାଯ୍ୟ କରିଛି । ତାର ସୁଯୋଗ ନେଇ ଏବେ ସେ ମହିଳାଙ୍କ ଭିତରେ ଆଉ ଏକ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି । ମଧ୍ୟ ପ୍ରାଚ୍ୟର ଦେଶମାନଙ୍କରେ ପାକିସ୍ଥାନୀ ବସ୍ତ୍ରର ଯଥେଷ୍ଟ ଚାହିଦା ରହିଛି । ଏହି ବସ୍ତ୍ର ଉତ୍ପାଦନ କରୁଥିବାଶିଳ୍ପ ସଂସ୍ଥାରେ ବହୁପରିମାଣରେ ମହିଳା ଶ୍ରମିକ କାମ କରିଥାଆନ୍ତି । ସେମାନେ ଉଭୟ ଆର୍ଥିକ ଓ ଦୈହିକ ଶୋଷଣର ଶୀକାର ହୋଇ ଥାଆନ୍ତି । ଖାଁ ସାହେବ ସେହି ନିଷ୍ପେସିତା ମହିଳାଙ୍କୁ ଏବେ ସଂଗଠିତ କରିଛନ୍ତି । ଏହି ମହିଳାମାନଙ୍କୁ

ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବାକୁ ଏକଜୁଟ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ସ୍ୱାବଲମ୍ବୀ କରିବା ଦିଗରେ ବ୍ୟାଙ୍କରୁ ଋଣ ଆଣି ତାଙ୍କ ସଂସ୍ଥା କ୍ଷୁଦ୍ର ଉଦ୍ୟୋଗ ଚଳାଇବା ପାଇଁ ସେମାନଙ୍କୁ ସାହାଯ୍ୟ କରୁଛି ।

ଗୁଜୁରାଟ ହରିଜନ ସେବକସଂଘର ମନ୍ତ୍ରୀ ଶ୍ରୀ ଈଶ୍ୱରଭାଇ ପଟେଲ ନିକଟରେ ଅଖତର୍ ସାହେବଙ୍କୁ କରାଚୀରେ ଭେଟିଥିଲେ । ଶ୍ରୀ ପଟେଲ କହନ୍ତି, "ମୋ ମନ ଉପରେ ସବୁଠାରୁ ଅଧିକ ପ୍ରଭାବ ପକାଇଥିଲା ଅଖତର୍ ସାହେବଙ୍କ ବ୍ୟକ୍ତିତ୍ୱ । ତାଙ୍କର ନିରଳସ ଜୀବନ ସମର୍ପଣ ଭାବ ଓ ଗରୀବ ସହ ଏକାତ୍ମ ହୋଇଯିବାର ବ୍ୟାକୁଳତା ଦେଖିଲେ କଳ୍ପନା ... ... ... ଲୋକ ଦିନେ ଆଇ.ସି.ଏସ୍. ଅଫିସର୍ ଥିଲା ... ପାକିସ୍ଥାନ ରାଜନୀତିରେ ଏତେ ଓଲଟପାଲଟ ହୋଇଗଲା । କିନ୍ତୁ ସେ ସବୁର ପ୍ରଭାବ ତାଙ୍କ କାମରେ କୌଣସି ବ୍ୟାଘାତ ସୃଷ୍ଟି କରିପାରି ନାହିଁ କିମ୍ବା ପାକିସ୍ଥାନର ଏହି ଗାନ୍ଧୀବାଦୀ ଖଦୀଧାରୀ ଲୋକସେବକଙ୍କୁ ଦେଖିଲେ ସ୍ୱତଃ ମନକୁ ଆସିଯାଏ 'ସୀମାନ୍ତଗାନ୍ଧୀ'ଙ୍କର ସ୍ମୃତି; ସବୁ ସୀମା, ସରହଦର ଊର୍ଦ୍ଧ୍ୱକୁ ଉଠି ଆକାଶ ହୋଇଯାଇଥିବା ବାପୁଙ୍କର ସ୍ମୃତି ।" ●●●

(୧୯୯୨ ଫେବୃୟାରୀ ୧୨ 'ସର୍ବୋଦୟ'ରୁ ଗୃହୀତ)



## ଆଜାଦ ହିନ୍ଦ ଫୌଜର ସମର ସଂଗୀତ

କଦମ୍ କଦମ୍ ବଢ଼ାୟେ ଯା' ! ଖୁସୀକେ ଗୀତ୍ ଗାୟେ ଯା !
ୟହ ଜିନ୍ଦ୍‌ଗୀ ହ୍ୟାୟ କୌମ୍-କୀ (ତୋ) କୌମ୍ ପୈ ଲୁଟା ୟେ ଯା' ।୦।
ତୁ ଶେର ହିନ୍ଦ୍ ଆଗେ ବଢ଼, ମରନେସେ ଫିରିଭି ତୁ ନଡର୍
ଆସମାନ୍ ତକ ଉଠାକେ ଶୀର, ଜୋଶେ କଦମ ବଢ଼ାୟେ ଯା' ।୧।
ତେରେ ହିମତ୍ ବଢ଼ତୀ ରହେ, ଖୁଦା ତେରୀ ଶୁନ୍‌ତା ରହେ
ଯୋ ସାମନେ ତେରେ ବଢ଼େ, ତୋ ଖାକ୍ ସେ ମିଲାୟେ ଯା' ।୨।
ଚଲୋ ଦିଲ୍ଲୀ ପୁକାର୍ କେ, କୌମୀ ନିଶାନ୍ ସମ୍ଭାଲକେ
ଲାଲକିଲ୍ଲେ ପୈଗାଡକେ, ଲହରାୟେ ଯା' ! ଲହରାୟେ ଯା' ।୩।
କଦମ୍ କଦମ୍ ବଢ଼ାଇ ଚାଲ୍ । କଦମ୍ କଦମ୍ ବଢ଼ାଇ ଚାଲ !



ହର୍ଷ ରାଗିଣୀ ହର୍ଷ ଗୀତିକା ହର୍ଷ କଣ୍ଠେ ଜଡ଼ାଇ ଚାଲ୍ ।
... ଏ ଜୀବନ ତୋର, ଜାତିର ଚରଣେ ଚଢ଼ାଇ ଚାଲ ।୦।
ଆରେ ଏ ଭାରତ କେଶରୀ ତୁ, ମରଣର ଭୟ ପାଶୋରି ତୁ,
ଆକାଶରେ ଶିର ଲଗାଇ ଚାଲ୍ ! ଜାତିର ଜୋଶ୍ ତୁ ବଢ଼ାଇ ଚାଲ ।୧।
ବଢୁରେ ସାହସ ବଢୁରେ ମାନ୍ ଡାକ ଶୁଣେ ତୋର ତୋ ଭଗବାନ୍;
ପଥର ବିଘ୍ନ ପଦରେ ଘାତ୍ ଧୂଳିରେ ଧୂଳିରେ ମଡ଼ାଇ ଚାଲ ।୨।
'ଚାଲରେ ଦିଲ୍ଲୀ' ଦେଏରେ ଡାକ୍, ଜାତୀୟ-ପତାକା କର୍‌ରେ ଲାଖ
ଏଇ ଯେ ଲା'ଲ୍ କି'ଲ୍ଲା ତାର୍- ଛାତିରେ ଛାତିରେ ଉଡ଼ାଇ ଉଡ଼ାଇ ଚାଲ୍ ।
କଦମ୍ କଦମ୍ ବଢ଼ାଇ ଚାଲ ।୩।

# ବିଦେଶୀଙ୍କ ଦୃଷ୍ଟିରେ

## ଆମ ସମୟର ସର୍ବଶ୍ରେଷ୍ଠ ମଣିଷ

**ଆଲବର୍ଟ ଆଇନଷ୍ଟାଇନ୍**

ଯେଉଁମାନେ ମାନବ ସମାଜର ଉନ୍ନତ ଭବିଷ୍ୟତ ପାଇଁ ଚିନ୍ତିତ ସେମାନେ ନିଶ୍ଚିତ ଭାବରେ ମହାତ୍ମାଗାନ୍ଧୀଙ୍କ ନିର୍ମମ ହତ୍ୟାରେ ବ୍ୟଥିତ ହୋଇପଡ଼ିଥିବେ । ନିଜର ଅହିଂସନୀତିର ଶିକାର ହୋଇ ସେ ମୃତ୍ୟୁବରଣ କଲେ । ନିଜ ଦେଶରେ ଭୟଙ୍କର ବିଶୃଙ୍ଖଳା ଏବଂ ଅଶାନ୍ତି ସମୟରେ ନିଜ ପାଇଁ କୌଣସି ସଶସ୍ତ୍ର ସୁରକ୍ଷାର ଆବଶ୍ୟକତାକୁ ସେ ପ୍ରତ୍ୟାଖ୍ୟାନ କରି ନିହତ ହେଲେ ।

ଏହି ପ୍ରକାର ବିଶ୍ୱାସ ପ୍ରତି ଗାନ୍ଧିଜୀ ନିଜର ସମଗ୍ର ଜୀବନକୁ ସମର୍ପିତ କଲେ ଏବଂ ନିଜ ମନ ଓ ହୃଦୟର ଏହି ନିର୍ଦ୍ଦିଷ୍ଟ ବିଶ୍ୱାସ ବଳରେ ଭାରତ ପରି ଏକ ମହାନ ଦେଶକୁ ମୁକ୍ତ କଲେ । ସେ ପ୍ରମାଣ କରିଗଲେ ଯେ କେବଳ ରାଜନୈତିକ କୌଶଳ କିମ୍ବା ଛଳନା ଦ୍ୱାରା ମଣିଷର ନିଷ୍ଠାକୁ ଆକର୍ଷିତ କରାଯାଇ ପାରିବ ନାହିଁ, ବରଂ ନୈତିକତାଯୁକ୍ତ ଜୀବନ ମାଧ୍ୟମରେ ମଣିଷକୁ ବଶ କରାଯାଇପାରେ ।

ନୈତିକତାର ଅବକ୍ଷୟ ଯୁଗରେ ମାନବିକ ସଂପର୍କର ଉଚ୍ଚ ତତ୍ତ୍ୱ ଓ କାର୍ଯ୍ୟଧାର, ଦ୍ୱାରା ଗାନ୍ଧିଜୀ ସମଗ୍ର ପୃଥିବୀରେ ସ୍ୱୀକୃତ ହୋଇଛନ୍ତି । ରାଷ୍ଟ୍ରପୁରୁଷଙ୍କ ଏହି ଆଦର୍ଶକୁ ରୂପାୟିତ କରିବାର ବେଳ ଆସିଛି ।

ଗାନ୍ଧିଜୀ ହେଉଛନ୍ତି ଆମ ସମୟର ଜଣେ ସର୍ବଶ୍ରେଷ୍ଠ ରାଜନୈତିକ ପ୍ରତିଭା । ଆମକୁ କେଉଁ ରାସ୍ତା ଧରିବାପାଇଁ ପଡ଼ିବ ସେକଥା ସେ ଆମକୁ ସୂଚାଇ ଯାଇଛନ୍ତି । ମଣିଷ ସଠିକ୍ ରାସ୍ତା ଆବିଷ୍କାର କଲେ ତ୍ୟାଗ ଓ ବଳିଦାନର କେତେ ପରାକାଷ୍ଠା ଦେଖାଇ ପାରିବ ସେ କଥା ସେ ପ୍ରମାଣିତ କରିଯାଇଛନ୍ତି । ମଣିଷର ଇଚ୍ଛାଶକ୍ତି, ଆତ୍ମପ୍ରତ୍ୟୟ ଏବଂ ଦୃଢ଼ନିଷ୍ଠା ଯେ କୌଣସି 'ବସ୍ତୁଶକ୍ତି' ଠାରୁ ଯଥେଷ୍ଟ ଶକ୍ତିଶାଳୀ ତାହା ଭାରତକୁ ସ୍ୱାଧୀନ କରିବା ନେଇ ତାଙ୍କର କାର୍ଯ୍ୟଧାରାରୁ ସ୍ପଷ୍ଟ ପ୍ରମାଣିତ ହୋଇଛି । ସର୍ବୋତ ଭାବରେ ଗାନ୍ଧିଜୀ ଆମ ସମୟର ସମସ୍ତ ରାଜନୈତିକ ବ୍ୟକ୍ତିଙ୍କ ଭିତରେ ଉଜ୍ଜ୍ୱଳ-ତାରକା ଭାବେ ଦେଦୀପ୍ୟମାନ ।

ହିଂସାବିହୀନ ବିପ୍ଳବର ଗାନ୍ଧିଜୀ ଥିଲେ ସୂତ୍ରଧର । ଆଗାମୀ ବଂଶଧରମାନେ ଏହା ବିଶ୍ୱାସ କରିପାରିବେ ନାହିଁ ଯେ ରକ୍ତମାଂସଧାରୀ ଏଭଳି ଜଣେ ବ୍ୟକ୍ତି ଏହି ପୃଥିବୀରେ କେବେ ଚଳପ୍ରଚଳ କରୁଥିଲେ । ●

## ବିଂଶ ଶତାବ୍ଦୀର ବୁଦ୍ଧ

ବ୍ରୋଞ୍ଜ ପରି ଦେଖାଯାଉଥିବା ମୁହଁ ଏବଂ ଶରୀରର ଚମଡ଼ା, ସାମାନ୍ୟ ପତଳା ଶରୀର, ଉନ୍ନତ ନିଖୁଣ ମସ୍ତିଷ୍କ, ଉଚ୍ଚ ଓଠ, ଢାଳୁଲ୍ୟମାନ ଛୋଟିଆ ଆଖି, ବିରାଟ କିନ୍ତୁ ପ୍ରାୟ ଦନ୍ତଶୂନ୍ୟ ପାଟି, ବଡ଼କାନ, ପ୍ରସାରିତ ନାସିକା, ପତଳା ହାତ ଏବଂ ଗୋଡ଼, ଏକ ମୋଟା ଲୁଗାର ଆବରଣଯୁକ୍ତ ଏସିଆର ଏହି ମଣିଷ ଜଣକ ଜଣେ ଇଂରେଜ ବିଚାରପତିଙ୍କ ଆଗରେ ଛିଡ଼ା ହୋଇଛନ୍ତି, କାରଣ ସେ ନିଜେ ଦେଶବାସୀଙ୍କ ସ୍ୱାଧୀନତା ପାଇଁ ପ୍ରଚାର କରୁଥିଲେ ।

ସେହିଭଳି ପୋଷାକ ପିନ୍ଧି ଏହି ବ୍ୟକ୍ତିଜଣକ ଦିଲ୍ଲୀର ଭାଇସ୍‌ରାୟଙ୍କ ଭବନରେ ଭାରତରେ ଥିବା ଇଂଲଣ୍ଡର ମୁଖ୍ୟ ପ୍ରତିନିଧିଙ୍କ ସହ ଆଲୋଚନାରତ ଥିବାର ଚିତ୍ର କଳ୍ପନା କରନ୍ତୁ, କିମ୍ବା ସତ୍ୟାଗ୍ରହ କିମ୍ବା ଅହମ୍ମଦାବାଦର ସତ୍ୟସନ୍ଧ ସ୍କୁଲରେ ଏକ ଛୋଟିଆ ଗାଲିଚା ଉପରେ ଯୋଗାସନ ମୁଦ୍ରାରେ ବସି ଆତ୍ମାକୁ ଊର୍ଦ୍ଧ୍ୱମୁଖୀ କରି ଅରଟରେ ସୂତାକାଟୁଥିବାର ବ୍ୟସ୍ତ ହାତର ଦୃଶ୍ୟର କଳ୍ପନା କରାଯାଇ ପାରେ । ସ୍ୱାଧୀନତାର ସବୁ ପ୍ରଶ୍ନର

ଉତ୍ତର ଦେବାପାଇଁ ତାଙ୍କ ମସ୍ତିଷ ସଦାବେଳେ ପ୍ରସ୍ତୁତ । ଏହି ଲଙ୍ଗଳା ଫକୀର ଜଣକ ୩୨ କୋଟି ଭାରତୀୟଙ୍କ ଆଧାତ୍ମିକ ଏବଂ ରାଜନୈତିକ ନେତା । ଯେତେବେଳେ ସେ ଲୋକଙ୍କ ସମ୍ମୁଖକୁ ଆସନ୍ତି, ସେତେବେଳେ ତାଙ୍କ ଚାରିଆଡ଼େ ଭିଡ଼ ଜମିଯାଏ ତାଙ୍କ ବସ୍ତ୍ରକୁ ଛୁଇଁବା ପାଇଁ କିମ୍ବା ତାଙ୍କ ପାଦକୁ ସ୍ପର୍ଶ କରିବାପାଇଁ । ବୁଦ୍ଧଙ୍କ ପରେ ବୋଧହୁଏ ଭାରତର ଆଉ କିଏ ଏତେ ସମ୍ମାନ ପାଇ ନଥିଲେ । ସବୁ ସମ୍ଭାବନାରୁ ଊର୍ଦ୍ଧ୍ୱରେ ଆଜି ସେ ହେଉଛନ୍ତି ସମଗ୍ର ପୃଥିବୀର ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ଏବଂ ଚରିତ୍ର ସଂପନ୍ନ ବ୍ୟକ୍ତି । ତାଙ୍କ ସମସାମୟିକ ବ୍ୟକ୍ତି ବିସ୍ମୃତିର ଅତଳ ଗହ୍ୱରରେ ଲୀନ ହେବାବେଳେ ଏହି ମଣିଷକୁ ପୃଥିବୀ ଯୁଗ ଯୁଗ ଧରି ମନେ ରଖିବ । ହିଂସାରୁ ଊର୍ଦ୍ଧ୍ୱରେ ରହି ସେ ଏକ ମହାନ ଆନ୍ଦୋଳନାତ୍ମକ ଅଭିଯାନ ଚଳାଇ ଆସିଛନ୍ତି ଏବଂ ଲୋକଙ୍କୁ ଭିଡ଼କୁ ହିଂସାଭିମୁଖୀ କରି କାର୍ଯ୍ୟ ହାସଲ କରିବାର ପଦ୍ଧତିକୁ ସେ ନିଜର ନୂତନ କାର୍ଯ୍ୟଧାରା ଦ୍ୱାରା ପରିବର୍ତ୍ତିତ କରାଇ ପାରିଛନ୍ତି ।

ଯଦି ନିଜର ଏହି ଅଦ୍ୱିତୀୟ ଅଭିଯାନରେ ବିଫଳ ହୁଅନ୍ତି, ତାହାହେଲେ ସାଧୁ ମହାତ୍ମାମାନେ ମଧ୍ୟ କେବେ ସଫଳ ହେବେ ନାହିଁ । ●

**ଉଇଲ ଡୁରାଣ୍ଟ, ବିଶିଷ୍ଟ ଆମେରିକୀୟ ଐତିହାସିକ**

## ଖ୍ରୀଷ୍ଟଙ୍କର ଦ୍ୱିତୀୟ ଅବତାର

ଭାରତ ପାଇଁ ଗାନ୍ଧୀ କେବଳ ଜାତୀୟ ଇତିହାସର ଜଣେ ହିରୋ ନୁହଁନ୍ତି, ଯାହାଙ୍କ ସ୍ମୃତି ପ୍ରାଚୀନ ଗ୍ରନ୍ଥରେ ଏକ ପୃଷ୍ଠା ହୋଇ ରହିଯିବ ।

ପାଶ୍ଚାତ୍ୟର ସମସ୍ତ ଲୋକଙ୍କ ପାଇଁ ସେ ଯୀଶୁଖ୍ରୀଷ୍ଟଙ୍କ ବାର୍ତ୍ତାର ନବୀକରଣ କରିଛନ୍ତି । ସେ ମାନବିକତାର ଇତିହାସରେ ସାଧୁ ଓ ସନ୍ଥଙ୍କ ଭିତରେ ନିଜ ନାମକୁ ସାମିଲ କରାଇପାରିଛନ୍ତି । ୟୁରୋପ ଦୁଃଖ, ଯନ୍ତ୍ରଣା, ସାମାଜିକ ଘୃଣାର ଭୀଷଣ ଅନ୍ଧକାର ଭିତରେ ଗତି କରୁଥାଏ, ଠିକ୍ ସେତିକିବେଳେ ଏହି ପତଳା, କ୍ଷୁଦ୍ର, ଲଙ୍ଗଳା ମଣିଷର ଆବିର୍ଭାବ । ହିଂସାରୁ ଦୂରରେ ରହି, ପ୍ରେମର ଅସ୍ତ୍ରରେ ସଜ୍ଜିତ ହୋଇ, ନମ୍ରତା ଏବଂ ଭଦ୍ରତାର ସାଜରେ ସେ ପାଶ୍ଚାତ୍ୟର ପାରମ୍ପରିକ ଅନ୍ଧ ଶକ୍ତି ଉପରେ ଆକ୍ରମଣ କଲେ । ଏହା ସହଜରେ ବିଶ୍ୱାସ କରି ହୁଏ ନାହିଁ, ଯେ ଅବିଶ୍ୱାସ ଓ ଅନାସ୍ଥାର ଏକ ଜାଗତିକ ବାତାବରଣ ମଧ୍ୟରେ ଏଭଳି ଜଣେ ଆଶାସଞ୍ଚାରକାରୀ ମହାତ୍ମାଙ୍କ ଆବିର୍ଭାବ ହୋଇପାରେ ।

ଭାରତର ଏହି ଆଧାତ୍ମିକ ମାଷ୍ଟର ପାଶ୍ଚାତ୍ୟର ଅଧିବାସୀଙ୍କ ଭିତରେ ତାଙ୍କ ପ୍ରତି ଧୀରେ ଧୀରେ ଗଭୀର ଆସ୍ଥା ସୃଷ୍ଟି କରିବାରେ ଲାଗିଛନ୍ତି । ଅନେକଙ୍କ ପାଇଁ ସେ ହେଉଛନ୍ତି ଖ୍ରୀଷ୍ଟଙ୍କ ଦ୍ୱିତୀୟ ଅବତାର । ସେ ରସ୍କୋ ଏବଂ ଟଲଷ୍ଟୟଙ୍କର ନୂତନ ପ୍ରତିବିମ୍ବ । ସରଳ ଜୀବନ ଓ ସ୍ୱାସ୍ଥ୍ୟପାଇଁ ପ୍ରକୃତି କୋଳକୁ ଫେରିଆସିବା ପାଇଁ ସେ ଆହ୍ୱାନ ଜଣାଉଛନ୍ତି । ●

(ରୋମାଁ ରୋଲାଁ, ପ୍ରସିଦ୍ଧ ଫରାସୀ ଦାର୍ଶନିକ ଏବଂ ନୋବେଲ ପୁରସ୍କାର ବିଜେତା ।)

(ତା.୨.୧୦.୯୪ ରିଖ "ସମାଜ"ରୁ ଉଦ୍ଧୃତ)

## ପ୍ରତିଟି ଶବ୍ଦ ଆଦରଣୀୟ

୧୯୪୭ ମସିହା ନଭେମ୍ବର ୭ ତାରିଖ । ଦୁଇଜଣ ଆମେରିକା ବାସିନ୍ଦା ବାପୁଙ୍କୁ ଏକ ପତ୍ରରେ ଲେଖିଥିଲେ "ଆପଣଙ୍କ ଦେଶରେ ଯେଉଁ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇଛି ସେଥି ନିମନ୍ତେ ଆପଣ ମର୍ମାହତ ବୋଲି ଆମେ ଜାଣୁ । ଆପଣଙ୍କର ପ୍ରତ୍ୟେକ ସୁନ୍ଦର ଶବ୍ଦକୁ ସମଗ୍ର ପୃଥିବୀ ଆଦରର ସହ ଗ୍ରହଣ କରିଛି । ଏବେ ଯେଉଁ ଦୁଃଖଦାୟକ ଘଟଣାମାନ ଘଟିଗଲା ସେଥିରେ ଆପଣ ଦୁଃଖକରିବା ସ୍ୱାଭାବିକ । ଏ ପ୍ରହେଳିକା ଶୀଘ୍ର ଦୂର ହେବ ଏବଂ ଆପଣଙ୍କୁ ହତୋସାହିତ କରିବ ନାହିଁ ବୋଲି ଆମେ ଆଶାକରୁ । କୌଣସି ମଞ୍ଜି ହଠାତ୍ ସୁବାସିତ ଫୁଲରେ ପରିଣତ ହୁଏ ନାହିଁ । ଏଥି ନିମନ୍ତେ ମଞ୍ଜିକୁ ଏକ ନିର୍ଦ୍ଦିଷ୍ଟ ପ୍ରକ୍ରିୟା ମଧ୍ୟଦେଇ ଗତି କରିବାକୁ ହେବ । ବିକାଶ ପ୍ରକ୍ରିୟାରେ ଯଦି ପ୍ରତିବନ୍ଧକ ସୃଷ୍ଟି କରାଯାଏ ତେବେ ଏହା ବନ୍ଦ ହୋଇଯିବ । ମାଳିର ଆବଶ୍ୟକତା ଅତ୍ୟନ୍ତ ଜରୁରୀ

ଟୁଗଣ୍ଣ ଗଛର ଯତ୍ନ ନେବାବେଳେ ମାଳି ହୁଏତ ଅନ୍ୟ ଗଛମାନଙ୍କର ଯତ୍ନ ନେବାରେ ଅବହେଳା କରିଥାଏ । ରୁଗ୍ଣ ଗଛଟି ପାଇଁ ଅନ୍ୟ ଗଛମାନେ ଏହା ସହ୍ୟ କରନ୍ତି । ପୃଥିବୀର ବିଭିନ୍ନ ଧର୍ମ, ଜାତି ଓ ଶ୍ରେଣୀର ଲୋକେ ଶାନ୍ତି ପାଇଁ ଆପଣଙ୍କ ସହ ପ୍ରାର୍ଥନା କରୁଛନ୍ତି । ତେଣୁ ସେମାନଙ୍କ ପ୍ରତି ଆପଣ ଧ୍ୟାନ ଦିଅନ୍ତୁ । ଆପଣ ଦୀର୍ଘାୟୁ ହୋଇ ମାନବ ସମାଜର କଲ୍ୟାଣ ପାଇଁ ଏହିପରି କାର୍ଯ୍ୟ କରୁଥାନ୍ତୁ- ଏହା ହେଉଛି ବିଭୁଙ୍କ ନିକଟରେ ଆମର ପ୍ରାର୍ଥନା ।''

("ସମାଜ"-୨୬-୧୧-୯୭)

## ତୁମ କଥା ଯୀଶୁଙ୍କ ବାଣୀ

ତୁମେ ଯାହା କହୁଛ ମତେ ଜଣାପଡୁଛି ସତେ ଯେପରି ଯୀଶୁଙ୍କ ବାଣୀ ତୁମସ୍ୱରରେ ପ୍ରତିଧ୍ୱନିତ ହେଉଛି । ତୁମେ କି ଦୁଃଖରେ କାଳାତିପାତ କରୁଛ ତାହା ଭଗବାନ ଜାଣନ୍ତି । ମୁଁ ଭାବୁଛି ତୁମେ ଆହୁରି ଅନେକ ... କରିବ । ଏହି ସଂକଟମୟ ସଂସାରରେ ରହି ତୁମେ ଆମକୁ ମାର୍ଗ ଦର୍ଶନ କର ମୁଁ ଚାହୁଁଛି । ତୁମେ ବହୁତ କାମ କରିଛ । ସତ୍ୟ ଓ ଅହିଂସାର ବାଣୀ ପ୍ରଚାର କରି ମଣିଷ ମନକୁ ବଦଳାଇବାକୁ ଉଦ୍ୟମ କରିଛ । ଭାରତ ଏବେ ମଧ୍ୟ ଭାଙ୍ଗିପଡ଼ି ନାହିଁ । ତୁମ ପ୍ରଦର୍ଶନ ମାର୍ଗରେ ଭାରତ ଦିନେ ଏକ ମହାନ ଶକ୍ତିଭାବେ ନିଜକୁ ପ୍ରତିଷ୍ଠିତ କରିବ ।

(ଜଣେ ଇଂରେଜ ମହିଳା: 'ସମାଜ'-୨୪.୧୦.୯୭)

## ଆପଣଙ୍କର ବିଜୟ ହେଉ

୧୯୪୭ ମସିହା ଅକ୍ଟୋବର ୮ ତାରିଖ । ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇଥିବା ସାର ଷ୍ଟାଫର୍ଡ କ୍ରିପ୍‌ସ ବାପୁଙ୍କୁ ତାଙ୍କର ଜନ୍ମଦିନ ଉପଲକ୍ଷେ ଶୁଭେଚ୍ଛା ଜଣାଇ ଏକ ବାର୍ତ୍ତାରେ ଲେଖିଲେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ଯେ ସାଂପ୍ରଦାୟିକତାବାଦ ଶକ୍ତି ବିରୋଧରେ ଆପଣଙ୍କର ବିଜୟ ହେଉ । ଏହାଫଳରେ ଭାରତ ପାକିସ୍ଥାନ ଉନ୍ନତି ପଥରେ ଆଗେଇ ପାରିବେ ଭବିଷ୍ୟତରେ ପାକିସ୍ଥାନ ଓ ଭାରତ ମିଶ୍ରଣ ହୋଇଯିବ ।

- ସାରଷ୍ଟାଫୋର୍ଡ କ୍ରିପସ୍ (ସମାଜ-୨୫.୧୦.୯୭)

## ଗାନ୍ଧୀ ପ୍ରଭାବ

### ମାର୍ଟିନ ଲୁଥର କିଙ୍ଗ

(ମାର୍ଟିନ ଲୁଥର କିଙ୍ଗ୍ ଆମେରୀକା ଯୁକ୍ତରାଷ୍ଟ୍ରରେ ଜଣାଶୁଣା ନୀଗ୍ରୋ ନେତା - ବସରେ ବର୍ଣ୍ଣ ବୈଷମ୍ୟର ପ୍ରତିବାଦ ସ୍ୱରୂପ ସେ ଆଲବାମାରେ ବସ, ବୟକଟ ଆନ୍ଦୋଳନ ଚଳାଇଥିଲେ । ତାଙ୍କର ଏହି ଅହିଂସା ଆନ୍ଦୋଳନରେ ବୀଜୟ ପାଶ୍ଚାତ୍ୟ ଜଗତରେ ଅହିଂସାର ପ୍ରଭାବକୁ ଅଧିକ ବ୍ୟାପକ କରିଛି । ଇଂରାଜୀ 'ସର୍ବୋଦୟ' ପ୍ରକାଶିତ ତାଙ୍କ ଲେଖାର ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା । ସଂ.ଗ୍ରା.ସେ)

ପୃଥିବୀ ଇତିହାସରେ ମହାତ୍ମାଗାନ୍ଧୀ ଅନ୍ୟମାନଙ୍କଠାରୁ ଅଧିକ ଭାବରେ ପ୍ରମାଣ କରି ଦେଇଗଲେ ଯେ ସାମାଜିକ ସମସ୍ୟାଗୁଡ଼ିକ ପୁରୁଣା ହିଂସାତ୍ମକ ଉପାୟ ବ୍ୟତୀତ ମଧ୍ୟ ସମାଧାନ କରାଯାଇ ପାରିବ । ଏହି ଦୃଷ୍ଟିରୁ ସେ ଭାରତର ଯେ କୌଣସି ସନ୍ଥଠାରୁ ମଧ୍ୟ ଅଧିକ । ସେଥିପାଇଁ ସେ ଜଣେ ଯୁଗ ମାନବ ।

ମାଟଗୋମାରୀର ଅଲବାମାରେ ବର୍ଣ୍ଣ ବିଭେଦ ବିରୁଦ୍ଧରେ ଆମର ଯେଉଁ ସଂଗ୍ରାମ ଚାଲିଥିଲା ସେଥିରେ ମୁଁ ଦେଖିଲି ଯେ ଗାନ୍ଧୀଙ୍କର ଅହିଂସା ଓ ଖ୍ରୀଷ୍ଟ ଧର୍ମ ପ୍ରେମର ଏକ ସମନ୍ୱୟ ନିଗ୍ରୋମାନଙ୍କର ସ୍ୱାଧୀନତା ଏବଂ ମାନବୀକ ମହତ୍ୱ ପ୍ରତିଷ୍ଠା ପାଇଁ ସଂଗ୍ରାମର ସର୍ବଶ୍ରେଷ୍ଠ ଅସ୍ତ୍ର ହେବ । ହୁଏତ ଗାନ୍ଧୀବାଦ ଦ୍ୱାରା ଆମେରିକାର ଜାତି ସମସ୍ୟାର ସମାଧାନ ମଧ୍ୟ ହୋଇପାରେ । ହିଂସାର ଆଶ୍ରୟ ନ ନେଇ ସମସ୍ତ ଅନ୍ୟାୟର ଯେ ପ୍ରତିରୋଧ କରା ଯାଇପାରେ ପୃଥବବୀର ସମସ୍ତ ନିଷ୍ପେଷିତ ଜନତାଙ୍କୁ ଗାନ୍ଧୀଙ୍କର ଆତ୍ମା ଏହା ବାରମ୍ବାର ସ୍ମରଣ କରାଇ ଦେଉଛି ।

ଆନ୍ତର୍ଜାତୀକ ସମସ୍ୟାର ସମାଧାନ ପାଇଁ ଆମେ ଯଦି ଗାନ୍ଧୀ ନୀତିର ଆଶ୍ରୟ ନ ନେଉ ତେବେ ଆମେ ଆମ ନିଜ ତିଆରି ଅସ୍ତ୍ରରେ ଧ୍ୱଂସ ପାଇଯିବୁ ।

ଆଜି ଆଉ ହିଂସା କି ଅହିଂସା ଏହା ପ୍ରଶ୍ନ ହୋଇ ରହିନାହିଁ ଆଜିର ପ୍ରଶ୍ନ ହେଉଛି ଅହିଂସା ନା ବିଲୋପ ।

ନିଷ୍ପେଷିତ ଜନତା ତିନୋଟି ଉପାୟରେ ନିଷ୍ପେଷଣର ସମ୍ମୁଖୀନ ହୋଇ ପାରନ୍ତି । ସେମାନେ ଗ୍ରହଣ କରିବେ ବା ସମ୍ମତ ହେବେ । ସେମାନେ ପାର୍ଥକ୍ୟ ସହିତ ନିଜକୁ ମିଶାଇ ନେଇ ପାରନ୍ତି । ଭଲ ସହିତ ସହଯୋଗ କରିବା ଯେପରି ଏକ ନୈତିକ ଦାୟିତ୍ୱ ମନ୍ଦ ସହିତ ଅସହଯୋଗ କରିବା ମଧ୍ୟ ସେହିପରି । ପାର୍ଥକ୍ୟକୁ ଗ୍ରହଣ କଲାକ୍ଷଣି ସେ ଏଥି ସହିତ ସହଯୋଗ କଲା ବୋଲି ବୁଝିବାକୁ ହେବ ।

ନିଷ୍ପେଷିତ ଲୋକ ଶାରିରିକ ହିଂସାର ଆଶ୍ରୟ ନେଇପାରେ । ଏହା ଗୋଟିଏ ଜାତି ଏବଂ ନିଷ୍ପେଷିତ ଲୋକ ଉଭୟଂକ ପକ୍ଷରେ ସଂଭବ । କିନ୍ତୁ ହିଂସା କେବଳ ଅସ୍ଥାୟୀ ବିଜୟ ଆଣିପାରେ କିନ୍ତୁ ସ୍ଥାୟି ଶାନ୍ତି ପ୍ରତିଷ୍ଠା କରିପାରିବ ନାହିଁ । ତାହାଦ୍ୱାରା ସବୁବେଳେ ନୂଆ ନୂଆ ସମସ୍ୟା ସୃଷ୍ଟି ହେଉଥିବ ।

ଗାନ୍ଧି ପୃଥିବୀ ଇତିହାସର ଆଉ ଗୋଟିଏ ପଟଭୂମିରେ ମଧ୍ୟ ଅବତରଣ କରିଛନ୍ତି । ହିଂସାଦ୍ୱାରା ଅନ୍ୟାୟର ଯେତକ ବିରୋଧ କରାଯାଏ ସେ ସେହି ପରିମାଣରେ ବିରୋଧ କରିଛନ୍ତି । କିନ୍ତୁ ବାହ୍ୟ ହିଂସା ଏବଂ ଆତ୍ମା ହିଂସା ବ୍ୟତୀତ ସେ ଏହା କରି ପାରିଛନ୍ତି । ଏହାହିଁ ଗାନ୍ଧିବାଦର ମୁଖ୍ୟ କାମ । ଯଦି କେବଳ ଭୀରୁତା ଏବଂ ହିଂସା ଭିତରୁ ଗୋଟିକୁ ବାଛିବାକୁ ପଡ଼େ ତେବେ ଗାନ୍ଧିଙ୍କ ମତରେ ହିଂସାହିଁ ଭଲ ।

ଗାନ୍ଧିଙ୍କଠାରୁ ମୁଁ ନିଜେ ଏହା ଅନ୍ତର୍ଦୃଷ୍ଟି ଲାଭ କରିଛି । ମୁଁ ଯେତେବେଳେ ଥିଓଲଜୀକାଲ ସ୍କୁଲରେ ଥିଲି ଭାବୁଥିଲି ଯେ କେବଳ ହିଂସାତ୍ମକ ବିପ୍ଲବ ଦ୍ୱାରା ଆମର ସମସ୍ୟା ସମାଧାନ କରାଯାଇପାରେ । ଖ୍ରୀଷ୍ଟିଆନ ଧର୍ମର ପ୍ରେମର ବ୍ୟାଖ୍ୟା କେବଳ ବ୍ୟକ୍ତି ବିଶେଷ ମଧ୍ୟରେ ଆବଦ୍ଧ ରହିପାରେ ବୋଲି ମୋର ବିଶ୍ୱାସ ଥିଲା । ଏହି ଯେ ସାମାଜିକ ସମସ୍ୟା ସମାଧାନରେ କାର୍ଯ୍ୟକାରୀ ହୋଇପାରେ ସେକଥା ମୁଁ ବୁଝିପାରି ନଥିଲି ।

ତା'ପରେ ଯୀଶୁଙ୍କ ପ୍ରେମର ବ୍ୟାଖ୍ୟା କିପରି ସାମାଜିକ ପରିବର୍ତ୍ତନରେ ଲାଗିପାରେ ତାହା ଗାନ୍ଧିଙ୍କ ଲେଖାରୁ ପଢ଼ିଲି । ଏଥିରେ ପ୍ରେମକୁ ବ୍ୟକ୍ତି ବିଶେଷର ଉର୍ଦ୍ଧ୍ୱକୁ ଆଣି ସମାଜ ସ୍ତରରେ ପ୍ରୟୋଗ କରିବା ବିଷୟ ଉଲ୍ଲେଖ ଥିଲା । ଏକଥା ବୁଝିବା ପାଇଁ ଗାନ୍ଧି ଆମକୁ ସାହାଯ୍ୟ କରିଥିବା ଯୋଗୁଁ ଆମେ ତାଙ୍କ ନିକଟରେ କୃତଜ୍ଞ ରହିଥିବୁ ।

ପୃଥିବୀରେ ଏବେ ଯେତେ ଲୋକ ବଞ୍ଚିଛନ୍ତି ଗାନ୍ଧିଜୀ ସେମାନଙ୍କ ଭିତରେ ସର୍ବୋଚ୍ଚ ପୀଠରେ ଅବସ୍ଥିତ ଓ ସବୁଠାରୁ ବଳି ମହନ୍ । ଏହି କ୍ଷୁଦ୍ରକାୟ ଗ୍ରାମ୍ୟ ମଣିଷ କୌଣସି ପଦପଦବୀ ବା କ୍ଷମତାର ଅଧିକାରୀ ନୁହନ୍ତି କି କ୍ଷମତା ଓ ଗୌରବର ଭିକାରି ନୁହନ୍ତି । ଏହିଭଳି ଜଣେ ସୁପୁରୁଷ ଇଂରେଜଙ୍କ ବନ୍ଦୀଶାଳାରେ ଛନ୍ତି ।

**-ଖ୍ରୀଷ୍ଟିୟାନ ଧର୍ମଗୁରୁ ଜେ.ଜନ୍.ଏସ୍. ହୋମ୍ସ**

୬୭ ବର୍ଷ ବୟସ୍କ ବ୍ରିଟେନ ଏମ୍.ପି. ଲର୍ଡ ଫେନ୍ନର ବ୍ରକବେ ୧୯୨୭ରେ ମାନ୍ଦ୍ରାଜ-କଂଗ୍ରେସକୁ ଆମନ୍ତ୍ରିତ ହୋଇ ଆସିଥିଲେ । ହଠାତ୍ ଦୁର୍ଘଟଣାଗ୍ରସ୍ତ ହୋଇ ମାନ୍ଦ୍ରାଜ ହସ୍‌ପିଟାଲରେ ଥିଲାବେଳେ ଗାନ୍ଧିଜୀ ତାଙ୍କୁ ଦେଖିବାକୁ ଯାଇ ପଚାରିଲେ - ''କିପରି ଅଛ ?'' ଉତ୍ତରରେ ଶ୍ରୀ ବ୍ରକବେ କହିଲେ ଯେ ତାଙ୍କୁ ଆଦୌ ନିଦ ହେଉନାହିଁ । ଏହା ଶୁଣିବାରେ ଗାନ୍ଧିଜୀ ତାଙ୍କର ଗୋଟିଏ ହାତକୁ କିଛି ସମୟ ଧରି ରଖିଲେ । ଏତିକିବେଳେ ତାଙ୍କୁ ସୁନ୍ଦର ନିଦ ହୋଇଯାଇଥିଲା ।

ଏହି ଘଟଣା ସମ୍ପର୍କରେ ଶ୍ରୀ ବ୍ରକବେ କହନ୍ତି - ''ଗାନ୍ଧି ଏହି ଅଲୌକିକ ଶକ୍ତିର ଆଧାର- ଯଦ୍ୱାରା ତାଙ୍କ ସ୍ପର୍ଶରେ ସେ ସମସ୍ତ କଷ୍ଟରୁ ମୁକ୍ତିଲାଭ କରିଛନ୍ତି ।'' ●



# ଅର୍ଥନୀତି

## ସ୍ୱାବଲମ୍ବୀ ଅର୍ଥନୀତି ପ୍ରସଙ୍ଗ

ସ୍ୱାବଲମ୍ବନଶୀଳ ଭାରତବର୍ଷ ଯେ ଆଉ ଶୀଘ୍ର ସ୍ୱାବଲମ୍ବୀ ହୋଇ ପାରିବ ନାହିଁ, କ୍ରମଶଃ ସେ ସୁସ୍ଥ ସମ୍ଭାବନା ହରାଇବାକୁ ଯାଉଛି, ଏହା ଅନିଶ୍ଚିତ ସାଂସଦୀୟ ଗଣତନ୍ତ୍ରର କ୍ରିୟାକଳାପରୁ କ୍ରମଶଃ ଦୃଢ ହେବାକୁ ଲାଗିଲାଣି ।ଏକ ପକ୍ଷରେ ଭାରତୀୟ ମୁଦ୍ରାର ମୂଲ୍ୟ ହ୍ରାସ ପାଉଛି, ଅପର ପକ୍ଷରେ ଉଦାରିକରଣ ଅର୍ଥନୀତି ଔପନିବେଶବାଦକୁ ଭିନ୍ନ ବାଟରେ ପୁଣି ଭାରତରେ ପ୍ରବେଶ କରାଯାଉଛି- ଏ ସଂଭାବନା ମଧ୍ୟ ଅଧିକ ଉଜ୍ଜଳ ହେବାରେ ଲାଗିଛି ।ସ୍ୱାଧୀନତାପ୍ରାପ୍ତିର ୫୦ ବର୍ଷ ପରେ ସ୍ୱଦେଶୀ ଶିଳ୍ପ, ସ୍ୱଦେଶୀ ପଦାର୍ଥ ଉପଭୋଗର ମାତ୍ରା କ୍ରମଶଃ କମୁଥିବା ପରିଲକ୍ଷିତ ହେଉଛି ଯାହାଦ୍ୱାରା ଆଭ୍ୟନ୍ତରିଣ ବୃହତ ଶିଳ୍ପ, କ୍ଷୁଦ୍ରଶିଳ୍ପ ଓ କୁଟୀର ଶିଳ୍ପ ଅସୁସ୍ଥ ତଥା ଅସୀମ ପ୍ରତିଯୋଗିତାର ସମ୍ମୁଖୀନ ହୋଇ ଆପଣା ସ୍ଥିତିକୁ ଦୃଢ କରିବା ପାଇଁ ଅନୁକୂଳ ପରିବେଶ ପାଉନାହିଁ । ଦେଶ ପକ୍ଷରେ ଏହା ବିପଦର ସଂକେତ ।ଦାରିଦ୍ର୍ୟ ଦୂରୀକରଣ ପାଇଁ କୃଷିର ବିକଳ୍ପ ପନ୍ଥା, ଯଥା ଶିଳ୍ପଗତ ସୁବିଧା ସୁଯୋଗ ବୃଦ୍ଧିପାଇବା ଆବଶ୍ୟକ, କିନ୍ତୁ ସମବାୟ ମାଧ୍ୟମରେ କ୍ଷୁଦ୍ରଶିଳ୍ପୋଦ୍ୟୋଗୀମାନେ ଦେଶର ଉନ୍ନୟନ ଓ ଅଗ୍ରଗତି ସଙ୍ଗେ ବେକାରୀ ଦୂରୀକରିବା ପାଇଁ ଯେଉଁ ସୁଯୋଗ ପାଉଥିଲେ ଏବେ ବହୁରାଷ୍ଟ୍ରୀୟ କଂପାନୀର ଅବାଧ ପ୍ରବେଶ ଫଳରେ ସେ ଦ୍ୱାର ମଧ୍ୟ ବନ୍ଦ ହୋଇଗଲା । ଏଠାରେ ସ୍ମରଣ କରାଯାଇପାରେ ଯେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ପି.ଭି ନରସିଂହରାଓଙ୍କ ସମୟରେ ମୁକ୍ତ ଓ ଅବାଧ ଅର୍ଥନୀତିର ସ୍ଥିତି ଜୋରସୋରରେ କରାଗଲାବେଳେ ଅଷ୍ଟମ ପଞ୍ଚବାର୍ଷିକ ଯୋଜନାରେ ସମବାୟକୁ ଅଲଗା କରିଦିଆଯାଇଥିଲା ।ଯଦିଓ ପ୍ରଥମ ପଞ୍ଚବାର୍ଷିକ ଯୋଜନା ଆରମ୍ଭରୁ ବିକାଶଶୀଳ ଭାରତର ଉନ୍ନୟନ ପାଇଁ ସମବାୟ ସଂସ୍ଥା ହିଁ ଅବ୍ୟର୍ଥ ମହୌଷଧି ବୋଲି ବିଚାରପୂର୍ବକ କୁହାଯାଇ ତାକୁ ଗୁରୁତ୍ୱ ଦିଆଯାଇଥିଲା । ଦୁର୍ନୀତି, ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତିଙ୍କ ଶାସନରେ ଅପାରଗତା ଓ ଠିକଣା ଭାବରେ ଅଗ୍ରାଧିକାରଭିତ୍ତିରେ ସମ୍ବଳର ବଣ୍ଟନ ନ ହେବାରୁ ମିଶ୍ରିତ ଅର୍ଥନୀତି ବିଫଳ ହେଲା । ସମାଜବାଦର ତ୍ରୁଟି ବିଚ୍ୟୁତି ଓ ପୁଞ୍ଜିବାଦର ତ୍ରୁଟିବିଚ୍ୟୁତିର ଅଧିକାରୀ ହୋଇ ଭାରତୀୟ ଅର୍ଥନୀତି ଆଶାନୁରୂପ ସଂଫଳତା ଦେଖାଇପାରିଲା ନାହିଁ । ଏଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ନୂତନ କିଛି ହଟଚମକ ଦେଖାଇବା ଅଭିଳାଷରେ ଭାରତବର୍ଷର ସଂସ୍କୃତି, ଓ ସଂସ୍କାର ଓ ପ୍ରାଚୀନତ୍ୱକୁ ପାଶୋରିଯାଇ ରକ୍ଷାକବଚ ସ୍ୱରୂପ ପୁନଶ୍ଚ ପୁଞ୍ଜିବାଦୀ ଚିନ୍ତନ ଆଧାରିତ ଜଗତୀକରଣ ଅର୍ଥନୀତିକୁ କଂଗ୍ରେସ ଗ୍ରହଣ କଲା, ଯାହାଫଳରେ ଅର୍ଥନୀତିଜ୍ଞ ମନମୋହନ 'ମନମୋହନୀୟ ଶୈଳୀରେ ୧୯୯୧ରେ ମୁକ୍ତ ଅବାଧ ଅର୍ଥନୀତି ଭାରତବର୍ଷରେ ଚାଲୁ କଲେ ରାଓ ସରକାରଙ୍କ ପୂର୍ଣ୍ଣ ସମର୍ଥନରେ ।

ବହୁରାଷ୍ଟ୍ରୀୟ ସଂସ୍ଥାକୁ ଉତ୍ସାହିତ କରିବାପାଇଁ ଓ ବିଦେଶୀ ପୁଞ୍ଜି ଭାରତକୁ ଅଧିକରୁ ଅଧିକ ଆଣିବା ନିମନ୍ତେ ପରିବେଶ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଯାହା ପୁରୁଣା ତା ପ୍ରତି ଧ୍ୟାନ ଊଣା କରିବାରେ ସରକାର ଲାଗିଗଲେ ଯାହା ଫଳରେ ସମବାୟ ଆନ୍ଦୋଳନର ଭଟ୍ଟା ପଡ଼ିଗଲା । ଅନ୍ୟ ପକ୍ଷରେ ସମବାୟ ସଂସ୍ଥା ଜରିଆରେ ବେକାରୀ ଦୂରିକରଣ ଓ ଶିଳ୍ପ ଅଗ୍ରଗତି କ୍ଷେତ୍ରରେ ଥିବା ସୁଯୋଗ ଗୁଡ଼ିକ ବଢ଼ିବା ପରିବର୍ତ୍ତେ କମିବାକୁ ଲାଗିଲା । ବୋଧହୁଏ କେନ୍ଦ୍ର ସରକାର ବିଚାରିଥିଲେ, ଦେଶ ଭିତରେ ଥିବା କଞ୍ଚାମାଲ ଓ ମାନବ ସମ୍ବଳକୁ ବିନିଯୋଗ କରି ଉତ୍ପାଦନ ବଢ଼ାଇବାରେ ସମର୍ଥ ସମବାୟ ଆନ୍ଦୋଳନକୁ ପ୍ରୋତ୍ସାହିତ କଲେ ବହୁରାଷ୍ଟ୍ରୀୟ ସଂସ୍ଥା ବା ବଡ଼ ବଡ଼ ବେସରକାରୀ କଂପାନୀଗୁଡ଼ିକ ଘୋର ଅସନ୍ତୁଷ୍ଟ ହେବେ

ଏବଂ ଉଦାରୀକରଣର ସୁଫଳ ସୀମିତ ସମୟ ଭିତରେ ଭାରତ ବର୍ଷ ପାଇପାରିବ ନାହିଁ । ସେଥିପାଇଁ କ୍ଷୁଦ୍ର ଶିଳ୍ପ, କୁଟୀରଶିଳ୍ପକୁ ପ୍ରୋତ୍ସାହନ ନଦେଇ ସମବାୟର ଡେଣା କାଟିଦେଇ ପୁଞ୍ଜିବାଦୀ ମନୋବୃତ୍ତିର ଧାରକ ବହୁରାଷ୍ଟ୍ରୀୟ ସଂସ୍ଥାକୁ ପ୍ରୋତ୍ସାହନ ଦେଲେ । 'ଗାଟ' ଚୁକ୍ତି ଯୋଗୁ ବହୁରାଷ୍ଟ୍ରୀୟ ସଂସ୍ଥାଗୁଡ଼ିକ ଏହି ଦେଶରେ ଅବାଧ ବାଣିଜ୍ୟ କାରବାର କରି ଏହାର ଅର୍ଥନୀତିକୁ ସମୃଦ୍ଧ କରିବେ ବୋଲି ଜୋରସୋର ପ୍ରଚାର ଚାଲିଲା । କେନ୍ଦ୍ରର କଂଗ୍ରେସ ନେତୃବୃନ୍ଦ 'ଗାଟ' ଚୁକ୍ତି ଓ ଡଙ୍କେଲ ପ୍ରସ୍ତାବ ସପକ୍ଷରେ ପ୍ରଚାର ଆରମ୍ଭ କଲେ ଯାହାଦ୍ୱାରା ସମବାୟ ଅର୍ଥନୀତିର ଗ୍ରହଣ ଯୋଗ୍ୟତାକୁ ଅଣଆଡ଼ିଆରେ ରଖିଦେଲେ । ଭାରତପରି ଗରିବ ରାଷ୍ଟ୍ରରେ ଜନସଂଖ୍ୟା କ୍ରମଶଃ ବଢୁଥିବାବେଳେ ଅଧିକ ଶ୍ରମ ଓ କମ ପୁଞ୍ଜିରେ ଉତ୍ପାଦନକ୍ଷମଶିଳ୍ପ (Labour Intensive project) ଅଧିକରୁ ଅଧିକ ହେବା ଉଚିତ ଥିଲାବେଳେ ନେତୃବର୍ଗ ସେଥିପ୍ରତି ଲକ୍ଷ୍ୟ ରଖିଲେ ନାହିଁ । ଏକ ପକ୍ଷରେ ଉତ୍କଟବେକାରୀ, ଅପରପକ୍ଷରେ ଶିକ୍ଷାର ଅଭାବ ଓ ଅବହେଳିତ ଜନସ୍ୱାସ୍ଥ୍ୟ ଦାରିଦ୍ର୍ୟ ସୀମାରେଖା ତଳେ ଥିବାଲୋକଙ୍କ ସଂଖ୍ୟା ବୃଦ୍ଧି ଘଟୁଥିବା ବେଳେ ଗାନ୍ଧିଜୀଙ୍କ ଗ୍ରାମ ସ୍ୱରାଜ୍ୟ କାର୍ଯ୍ୟକ୍ରମ ଓ ସ୍ୱାବଲମ୍ୱନଶୀଳ ଅର୍ଥନୀତିକୁ ବିଚାରକୁ ଅଣାଗଲା ନାହିଁ, ବରଂ ପ୍ରଚାର ମାଧ୍ୟମରେ ଦେଶକୁ ସାମ୍ରାଜ୍ୟବାଦୀଙ୍କ ହାତରେ ଏକପ୍ରକାର ବିକ୍ରୟ କରିବାକୁ ମନସ୍ଥ କରାଗଲା କହିଲେ ଚଳେ । ଉଦାରୀକରଣ ଅର୍ଥନୀତିକୁ ଲୋକପ୍ରିୟ କରିବା ପାଇଁ ସାଧାରଣ ଲୋକଙ୍କ ସର୍ବନିମ୍ନ ଅଧିକାରରେ ମଧ୍ୟ ହସ୍ତକ୍ଷେପ କରାଗଲା, ଗାନ୍ଧିଜୀଙ୍କ ଲୁଣମରା ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଗରିବ ଲୋକର ଲୁଣ ମାରିବାର ଅଧିକାର । ଚକ୍ରାନ୍ତକରି ସେଇ ଅଧିକାରରୁ ଲୋକଙ୍କୁ ବଞ୍ଚିତ କରିବା ପାଇଁ ଆଇଓଡ଼ାଇଜଡ୍ ସଲଟ ବା ଆୟୋଡ଼ିନଯୁକ୍ତ ଲୁଣର ପ୍ରଚାର ଓ ପ୍ରସାର ଜୋରସୋରରେ ଚାଲିଛି । ୧୯୮୯ରୁ କେନ୍ଦ୍ରର କଂଗ୍ରେସ୍ ସରକାର ଆୟୋଡ଼ିନ ଯୁକ୍ତ ଲୁଣର ବ୍ୟବହାର କର୍ମସୂଚୀ ଗ୍ରହଣ କଲେ । ଲୁଣକୁ ଆୟୋଡ଼ିନଯୁକ୍ତ କରିବାର ଖର୍ଚ୍ଚ ସାଧାରଣ ଲୁଣ ଅପେକ୍ଷା ୩ଶହ ଗୁଣ ବେଶି ହେଲେ ମଧ୍ୟ ବିଦେଶୀ ମୁଦ୍ରାବିନିମୟରେ ବିଦେଶରୁ ରାସାୟନିକ ଦ୍ରବ୍ୟ ଆମଦାନୀପୂର୍ବକ ଏହା କରାଗଲା ।

ଦୂରଦର୍ଶନରେ ବିଜ୍ଞାପନ ମାଧ୍ୟମରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଚଳଚ୍ଚିତ୍ର ଅଭିନେତ୍ରୀମାନଙ୍କ ହାତରେ ଆୟୋଡ଼ିନ୍‌ଯୁକ୍ତ ଲୁଣ ପ୍ୟାକେଟ ଧରାଇ ଏହାର ଚାହିଦା ବୃଦ୍ଧି କରିବା ପାଇଁ ବିଧିବଦ୍ଧ ଯୋଜନା ହେଲା । କୁଆଡ଼େ ଆୟୋଡ଼ିନଯୁକ୍ତ ଲୁଣ ନଖାଇଲେ ଗର୍ଭସ୍ଥ ସନ୍ତାନ ଅସୁସ୍ଥ ହୋଇ ଜନ୍ମ ନେବାର ସମ୍ଭାବନା ରହିଛି । ଭାରତବାସୀଙ୍କ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଆଗ୍ରହୀ ଛଦ୍ମବେଶୀ, ପୁଞ୍ଜିବାଦୀ, ବହୁ ରାଷ୍ଟ୍ରୀୟ ସଂସ୍ଥା ଆମଦେଶକୁ ଆସି ଆୟେଡ଼ିନଯୁକ୍ତ ଲୁଣ ଆମଦାନୀ କଲେ ।

ବହୁରାଷ୍ଟ୍ରୀୟ ସଂସ୍ଥାଗୁଡ଼ିକର ବ୍ୟବସାୟବୃଦ୍ଧି ପାଇଁ ଆୟୋଜନ, ପ୍ରଚାର ଓ ବିଜ୍ଞପାନ ମାଧ୍ୟମରେ ସେସବୁର ଚାହିଦା ବଢ଼ାଇ ଅର୍ଥନୀତିକୁ ବିଧ୍ୱସ୍ତ କଲା କିଏ, ଏ ପ୍ରଶ୍ନର ଉତ୍ତର ଦେବାପାଇଁ ବିଦେଶୀ ପୁଞ୍ଜି ନିବେଶକାରୀଙ୍କ ପାଇଁ ଆକର୍ଷଣୀୟ ପରିବେଶ ସୃଷ୍ଟି କରିବାରେ ଉତ୍ସାହୀ ନେତୃବର୍ଗ ପ୍ରସ୍ତୁତ ତ ? ଏବେ ଯେଉଁ ଅର୍ଥନୈତିକ ଅସୁସ୍ଥତା ଦେଖା ଦେଇଛି ତହିଁରେ କେନ୍ଦ୍ର ସରକାରଙ୍କର ବିଳମ୍ୱରେ ନିଦ ଭାଙ୍ଗିଛି, ଯାହାଦ୍ୱାରା ମିଳିତ ସାମ୍ମୁଖ୍ୟ ସରକାର ଉଦାରୀକରଣ ଅର୍ଥନୀତିକୁ ବରଣ କଲେ ମଧ୍ୟ ବେକାରୀ ସମସ୍ୟା ଦୂରୀକରଣ ଓ କୁଟୀରଶିଳ୍ପର ଆବଶ୍ୟକତା ଅନୁଭବ କରି ସମବାୟ କ୍ଷେତ୍ରକୁ ପୁଣି ଗୁରୁତ୍ୱ ଦେଇଛନ୍ତି । ସମବାୟ ନବମ ପଞ୍ଚବାର୍ଷିକ ଯୋଜନାର ଅନ୍ତର୍ଭୁକ୍ତ ହୋଇଛି । ସାଧାରଣ ମଣିଷର ସ୍ୱାର୍ଥ ସାଧନ ନିମନ୍ତେ ସମବାୟ କ୍ରିୟାଶୀଳ ହୋଇପାରିଲେ କୃଷିଭିତ୍ତିକ ଅର୍ଥନୀତି ସ୍ୱାବଲମ୍ୱୀ ହେବ । ଏ ଚେତନା ଏବେ କେତେକାଂଶରେ ଜାଗ୍ରତ ହୋଇଛି; କିନ୍ତୁ ଭାରତୀୟ ଅର୍ଥନୀତିରେ ବହୁରାଷ୍ଟ୍ରୀୟ କମ୍ପାନୀର ପ୍ରବେଶ ଦେଶୀୟ ବାଣିଜ୍ୟିକ ପ୍ରତିଷ୍ଠାନ ଉପରୁ ନିୟନ୍ତ୍ରଣ ଉଠାଇନେବା ଫଳରେ ସାଧାରଣ ମଣିଷଙ୍କ

ପାଇଁ ଉଦ୍ଦିଷ୍ଟ ସମବାୟ ପ୍ରକ୍ରିୟାରେ ଉତ୍ପାଦନ ଦ୍ରବ୍ୟର ଚାହିଦା ଅସମ ପ୍ରତିଯୋଗିତାର ସମ୍ମୁଖୀନ ହେଉଛି । ପ୍ରଯୁକ୍ତିର ଦ୍ରୁତ ବିକାଶ ନ ଘଟିଲେ ସମବାୟ ଆନ୍ଦୋଳନ ଲକ୍ଷ୍ୟ ସାଧନ କରିପାରିବ ନାହିଁ । ସରକାର ଅନୁଭବ କରିବା ଉଚିତ ଯେ ସମ୍ପ୍ରତି ରାଜନୈତିକ ଅସ୍ଥିରତା ଯୋଗୁଁ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଛି ତାହା ଭାରତ ପାଇଁ ସୁଯୋଗ ପରିବର୍ତ୍ତେ ଦୁର୍ଯୋଗ ଆମଦାନୀ କରିବ । ଅର୍ଥନୈତିକ ପରାଧୀନତା ଏକ ଭୟଙ୍କର ବିପଦ । ଡଲାରର ଏକଚାଟିଆ କାରବାରର ଅନ୍ତର୍ନିହିତ ବିପଦପ୍ରତି ସାବଧାନ ରହିବା ସଙ୍ଗେ ସଙ୍ଗେ ନୂତନ ଔପନିବେଶବାଦ କବଳରୁ ଅର୍ଥନୀତିକୁ ରକ୍ଷା କରିବା ଏ ବେଳରେ ଜରୁରୀ ବୋଧହୁଏ । ଆତ୍ମନିର୍ଭରଶୀଳ ହୋଇ ବିକାଶଶୀଳ ଭାରତର ଅର୍ଥନୀତିକୁ ନୂତନ ଔପନିବେଶବାଦରୁ ରକ୍ଷା ପାଇଁ ଜନମତ ସୃଷ୍ଟି ହେଉ ।

(୨.୧୨.୯୭ ତାରିଖର 'ସମାଜ' ସମ୍ପାଦକୀୟ)



## ବହୁରାଷ୍ଟ୍ରୀୟ କମ୍ପାନୀ ସହ ଚୁକ୍ତି ସ୍ୱାକ୍ଷର କଲେ ଚାଷୀମାନେ ସର୍ବସ୍ୱାନ୍ତ ହୋଇଯିବେ

କଳାହାଣ୍ଡି, ବଲାଙ୍ଗୀର ଏବଂ ନୂଆପଡ଼ା ଜିଲ୍ଲାରେ ଖାଦ୍ୟ ଶସ୍ୟର ଉତ୍ପାଦନ ଉପରେ ତଥ୍ୟ ସଂଗ୍ରହ କରିବା ପାଇଁ ବରିଷ୍ଠ ସାମ୍ବାଦିକ ଏବଂ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଫେଲୋ ଶ୍ରୀ ଦେବିନ୍ଦର ସିଂଙ୍କ ଖଡ଼ିଆଳରେ ରହଣି ସମୟରେ ସ୍ଥାନୀୟ ଜାଗୃତି ଶ୍ରମିକ ସଂଘର ସଭାଗୃହରେ ବୁଦ୍ଧିଜୀବୀମାନଙ୍କ ସମାବେଶରେ ଭାଷଣ ଦେଇ ୱାର୍ଲଡ୍ ଟ୍ରେଡ୍ ଅର୍ଗାନାଇଜେସନର ଦୋମୁହାଁ ନୀତିର ସମାଲୋଚନା କରିଥିଲେ ।

ଭାରତ ସରକାରଙ୍କୁ ଚାଷୀମାନଙ୍କୁ ରିହାତି ନଦେବା ପାଇଁ ବିଶ୍ୱ ବ୍ୟାଙ୍କ ଏବଂ ବିଦେଶୀ ସଂସ୍ଥାମାନେ ବାରମ୍ବାର ଚାପ ପକାଉଥିବାବେଳେ ଆମେରିକା ଏବଂ ୟୁରୋପ ୟୁନିୟନ ସର୍ବାଧିକ ରିହାତି ଚାଷୀମାନଙ୍କୁ ଦେଉଛନ୍ତି ବୋଲି ସେ ଦର୍ଶାଇଥିଲେ ଏବଂ ଆମ ସରକାର ଚିକ୍ତି ସ୍ୱାକ୍ଷର କଲେ ଭାରତର ଚାଷୀମାନେ ଲୋପ ପାଇଯିବେ ବୋଲି ସେ ମତ ପ୍ରକାଶ କରିଥିଲେ । ଉଦାହରଣ ଦେଇ ସେ କହିଲେ ଯେ ଫ୍ରାନ୍ସରେ ଗୋଟିଏ ଲିଟର କ୍ଷୀରର ଦାମ ୭ ଫ୍ରାଙ୍କ କିନ୍ତୁ ବିଦେଶକୁ ରପ୍ତାନି କଲେ ଚାଷୀକୁ ସରକାର ୩୬ ଫ୍ରାଙ୍କ ସବ୍‌ସିଡ଼ି ଆକାରରେ ଦେଇଥାଏ । ଏପରି ନୀତି ସାମନାରେ ଭାରତର ଚାଷୀ ମୁକାବିଲା କରିପାରିବ କି ବୋଲି ସେ ପ୍ରଶ୍ନ କରିଥିଲେ ?

ସେ ପୁଣି କହିଥିଲେ ଯେ ଭାରତର ଜନସଂଖ୍ୟା ବୃଦ୍ଧି ଯୋଗୁ ଚାଷୀର ହାରାହାରି ମୁଣ୍ଡ ପିଛା ଚାଷ ଜମି କମିଯାଉଥିବାରୁ ଏଠାରେ ଚାଷ କରିବା ଲାଭପ୍ରଦ ହେଉନାହିଁ କିନ୍ତୁ ଆମେରିକାର ଜନସଂଖ୍ୟାର ୧ ଭାଗରୁ କମ୍ ଚାଷୀ ରହିଯାଇଛନ୍ତି ଏବଂ ଚାଷ କ୍ଷେତ୍ରରେ ଉନ୍ନତ ଯନ୍ତ୍ରପାତି ଏପରିକି କିଆରୀରେ ଲାଇନ ଟାଣିବା ପାଇଁ ଉଡ଼ାଜାହାଜରେ ଲେସ୍‌ର ମାଧ୍ୟମରେ ହେଉଥିବାରୁ ସେଠାରେ ଉତ୍ପାଦନ ଅଧିକ ଏବଂ ଅଧିକ ମାତ୍ରା ଉତ୍ପାଦନ ଯୋଗୁଁ କମ ଦାମ । ଏହାକୁ ମୁକାବିଲା କରିବାକୁ ଆମର ସାମର୍ଥ୍ୟ ନାହିଁ ବୋଲି ସେ ଜଣାଇଥିଲେ ।

ରାଜନୈତିକ ବ୍ୟକ୍ତିମାନେ ଏହି ଚୁକ୍ତିପତ୍ର ବାବଦରେ ଅଜ୍ଞ ଏବଂ ଏହି ଚୁକ୍ତିପତ୍ର ବାବଦରେ ପ୍ରକୃତ ଚାଷୀମାନଙ୍କୁ ଜଣାଇ ଏହା ବିରୋଧରେ ଆନ୍ଦୋଳନ ନକଲେ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଆମ ଦେଶକୁ ଆଉ ଥରେ ପରାଧୀନ କରିଦେବେ ବୋଲି ସେ ଉଦ୍‌ବେଗ ପ୍ରକାଶ କରିଥିଲେ । ତାଙ୍କ ରଚିତ ପୁସ୍ତକ ସିଡ୍‌ସ ଅଫ ଡେସପାୟାରର ଓଡ଼ିଆ ଭାଷାରେ ଅନୁବାଦ କରିବା ପାଇଁ ଉପସ୍ଥିତ ଭଦ୍ରମଣ୍ଡଳିଙ୍କ ସାହାଯ୍ୟ ମାଗିଥିଲେ । ଏହାଦ୍ୱାରା ପ୍ରକୃତ ଚାଷୀ ରାଜନେତାମାନଙ୍କ ଅସଲ ରୂପ ଜାଣିପାରିବ ବୋଲି ସେ କହିଥିଲେ ।

(୧୭.୧୧.୯୭ 'ପ୍ରଣତନ୍ତ୍ରରୁ' ଗୃହିତ)



# ନୂତନ ଅର୍ଥନୀତିନେଇ ସଂଶୟ

**ଡକ୍ଟର ବୈଦ୍ୟନାଥ ମିଶ୍ର**

ନୂତନ ଅର୍ଥନୀତି ନେଇ ଅନେକ ସନ୍ଦେହ ପ୍ରକାଶ ପାଉଛି ଯେଉଁମାନେ ଏହି ସନ୍ଦେହ ପ୍ରକାଶ କରୁଛନ୍ତି, ସେମାନେ ସମସ୍ତେ ଯେ ରାଜନୀତିକ କାରଣରୁ ଏହି ସନ୍ଦେହ ପ୍ରକାଶ କରୁଛନ୍ତି, ତାହା ନୁହେଁ । କେତେଙ୍କର ହୁଏତ ରାଜନୀତିକ ଉଦ୍ଦେଶ୍ୟ ଅଛି । କିନ୍ତୁ ସମସ୍ତଙ୍କ ସନ୍ଦେହକୁ ରାଜନୀତିକ କାରଣ ଦେଇ ଉଡ଼େଇ ଦେବା ଉଚିତ ହେବ ନାହିଁ । ଅନେକ ଭାବୁଛନ୍ତି ଯେ ଭାରତରେ ଯେଉଁ ଅର୍ଥନୈତିକ ପଦ୍ଧତି ଏ ପର୍ଯ୍ୟନ୍ତ ଚାଲିଥିଲା, ତାର କିଛି ପରିବର୍ତ୍ତନ ହେବା ଦରକାର । କିନ୍ତୁ କିପରି ପରିବର୍ତ୍ତନ ହେବ, ସେ କଥା ଠିକ୍ କରିପାରୁ ନାହାନ୍ତି ଏବଂ ନୂତନ ଅର୍ଥନୀତି କିପରି ସେହି ପରିବର୍ତ୍ତନକୁ ସୁଗମ କରିବ, ତାହା ବି ଜାଣି ପାରୁ ନାହାନ୍ତି ।

ଗୋଟିଏ ପ୍ରଶ୍ନ ହେଉଛି ଯେ ଏହି ଯେଉଁ ନୂତନ ଅର୍ଥନୀତି ଦେଶରେ ପ୍ରଣୟନ କରାଯାଉଛି, ଏହା ଫଳରେ ଯୋଜନାର କେତେ ଆବଶ୍ୟକତା ରହିବ । ଭାରତରେ ସ୍ୱାଧୀନତା ପରଠାରୁ ଯେଉଁ ଅର୍ଥନୈତିକ ଯୋଜନା କାର୍ଯ୍ୟକାରୀ ହେଉଥିଲା, ତାର ଲକ୍ଷ୍ୟ କେବଳ ଅର୍ଥନୈତିକ ପ୍ରଗତି ନ ଥିଲା । ଅର୍ଥନୈତିକ ପ୍ରଗତି ସହିତ ସାମାଜିକ ନ୍ୟାୟକୁ ମଧ୍ୟ ଗୁରୁତ୍ୱ ଦିଆଯାଇଥିଲା । ଏହା ଫଳରେ ସାମାଜିକ ନ୍ୟାୟ ଯେ ପ୍ରତିଷ୍ଠିତ ହୋଇଛି, ତାହା ନୁହେଁ । ଏହାର କାରଣ ହେଉଛି ଯେ ଯୋଜନାରେ ଅର୍ଥନୈତିକ ଅଭିବୃଦ୍ଧି ପାଇଁ ଯେତେ ଉଦ୍ୟମ କରାଗଲା, ସାମାଜିକ ନ୍ୟାୟ ପାଇଁ ସେତେ ଉଦ୍ୟମ କରାଗଲା ନାହିଁ । ଯେଉଁମାନେ ଯୋଜନାକୁ କାର୍ଯ୍ୟକାରୀ କଲେ, ସେମାନଙ୍କର ଦୃଷ୍ଟି ସାମାଜିକ ନ୍ୟାୟ ଉପରେ ପର୍ଯ୍ୟବେସିତ ହେଲା ନାହିଁ । ମୋଟାମୋଟି ଏ କଥା କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଅର୍ଥନୈତିକ ଯୋଜନାରେ ଏକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଅଭିବୃଦ୍ଧିରେ ଏତେ ମଜିଗଲେ ଯେ ଯୋଜନାର ଅନ୍ୟ ଦିଗଗୁଡ଼ିକୁ ପୁରା ଭୁଲି ଗଲେ ।

ତେବେ ଏବେ ଯେଉଁ ନୂତନ ଅର୍ଥନୀତି ଗ୍ରହଣ କରାଯାଉଛି, ସେଥିରେ ଅଭିବୃଦ୍ଧିକୁ ଏକମାତ୍ର ଉଦ୍ଦେଶ୍ୟ ବୋଲି ଗ୍ରହଣ କରାଯାଉଛି ଏବଂ ଏ କଥା ସମସ୍ତେ ଜାଣିଛନ୍ତି ଯେ ଅର୍ଥନୈତିକ ଅଭିବୃଦ୍ଧି ବେଶୀ କର୍ମସଂସ୍ଥାନ ସୃଷ୍ଟି କରି ପାରେ ନାହିଁ କି ଦାରିଦ୍ର୍ୟ ଦୂର କରି ପାରେ ନାହିଁ । ଭାରତରେ ୧୯୫୦-୫୧ ଠାରୁ ଆରମ୍ଭ କରି ୧୯୭୯-୧୯୮୦ ପର୍ଯ୍ୟନ୍ତ ଅର୍ଥନୈତିକ ବୃଦ୍ଧିହାର ବାର୍ଷିକ ଶତକଡ଼ା ୩.୫ ହୋଇଥିଲା ବୋଲି ହିସାବ କରାଯାଇଛି ଅଥଚ ସେହି ସମୟ ଭିତରେ କର୍ମସଂସ୍ଥାନ ବୃଦ୍ଧି ହାର ବାର୍ଷିକ ଶତକଡ଼ା ମୋଟେ ୨ ହୋଇଛି ଯଦିଓ କାର୍ଯ୍ୟଦକ୍ଷ ଶ୍ରମଜୀବୀଙ୍କ ସଂଖ୍ୟା ବାର୍ଷିକ ଶତକଡ଼ା ୨.୫ ହିସାବରେ ବୃଦ୍ଧି ପାଇଛି । ତେଣୁ ୧୯୮୦ ବେଳକୁ ଅନେକ ଶ୍ରମଜୀବୀ ବେକାର ହେବାକୁ ବାଧ୍ୟ ହୋଇଛନ୍ତି । ୮୦ ଦଶକରେ ମଧ୍ୟ ଏହାର କିଛି ପରିବର୍ତ୍ତନ ହୋଇନାହିଁ । ସେହି ସମୟରେ ବାର୍ଷିକ ବୃଦ୍ଧିହାର ଅନେକ ଅଧିକ ହୋଇଛି- ଶତକଡ଼ା ୫.୫, ଅଥଚ କର୍ମସଂସ୍ଥାନ ବୃଦ୍ଧି ପାଇଛି ମୋଟେ ୧.୮ । ଏହା କେବଳ ଭାରତର କଥା ନୁହେଁ । ଆମେରିକା ପରି ଏକ ଧନୀ ଦେଶରେ ମଧ୍ୟ ଦାରିଦ୍ର୍ୟ ଦୂର ହୋଇ ପରି ନାହିଁ । ଏବେ ଯାହା ହିସାବ ପ୍ରକାଶ ପାଉଛି ସେଠାରେ ଶତକଡ଼ା ୧୦ ଭାଗରୁ ଅଧିକ ଲୋକ ଦାରିଦ୍ର୍ୟ ସୀମାର ନିମ୍ନରେ ଅଛନ୍ତି । ନିୟୁୟର୍କ ସହରରେ ମୋଟ ଶିଶୁମାନଙ୍କ ଭିତରୁ ଶତକଡ଼ା ପ୍ରାୟ ୨୫ ଭାଗ ଓ ଆଫ୍ରିକା-ଆମେରିକାର ଶିଶୁମାନଙ୍କ ଭିତରୁ ଶତକଡ଼ା ପ୍ରାୟ ୫୦ଭାଗ ଯେଉଁ ପରିବାରରେ ରହୁଛନ୍ତି; ସେହି ପରିବାର ଦାରିଦ୍ର୍ୟ ସୀମାର ନିମ୍ନରେ ଅଛନ୍ତି ବୋଲି ହିସାବ ପ୍ରକାଶ ପାଉଛି । ଭାରତ ଓ ଆମେରିକାର ଦାରିଦ୍ର୍ୟର ସୀମା ସମାନ ନୁହେଁ । ତେବେ ଏତେ ଲୋକ ଯେ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଅଛନ୍ତି ସେଥିରୁ ଜଣାଯାଉଛି ଯେ ଅର୍ଥନୈତିକ ଅଭିବୃଦ୍ଧି ସହଜରେ ଦାରିଦ୍ର୍ୟ ଦୂର କରିପାରିବ ନାହିଁ । ଏକ ସମୃଦ୍ଧିଶୀଳ ନିୟୁୟର୍କ ସହରରେ ପ୍ରାୟ ୪୦ ହଜାର ବୟସ୍କ ଲୋକ ରାସ୍ତାକଡ଼ରେ ପଡ଼ି ରହିଛନ୍ତି ବୋଲି ଖବର ପ୍ରକାଶ ପାଉଛି । ପ୍ରଶ୍ନ ହେଉଛି

ଯେ ଆମେ ଯେଉଁ ନୂତନ ଅର୍ଥନୈତିକ ନୀତିକୁ ଜୋର୍ ଦେଉଛୁ, ସେଥିରେ ଦାରିଦ୍ର୍ୟ ଦୂର କିପରି ହେବ ଏବଂ ଯୋଜନାର ଆଭିମୁଖ୍ୟ କଣ ହେବ । ନୂତନ ଅର୍ଥନୀତି ବଜାର ଅର୍ଥନୀତିରେ ବିଶ୍ୱାସ କରେ । ଅର୍ଥନୈତିକ ଯୋଜନା ନିୟନ୍ତ୍ରିତ ଅର୍ଥନୀତିରେ ବିଶ୍ୱାସ କରେ । ଏ ଦୁଇଟି ବିଷୟରେ ସମନ୍ୱୟ କିପରି ପ୍ରତିଷ୍ଠିତ ହେବ, ତାହାହିଁ ଏବେ ଚିନ୍ତାର ବିଷୟ ହୋଇଛି ।

ଦ୍ୱିତୀୟ ଅନୁଶୋଚନା ହେଉଛି ଯେ ଏବେ ଯେଉଁ ଆନ୍ତର୍ଜାତୀୟ ଶିଳ୍ପସଂସ୍ଥାମାନେ ଭାରତରେ ଶିଳ୍ପ ପ୍ରତିଷ୍ଠା କରିବାକୁ ଆସୁଛନ୍ତି ସେମାନଙ୍କର ଇନଭେଷ୍ଟମେଣ୍ଟର ଦୁଇଟି ଦିଗକୁ ଲକ୍ଷ୍ୟ କଲେ ଦେଖାଯାଉଛି ଯେ ଆମେ ଅର୍ଥନୈତିକ ବିକେନ୍ଦ୍ରୀକରଣ ପାଇଁ ଯେଉଁ ଉଦ୍ୟମ କରୁଛୁ । ତାହା ସଫଳ ହେଲାପରି ଜଣାଯାଉନାହିଁ ।

ସେମାନେ ପ୍ରତ୍ୟକ୍ଷ ଭାବରେ ଯେଉଁ ଶିଳ୍ପ ପ୍ରତିଷ୍ଠା କରୁଛନ୍ତି, ସେଥିରେ ଅନେକ ପୁଞ୍ଜି ବିନିଯୋଗ କରି ଏତେ ବୃହତାକାର କରୁଛନ୍ତି ଯେ, ଭାରତୀୟ ଶିଳ୍ପପତିମାନେ ସେମାନଙ୍କ ସହିତ ପ୍ରତିଯୋଗିତା କରିବାକୁ ସାହସ କରି ପାରୁନାହାନ୍ତି । ଏବେ ଭାରତରେ ବେସରକାରୀ ସ୍ତରରେ କେନ୍ଦ୍ରୀଭୂତ ଅର୍ଥନୀତି ଅଛି । କେତେକ ବଡ଼ ବଡ଼ ଶିଳ୍ପପତି ଅନେକ ଶିଳ୍ପକୁ ନିୟନ୍ତ୍ରଣ କରୁଛନ୍ତି । ସେମାନଙ୍କ ସହିତ ଛୋଟ ଛୋଟ ଶିଳ୍ପପତିମାନେ ପ୍ରତିଯୋଗିତା କରିବାର ପ୍ରଶ୍ନ ଉଠୁ ନାହିଁ । ଯେଉଁମାନେ ଏବେ ସ୍ୱଦେଶୀ କଥା କହୁଛନ୍ତି, ସେମାନେ ବିକେନ୍ଦ୍ରିକ ଅର୍ଥନୀତିକୁ ଗୁରୁତ୍ୱ ଦେଉ ନାହାନ୍ତି । ସେମାନେ ଏହି ବଡ଼ ବଡ଼ ଶିଳ୍ପପତିଙ୍କ ସ୍ୱାର୍ଥରକ୍ଷା କରିବାକୁ ଚାହୁଁଛନ୍ତି । କାରଣ ସେମାନେ ଭାବୁଛନ୍ତି ଯେ ବିଦେଶୀ ଶିଳ୍ପସଂସ୍ଥାମାନଙ୍କ ସହିତ ଏହି ଦେଶୀୟ ଶିଳ୍ପସଂସ୍ଥାମାନେ ସହଜରେ ପ୍ରତିଯୋଗିତା କରି ପାରିବେ ନାହିଁ ।

ପୁଣି ଦେଖାଯାଉଛି ଯେ ଅନେକ ବେଦେଶୀ ଶିଳ୍ପସଂସ୍ଥା କେତେକ ବୃହତ ଦେଶୀୟ ଶିଳ୍ପସଂସ୍ଥାର ଅଂଶ ଖରିଦ କରି ସଂଯୁକ୍ତ ଉଦ୍ୟୋଗ (joint enterprise) ପ୍ରତିଷ୍ଠା କରିବାକୁ ଚେଷ୍ଟା କରୁଛନ୍ତି । ଏହି ସଂଯୁକ୍ତ ଉଦ୍ୟୋଗ ବୃହତ୍ତ ଆକାରରେ ପ୍ରତିଷ୍ଠିତ ହେବା ସ୍ୱାଭାବିକ । ଏହା ଯଦି ହୁଏ ତାହାହେଲେ ଛୋଟ ଛୋଟ ଶିଳ୍ପପତିମାନେ ସେମାନଙ୍କ ସହିତ ପ୍ରତିଯୋଗିତା କରିବାକୁ ଚେଷ୍ଟା ମଧ କରିବେ ନାହିଁ । ସେମାନଙ୍କ ପାଖରେ ଏତେ ଅଧିକ ପୁଞ୍ଜି ଏତେ ଆଧୁନିକ ଯାନ୍ତ୍ରିକ ପଦ୍ଧତି ଓ କାରିଗରୀ ଶିକ୍ଷା ରହିବ ଯେ ସେମାନେ ଖୁବ୍ ସହଜରେ ବଜାରକୁ ନିୟନ୍ତ୍ରଣ କରିବାକୁ ସୁଯୋଗ ପାଇବେ । ଏହି ପରିପ୍ରେକ୍ଷୀରେ ବିକେନ୍ଦ୍ରୀତ ଅର୍ଥନୀତି କିପରି ପ୍ରତିଷ୍ଠିତ ହେବ, ତାହା ଏକ ବିରାଟ ପ୍ରଶ୍ନ ।

ତୃତୀୟ ସମସ୍ୟା ହେଉଛି ଏହି ଯେଉଁ ବୈଦେଶିକ ଶିଳ୍ପସଂସ୍ଥାମାନେ ଭାରତରେ ସେମାନଙ୍କର ଶିଳ୍ପ ପ୍ରତିଷ୍ଠା କରିବେ ବା ଭାରତୀୟ ଶିଳ୍ପସଂସ୍ଥାମାନଙ୍କ ସହିତ ମିଳିତ ହୋଇ ସଂଯୁକ୍ତ ଉଦ୍ୟୋଗ ପ୍ରତିଷ୍ଠା କରିବେ, ସେମାନେ ଯେଉଁ ସବୁ ଦ୍ରବ୍ୟ ଉତ୍ପାଦନ କରିବେ, ସେଥିରେ ଜନସାଧାରଣଙ୍କ ଆବଶ୍ୟକୀୟ ଦ୍ରବ୍ୟର ଅଭାବ ତୁଟି ପାରିବ ନା ନାହିଁ । ଏବେ ଯାହା ଦେଖାଯାଉଛି, ସେଥିରୁ ଜଣା ପଡୁଛି ଯେ ସେମାନେ ଅଧିକ ଖାଉଟି ଦ୍ରବ୍ୟ ଉତ୍ପାଦନ କରି ଭାରତୀୟ ବଜାରକୁ ଦଖଲ କରିବାକୁ ଚାହୁଁଛନ୍ତି । ଏହି ଖାଉଟି ଦ୍ରବ୍ୟର ଦୁଇଟି ବିଭାଗ ଅଛି । ଗୋଟିଏ ହେଉଛି କେଣ୍ଟକୀ ଭଜା କୁକୁଡ଼ା, ପେପ୍ସି, କକୋକୋଲା ଇତ୍ୟାଦି । ଏସବୁ ହେଉଛି ନାଶୀ ପଣ୍ୟଦ୍ରବ୍ୟ (perishable commodities) । ଅନେକ ବିଦେଶୀ ଶିଳ୍ପପତି ଏବେ ଏହି ନାଶୀ ପଣ୍ୟଦ୍ରବ୍ୟ ଉତ୍ପାଦନ କରି ଭାରତର ବଜାର ଦଖଲ କରିବାକୁ ଚେଷ୍ଟା କରୁଛନ୍ତି । ଭାରତରେ ଏହି ସବୁ ଦ୍ରବ୍ୟର' ବଜାର ଆସ୍ତେ ଆସ୍ତେ ବୃଦ୍ଧି ହେବାରେ ଲାଗିଛି । ଭାରତରେ ମଧ୍ୟବର୍ତ୍ତୀ ଶ୍ରେଣୀ (Middle Class People)ଙ୍କ ସଂଖ୍ୟା ପ୍ରାୟ ୨୫/୩୦ କୋଟି ହେବ । ଏହା ଆମେରିକା ଜନସଂଖ୍ୟା ଠାରୁ ଅଧିକ । ଆମେରିକାର ଜନସଂଖ୍ୟା ଏବେ ପ୍ରାୟ ୨୫/୨୬ କୋଟି । ତେଣୁ ଭାରତରେ ଏତେ ବଡ଼ ବଜାରର ସୁଯୋଗ ନେବାକୁ ସେମାନେ ସମସ୍ତ ପ୍ରକାର ଉଦ୍ୟମ କରିବେ । ଭାରତର ମଧ୍ୟବର୍ତ୍ତୀ ଶ୍ରେଣୀ

ଲୋକଙ୍କର ମଧ୍ୟ ଏହି ବୈଦେଶିକ ପଣ୍ୟଦ୍ରବ୍ୟ ପ୍ରତି ଅନେକ ଆଗ୍ରହ । ଏଥିରେ କୌଣସି ସନ୍ଦେହ ନାହିଁ ଯେ ଭାରତରେ ଯେଉଁ ନାଣୀ ପଣ୍ୟଦ୍ରବ୍ୟ ଉତ୍ପାଦିତ ହେଉଛି, କେତେକ ବିଦେଶୀରାଜ୍ୟର ସେହିପ୍ରକାର ପଣ୍ୟଦ୍ରବ୍ୟ ତାହାଠାରୁ ଅଧିକ ଉତ୍କୃଷ୍ଟତର । ଏହା ବ୍ୟତୀତ ବୈଦେଶିକ ପଣ୍ୟଦ୍ରବ୍ୟର ଭାରତରେ ଯେଉଁ ମର୍ଯ୍ୟାଦା ଅଛି, ଦେଶୀୟ ପଣ୍ୟଦ୍ରବ୍ୟର ସେହି ମର୍ଯ୍ୟାଦା ନାହିଁ । ଏହାକୁ ଏକ ପ୍ରତିଷ୍ଠିତ ପଦର ଚିହ୍ନ (Status symbol) ବୋଲି ଆଖ୍ୟା ଦିଆଯାଇ ପାରେ । ଶହ ଶହ ବର୍ଷର ପରାଧୀନତା ଓ ସାମାଜିକ ବୈଷମ୍ୟ ଏହି ଆକର୍ଷଣ ପାଇଁ ଅନେକ ଦାୟୀ ବୋଲି କୁହାଯାଇ ପାରେ ।

ସେ ଯାହାହେଉ ନା କାହିଁକି ଏହି ଖାଉଟି ଦ୍ରବ୍ୟର ପ୍ରସାର ଫଳରେ ଭାରତରେ ଯେଉଁ ଏକ ଉପଭୋକ୍ତା ସମାଜ (Consumerism) ସୃଷ୍ଟି ହେଉଛି, ତାହା ଫଳରେ ଅର୍ଥନୈତିକ ସ୍ଥିତି ଦୁର୍ବଳ ହେବ ନାଁ ସବଳ ହେବ, ତାହା ବର୍ତ୍ତମାନ ବିଚାର କରିବାର ସମୟ ଆସିଛି । ଏକ ବିକାଶଶୀଳ ଦେଶରେ ଅର୍ଥନୀତିକୁ ସୁଦୃଢ଼ କରିବାକୁ ହେଲେ ଖାଉଟି ଦ୍ରବ୍ୟର ଉପଭୋଗ କମେଇ ପୁଞ୍ଜି ଭିତ୍ତିକ ଦ୍ରବ୍ୟର ଉତ୍ପାଦନ ଅଧିକ କରିବା ଦରକାର । ବିଶେଷ କରି ସୌଖୀନ ଦ୍ରବ୍ୟର ଉତ୍ପାଦନ ନ କମିଲେ, ଆବଶ୍ୟକୀୟ ଦ୍ରବ୍ୟରୁ ଉତ୍ପାଦନ ବୃଦ୍ଧି ହୋଇ ପାରିବ ନାହିଁ । କିପରି ଭାବରେ ଏହି ସୌଖୀନ ଦ୍ରବ୍ୟର ଉତ୍ପାଦନ କମ ହେବ, ସେହି ପ୍ରଶ୍ନ ଅନେକ ବୁଦ୍ଧିବାଦୀଙ୍କୁ ବିବ୍ରତ କରିବାରେ ଲାଗିଛି । ଆମେ ଏବେ ଭାରତକୁ ଲୁହା ପରଦାରେ ଆବୃତ କରି ରଖି ପାରିବୁ ନାହିଁ । ରୁଷିଆ କରି ପାରିଲା ନାହିଁ । ଚାଇନା କରି ପାରୁ ନାହିଁ । ଭାରତ କରି ପାରିବ ନାହିଁ । ଭାରତର କବାଟ ଝରକା ଖୋଲିବାକୁ ଆମେ ବାଧ୍ୟ । ଏହି କବାଟ ଝରକା ଖୋଲିଲା ଫଳରେ କିଛି ବିଶୁଦ୍ଧ ବାୟୁ ନିଶ୍ଚୟ ଆସିବ । କିନ୍ତୁ ତାହା ସହିତ କିଛି ମଶା ଓ ମାଛି ମଧ୍ୟ ଆସିବାର ସମ୍ଭାବନା । ସେହି ମଶା ଓ ମାଛିଙ୍କୁ କିପରି ରୋକିବାକୁ ହେବ, ସେ ବିଷୟରେ ଏ ପର୍ଯ୍ୟନ୍ତ ବିଶେଷ କିଛି ଚିନ୍ତା ହୋଇଛି ବୋଲି ଜଣା ପଡୁ ନାହିଁ । ତେଣୁ ଏ ଏକ ଗଭୀର ପ୍ରଶ୍ନ । ସେହି ପ୍ରଶ୍ନର ଉତ୍ତର ବାହାର କରିବା ନିତାନ୍ତ ଦରକାର ।

ଚତୁର୍ଥରେ ଏ ପ୍ରଶ୍ନ ମଧ୍ୟ ଉଠୁଛି ଯେ ସରକାରୀ ଉଦ୍ୟୋଗ ଉପରେ ଯଦି ନିବେଶ କମ ହେବ, ତାହାହେଲେ ଅର୍ଥନୈତିକ ପ୍ରଗତି ସହଜ ହୋଇ ପାରିବ କି ? ଏଥିରେ କୌଣସି ସନ୍ଦେହ ନାହିଁ ଯେ ସରକାରୀ ଉଦ୍ୟୋଗ ଯୋଗୁଁ ଅନେକ ବେସରକାରୀ ଶିଳ୍ପ ଓ ବ୍ୟବସାୟ ଅନେକ ଉନ୍ନତି କରିଛନ୍ତି । ସରକାରୀ ଉଦ୍ୟୋଗରେ ଯଦି ସରକାର ଅଧିକ ପୁଞ୍ଜି ବିନିଯୋଗ କରି ନଥାନ୍ତେ, ବିଶେଷ କରି ଆଧାରିକ ସଂଗଠନା, ବୃହତ୍ ଶିଳ୍ପ, ମୁଖ୍ୟ ଶିଳ୍ପ ଓ ଓଜନଦାର ଶିଳ୍ପ ଏବଂ ବ୍ୟାଙ୍କ ଓ ଅନ୍ୟାନ୍ୟ ଆର୍ଥିକ ସଂସ୍ଥାରେ ସରକାରଙ୍କର ପୁଂଜି ଯଥେଷ୍ଟ ପରିମାଣରେ ବିନିଯୋଗ ନ ହୋଇଥାନ୍ତା, ତାହାହେଲେ ଅନେକ ବେସରକାରୀ ଶିଳ୍ପ ଓ ବ୍ୟବସାୟ ଉଧେଇ ପାରି ନଥାନ୍ତେ । ଏ କଥା ସତ ଯେ ସରକାରୀ ଉଦ୍ୟୋଗମାନଙ୍କରେ ଅନେକ କ୍ଷତି ହେଉଛି । ସେଥିପାଇଁ ଅନେକ କାରଣ ଅଛି । ବର୍ତ୍ତମାନ ପ୍ରଶ୍ନ ହେଉଛି ସରକାର ତାଙ୍କର ସୀମା କେତେଦୂର ନିୟନ୍ତ୍ରଣ କରିବେ, କେଉଁ କେଉଁ ଶିଳ୍ପ ଓ ବ୍ୟବସାୟରେ ପୁଂଜି ବିନିଯୋଗ କରିବେ, ସେଗୁଡ଼ିକର ପରିଚାଳନାରେ ସରକାରୀ କର୍ତ୍ତୃତ୍ୱ କେତେ ରହିବ, ସେମାନେ ନିଜର ସଂସ୍ଥାକୁ ପରିଚାଳନା କରିବା ପାଇଁ କେତେ ଅଧିକାର ପାଇବେ, ଏ ପ୍ରଶ୍ନର ମୀମାଂସା ଏ ପର୍ଯ୍ୟନ୍ତ ହୋଇ ନାହିଁ । ଖାଲି କୁହାଯାଉଛି ସରକାରୀ ଶିଳ୍ପ ଓ ବ୍ୟବସାୟ ଯେତେବେଳେ କ୍ଷତିରେ ଚାଲୁଛନ୍ତି, ସେତେବେଳେ ସରକାରୀ ଉଦ୍ୟୋଗ ପରିବର୍ତ୍ତେ ବେସରକାରୀ ଉଦ୍ୟୋଗକୁ ପ୍ରୋତ୍ସାହନ କରାଯିବ । ବେସରକାରୀ ଉଦ୍ୟୋଗ ଦରକାର । କେବଳ ସରକାରୀ ଉଦ୍ୟୋଗରେ ଅର୍ଥନୈତିକ ଅଭିବୃଦ୍ଧି ତ୍ୱରାନ୍ୱିତ ହୋଇ ପାରିବ ନାହିଁ- କିନ୍ତୁ ଉଭୟର ସୀମା ସ୍ଥିର ହେବା ଉଚିତ ।

ଏହା ବ୍ୟତୀତ କୃଷି, କ୍ଷୁଦ୍ର ଶିଳ୍ପ ଓ ଅନେକ ସାମାଜିକ ବିଭାଗରେ ବେସରକାରୀ ସଂସ୍ଥାମାନେ ସହଜରେ ପୁଞ୍ଜି ବିନିଯୋଗ କରି ପାରିବେ ନାହିଁ, କି କରିବାକୁ ଚାହିଁବେ ନାହିଁ । ହୁଏତ କୃଷି ଓ କ୍ଷୁଦ୍ର ଶିଳ୍ପରେ କେତେକ ପରିମାଣରେ ବେସରକାରୀ ପୁଞ୍ଜି ବିନିଯୋଗ ହେବ । କିନ୍ତୁ ତାହା କୃଷି ଓ କ୍ଷୁଦ୍ରଶିଳ୍ପର ଉନ୍ନତି ପାଇଁ ଯଥେଷ୍ଟ ହେବ ନାହିଁ । ଆମ ଦେଶରେ ଅଧିକାଂଶ ଲୋକ କୃଷି ଓ କ୍ଷୁଦ୍ର ଶିଳ୍ପରେ ନିର୍ଭର କରୁଛନ୍ତି । କୃଷି ଓ କ୍ଷୁଦ୍ରଶିଳ୍ପର ଯଦି ଯଥେଷ୍ଟ ଉନ୍ନତି ନହେବ, ତାହାହେଲେ ବେକାରଙ୍କ ସଂଖ୍ୟା ବହୁ ପରିମାଣରେ ବୃଦ୍ଧି ହେବ । ବେକାରଙ୍କ ସଂଖ୍ୟା ବୃଦ୍ଧି ସହିତ ଦାରିଦ୍ର୍ୟ ମଧ୍ୟ ବୃଦ୍ଧି ହେବ । ଭାରତରେ ଶତକଡ଼ା ୪୦ ଭାଗ ଲୋକ ପ୍ରାୟ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଅଛନ୍ତି ବୋଲି କୁହାଯାଉଛି । ଏହି ସୀମା ହ୍ରାସ କରିବା ପାଇଁ କର୍ମସଂସ୍ଥାନର ବୃଦ୍ଧି ଏକାନ୍ତ ଆବଶ୍ୟକ । ସେହି କର୍ମସଂସ୍ଥାନ ମଧ୍ୟ ଉତ୍ପାଦନମୂଳକ ହେବା ଚାହିଁ । ତେଣୁ ଅର୍ଥନୀତିରେ କୃଷି ଓ କ୍ଷୁଦ୍ରଶିଳ୍ପ ପ୍ରତି କେତେ ଗୁରୁତ୍ୱ ଦିଆଯିବ ତାହା ମଧ୍ୟ ନିର୍ଣ୍ଣୟ କରାଯିବା ଉଚିତ ।

ଏଥିରୁ ଦେଖାଯିବ ଯେ ନୂତନ ଅର୍ଥନୀତି ନେଇ ବୁଦ୍ଧିଜୀବୀମାନଙ୍କ ଭିତରେ ବହୁତ ସନ୍ଦେହ ଅଛି । ଏ ପର୍ଯ୍ୟନ୍ତ ସେ ସନ୍ଦେହ ଦୂର କରିବା ପାଇଁ ବେଶି କିଛି ଉଦ୍ୟମ ହୋଇଛି ବୋଲି କହି ହେଉ ନାହିଁ । ନୂତନ ଅର୍ଥନୀତିର ସଫଳତା ପାଇଁ ଏହି ସବୁ ସନ୍ଦେହ ଦୂର କରାଯିବା ଉଚିତ ।

ନିର୍ଦ୍ଦେଶକ, ନବକୃଷ୍ଣ ଚୌଧୁରୀ
ସେଣ୍ଟର ଫର ଡେଭଲପମେଣ୍ଟ ଷ୍ଟଡ଼ିଜ,
ଭୁବନେଶ୍ୱର- ୧୩

●

# ଦ୍ୱିତୀୟ ସ୍ୱାଧୀନତା ଆନ୍ଦୋଳନ - ଏକମାତ୍ର ବିକଳ୍ପ

ଶ୍ରୀ ରବି ରାୟ

କେହି କେହି ପ୍ରଶ୍ନ କରିପାରନ୍ତି ଯେ ଏବର୍ଷ ସାରାଦେଶ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନର ସ୍ୱର୍ଣ୍ଣ ଜୟନ୍ତୀ ପାଳନ କରୁଛି ସେତେବେଳେ ପୁଣି ସ୍ୱାଧୀନତା ଆନ୍ଦୋଳନର ପ୍ରଶ୍ନ ଉଠାଇବା ବାଚାଳତା ନୁହଁ କି ? ଏ ପ୍ରଶ୍ନର ଯଥାର୍ଥ ଉତ୍ତର ପାଇବା ପାଇଁ ଆମକୁ ଗଭୀର ଆତ୍ମମନ୍ଥନ କରିବାକୁ ହେବ । ଯେତବେଳେ ୧୯୯୧ ସାଲରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓ ଦେଶବାସୀ ଓ ପାର୍ଲାମେଣ୍ଟକୁ ନ ପଚାରି ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କର ନିର୍ଦ୍ଦେଶରେ ସାରା ଦେଶ ଉପରେ ଆର୍ଥିକ ଉଦାରୀକରଣ ନୀତିକୁ ଲଦି ଦେଲେ, ସେତେବେଳ ଦେଶର ଚିନ୍ତାଶୀଳ ବୁଦ୍ଧିଜୀବୀମାନଙ୍କର କୁମ୍ଭକର୍ଣ୍ଣ ନିଦ୍ରା ଭାଙ୍ଗିବାକୁ ଆରମ୍ଭ ହେଲା । ଏକଥା ସର୍ବବାଦି ସମ୍ମତ ଯେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ପଛରେ ବିଶ୍ୱର ସାତୋଟି ବିକଶିତ ରାଷ୍ଟ୍ରମାନଙ୍କର (ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଇଟାଲି କାନାଡ଼ା, ଜର୍ମାନି ଓ ଜାପାନ) ସଂପୂର୍ଣ୍ଣ ସମର୍ଥନ ରହିଛି । ଏ ଦେଶମାନେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିକୁ ଆୟୁଧରୂପେ ବ୍ୟବହାର କରନ୍ତି - ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଭଳି ଅବିକଶିତ ଓ ପଛୁଆ ଦେଶମାନଙ୍କର ଆର୍ଥିକ ଶୋଷଣକୁ ଅବ୍ୟାହତ ରଖିବା ପାଇଁ । ଏଠାରେ ଏକ ପ୍ରଶ୍ନ ଉଠିବା ଅତି ସ୍ୱାଭାବିକ ଯେ ୧୯୯୧ ସାଲରେ କାହିଁକି ଏହା ଘଟିଲା, ତା ପୂର୍ବରୁ କାହିଁକି ଘଟିଲା ନାହିଁ ? ଅଭିଜ୍ଞାତ ବର୍ଗର ବ୍ୟକ୍ତିମାନେ ଏ ସଂପର୍କରେ ତଥ୍ୟ ସମ୍ବଳିତ ତଥ୍ୟ

His simplicity of life is children like. His adherence to truth is unflinching. His love for man kind is positive and aggressive. He has what is known as the Chirst spirit. - Kabiguru

ନଦେଇ ଦେଶବାସୀଙ୍କୁ ଭ୍ରମିତ କରିବା ପାଇଁ ବହୁତ ଭ୍ରମାତ୍ମକ କଥା କହିବାକୁ ପଶ୍ଚାତପଦ ହୋଇ ନଥାନ୍ତି । ବହୁତ ପରିତାପର ବିଷୟ ଯେ ଶ୍ରୀ ନରସିଂହ ରାଓଙ୍କ ସମେତ ଆଉ ଯେଉଁ ତିନିଜଣ ପ୍ରଧାନମନ୍ତ୍ରୀ - ଶ୍ରୀ ଅଟଳ ବିହାରୀ ବାଜପେୟୀ, ଶ୍ରୀ ଦେବଗୌଡ଼ା ଓ ଶ୍ରୀ ଇନ୍ଦ୍ରକୁମାର ଗୁଜରାଲ ମଧ୍ୟ ବିଶ୍ୱବ୍ୟାଙ୍କର ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଉଦାରୀକରଣ ନୀତିକୁ ଭାରତ ସରକାରଙ୍କ ତରଫରୁ ସମର୍ଥନ କରି ଆସିଛନ୍ତି । ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ମଧ୍ୟ ଏ ସଂପର୍କରେ ପ୍ରଧାନମନ୍ତ୍ରୀଙ୍କ ପଦାଙ୍କ ଅନୁସରଣ କରି ଚାଲିଛନ୍ତି ।

ବର୍ତ୍ତମାନ ପ୍ରଶ୍ନ ଉଠେ ଯେ ଭାରତ ବର୍ଷ କେଉଁ କାରଣରୁ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଭଳି ସଂସ୍ଥାମାନଙ୍କ ପାଖରେ ନିଜକୁ ବନ୍ଧା ପକାଇ ଦେଲା ? ଏଠାରେ ପାଠକମାନଙ୍କର ମନେଥିବ ଯେ ୧୯୮୦ ସାଲରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପୁନର୍ବାର ପ୍ରଧାନମନ୍ତ୍ରୀ ହେବାପରେ ତାଙ୍କର ପୁଅ ଶ୍ରୀ ରାଜୀବଗାନ୍ଧୀଙ୍କୁ ନିଜର ଉତ୍ତରାଧିକାରୀ ରୂପେ ତିଆର କରିବ ପାଇଁ ଦିଲ୍ଲୀରେ ଏକ ଏସିଆଡ୍ ଖେଳର ଆୟୋଜନ କରାଇଥିଲେ । ଏଥିରେ କୋଟି କୋଟି ଟଙ୍କା ଖର୍ଚ୍ଚ ହେବା ସହ ଏ ଖେଳକୁ ଲୋକେ ନିଜ ଘରେ ଦେଖିବାକୁ ସୁଯୋଗ ଦେବା ଦୃଷ୍ଟିରୁ ରଙ୍ଗୀନ ଟିଭି. ବିଦେଶରୁ ଆଣିବାର ଫଇସଲା କଲେ । ଦେଶର ମୁଷ୍ଟିମେୟ ଧନୀଲୋକଙ୍କ ପାଇଁ କୋଟି କୋଟି ଟଙ୍କାର ବିଦେଶୀ ମୁଦ୍ରା ଖର୍ଚ୍ଚ କରି ଏହାକୁ ବିଦେଶରୁ ଅଣାଗଲା । ଭାରତବର୍ଷ ଭଳି ଏକ ଗରିବ ଦେଶ ଏ ଖର୍ଚ୍ଚକୁ କିପରିବା ସହ୍ୟ କରି ପାରନ୍ତା ? ୧୯୮୪ ସାଲରେ ରାଜୀବଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ପରେ ଦେଶର ବଡ଼ ବଡ଼ ଲୋକଙ୍କ ବିଳାସବ୍ୟସନ ପାଇଁ ବିଦେଶରୁ ସଉକିନିଆ ଜିନିଷ ମଗାଇବାରେ ଥିବା ସମସ୍ତ ଆଇନଗତ ବାଧାକୁ ହଟାଇ ଦେଲେ । ଏହା ଫଳରେ ବିଦେଶୀ କରଜ ହୁ ହୁ ବଢ଼ି ଚାଲିଲା । ବିଦେଶୀ କରଜଦାରଙ୍କ ରାଜନୀତିକ ଚାପରେ ଶ୍ରୀ ନରସିଂହରାଓଙ୍କ ସରକାର ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଆଗମନ ପାଇଁ ଭାରତବର୍ଷକୁ ଖୋଲିଦେଲେ ।

ଏଠାରେ ମନେରଖିବା କଥା ଯେ ପ୍ରାୟ ୨୫୦ ବର୍ଷ ତଳେ ଇଷ୍ଟଇଣ୍ଡିଆକମ୍ପାନି ଭଳି ଗୋଟିଏ ବହୁରାଷ୍ଟ୍ରୀୟ କମ୍ପାନି ଆସି ଆମକୁ ଦୁଇଶହ ବର୍ଷ ପରାଧୀନ କରି ରଖିଥିଲା । ୧୯୯୧ ସାଲ ପରେ ଅସଂଖ୍ୟ ବହୁରାଷ୍ଟ୍ରୀୟ କମ୍ପାନି ଆମଦେଶକୁ ଆସି ଆମଦେଶର ଶିଳ୍ପଗୁଡ଼ିକୁ କିଣିନେଲେ ବା ଅକାମି କରିଦେଲେ । ନରସିଂହ ରାଓ ସରକାରଙ୍କ ଉଦାରୀକରଣ ନୀତିର ପ୍ରଥମ ଶିକାର ହେଲା ଆମ ଦେଶର ସାର୍ବଭୌମିକତା । କେନ୍ଦ୍ରସରକାର ତୁରନ୍ତ ଦିଲ୍ଲୀରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଅଫିସ ଖୋଲିବାକୁ ସେମାନଙ୍କୁ ଅନୁମତି ଦେଇଦେଲେ । ଆମ ଦେଶର ସାର୍ବଭୌମିକତାକୁ ସେଇଦିନ ଗଭୀର ଧକ୍କା ଲାଗିଲା, ଯେଉଁଦିନ ଭାରତର ତତ୍କାଳୀନ ଅର୍ଥମନ୍ତ୍ରୀ ଡକ୍ଟର ମନମୋହନ ସିଂହ କେନ୍ଦ୍ର ସରକାରଙ୍କ ବଜେଟ୍ ପ୍ରସ୍ତାବଗୁଡ଼ିକୁ ପାର୍ଲାମେଣ୍ଟ ସମ୍ମୁଖରେ ଉପସ୍ଥାପିତ କରିବା ପୂର୍ବରୁ ବିଶ୍ୱବ୍ୟାଙ୍କର କର୍ମକର୍ତ୍ତାଙ୍କୁ ଦେଖାଇବାକୁ ବାଧ୍ୟ ହେଲେ । ବଜେଟ୍ ପାର୍ଲାମେଣ୍ଟରେ ଉପସ୍ଥାପିତ ହେବାପୂର୍ବରୁ ଯଦି ଏହା କୌଣସି କାରଣରୁ ବାହାରେ ପ୍ରକାଶିତ ହୋଇଯାଏ ତେବେ ସଂସଦୀୟ ନିୟମାନୁସାରେ ଅର୍ଥମନ୍ତ୍ରୀଙ୍କୁ ସ୍ୱାଧୀକାର ଭଙ୍ଗ କାନୁନ ଅନୁସାରେ ଦଣ୍ଡିତ ହେବାକୁ ପଡ଼ିଥାଏ । ସବୁଠାରୁ ଲଜ୍ୟାର କଥା ଯେ ପାର୍ଲାମେଣ୍ଟରେ ଉପସ୍ଥାପିତ ହେବା ପୂର୍ବରୁ ବିଶ୍ୱବ୍ୟାଙ୍କ ଭଳି ଏକ ବିଦେଶୀ ସଂସ୍ଥାକୁ ବଜେଟ୍ ପ୍ରସ୍ତାବ ଦେଖାଇବା ଭଳି ଏକ ଅସମ୍ମାନଜନକ ସ୍ଥିତିରେ ନିଜକୁ ପହଞ୍ଚାଇ ଦେଲେ । ଡକ୍ଟର ମନମୋହନ ସିଂହ ଭାରତରେ ଅର୍ଥମନ୍ତ୍ରୀ ହେବା ପୂର୍ବରୁ ବହୁ ଆନ୍ତର୍ଜାତିକ ସଂସ୍ଥାରେ କାମ କରିଥିଲେ । ସେଥିପାଇଁ ତାଙ୍କ ମତାମତ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ନୀତିଗୁଡ଼ିକ ପ୍ରତି ଅନୁକୂଳ ଥିବାରୁ ତାଙ୍କୁ ଭାରତର ଅର୍ଥମନ୍ତ୍ରୀ କରିବା ପାଇଁ ସେମାନେ ଭାରତ ସରକାରଙ୍କୁ ସୁପାରିଶ କରିଥିଲେ ବୋଲି ସେତେବେଳେ ଗୁଜବ ରଟିଥିଲା । କିନ୍ତୁ, ସେତେବେଳର ସ୍ଥିତିକୁ ଅନୁଧ୍ୟାନ କଲେ ମୁଁ ନିଃସନ୍ଦେହରେ କହିପାରେ ଯେ ଶ୍ରୀ ନରସିଂହ ରାଓ ଆନ୍ତର୍ଜାତିକ ଚାପର ଶିକାର ହୋଇ ତାଙ୍କୁ ଅର୍ଥମନ୍ତ୍ରୀ କରିଥିଲେ ।

ଆମ ଦେଶର ଉଚ୍ଚକୋଟିର ବୁଦ୍ଧିଜୀବୀମାନେ ଉଚ୍ଚ ପଦପଦବୀର ମୋହ ତଥା ସ୍ୱାର୍ଥପାଇଁ ସ୍ୱମତକୁ ବଦ୍ଳିଦେବାରେ ତିଳେମାତ୍ର ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ତାର ଏକ ଜ୍ୱଳନ୍ତ ନମୁନା ହେଲେ ତତ୍‌କାଳୀନ ବିତ୍ତମନ୍ତ୍ରୀ ଡକ୍ଟର ମନମୋହନ ସିଂହ । ଏ ସଂକ୍ରାନ୍ତୀୟ ଗୋଟିଏ ତଥ୍ୟକୁ ମୁଁ ଦଶମ ଲୋକସାଭାରେ ତାଙ୍କ ଉପସ୍ଥିତିରେ ଉପସ୍ଥାପିତ କରିସାରିଛି ଓ ତାହା ଲୋକ ସଭାର ବିବରଣୀରେ ସ୍ଥାନ ପାଇଛି । ସେ ତଥ୍ୟଟି ହେଲା ଯେ ବିଶ୍ୱର ଏସିଆ, ଆଫ୍ରିକା ମହାଦେଶ ମାନଙ୍କରେ ଥିବା ଗରିବ ଓ ପଛୁଆ ଦେଶମାନଙ୍କର ଆର୍ଥିକ ଉନ୍ନତି କିପରି ହେବ ସେଥିପାଇଁ ଏକ କମିଶନ ଗଠିତ ହୋଇଥିଲା । ଉକ୍ତ କମିଶନ 'ଦକ୍ଷିଣ କମିଶନ' (South Commission) ନାମରେ ନାମିତ । ସେ କମିଶନର ସଭାପତି ଥିଲେ 'ଟାଞ୍ଜାନିଆ'ର ଭୂତପୂର୍ବ ରାଷ୍ଟ୍ରପତି ଶ୍ରୀ ଜୁଲିୟସ କରେରେ ଓ ସାଧାରଣ ସମ୍ପାଦକ ଥିଲେ ଡକ୍ଟର ମନେମୋହନ ସିଂହ । ଉକ୍ତ କମିଶନର ରିପୋର୍ଟରେ ସ୍ପଷ୍ଟ ରୂପେ କୁହାଯାଇଥିଲା ଯେ ଯେଉଁଦେଶମାନେ ଆର୍ଥିକ ଉଦାରୀକରଣ ନୀତି ଗ୍ରହଣ କରିବେ ସେ ଦେଶମାନଙ୍କରେ ମୁଦ୍ରାସ୍ଫିତି ବଢ଼ିବା ସହ ସେ ଦେଶର ଅର୍ଥନୀତି ବି ଛାରଖାର ହୋଇଯିବାର ଯଥେଷ୍ଟ ଆଶଙ୍କା ରହିଛି । ଏ ରିପୋର୍ଟରେ ଡକ୍ଟର ମନମୋହନ ନିଜେ ଦସ୍ତଖତ୍ କରିଛନ୍ତି । ମୁଁ ଯେତେବେଳ ତାଙ୍କୁ ଲୋକସଭା ଗୃହରେ ପଚାରିଲି ଯେ ସେ ଉଦାରୀକରଣନୀତିକୁ ଦକ୍ଷିଣକମିଶନ ରିପୋର୍ଟରେ ନିନ୍ଦା କରିବା ସତ୍ତ୍ୱେ ଭାରତର ଅର୍ଥମନ୍ତ୍ରୀରୂପେ କିପରି ତାହାକୁ ସର୍ବାନ୍ତକରଣରେ ଗ୍ରହଣ କରିନେଇଛନ୍ତି ସେତେବେଳେ ସେ ମୌନ ରହିଲେ ।

କୋକାକୋଲା ଓ ପେପ୍ସିକୋଲା ଆମେରିକାର ବହୁରାଷ୍ଟ୍ରୀୟ କମ୍ପାନିମାନଙ୍କ ମଧ୍ୟରେ ପ୍ରମୁଖ କମ୍ପାନି ବୋଲି କହାଯାଇଥାଏ । ସେମାନେ ଯେଉଁଦେଶକୁ ବେପାର କରିବାକୁ ଯାଆନ୍ତି ସେଠିକାର ଆଭ୍ୟନ୍ତରୀଣ ରାଜନୀତିରେ ମଧ୍ୟ ହସ୍ତକ୍ଷେପ କରିବାର ଘୃଣିତ ରେକର୍ଡ ରହିଛି । ସେଥିପାଇଁ ସେମାନଙ୍କୁ ଆମେରିକୀୟ ପୁଞ୍ଜିବାଦର ସ୍ତମ୍ଭବୋଲି ଅଭିହିତ କରାଯାଇଥାଏ । ୧୯୭୭ ସାଲ ପୂର୍ବରୁ କୋକାକୋଲା ଭାରତବର୍ଷରେ ବ୍ୟବସାୟ କରି ଆସୁଥିଲେ । ୧୯୭୭ ସାଲ ମୋରାରଜୀ ଦେଶାଇଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ କୋକାକୋଲା ଓ ଆଇ.ବି.ଏମ୍.ଭଳି ଦୁଇଟି ଆମେରିକୀୟ କମ୍ପାନିଙ୍କୁ ଭାରତରୁ ବହିଷ୍କୃତ କରିଦିଆ ଯାଇଥିଲା । ଏହା ସେ ସରକାରର ସବୁଠାରୁ ସାହସିକ ପଦକ୍ଷେପ ଥିଲା । ୧୯୯୧ ସାଲରେ ଶ୍ରୀ ନରସିଂହରାଓ ସରକାରଙ୍କ ଦ୍ୱାରା ଉଦାରୀକରଣ ନୀତି ଲାଗୁହେବା ପରେ କୋକାକୋଲାକୁ ପୁନଃ ନିମନ୍ତ୍ରଣ କରି ଅଣାଗଲା । ୧୯୮୯ ସାଲରେ ରାଜୀବଗାନ୍ଧିଙ୍କ ସରକାର ଏ ପେପ୍ସିକୋଲା କମ୍ପାନିକୁ ଭାରତକୁ ଆସିବାକୁ ନିମନ୍ତ୍ରଣ ଦେଇ ସାରିଥିଲେ । ଏ ଦୁଇଟିଯାକ କମ୍ପାନି ଭାରତରେ ସେମାନଙ୍କ ବ୍ୟବସାୟ ଯୋର୍‌ସୋର୍‌ରେ ଆରମ୍ଭକଲା ପରେ ଭାରତୀୟ କମ୍ପାନୀମାନେ (ରମେଶ ଚୌହାନ) ସେମାନଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ବାଧ ହେଲେ । ଉଦାରୀକରଣ ଅର୍ଥନୀତିର ସିଧା ପରିଣତି ହେଲା ଯେ ସେମାନଙ୍କ ସହ ଭାରତୀୟ କମ୍ପାନି ପ୍ରତିଯୋଗିତା ଦୌଡ଼ରେ ନିଶ୍ଚିତ ରୂପେ ପଛରେ ପଡ଼ିଯିବେ । ଆମଦେଶରେ ଯେତେବେଳେ ଆମର ମାଆ ଭଉଣୀ ମାନଙ୍କୁ ଚାରି ପାଞ୍ଚ କିଲୋମିଟର ଚାଲିକରି ପିଇବାପାଣି ଆଣିବାକୁ ଯିବାକୁ ପଡୁଛି ସେତେବେଳେ ସହରର ମଧ୍ୟବିତ ଶ୍ରେଣୀର ଲୋକେ ପାଞ୍ଚ/ସାତ ଟଙ୍କା ଦେଇ ଗୋଟିଏ କୋକାକୋଲା କିମ୍ବା ପେପ୍ସିକୋଲା ବୋତଲ କିଣିବାକୁ ପଶ୍ଚାତ୍‌ପଦ ହେଉନାହାନ୍ତି । ଏହାର ମୁଖ୍ୟକାରଣ ହେଉଛି ଯେ କୋକାକୋଲା ବା ପେପ୍ସିକୋଲା ଆମଦେଶର ଅଭିଜାତବର୍ଗଙ୍କ ପାଇଁ ଫେସନ୍‌ର ପ୍ରତୀକ ହୋଇଗଲାଣି ।

ମହାରାଷ୍ଟ୍ରର କଂଗ୍ରେସ ସରକାର ଆମେରିକାର ଏନ୍‌ରନ୍ (Enron) କମ୍ପାନି ଭଳି ଏକ ବହୁରାଷ୍ଟ୍ରୀୟ କମ୍ପାନିକୁ ବମ୍ବେ ସହରରେ ବିଜୁଳି ଯୋଗାଣ ପାଇଁ ନିମନ୍ତ୍ରଣ କରିଆଣିଲେ । ଏ କମ୍ପାନିକୁ ଭାରତରେ ପ୍ରବେଶ ନକରାଇ ଦେବା ପାଇଁ ମହାରାଷ୍ଟ୍ରର

ଜନସାଧାରଣ ବହୁତ ବିରୋଧ କଲେ । କଂଗ୍ରେସ ସରକାର ବଦଳରେ ଶିବସେନା-ବିଜେପି ସରକାର ଆସିଲା ପରେ ବି ଏହାକୁ ବମ୍ବେ ସହରରେ ବିଜୁଳି ଯୋଗାଣ ଦାୟିତ୍ୱ ଦିଆଗଲା । ଶ୍ରୀ ଅଟଳବିହାରୀ ବାଜପେୟୀଙ୍କ ୧୩ ଦିନିଆ ସରକାର ବେଳେ କେନ୍ଦ୍ରସରକାର ଏନ୍‌ରନ୍ କମ୍ପାନୀକୁ ବିଧିବଦ୍ଧ ଅନୁମତି ମଧ୍ୟ ଦେଇଦେଲେ ।

ବହୁରାଷ୍ଟ୍ରୀୟ କମ୍ପାନିମାନଙ୍କ ଆଗମନ ଆମଦେଶରେ ଭ୍ରଷ୍ଟାଚାରକୁ, ବହୁପରିମାଣରେ ବଢ଼ାଇବାରେ କିରପି ସାହାଯକ ହୋଇଛି ତା'ର ବହୁତ ପ୍ରମାଣ ମିଳି ସାରିଛି । ଏନ୍‌ରନ୍ କମ୍ପାନି ତରଫରୁ ଜଣେ ମହିଳା ଅଫିସର ଶ୍ରୀମତୀ ରବେକା ଖୋଲାଖୋଲି ସ୍ୱୀକାର କରିଛନ୍ତି ଯେ ମହାରାଷ୍ଟ୍ର ସରକାରଙ୍କଠାରୁ ଏନରନ୍ ଠିକା ପାଇବା ସକାଶେ ସେ ଷାଠିଏ କୋଟିଟଙ୍କା ଖର୍ଚ୍ଚ କରିଛନ୍ତି । ଅବଶ୍ୟ ସେ ଏ ଟଙ୍କା ଭାରତୀୟମାନଙ୍କୁ ଶିକ୍ଷିତ କରିବା ପାଇଁ ଖର୍ଚ୍ଚ କରିଥିବା କଥା କହିଛନ୍ତି । ଭାରତୀୟମାନଙ୍କ ପାଇଁ ଏହାଠାରୁ ବଳି ଆଉ ଅଧିକ ଅପମାନଜନକ ଗାଳି କଅଣ ବା ହୋଇ ପାରିଥାଆନ୍ତା ?

ସୁଖର କଥା ଯେ ଏନରନ୍ ବମ୍ବେ ସହରରେ ଆସ୍ଥାନ ଜମାଇବା ପରେ ସେଠିକାର ପରିବେଶ ଧ୍ୱଂସାଭିମୁଖୀ ହେବାକୁ ଯାଉଥିବାରୁ ଆମଦେଶର ଜଣେ ବିଶିଷ୍ଟ ନାରୀନେତ୍ରୀ ଶ୍ରୀମତୀ ମେଧାପାଟ୍‌କର ଏନରନ୍ କମ୍ପାନି ବିରୁଦ୍ଧରେ ଜନଆନ୍ଦୋଳନ ଚାଲୁରଖିଛନ୍ତି । ସେଠାରେ ସାଧାରଣ ଚାଷୀମାନଙ୍କର ଜମିବାଡ଼ି ଦଖଲ କରିବାକୁ ଏନ୍‌ରନ୍ କମ୍ପାନିକୁ ମହାରାଷ୍ଟ୍ର ସରକାର ଅନୁମତି ଦେଇଥିବାରୁ ଶ୍ରୀମତୀ ମେଧା ପାଟକର ମହାରାଷ୍ଟ୍ର ସରକାର ବିରୁଦ୍ଧରେ ସତ୍ୟାଗ୍ରହ ଆନ୍ଦୋଳନକୁ ଅବ୍ୟାହତ ରଖିଛନ୍ତି ।

'କାରଗିଲ୍' ନାମକ ଆମେରିକାର ଅନ୍ୟ,କ ବହୁରାଷ୍ଟ୍ରୀୟ କମ୍ପାନି ବହୁଦିନରୁ କର୍ଣ୍ଣାଟକ ରାଜ୍ୟର ରାଜଧାନୀ ବାଙ୍ଗାଲୋରରେ ବିହନ ବ୍ୟବସାୟ କରୁଥିଲେ । ଆମଦେଶର ଏକ ପୁରାତନ ପରମ୍ପରା ଏପର୍ଯ୍ୟନ୍ତବି ଚାଲୁ ରହିଛି । ସେଇଟି ହେଲା - ଆମ ଦେଶର ଚାଷୀମାନେ ବିହନର ଯାହା ଆବଶ୍ୟକତା ରହିଛି ତାର ପ୍ରାୟ ୯୦ ଭାଗ ପୂରଣ କରିଥାଆନ୍ତି । କେବଳ ୧୦ଭାଗ ବିହନ ସରକାରଙ୍କ ତରଫରୁ ସେମାନଙ୍କୁ ଡ଼ିସ୍ୱ, ଦିଆଯାଇଥାଏ । ଆମ ଚାଷୀମାନେ ଏ କ୍ଷେତ୍ରରେ ଆତ୍ମନିର୍ଭରଶୀଳ ହୋଇ ସାରିଥିବାବେଳେ କାରଗିଲ୍ ଭଳି ଏକ ନିଆଁଗିଳା ବହୁରାଷ୍ଟ୍ରୀୟ କମ୍ପାନିକୁ ଆମଦେଶକୁ ନିମନ୍ତ୍ରଣ କରିବାର ବା କଅଣ ଆବଶ୍ୟକତା ଥିଲା ? କର୍ଣ୍ଣାଟକ ରାଜ୍ୟର ରୟିତମାନଙ୍କୁ ସଂଗଠିତ କରି ଅଧ୍ୟାପକ ନିଜୁଜିନ୍ ସ୍ୱାମୀ କାରଗିଲ୍ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଥିଲେ । କର୍ଣ୍ଣାଟକ ସରକାର ନିଜ ରାଜ୍ୟରେ କାରଗିଲ କମ୍ପାନିକୁ ବେପାର କରିବାକୁ ଅନୁମତି ଦେଇଥିଲେ ସୁଦ୍ଧା ... ଆନ୍ଦୋଳନର ଉକ୍ତ କମ୍ପାନିକୁ ରକ୍ଷା କରିବାରେ ଅସଫଳ ହେଲେ ।

୧୯୯୩ ସାଲରେ ଉକ୍ତ କାରଗିଲ କମ୍ପାନି ଆମଦେଶରେ ଲୁଣବ୍ୟବସାୟ ପାଇଁ ମନ ବଳାଇଲେ । ସେତେବେଳକୁ କେନ୍ଦ୍ରରେ ଥିବା ନରସିଂହ ରାଓଙ୍କ ସରକାର ଖୋଲାଖୋଲି ବହୁରାଷ୍ଟ୍ରୀୟ କମ୍ପାନିମାନଙ୍କୁ ଆମଦେଶକୁ ଶୋଷଣ କରିବାକୁ ଅନୁମତି ଦେଇସାରିଥିଲେ । ମହାତ୍ମାଗାନ୍ଧୀ ଆମଦେଶର ସ୍ୱାଧୀନତା ଆନ୍ଦୋଳନ ଲବଣ ସତ୍ୟାଗ୍ରହରୁ ହିଁ ଆରମ୍ଭ କରିଥିଲେ । ଭାରତସରକାର ଦେଶର ସ୍ୱାଧୀନତା ଆନ୍ଦୋଳନର ସେ ଗୌରବମୟ ସ୍ମୃତି ଓ ପରମ୍ପରାକୁ ଭ୍ରୂକ୍ଷେପ ନକରି ଗୁଜରାଟ ରାଜ୍ୟର କାଣ୍ଡଲା ବନ୍ଦର ନିକଟରେ କାରଗିଲ କମ୍ପାନିକୁ ପ୍ରାୟ ୧୫ ହଜାର ଏକର ଜମି ଲୁଣ ମାରିବା ପାଇଁ ଦେବା ନିମନ୍ତେ ଠିକ୍ କରିଦେଲେ । ଏ ତଥ୍ୟକୁ ବହୁତ ଦିନ ଧରି କେନ୍ଦ୍ର ସରକାର ଲୁଚାଇ ରଖିଥିଲେ । ଦଶମ ଲୋକସଭାରେ ଏ ପ୍ରଶ୍ନ ଉତ୍ଥାପିତ ହେବାପରେ ବିଭାଗୀୟ ମନ୍ତ୍ରୀ ଶ୍ରୀ ଜଗଦିଶ ଟାଇଟଲର୍ ଲୋକସଭାକୁ ଭୁଲ୍ ତଥ୍ୟ ମଧ୍ୟ ପରିବେଷଣ କଲେ । ଆମଦେଶରେ ଗୁଜରାଟ, ମହାରାଷ୍ଟ୍ର ଓ ଓଡ଼ିଶା ଭଳି ରାଜ୍ୟମାନଙ୍କରେ ପ୍ରାୟ

ଦୁଇଲକ୍ଷ ସାଧାରଣ ଗରିବ ଗୁରୁବା ହାତରେ ଲୁଣ ମାରି ଜୀବିକା ଅର୍ଜନ କରିଥାଆନ୍ତି । କାରଗିଲ କମ୍ପାନି ତାର ଅତ୍ୟାଧୁନିକ ମେସିନ୍ ଦ୍ୱାରା ଲୁଣ ମାରିଲେ ଏ ଦୁଇ ଲକ୍ଷ ସାଧାରଣ ଲୋକେ ଏକାଦିନରେ ଦାଣ୍ଡର ଭିକାରୀ ହୋଇଯିବେ । ଏଥିପାଇଁ "ସ୍ୱାଧୀନତା ବଞ୍ଚାଓ ଆନ୍ଦୋଳନ" ତରଫରୁ ଆମେମାନେ ୧୯୯୩ ସାଲରେ କାରଗିଲ ହଟାଓ ଆନ୍ଦୋଳନ ଆରମ୍ଭ କଲୁ ।

କାଣ୍ଡଲାବନ୍ଦର ଟ୍ରଷ୍ଟର ଚେୟାରମ୍ୟାନ୍ ଓ ଅନ୍ୟାନ୍ୟ ଅଫିସରମାନଙ୍କର ସାହସିକ ଭୂମିକା ଆମକୁ ଏ ଆନ୍ଦୋଳନରେ ବହୁତ ସାହାଯ୍ୟ କରିଥିଲା । ସେମାନେ ପୋର୍ଟଟ୍ରଷ୍ଟର ବିଧିବଦ୍ଧ ବୈଠକ କରି ଟ୍ରଷ୍ଟ ଅଧୀନରେ ଥିବା ପନ୍ଦର ହଜାର ଏକର ଜମିକୁ କୌଣସି ବହୁରାଷ୍ଟ୍ରୀୟ କମ୍ପାନିକୁ ନଦେବାକୁ ଏକ ପ୍ରସ୍ତାବ ମଧ୍ୟ ପାଶ୍ କରିଦେଲେ । ଏପରିକି ଉକ୍ତ ପୋର୍ଟଟ୍ରଷ୍ଟର ଜନୈକ ସଦସ୍ୟ (ଭାରତ ସରକାରଙ୍କ ପ୍ରତିରକ୍ଷା ବିଭାଗର) ଦେଶର ନିରାପତ୍ତା ଦୃଷ୍ଟିରୁ ପୋର୍ଟଟ୍ରଷ୍ଟର ଜମି ଏକ ବହୁରାଷ୍ଟ୍ରୀୟ କମ୍ପାନିକୁ ଦିଆଯାଇ ପାରିବ ନାହିଁ ବୋଲି ସ୍ପଷ୍ଟମତ ଦେଲେ । କାଣ୍ଡଲା ବନ୍ଦରଟି ଆମଦେଶର ଗୁଜରାଟ ରାଜ୍ୟ ଓ ପାକିସ୍ଥାନ ସୀମାରେ ହୋଇଥିବାରୁ ଏକ ବିଦେଶୀ ଆମେରିକୀୟ କମ୍ପାନିକୁ ଲୁଣ ମାରିବାକୁ ଠିକା ଦେଲେ ଦେଶର ନିରାପତ୍ତା ପ୍ରତି ବିପଦର ଆଶଙ୍କା ରହିଛି ବୋଲି ସେ ଲିଖିତ ଭାବରେ ଦେଇଦେଲେ । କାଣ୍ଡଲା ପୋର୍ଟଟ୍ରଷ୍ଟର ଅଫିସରମାନଙ୍କ ଉପରେ ଭାରତସରକାରଙ୍କ ପକ୍ଷରୁ ଅନୈତିକ ରାଜନୀତିକ ଚାପ ସତ୍ତ୍ୱେ ସେମାନଙ୍କ ଦେଶପ୍ରେମର ନିଷ୍ଠା ଓ ନିର୍ଭିକତା ଅନୁକରଣୀୟ । ସେମାନେ ଶେଷ ପର୍ଯ୍ୟନ୍ତ ସବୁ ଚାପକୁ ଏଡ଼େଇ ନିଜ ମତରେ ଅଟଳ ରହିଲେ ।

କାରଗିଲ କମ୍ପାନିକୁ କାଣ୍ଡଲା ବନ୍ଦର ନିକଟରେ ଲୁଣ ମାରିବାର ଅନୁମତିକୁ ସରକାର ପ୍ରତ୍ୟାହାର ନକରିବା ପର୍ଯ୍ୟନ୍ତ ସତ୍ୟାଗ୍ରହ ଚାଲୁ ରହିବ ବୋଲି ସିଦ୍ଧାନ୍ତ ନିଆଗଲା । ସତ୍ୟାଗ୍ରହ ଆନ୍ଦୋଳନ ପରିଚାଳନାର ଦାୟିତ୍ୱ ଶ୍ରୀ ଜର୍ଜ ଫର୍ଣ୍ଣାଡିସ୍, ଏମ୍.ପି.ଙ୍କ ଉପରେ ନ୍ୟସ୍ତ ଥିଲା । ଦେଶର ବିଭିନ୍ନ ରାଜ୍ୟମାନଙ୍କରୁ ସତ୍ୟାଗ୍ରହୀ ସେଠାକୁ ଯାଇ ସତ୍ୟାଗ୍ରହ ଚଳାଇ ରଖିଲେ । ମୁଁ, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ, ଯୋଜନା କମିଶନର ଉପାଧ୍ୟକ୍ଷ ଶ୍ରୀ ମଧୁଦଣ୍ଡବତେ ଅନ୍ୟାନ୍ୟ ଗାନ୍ଧୀବାଦୀ ବନ୍ଧୁମାନଙ୍କ ସହ ବିଭିନ୍ନ ଦିନ ମାନଙ୍କରେ କାଣ୍ଡଲାଠାରେ ସତ୍ୟଗ୍ରହରେ ଅଂଶଗ୍ରହଣ କଲୁ । ଏ ସତ୍ୟାଗ୍ରହ ସେଇଦିନ ସଫଳହେଲା ଯେଉଁଦିନ କାରଗିଲ୍ କମ୍ପାନି ତାଙ୍କର ସିଙ୍ଗାପୁର ଅଫିସରୁ ଘୋଷଣା କଲେ ଯେ କାଣ୍ଡଲା ବନ୍ଦର ନିକଟରେ ଲୁଣମାରିବା ପ୍ରକଳ୍ପରୁ କମ୍ପାନୀ ଓହରିଯିବା ପାଇଁ ନିଷ୍ପତ୍ତି ନେଇଛି ।

ବାସ୍ତବରେ କାରଗିଲ ଭଳି ଏକ ପ୍ରଭାବଶାଳୀ ବହୁରାଷ୍ଟ୍ରୀୟ କମ୍ପାନି ବିରୁଦ୍ଧରେ ସତ୍ୟାଗ୍ରହକୁ 'ସ୍ୱାଧୀନତା ବଞ୍ଚାଅ ଆନ୍ଦୋଳନ'ର ପ୍ରଥମ ଐତିହାସିକ ବିଜୟ ବୋଲି କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ ।

ଏବେ ଭିଏନାରୁ ପ୍ରକାଶିତ ମିଳିତ ଜାତିସଂଘର ୧୯୯୭ ସାଲର ଶିଳ୍ପବିକାଶ ସମ୍ବନ୍ଧୀୟ ରିପୋର୍ଟରେ ପ୍ରକାଶ ପାଇଛି ଯେ ଧନୀ ଦେଶମାନେ ପଛୁଆ ଦେଶଗୁଡ଼ିକୁ ପୁଞ୍ଜି ଯୋଗାଇ ସେମାନଙ୍କ ପ୍ରତି ଉଦାରତା ଦେଖାଇଛନ୍ତି ବୋଲି ଯେଉଁ ଆସ୍ଫାଳନ କରନ୍ତି ତା'ର କୌଣସି ଭିତ୍ତି ନାହିଁ । ଉକ୍ତ ରିପୋର୍ଟରେ ଏକ ଚମକପ୍ରଦ ତଥ୍ୟ ପରିବେଷଣ କରି କୁହାଯାଇଛି ଯେ ୧୯୭୦ ସାଲ ଠାରୁ ଦୁନିଆର ଧନୀ ଦେଶ ଓ ଗରିବ ଦେଶ ମଧ୍ୟରେ ଆୟର ପାର୍ଥକ୍ୟ ଶତକଡ଼ା ୪୫ ଭାଗ ବୃଦ୍ଧି ପାଇଛି । କେବଳ ସେତିକି ନୁହେଁ, ଏ ଗରିବ ଦେଶମାନଙ୍କର (ଏସିଆ, ଆଫ୍ରିକା ମହାଦେଶରେ) ଶିଳ୍ପ ବିକାଶ ମଧ୍ୟ ବହୁ ପରିମାଣରେ କ୍ଷତିଗ୍ରସ୍ତ ହୋଇଛି ।

ବହୁରାଷ୍ଟ୍ରୀୟ କମ୍ପାନିମାନଙ୍କ ଆଗମନରେ ଆମଦେଶରେ ଘିଅ ମହୁ ଭାସିବ ବୋଲି ଯେଉଁମାନେ ପ୍ରଚାର କରୁଥିଲେ ଏବେ ଦକ୍ଷିଣ ପୂର୍ବର ଏସିଆରେ ଯାହା ଘଟିଗଲା ସେଥିରେ ସେମାନଙ୍କର ଅସଲ ଚେହେରା ପଦାରେ ପଡ଼ିଯାଇଛି । ଦକ୍ଷିଣ କୋରିଆକୁ ଏସିଆରେ ଉଦାରୀକରଣ ପ୍ରତୀକ ବୋଲି ସେମାନେ

ଡିଣ୍ଡିମ ପିଟିବାରେ ଲାଗିଥିଲେ । ଏପରିକି ଦକ୍ଷିଣ କୋରିଆକୁ ସେମାନେ 'ଏସିଆର ବାଘ' ବୋଲି ମଧ୍ୟ ଅଭିହିତ କରିଥିଲେ । ବର୍ତ୍ତମାନ ସେ 'ବାଘ'ଙ୍କ ଅବସ୍ଥା କ'ଣ ? ଉଦାରୀକରଣ ନୀତି ଯୋଗୁଁ ତାଙ୍କ ଦେଶ ଦେବାଳିଆ ହେବାକୁ ଯାଉଥିବାରୁ ସେମାନେ ତ୍ରାହି ତ୍ରାହି ଡାକ ଦେଲେଣି । ଭାରତ ସମେତ ସମସ୍ତ ଦକ୍ଷିଣ ପୂର୍ବ ଏସିଆର ଦେଶମାନଙ୍କର ମୁଦ୍ରାମୂଲ୍ୟ ହ୍ରାସ ପାଇବାରେ ଲାଗିଛି । ଦକ୍ଷିଣ କୋରିଆର ପ୍ରେସିଡେଣ୍ଟଙ୍କୁ ନିର୍ବାଚନରେ ଘୋର ପରାଜୟ ସ୍ୱୀକାର କରିବାକୁ ପଡ଼ିଲା କେବଳ ଏଇଥିପାଇଁ ଯେ ସେ ଉଦାରୀକରଣ ଅର୍ଥନୀତିର ପ୍ରବର୍ତ୍ତକ ଥିଲେ । ନବ ନିର୍ବାଚିତ ସଭାପତି ତାଙ୍କ ଦେଶକୁ ଦେବାଳିଆ ସ୍ଥିତିରୁ କିପରି ବଞ୍ଚାଇବେ ସେଇ ଉଦ୍ୟମରେ ଲାଗିପଡ଼ିଛନ୍ତି ।

ବହୁ କାରଣ ଭିତରୁ ଗତ ୧୯୯୬ ଲୋକସଭା ନିର୍ବାଚନରେ କଂଗ୍ରେସର ଚରମ ପରାଜୟ ଶ୍ରୀ ନରସିଂହ ରାଓ ସରକାରଙ୍କ ଉଦାରୀ କରଣ ଅର୍ଥନୀତି ଯୋଗୁଁ ହେଲା ବୋଲି ବିଶେଷଜ୍ଞମାନେ ମତ ଦେଇଥିଲେ । ତଥାପି, ଆମ ଦେଶର ମୁଖ୍ୟ ଧାରାର ରାଜନୀତିକ ଦଳମାନେ (ବିରୋଧୀଦଳମାନଙ୍କ ସମେତ) ବହୁରାଷ୍ଟ୍ରୀୟ କମ୍ପାନିମାନଙ୍କର ଆଗମନକୁ ଦୃଢ଼ତାର ସହ ପ୍ରତିରୋଧ କରିବାରେ ସଂପୂର୍ଣ୍ଣ ଅସଫଳ ହୋଇଛନ୍ତି । ଅବଶ୍ୟ ଦେଶର ବାମପନ୍ଥୀ ଦଳମାନେ କାୟମନୋବାକ୍ୟରେ ଉଦାରୀକରଣ ଅର୍ଥନୀତିକ ବ୍ୟବସ୍ଥାକୁ ବିରୋଧ କରିଛନ୍ତି ।

ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର, ଅତ୍ୟାଧିକ କେନ୍ଦ୍ରୀକରଣ ଓ ଭୋଗବାଦର କୁପରିଣାମ ଉଦାରୀକରଣ ଅର୍ଥନୀତି ଯୋଗୁଁ ଅହୁରି ବୃଦ୍ଧି ପାଇବାରେ ଲାଗିଛି । ଜର୍ମାନୀର "ଟ୍ରାନ୍ସପରେନ୍ସି ଇଣ୍ଟରନେସନାଲ" ନାମକ ଏକ ସଂସ୍ଥା ଯଥାର୍ଥ ଗବେଷଣା ଦ୍ୱାରା ପ୍ରମାଣ କରିଛନ୍ତି ଯେ ପୃଥିବୀର ଦଶୋଟି ଭ୍ରଷ୍ଟତମ ଦେଶ ଭିତରେ ଭାରତ ଅନ୍ୟତମ । ଏ ପରିପ୍ରେକ୍ଷୀରେ ରାଜଶକ୍ତି ଓ ଲୋକଶକ୍ତି ଭିତରେ ସଂଘର୍ଷ ଅବଶ୍ୟମ୍ଭାବୀ । ସେଥିପାଇଁ, ଲୋକଶକ୍ତିକୁ ରାଜଶକ୍ତି ବିରୁଦ୍ଧରେ ବିଜୟୀ କରାଇ ପାରିଲେ ଆମେ ଆମଦେଶକୁ ବଞ୍ଚାଇ ପାରିବା । ଏହାହିଁ ଦେଶବାସୀଙ୍କ ପାଇଁ ଏକମାତ୍ର ବିକଳ୍ପ । ●●●

ଗାନ୍ଧୀ ଶାନ୍ତିପ୍ରତିଷ୍ଠାନ, ନୂଆଦିଲ୍ଲୀ

## ଶହୀଦ ବନ୍ଦନା

ଆରେ ଭାଇ ଭାରତବାସୀ
ଶୁଣ ତୋତେ କିଏ ଡାକଇ ଆସି ।।୦।।

ଗାଇ ଯାର ମନ୍ତ୍ର ମୋହନ ତିଳକ
ବାଇ ଯାର ଯନ୍ତ୍ର ଲାଲା ଲଜପତ
ଭୋଗି କାରାଗାର, ଭୋଗି ଦ୍ୱିପାନ୍ତର
ଲାଠିମାଡ଼େ ଗଲେ ମାଟିରେ ମିଶି ।।୧।।

ତ୍ୟାଗୀ ମୋତିଲାଲ, ବୀର ଆଜମଲ
ତୋଳିବାକୁ ଯାଇ ଶତ ପୂଜାଫୁଲ
ଦେଶବନ୍ଧୁ ସାଥେ ଗୋପବନ୍ଧୁ ମୋର
ମହାକାଳ ସ୍ରୋତେ ଗଲେଣି ଭାସି ।।୨।।

ଖୁଦୀରାମ୍ ଭଗତ୍‌ସିଂହ ନେଲେ ଫାଶୀ
କାରାରେ ଯତୀନ୍ଦ୍ର ମଲେ ଉପବାସୀ
ବାର ବରଷର ବାଜିଆ ଆମର
ଯାର ସ୍ୱାଦୁ ପାଇ ସରଗ ବାସୀ ।।୩।।

ଭୁଲନା ଭୁଲନା ଶତ ପଲ୍ଲୀବାସୀ
ଗୁଳିଚୋଟେ ଗଲେ ରକତରେ ଭାସି ।
ତୋ ଭାଇ ଲକ୍ଷ୍ମଣ ବଳିଦେଲା ପ୍ରାଣ
ଫାଶିରେ ଝୁଲିଲା ସେ ହସି ହସି ।।୪।।



# ଲୁଣ ମାଧ୍ୟମରେ ଦେଶ ଲୁଣ୍ଠନ

**ଅନୀଲ ପ୍ରକାଶ**

(ଲୁଣରେ ଆୟୋଡିନ୍ ମିଶ୍ରଣ ବାହାନାରେ ସରକାର ଏବଂ ପୁଞ୍ଜିପତିମାନଙ୍କର ସାଧାରଣ ଜନତାକୁ ଠକିବାର ଯୋଜନା ବିରୋଧରେ ଦେଶବ୍ୟାପୀ ଲବଣ ସତ୍ୟାଗ୍ରହର ଆବଶ୍ୟକତା ଦେଖାଦେଲାଣି । ଦିଲ୍ଲୀ, ବରୋଦା ଓ ସୁରତରେ ପ୍ରତୀକ ରୂପେ ''ଲୁଣ-ବିକ୍ରୀ-ସତ୍ୟାଗ୍ରହ'' ହୋଇଯାଇଛି । ଓଡ଼ିଆ ଓ ମଧ୍ୟପ୍ରଦେଶରେ ଏହା ହେବାକୁ ଅଛି । ତେଣୁ ଆପଣ ଏହି ଲେଖାକୁ କେବଳ ନପଢ଼ି ଏ ବିଷୟରେ ଆପଣଙ୍କର ମତାମତ ସଂପାଦକଙ୍କୁ ଜଣାଇବାକୁ ଅନୁରୋଧ ।)

ପ୍ୟାକେଟ୍‌ରେ ବିକ୍ରିୟ ହେଉଥିବା ଆୟୋଡିନ୍‌ଯୁକ୍ତ ଲୁଣରୁ ଦୁଇ ତିନି ମାସ ମଧ୍ୟରେ ଆୟୋଡିନ୍ ଉଡ଼ିଯାଇଥାଏ । ଲୁଣରେ ଆୟୋଡ଼ିନ୍ ମିଶାଉଥିବା କାରଖାନାଠାରୁ ଖାଉଟିର ଘର ପର୍ଯ୍ୟନ୍ତ ପହଞ୍ଚିବାରେ ତ ଏତିକି ସମୟ ଲାଗି ଯାଉଥିବା । ଲୁଣକୁ ଆୟୋଡ଼ିନ୍ ଯୁକ୍ତ କରି ପୁଡ଼ିଆ କରୁଥିବା କମ୍ପାନୀମାନେ ଏହି କାରଣରୁ ପ୍ୟାକେଟ୍‌ରେ ଅବଧି ତାରିଖ ଛାପନ୍ତି ନାହିଁ । ବିହାରର ମୁଜାଫରପୁର ଜିଲ୍ଲାର ରସାୟନବିଦ୍ ପ୍ରଫେସର ଡଃ. ରାମକିଶୋର ପ୍ରସାଦ ଯେତେବେଳେ ଏକ ବହୁରାଷ୍ଟ୍ରୀୟ କମ୍ପାନୀ ଦ୍ୱାରା ନିର୍ମିତ ଆୟୋଡିନ୍‌ଯୁକ୍ତ ଲୁଣର ରାସାୟନିକ ପରୀକ୍ଷା କଲେ ସେତେବେଳେ ସେଥିରେ ଆୟୋଡିନ୍ ନଥିଲା । ଲୁଣରେ ଆୟୋଡିନ୍ ଅଛି କି ନାହିଁ ଏହା ପରୀକ୍ଷା କରିବା ସହଜ । ଚାଉଳ ବା ମକାର ପେଜ ବା ଜାଉରେ ଆୟୋଡିନ୍ ଯୁକ୍ତ ଲୁଣ ମିଶାଇଲେ ଆୟୋଡ଼ିନ୍‌ର ଉପସ୍ଥିତିରେ ପେଜ ବା ଜାଉର ରଙ୍ଗ ନୀଳ ହୋଇଯାଏ । ଲୁଣରେ ଆୟାଡିନ୍ ନ ଥିଲେ ପେଜ ବା ଜାଉର ରଙ୍ଗ ନୀଳ ହୁଏ ନାହିଁ । ଗାଁରେ ଆଜି ମଧ୍ୟ ଅନେକ ଲୋକ ପେଜ ଭାତରେ ଲୁଣ ମିଶାଇ ଖାଆନ୍ତି । ତାଙ୍କର ପେଜର ରଙ୍ଗ ନୀଳ ହେଉ ନାହିଁ । ବଡ଼ ବଡ଼ ହୋଟେଲରେ ଯେଉଁ ସିଦ୍ଧ ପଳରସ (Soup)ରେ ଲୁଣ ମିଶାଇ ପିଅନ୍ତି ସେମାନେ କହନ୍ତି ଯେ ଲୁଣ ମିଶାଇଲା ପରେ ମଧ୍ୟ ସୁପ୍‌ର ରଙ୍ଗ ବଦଳୁ ନାହିଁ । ଦିଲ୍ଲୀର ଜଣେ ଡାକ୍ତର ଡାଃ ଏନ୍.ଏମ୍. ଚାଓ୍ୱାଲା ଏହି ପ୍ରସଙ୍ଗରେ ମୋତେ କହିଲେ ଯେ, ହୋଟେଲରେ ଏବେ ବି ସୁପ୍‌ରେ ଲୁଣ ମିଶିଲେ ସୁପ୍‌ର ରଙ୍ଗ ନୀଳ ହେଉ ନାହିଁ । ଅର୍ଥାତ୍ ଏଥିରେ ଆୟୋଡିନ୍ ରହୁନାହିଁ ।

ବଡ଼ ବଡ଼ ବିଦେଶୀ ଓ ଦେଶୀ କମ୍ପାନୀମାନେ ଆୟୋଡ଼ିନ୍ ଲୁଣ ବ୍ୟବସାୟରେ ପ୍ରାୟ ୧୨୦୦ କୋଟି ଟଙ୍କା ପ୍ରତିବର୍ଷ ଉପାର୍ଜନ କରୁଛନ୍ତି । ମାତ୍ର ଖାଉଟିର ଲୁଣରେ ଆୟୋଡ଼ିନ୍ ରହୁନାହିଁ । ଲୁଣରେ ଆୟୋଡ଼ିନ୍ ନଥିବାରୁ ଲୋକଙ୍କ ଶରୀର ଅନେକ ପ୍ରକାର ଶାରୀରିକ ବିପଦରୁ ବର୍ତ୍ତି ଯାଇ ପରିଛି । ମଣିଷ ଶରୀର ପାଇଁ ପ୍ରତିବର୍ଷ ୧୦୦ ରୁ ୧୫୦ ମାଇକ୍ରୋଗ୍ରାମ ଆୟୋଡ଼ିନ୍ ଆବଶ୍ୟକ ହୋଇଥାଏ । ଆୟୋଡ଼ିନ୍ ଆଳୁ, ସବୁଜ-ସାଗ ପରିବା, ମାଛରୁ ମିଳିଥାଏ । ଦେଶରେ ଆୟୋଡ଼ିନ୍ କମ୍ ଥିବା ଅଞ୍ଚଳରେ ଯେଉଁଠାରେ ଗଳଗଣ୍ଡର ପ୍ରଭାବ ରହିଥାଏ ଇଂରେଜ ରାଜତ୍ୱ କାଳରେ ସେଠାରେ ସରକାରୀ ଖର୍ଚ୍ଚରେ ଲୁଣରେ ଆୟୋଡିନ୍ ମିଶାଇ ବିକ୍ରୀ କରିବାର ଦାୟିତ୍ୱ ଜିଲ୍ଲାପାଳଙ୍କୁ ଦିଆଯାଇଥିଲା । ମାତ୍ର ଏବେ ଏହି ବ୍ୟବସ୍ଥାକୁ ଉଠାଇ ଦିଆଯାଇଛି । ଭାରତରେ ମାତ୍ର ୦.୨ ଶତକଡ଼ା ଲୋକେ ଗଳଗଣ୍ଡ ଦ୍ୱାରା ଆକ୍ରାନ୍ତ ଅଛି । କିନ୍ତୁ ବାକି ଶତକଡ଼ା ୯୯.୮ ଲୋକଙ୍କୁ ମଧ୍ୟ ଆୟୋଡ଼ିନ୍ ଯୁକ୍ତ ଲୁଣ ଖୁଆଇବାର ଦାୟିତ୍ୱ ବଡ଼ ବଡ଼ ବିଦେଶୀ ତଥା ଦେଶୀ କମ୍ପାନୀଙ୍କ ହାତକୁ ଚାଲିଯାଇଛି । ବର୍ତ୍ତମାନ ଯେଉଁ ଆୟୋଡ଼ିନ୍ ଯୁକ୍ତ ଲୁଣ ମିଳୁଛି ଓ ସେଥିରେ ଯେଉଁ ପରିମାଣରେ ଅୟୋଡ଼ିନ୍ ଥିବାର ବ୍ୟବସ୍ଥା ରହିଛି ବୋଲି କୁହାଯାଉଛି ତାହା ଯଦି ସଙ୍ଗେ ସଙ୍ଗେ ଖିଆଯାଏ ତେବେ ଆମ ଶରୀର ମଧ୍ୟରେ ୨୦୦ ରୁ ୨୫୦ ମାଇକ୍ରୋଗ୍ରାମ ଅଧିକ ଆୟୋଡ଼ିନ୍ ରାସାୟନିକ ଭାବରେ ପ୍ରବେଶ କରିବ । ଆମେରିକାର ବୋଷ୍ଟନ୍ ଏବଂ ଅଷ୍ଟ୍ରେଲିଆର ଟସ୍‌ମାନିଆରେ କରାଯାଇଥିବା ସର୍ବେକ୍ଷଣରୁ ଏହା ପ୍ରମାଣିତ ହୋଇଛି

ଯେ, ଆୟୋଡିନ୍‌ର ଅତ୍ୟଧିକ ବ୍ୟବହାର ଫଳରେ "ଟେଟ୍ରୋଟାକ୍‌ସୀକୋସିହ୍" ନାମକ ରୋଗ ସୃଷ୍ଟି ହୋଇଥାଏ ।

ଆୟୋଡ଼ିନ୍‌ର ପ୍ରଚାର କରୁଥିବା ୟୁନିସେଫ୍‌ର ଅଧିକାରୀମାନେ କହନ୍ତି ଯେ, ଶରୀରକୁ ଅଧିକ ଆୟୋଡ଼ିନ୍ ପ୍ରବେଶ କଲେ ମଧ୍ୟ ଏହା ପରିସ୍ରା ସହିତ ବାହାରି ଯାଏ । କିନ୍ତୁ ସେମାନେ ଏ କଥାଟିକୁ କହୁନାହାନ୍ତି ଯେ, ବାରମ୍ବାର ପରିସ୍ରା ହେବା ଦ୍ୱାରା କିଡ଼ନୀ ବା ବୃକ୍କକୁ ଅଧିକ କାମ କରିବାକୁ ପଡ଼େ ଏବଂ ଧୀରେ ଧୀରେ କିଡନୀ ଅଚଳ ହୋଇଯାଏ । କେତେଲୋକ ଅଛନ୍ତି ଯେଉଁମାନେ ଲକ୍ଷାଧିକ ଟଙ୍କା ଖର୍ଚ୍ଚ କରି ନିଜର କିଡନୀ ବଦଳାଇ ପାରିବେ ?

ଅତି ପରିତାପର କଥା ଯେ, ୟୁନିସେଫ୍ ବିଶ୍ୱବ୍ୟାଙ୍କ ତଥା ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଚାପ ଓ ପ୍ରରୋଚନା ଦ୍ୱାରା ୨ ଅକ୍ଟୋବର ୧୯୯୬ ଦିନ କେନ୍ଦ୍ର ସରକାର "ଇଣ୍ଟରନ୍ୟାସନାଲ କାଉନ୍‌ସିଲ ଆଣ୍ଡ କଣ୍ଟ୍ରୋଲ ଅଫ୍ ଆୟୋଡିନ୍ ଡେଫିସିଏନ୍‌ସି ଡିସାର୍ଡର"ଙ୍କ ଦ୍ୱାରା ଜାରୀ ହୋଇଥିବା ନିର୍ଦ୍ଦେଶନାମାକୁ ଗ୍ରହଣ କରିନେଇ ସାଧାରଣ ଲୁଣର ବିକ୍ରୀ ଉପରେ ନିଷେଧାଜ୍ଞା ଲାଗୁ କରିଦେଲେ । ଏବେ କେବଳ ଆୟୋଡ଼ିନ୍ ଯୁକ୍ତ କରିବା ଦ୍ୱାରା ଲୁଣରେ ଥିବା ମାଗ୍ନେସିୟମ୍ ସମାପ୍ତ ହୋଇଯାଏ ଯାହା ମନୁଷ୍ୟ ଏବଂ ପଶୁମାନଙ୍କ ପାଇଁ ଅତି ଉପଯୋଗୀ ଅଟେ ।

ଜର୍ମାନୀ ଏବଂ ଆମେରିକାରେ ଗଳଗଣ୍ଡ ଦ୍ୱାରା ଆକ୍ରାନ୍ତ ଲୋକଙ୍କ ସଂଖ୍ୟା ଭାରତଠାରୁ ଶତକଡ଼ା ୧୦ ଗୁଣ ଅଧିକ ମାତ୍ର ସେଠାରେ ସାଧାରଣ ଲୁଣ ଉପରେ ନିଷେଧାଜ୍ଞା ନାହିଁ । ସେଠାରେ ଦୁଇ ପ୍ରକାର ଲୁଣ ବଜାରରେ ମିଳିପାରୁଛି । ମାତ୍ର ଭାରତରେ କେବଳ ସାଧାରଣ ଲୁଣ ଉପରେ ଯେ ନିଷେଧାଜ୍ଞା ଲାଗୁ ହୋଇଛି ସେତିକି ନୁହେଁ ଅଧିକନ୍ତୁ ସରକାରୀ ଖର୍ଚ୍ଚରେ ଟେଲିଭିଜନ୍‌ରେ ଦିନ-ରାତି ଏହି ମିଥ୍ୟା ପ୍ରଚାର କରାଯାଉଛି ଯେ ଯେଉଁ ଗର୍ଭବତୀ ମହିଳା ସାଧାରଣ ଲୁଣ ଖାଆନ୍ତି ତାଙ୍କର ପିଲା ମାନସିକ ବିକାରଗ୍ରସ୍ତ ଓ ଅପଙ୍ଗ ରୂପେ ଜନ୍ମ ହୁଅନ୍ତି ।

ଧନୀ ଦେଶମାନଙ୍କରେ ଲୁଣକୁ ଆୟୋଡ଼ିନ୍ ଯୁକ୍ତ କରିବା ପାଇଁ 'ପୋଟାସିୟମ୍ ଆୟୋଡ଼ାଇଡ୍'ର ବ୍ୟବହାର କରାଯାଏ । ମାତ୍ର ଏହା ମହଙ୍ଗ ହେବା କାରଣରୁ କମ୍ପାନୀମାନେ ଭାରତରେ ଏହାର ବ୍ୟବହାର ନକରି ଶସ୍ତାରେ ମିଳୁଥିବା 'ପୋଟାସିୟମ୍ ଆୟୋଡେଟ୍'ର ବ୍ୟବହାର କରନ୍ତି ଯାହା ଏକ ପ୍ରକାର ହାଲୁକା ବିଷ । ୧୯୯୪ରେ କେନ୍ଦ୍ର ସରକାରଙ୍କର ପରିବେଶ ବିଭାଗ ଦ୍ୱାରା କରାଯାଇଥିବା ଏକ ଅଧ୍ୟୟନରୁ ଜଣାଗଲା ଯେ ପଟାସିୟମ୍ ଆୟୋଡେଟ୍' ବିଷାକ୍ତ ଅଟେ । ମାତ୍ର ୟୁନିସେଫ୍ ଏବଂ ଭାରତ ସରକାରର ଉଦ୍ୟୋଗ ମନ୍ତ୍ରଣାଳୟର ଲୁଣ ବିଭାଗ ପୋଟାସିୟମ୍ ଆୟୋଡେଟ୍‌ର ବ୍ୟବହାରକୁ ସମର୍ଥନ କରନ୍ତି ।

୧୯୮୧ରେ ମହାରାଷ୍ଟ୍ରରେ ରାଷ୍ଟ୍ରୀୟ ଗଳଗଣ୍ଡ କାର୍ଯ୍ୟକ୍ରମର ଅନୁଶୀଳନ କରାଯାଇଥିବା ଏକ ଅଧ୍ୟୟନରୁ ଜଣାପଡ଼ିଲା ଯେ, ଭାରତରେ ଗଳଗଣ୍ଡ ରୋଗର ମୁଖ୍ୟ କାରଣ କୁ-ପୋଷଣ ତଥା ଅନାହାର ସମସ୍ୟା ଯୋଗୁଁ ଘଟୁଛି । ମାତ୍ର ଦାରିଦ୍ର୍ୟ ଓ ଅନାହାର ସମସ୍ୟାକୁ ଉପେକ୍ଷା କରିବା ପାଇଁ ଲୁଣରେ ଆୟୋଡିନ୍‌ର ସ୍ୱଳ୍ପତାର ପ୍ରଚାର କରାଯାଉଛି । ବାସ୍ତବତଃ ଏହି ଲୁଣ ମାଧ୍ୟମରେ ଅନାହାରରେ ଥିବା ଲୋକଠାରୁ ଖଣ୍ଡିଆ ରୁଟି ଖଣ୍ଡିକ ମଧ୍ୟ ଛଡ଼ାଇ ନେଇ ଧନ ଉପାର୍ଜନର ଏହା ଏକ ସୁଚିନ୍ତିତ ଧୂର୍ତ୍ତ ଯୋଜନା; କାହିଁକି ନା ଲୁଣର ବ୍ୟବହାର ଗରୀବରୁ ଅତି ଗରୀବ ଲୋକେ ମଧ୍ୟ କରିଥାନ୍ତି ।

ଇଂରେଜମାନେ ମଧ୍ୟ ଏକ ସମୟରେ ଭାରତରେ ଲୁଣ ଉପରେ ନିଷେଧାଦେଶ ନିୟମ ପ୍ରଚଳନ କରିଥିଲେ । ସେହି ଆଇନ୍ ଅନୁସାରେ ସରକାରୀ ଅନୁମତି ନଥାଇ ସମୁଦ୍ର ବା ମାଟିରୁ ଲୁଣ ତିଆରି କରିବା ଓ ବିକିବା ଦଣ୍ଡନୀୟ ଅପରାଧ ବୋଲି ଘୋଷଣା କରାଯାଇଥିଲା । ମହାତ୍ମା ଗାନ୍ଧୀ ମାର୍ଚ୍ଚ ୧୯୩୦ରେ

ସେହି କଳା ଆଇନ୍‌ର ବିରୋଧରେ ଐତିହାସିକ ଦାଣ୍ଡୀ-ଯାତ୍ରା ଆରମ୍ଭ କରିଥିଲେ । ସାବରମତୀ ଆଶ୍ରମରୁ ସେହି ଯାତ୍ରାର ଆରମ୍ଭ ସମୟରେ ଗାନ୍ଧୀଜୀ କହିଥିଲେ - ''ସବୁଠୁ ଗରୀବର ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଲୁଣ ଉପରେ ନିଷେଧାଦେଶ ଘୃଣିତ ଓ ଅନ୍ୟାୟପୂର୍ଣ୍ଣ ଅଟେ ।'' ରାଷ୍ଟ୍ରୀୟ ସ୍ୱତନ୍ତ୍ରତା ଆନ୍ଦୋଳନ ମୁଖ୍ୟତଃ ଗରୀବଙ୍କ ହିତ ପାଇଁ ହୋଇଛି । ତେଣୁ ଏହି ଅନ୍ୟାୟ ବିରୋଧରେ ପ୍ରତିରୋଧ ଓ ସଂଘର୍ଷ ବହୁତ ଜରୁରୀ । ଲୁଣ ଏପରି ଏକ ଜିନିଷ ଯାହାକୁ ବ୍ୟକ୍ତିଗତ ଓ ସାମୂହିକ ରୂପେ ଗରୀବ ଲୋକେ ଧନୀ ଲୋକଙ୍କଠାରୁ ଅଧିକ ପରିମାଣରେ ଖାଇଥାନ୍ତି । ଏହି କଥା ବିଚାର କଲାବେଳକୁ ତ ଲୁଣ ଖାଇ ଚାର ଟିକସ ଗରୀବଙ୍କ ପାଇଁ ମଧ ଭାରି ବୋଝ ଭଳି ଜଣାପଡ଼େ । ଗାନ୍ଧୀଜୀ କହିଥିଲେ - ''ଯେତେବେଳେ ଯାଏଁ ଲୁଣ ଉପରେ ନିଷେଧାଦେଶ ରଦ୍ଦ ହୋଇ ନାହିଁ ସେ ପର୍ଯ୍ୟନ୍ତ ମୁଁ ଆଶ୍ରମକୁ ଫେରିବି ନାହିଁ, ଏହା ମୋ ପାଇଁ ତୀର୍ଥ ଯାତ୍ରା ପରି । ଆପଣ ମୋତେ ସଫଳ ହୋଇ ଫେରିବାର ଦେଖିବେ ବା ମୋ ଶରୀରକୁ ସମୁଦ୍ରରେ ଭାସୁଥିବା ଅବସ୍ଥାରେ ଦେଖିବେ ।'' ୬ ଅପ୍ରେଲ୍ ୧୯୩୦ ଦିନ ଗାନ୍ଧୀଜୀଙ୍କୁ ଗିରଫ କରାଗଲା । ସାରା ଭାରତରେ ଠାକୁ ଠା ଲୁଣ ଆଇନ୍ ଅମାନ୍ୟ କରାଗଲା । ସାରା ଦେଶରେ ବିରୋଧର ଏପରି ବାତାବରଣ ସୃଷ୍ଟି ହେଲା ଯେ ଇଂରେଜ ସରକାରକୁ ମୁଣ୍ଡ ନୁଆଁଇବାକୁ ପଡ଼ିଲା । ଏବଂ ୧୯୩୧ରେ ଲର୍ଡ ଏରୱଇନ୍ ଓ ଗାନ୍ଧୀଙ୍କ ମଧ୍ୟରେ ହୋଇଥିବା ବୁଝାମଣାକୁ ଆଧାର କରି ଲୁଣ ଉପରେ ଥିବା ନିଷେଧାଦେଶ ରୂପୀ କଳା ଆଇନ୍ ଲୋପ ହେଲା ।

ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଶ୍ରୀଇନ୍ଦ୍ରକୁମାର ଗୁଜରାଲ ଏହି ବର୍ଷ ୧୫ ଅଗଷ୍ଟ ୧୯୯୭ରେ ରାଷ୍ଟ୍ର ଉଦ୍ଦେଶ୍ୟରେ ଦେଇଥିବା ଭାଷଣରେ ଇଂରେଜଙ୍କର ଲବଣ ଆଇନ୍ ଓ ତା' ବିରୋଧରେ ଗାନ୍ଧୀଜୀଙ୍କ ଦ୍ୱାରା ପରିଚାଳିତ ଲବଣ ସତ୍ୟାଗ୍ରହର ସୂଚନା ଦେଇ ରାଷ୍ଟ୍ରୀୟ ଆନ୍ଦୋଳନର ଏହି ଗୌରବଶାଳୀ ଇତିହାସକୁ ସ୍ମରଣ କରାଇ ଥିଲେ । ତାଙ୍କ ଦୃଷ୍ଟିକୁ କ'ଣ ଏହିକଥା ଆସିନାହିଁ ଯେ, ସ୍ୱାଧୀନଭାରତରେ ତାଙ୍କ ସରକାର ମଧ ସାଧାରଣ ଲୁଣ ଉପରେ ନିଷେଧାଦେଶର କଳା ଆଇନ୍ ପ୍ରଚଳନ କରି ଚାଲିଛି । ଏହା ଆଶ୍ଚର୍ଯ୍ୟର ବିଷୟ ଯେ, ସାଧାରଣ ଲୁଣ ଉପରେ ନିଷେଧାଦେଶର ନିର୍ଣ୍ଣୟ କେନ୍ଦ୍ରମନ୍ତ୍ରୀମଣ୍ଡଳ ନେଇ ନଥିଲେ କି ସଂସଦରେ ଏହା ଉପରେ ମଧ ବିତର୍କ ହୋଇ ନଥିଲା । କେନ୍ଦ୍ର ସରକାରଙ୍କ ଉଦ୍ୟୋଗ ମନ୍ତ୍ରଣାଳୟର ଲୁଣ ବିଭାଗର ଅଧିକାରୀମାନେ ସାରା ଦେଶରେ ଏହି ନିଷେଧାଦେଶ ପ୍ରଚଳନ କରିଦେଲେ ।

ବର୍ତ୍ତମାନ ଭାରତରେ ପ୍ରତିବର୍ଷ ୧ କୋଟି ୫୦ ଲକ୍ଷ ଟନ୍ ଲୁଣ ଆବଶ୍ୟକ ହେଉଛି । ମଣିଷର ଖାଇବାରେ ମାତ୍ର ୪୦ ଲକ୍ଷ ଟନ୍ ଲୁଣର ବ୍ୟବହାର ହୋଇଥାଏ । ଅବଶିଷ୍ଟ ୧ କୋଟି ୧୦ ଲକ୍ଷ ଟନ୍ ଲୁଣର ବ୍ୟବହାର ମାଛ ସାଇତି ରଖିବା, ଚମଡ଼ା ପଚାଇବା କାମରେ ତଥା ଅନ୍ୟ ଉଦ୍ୟୋଗମାନଙ୍କରେ ଏବଂ ବିଲ-ବାଡ଼ିରେ ତଥା ପଶୁମାନଙ୍କର ଖାଦ୍ୟରେ ବ୍ୟବହାର ହୋଇଥାଏ । ଏବେ ଏହିସବୁ କାମ ପାଇଁ ମଧ ସାଧାରଣ ଲୁଣ ଦୁର୍ଲଭ ହୋଇଯାଇଛି । ସେମାନଙ୍କୁ ଅଧିକ ଦାମ୍‌ରେ ଲୁଣ କିଣିବାକୁ ପଡୁଛି, କାହିଁକି ନା ସମୁଦ୍ର କୂଳର ଲୁଣ କାରିଗର; ଆୟୋଡ଼ୀନ୍ ଯୁକ୍ତ କରୁଥିବା ବଡ଼ ବଡ଼ କମ୍ପାନୀମାନଙ୍କ ଛଡ଼ା ଅନ୍ୟକେହି ସାଧାରଣ ଲୁଣ ବିକ୍ରୀ କରିବାର ଅଧିକାର ପାଇ ନାହାନ୍ତି । ଅନ୍ୟମାନଙ୍କୁ ସାଧାରଣ ଲୁଣ ବିକ୍ରୀ କରିବାକୁ ହେଲେ ସେଥିପାଇଁ ସେମାନଙ୍କୁ ଲାଞ୍ଚ, ଘୁସ୍ ଦେବାକୁ ପଡୁଛି । ଏହି କାରଣରୁ ଯେଉଁ ସାଧାରଣ ଲୁଣ ବଡ଼ କମ୍ପାନୀମାନଙ୍କୁ ଶତକଡ଼ା ୨୫ କିଲୋଗ୍ରାମ ଦାମ୍‌ରେ ମିଳୁଛି ଅନ୍ୟ ଲୋକଙ୍କୁ ଅଧିକ ଦାମ୍‌ରେ କିଣିବାକୁ ପଡୁଛି ।

ସାଧାରଣ ଲୁଣ ଉପରେ ନିଷେଧାଦେଶ ଜାରିକରି ସମୁଦ୍ର କୂଳର ୧୨ ଲକ୍ଷ ଲୁଣ କାରିଗର ଏବଂ ସଚ୍ଚୋଟ ମେହେନତ କରି ପେଟ ପୋଷୁଥିବା ଲକ୍ଷ ଲକ୍ଷ ଛୋଟ କାରିଗରଙ୍କ ଧନ୍ଦାକୁ ସରକାର 'କଳାଧନ୍ଦା' ବୋଲି ଘୋଷଣା କରିଦେଲେ ଓ ବଡ଼ ବଡ଼ ବିଦେଶୀ

କମ୍ପାନୀମାନଙ୍କର ଲୁଣକୁ ଆଇନ୍‌ଗତ ମାନ୍ୟତା ଦେଇ ଦେଇଛନ୍ତି । ମାତ୍ର ସାଧାରଣ ଲୁଣ ଉପରେ ଜାରି ହେଉଥିବା ଏହି ନିଷେଧାଦେଶ ବିରୋଧରେ କେରଳ ଓ ଗୋଆରୁ ଆରମ୍ଭ ହୋଇଥିବା ଏହି ବିରୋଧୀ ଆନ୍ଦୋଳନ ପଣ୍ଡିଚେରୀ, ତାମିଲନାଡୁ, କର୍ଣ୍ଣାଟକ, ମହାରାଷ୍ଟ୍ର, ଓଡ଼ିଶା, ଉତ୍ତର ପ୍ରଦେଶ ଏବଂ ବିହାର ପର୍ଯ୍ୟନ୍ତ ବ୍ୟାପି ଗଲାଣି । ପରିଣାମ ସ୍ୱରୂପ ୧ ଅକ୍ଟୋବର ୧୯୯୭କୁ ଏହି ପ୍ରଦେଶମାନଙ୍କରୁ ଆସିଥିବା ୧୦୦ରୁ ଅଧିକ ସମାଜସେବୀ ନିଷେଧାଦେଶ ବିରୋଧରେ ଦିଲ୍ଲୀର ସଂସଦ ସମ୍ମୁଖରେ ସତ୍ୟାଗ୍ରହ କରି ଗିରଫ ହେଲେ । ଏହି ସତ୍ୟାଗ୍ରହର ଆୟୋଜନ କେରଳର "ସ୍ୱାତନ୍ତ୍ର୍ୟ ସଂରକ୍ଷଣ ସମିତି" ଏବଂ ବିହାରର "ଗଙ୍ଗା ମୁକ୍ତି ଆନ୍ଦୋଳନ" ପକ୍ଷରୁ କରାଯାଇଥିଲା । ସାରା ଦେଶର ଅନେକ ସଙ୍ଗଠନ ଏବଂ ସଂସ୍ଥାମାନେ ଏହାକୁ ନିଜର କାର୍ଯ୍ୟକ୍ରମ ରୂପେ ଗ୍ରହଣ କରି ଏହି ଆନ୍ଦୋଳନକୁ ଦେଶର ଗାଁ-ଗାଁରେ ପ୍ରସାର କରାଇବାର ନିର୍ଣ୍ଣୟ ନେଇଛନ୍ତି । ●●●

ଅନୁବାଦ - ରମାକାନ୍ତ ନାଥ

(ଶ୍ରୀ ଅନିଲ ପ୍ରକାଶ- ବିହାର ସର୍ବୋଦୟ ଆନ୍ଦୋଳନର ଜଣେ ପ୍ରଗତୀଶୀଳ କାର୍ଯ୍ୟକର୍ତ୍ତା)

(୧୯୯୮ ଜାନୁଆରୀ ୧, 'ସର୍ବୋଦୟ' ରୁ ସଂଗୃହୀତ)

# ଆୟୋଡ଼ିନ୍ ନାମରେ ବିଷ ବ୍ୟବସାୟ

ଡା. ଭାରତେନ୍ଦୁ ପ୍ରକାଶ

ଆୟୋଡ଼ିନ୍‌ଯୁକ୍ତ ଲୁଣ ନାମରେ 'ପୋଟାସିୟମ ଆୟୋଡେଟ୍' ମିଶା ଲୁଣ ସରକାରଙ୍କ ସଂରକ୍ଷଣ ପ୍ରାପ୍ତ ବଡ଼ ବଡ଼ ବିଦେଶୀ କମ୍ପାନୀଙ୍କ ଦ୍ୱାରା ବଜାରରେ ବିକ୍ରୀ କରାଯାଉଛି । ପାଶ୍ଚାତ୍ୟ ଦେଶମାନଙ୍କରେ 'ପୋଟାସିୟମ ଆୟୋଡେଟ୍'ର କୌଣସି ଉପଯୋଗିତା ନଥିବାରୁ ଭାରତ ଭଳି ଦେଶମାନଙ୍କୁ ଏହା ରପ୍ତାନୀ କରଯାଇ ଲୁଣ ସହିତ ମିଶାଇ ବିକ୍ରୀ କରାଯାଉଛି ।

ଆୟୋଡେଟ୍‌ର ଯୌଗିକ ପ୍ରକ୍ରିୟା ଦ୍ୱାରା କୌଣସି ରୂପେ ବି ଶରୀରକୁ ଆୟୋଡିନ୍ ମିଳି ନଥାଏ । ଏହା ଏକ ପ୍ରକାର ଅସ୍ଥାୟୀ ଯୌଗିକ ପ୍ରକ୍ରିୟା ହୋଇଥିବାରୁ ସଙ୍ଗେ ସଙ୍ଗେ ମିଶ୍ରଣ ହେବାର ଅଳ୍ପ ସମୟ ମଧ୍ୟରେ ବହୁ ଗୁଣରେ ବିଭକ୍ତ ହୋଇ ଆୟୋଡିନ୍‌କୁ ବାଷ୍ପ ରୂପରେ ଉଡ଼ାଇ ଦିଏ । ବସ୍ତୁତଃ ପୋଟାସିୟମ ଆୟୋଡେଟ୍ ହେଉଛି ଏକ ବିଷାକ୍ତ ପଦାର୍ଥ ।

ଦିଲ୍ଲୀରେ କାମ କରୁଥିବା ବିଖ୍ୟାତ ବୈଜ୍ଞାନିକ ଡଃ ସନ୍ତୋଷ କୁମାର ଶର୍ମା ବହୁ ଗବେଷଣା ମୂଳକ ପତ୍ରିକାମାନଙ୍କରେ ଏ ସମ୍ବନ୍ଧରେ ପତ୍ର ଲେଖି ଲୋକମାନଙ୍କୁ ସତର୍କ କରାଇଛନ୍ତି ଯେ, ଆୟୋଡିନ ନାଁରେ 'ଆୟୋଡେଟେଡ୍' ଲୁଣ ବିକ୍ରୀ କରିବାର ଏକ

## ନୂଆ ଯୁଗାନ୍ତର

ଏବେ ଆସି ଅଛି ନୂଆ ଯୁଗାନ୍ତର
ଗାନ୍ଧୀ କହିଅଛି ବୁଲି ବାରବାର ॥୦॥

ଖାଅ ଭାତ ମୁଠି ଘର ଢେଙ୍କି କୁଟା
ପିନ୍ଧଲୁଗା ଖଣ୍ଡି ହାତ ସୂତା କଟା
ବସି ଅରଟ ଚଳାଅ ଘର ଘର ॥୧॥
କରପଣ ହିମାଳୟ ରାଣା ପରି
ଦୃଢ଼ ସ୍ୱରାଜ ଭାବନା ହୃଦେ ଧରି
ଭାଇ ଭାଇ କଳି ଘରୁ ଦୂର କର ॥୨॥

ନାହିଁ ବଳ ତୋପ ଗୁଳି ଖଣ୍ଡାଧାରେ
ବଳ ରହିଛି ମଣିଷ ଛାତି ହାଡ଼େ ।
ପୋଛି ଦିଅ ସତ୍ୟ ଲାଗି ମୃତ୍ୟୁ ଡର ॥୩॥
ଯାହା ବୁଦ୍ଧ ଚଇତନ ଗଲେ ଗାଇ
ଗାନ୍ଧୀ କହିଛି ତା ନୂଆ ରୂପ ଦେଇ
ସେହି ମାହାମାନବର ପଥ ଧର ॥୪॥

●●●

ଜନ ବିରୋଧୀ ଷଡଯନ୍ତ୍ର ଚାଲିଛି । ଅନୁସନ୍ଧାନ କଲେ ଏ କାରବାର ପଛରେ କୌଣସି ବଡ଼ ଧରଣର ଦୁର୍ନୀତି ଥିବା ପ୍ରକଟ ହେବ । ଡାଃ ଶର୍ମାଙ୍କ ମତରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଏବଂ ମିଳିତ ଜାତି ସଂଘର ବିଭିନ୍ନ ଅନୁଷ୍ଠାନ ଏପର୍ଯ୍ୟନ୍ତ ତାଙ୍କର ଏହି ଅଭିଯୋଗର ଉତ୍ତର ଦେଇନାହାନ୍ତି ଯେ, କେବଳ ଏସିଆ ଓ ଆଫ୍ରିକାର ଦେଶମାନଙ୍କରେ ହିଁ ପୋଟାସିୟମ୍ ଆୟୋଡେଟ୍' ମିଶ୍ରିତ ଲୁଣ ବିକ୍ରୀ କରିବାର ଯୋଜନା କାହିଁକି କରାଯାଉଛି ।

ସଭିଏଁ ଅବଗତ ଥିବେ ଯେ, 'ଆୟୋଡାଇଜଡ୍' ଲୁଣର ବ୍ୟବହାର ମୁଖ୍ୟତଃ ଗଳଗଣ୍ଡ ରୋଗର ନିବାରଣ ନିମନ୍ତେ ପ୍ରସ୍ତୁତ କରାଯାଇଥିଲା କିନ୍ତୁ ନୂଆଦିଲ୍ଲୀରେ ଥିବା 'ଗଳଗଣ୍ଡ ରୋଗ'ର ଚିକିତ୍ସାଳୟ ପକ୍ଷରୁ କୁହାଯାଇଛି ଯେ, ଏହି ଲୁଣର ବ୍ୟବହାର ପରେ ମଧ ଗଳଗଣ୍ଡ ରୋଗ ବଢ଼ିବାରେ ଲାଗିଛି । ଏହାର କାରଣ ହେଲା ଯେଉଁ ସବୁ ଲୁଣ ବଜାରରେ ବିକ୍ରୀ କରାଯାଉଛି ସେଥିରେ ଅଭାବ ଥିବା ଆୟୋଡିନ୍‌ର ଭରଣା ହୋଇପାରୁନାହିଁ ।

ତା'ପରେ ସବୁ ବ୍ୟକ୍ତିଙ୍କଠାରେ ଓ ସବୁ ସ୍ଥାନରେ ତ ଆୟାଡ଼ିନ୍‌ର ଅଭାବ ନାହିଁ ଏଣୁ ସମଗ୍ର ଦେଶରେ ଏକ ଧରଣର ନିର୍ଦ୍ଦେଶନାମା ଜରିଆରେ ଏଭଳି ଲୁଣ ବିକ୍ରୀ କରାଇବା ଅନୁଚିତ । ଦୁର୍ଭାଗ୍ୟର କଥା ହେଲା ବଡ଼ ବଡ଼ ସହରରେ ସାଧାରଣ ଲୁଣ କିଣିବାକୁ ହେଲେ ଡାକ୍ତରଙ୍କ ପ୍ରମାଣ ପତ୍ର ଆବଶ୍ୟକ ହେଉଛି ।

ଅତି ଦୁଃଖର କଥା ଯେ ମହାତ୍ମା ଗାନ୍ଧୀ ଯେଉଁ 'ଲୁଣ'କୁ ବିଦେଶୀଙ୍କ କବଳରୁ ମୁକ୍ତ କରିଥିଲେ ଓ ଏଥିପାଇଁ ଅନେକ ଲୋକ ଶହୀଦ ହୋଇଥିଲେ ଆଜି ସେହି ଲୁଣ ଆମର ନିଜ ଦେଶର ସରକାରଙ୍କର ଲୋକ ବିରୋଧୀ ଷଡଯନ୍ତ୍ର ଫଳରେ ବଡ଼ ବଡ଼ ବିଦେଶୀ କମ୍ପାନୀ ଓ ବହୁରାଷ୍ଟ୍ରୀୟ ବ୍ୟବସାୟୀଙ୍କ ମାଧ୍ୟମରେ ଦେଶବାସୀଙ୍କୁ ଶୋଷଣ କରୁଛନ୍ତି । ଆୟୋଡ଼ିନ୍ ନାଁରେ ବିଗତ ୫-୭ ବର୍ଷ ଧରି ଲୁଣର ଅହେତୁକ ମୂଲ୍ୟ ବୃଦ୍ଧିର କୌଣସି ଔଚିତ୍ୟ ନାହିଁ । ଆଜି ପୁଣି ଗାନ୍ଧୀ ମନେ ପଡୁଛନ୍ତି । ଆଉ ଏକ ଲବଣ ସତ୍ୟାଗ୍ରହର କ'ଣ ଆବଶ୍ୟକତା ହେବ ନାହିଁ ?

ଅନୁବାଦ-ଶୋଭାକର ସ୍ୱାଇଁ
(୧୯୯୮ ଜାନୁୟାରୀ ୧, "ସର୍ବୋଦୟ" ରୁ ଗୃହୀତ)



## INDIAN MEDICAL ASSOCIATION

**MAHARASTRA STATE BRANCH**

17.6.98

**TO WHOMSOEVER IT MAY CONCERN**

The Indian medical Association, Maharashtra State Branch, in the meeting of the exective committee on 22nd March, 1998. I.M.A. Housr, Hazi All, Mumbai. 400-034 discussed Thoroughly the need of the salt with Iodine for consumption of the public and the ban of common salt by the govt. of maharastra.

The members were unanimous of the opinion that compulsory use of salt with Iodine is not necessary for the public in the state and the country. The Goitre is prevalent only in the endemic arear. where the suppliment of Iddinels needed. The consumption of extra Iodine may create other cumplications hence the Govt. should not make it's use compulsory and lift the ban on common salt in the state.

**Dr. F. S. Desai,**

**President**

**I.M.A. Maharashtra State Branch**

# ସାଦା ଲୁଣ ବନାମ ଆୟୋଡ଼ିନ ମିଶ୍ରିତ ଲୁଣ

**କ୍ଷେତ୍ରମୋହନ ଶତପଥୀ**

ଇଂରେଜମାନେ ଆମ ଦେଶକୁ ଆସିଥିଲେ ତାଙ୍କ ଦେଶରେ ତିଆରି ଜିନିଷପତ୍ର ଏଠାରେ ବିକି ଲାଭବାନ ହେବା ପାଇଁ । କ୍ରମେ ସେମାନେ ଏଠାର ରାଜନୈତିକ ବ୍ୟବସ୍ଥାରେ ହସ୍ତକ୍ଷେପ କରି ନିଜର ପ୍ରାଧାନ୍ୟ ଓ କ୍ଷମତା

ବଢ଼ାଇଲେ, ଭାରତର ଗୋଟିଏ ପରେ ଗୋଟିଏ ଅଞ୍ଚଳ ଦଖଲ କରି ସାରା ଦେଶକୁ ନିଜର ଶାସନାଧୀନ କଲେ । ତାଙ୍କ ଦେଶରେ ଉତ୍ପାଦିତ ପଦାର୍ଥ ଏଠାରେ ବହୁଳ ପରିମାଣରେ ବିକ୍ରୟର ସୁଯୋଗ ପାଇଁ ଇଂରେଜ ଶାସକମାନେ ଦେଶରେ ତିଆରି ଜିନିଷ ପତ୍ର ଉପରେ ଅଧିକ ।ର ବସାଇ ତାର ଦାମ ବଢ଼ାଇଦେଲେ । ଦେଶୀ ପଦାର୍ଥର ବିକ୍ରୀ କମିଗଲା, ଦେଶୀୟ ଶିଳ୍ପ ଧ୍ୱଂସ ପାଇଲା, କାରିଗରମାନେ ବେକାର ହେଲେ, ମଦ, ଅଫିମ, ଗଞ୍ଜେଇ ପରି ନିଶାଦ୍ରବ୍ୟ ପ୍ରଚଳନକୁ ସରକାର ଉତ୍ପାଦିତ କଲେ, ଅବକାରୀ କର ଆକାରରେ ବହୁତ ଅର୍ଥ ସରକାରୀ ତହବିଲକୁ ଗଲା । ଏଣେ ନିଶାଗ୍ରସ୍ତ ଲୋକଙ୍କ ମଧ୍ୟରେ ଶରୀରିକ ଓ ମାନସିକ ଦୁର୍ବଳତା ପ୍ରକାଶ ପାଇଲା । ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତି ଏହି ଉପାୟରେ ଏସିଆ, ଆଫ୍ରିକା, ଲାଟିନ୍ ଆମେରିକା ଆଦି ଅଞ୍ଚଳରେ ନିଜର ସାମ୍ରାଜ୍ୟ ସ୍ଥାପନ କରି ସେଠାରେ ଅଧିବାସୀଙ୍କୁ ଶୋଷଣ କରିଥିଲେ ।

ଇଂରେଜ ସରକାର ଅଧିକ ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ ଅନ୍ୟ କେତେକ ଅହିତକାରୀ ଆଇନ୍ ପ୍ରବର୍ତ୍ତନ କରିଥିଲେ । ସେଥିମଧ୍ୟରେ ପ୍ରଧାନ ଥିଲା ଲବଣ ଆଇନ । ଦେଶର ସବୁ ଲୋକ ଲୁଣ ବ୍ୟବହାର କରନ୍ତି । ଦେଶର ଦରିଦ୍ରତମ ଲୋକେ ବହୁ କଷ୍ଟରେ ଭାତ ବା ଅନ୍ୟ କିଛି ଦାନା ଗଣ୍ଡାଏ ଯୋଗାଡ଼ କରି ତାହାକୁ ସ୍ୱାଦୁ କରିବା ନିମନ୍ତେ ଲୁଣ ବ୍ୟବହାର କରନ୍ତି । ଆମ ଦେଶର ଲୋକେ ସମୁଦ୍ର ବା ଚିଲିକା ପରି ହ୍ରଦର ପାଣିରୁ ନିଜେ ଲୁଣମାରି ବ୍ୟବହାର କରନ୍ତି ବା ଅନ୍ୟକୁ ଯୋଗାନ୍ତି । ଇଂରେଜ ସରକାର୍ର ଏହା ଉପରେ କର ବସାଇଲେ, ଲୁଣର ଦାମ ବାର ଗୁଣରୁ ଅଧିକ ବଢ଼ିଗଲା । ଏହା ଫଳରେ ଗରିବ ଲୋକେ ସହଜରେ ଲୁଣ ପାଇଲେ ନାହିଁ, ସ୍ୱାଧୀନ ଭାବରେ ସମୁଦ୍ରରୁ ଲୁଣ ମାରିବାର ଯେଉଁ ଅଧିକାର ସାଧାରଣ ଲୋକଙ୍କର ଥିଲା, ତାହା ସେମାନେ ହରାଇଲେ; ଏ ଦେଶରେ ବିଦେଶୀ କାରଖାନା ତିଆରି ଲୁଣର ବିକ୍ରୀ ପାଇଁ ବାଟ ଖୋଲିଗଲା । ଗାନ୍ଧିଜୀ ଏହି ଅନ୍ୟାୟ ଆଇନ୍‌ର ବିରୋଧ କଲେ । ୧୯୩୦ରେ ଗାନ୍ଧିଜୀ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ । ଏଥିରେ 'ଲବଣ ଆଇନ' ଭାଙ୍ଗିବା ଉପରେ ଅଧିକ ଗୁରୁତ୍ୱ ଦିଆଗଲା ।

ତାଙ୍କର ସାବରମତୀ ଆଶ୍ରମଠାରୁ ୨୪୧ ମାଇଲ ଦୂରରେ ସମୁଦ୍ର କୂଳରେ ଥିବା ଦାଣ୍ଡୀଠାରେ ଗାନ୍ଧିଜୀ ଲୁଣ ମାରି ସରକାରଙ୍କ ଲବଣ ଆଇନ୍ ଭାଙ୍ଗିବାକୁ ସ୍ଥିର କଲେ । ସେ ତାଙ୍କର କର୍ମୀଙ୍କ ମଧ୍ୟରୁ ୭୮ ଜଣଙ୍କୁ ସାଙ୍ଗରେ ଧରି ଦାଣ୍ଡିଯାତ୍ରା ଆରମ୍ଭ କଲେ । ୨୫ ଦିନପରେ ଦାଣ୍ଡୀରେ ପହଞ୍ଚି ଏପ୍ରିଲ ୬ ତାରିଖ ଦିନ ସମୁଦ୍ର ପାଣିରୁ ନିଜେ ଲୁଣ ମାରିଥିଲେ । ଏହି 'ଲବଣ ସତ୍ୟାଗ୍ରହ' ଥିଲା ଗାନ୍ଧିଜୀଙ୍କ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ବେଳର ଶଙ୍ଖଧ୍ୱନୀ, ଅହିଂସ ପ୍ରତିରୋଧର ପ୍ରତୀକ । ଦେଶର ବିଭିନ୍ନ ସ୍ଥାନରେ ଲବଣ ସତ୍ୟାଗ୍ରହ ଚାଲିଥିଲା । ଓଡ଼ିଶାର ଇଞ୍ଚୁଡ଼ିଠାରେ ଆଚାର୍ଯ୍ୟ ହରିହର ଓ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ବହୁ ବ୍ୟକ୍ତି ଲବଣ ଆଇନ୍ ଅମାନ୍ୟ କରି ଲୁଣ ମାରିଥିଲେ । ଏହି ପ୍ରତିରୋଧ ଫଳରେ ସରକାର ତାଙ୍କର ଲବଣ ଆଇନ୍ ପ୍ରତ୍ୟାହାର କଲେ । ସ୍ୱାଧୀନ ଭାବରେ ଲୁଣ ମାରିବାର ଅଧିକାର ଲୋକେ ଫେରି ପାଇଲେ । ଏଥିରୁ ଦୁଇଟି ବିଷୟ ସିଦ୍ଧ ହୋଇଗଲା । (୧) ସାମ୍ରାଜ୍ୟବାଦୀ-ପୁଞ୍ଜିବାଦମାନେ ଅଧିକ ଅର୍ଥ ଲାଭ ପାଇଁ ଯେକୌଣସି ହୀନ, ନିଷ୍ଠୁର ତଥା ଅନ୍ୟାୟ ବାଟ ଧରିବା ପାଇଁ କୁଣ୍ଠାବୋଧ କରନ୍ତି ନାହିଁ । (୨) ଅହିଂସ ଭାବରେ ଯେ କୌଣସି ଅନ୍ୟାୟର ପ୍ରତିରୋଧ କରାଯାଇ ପାରିବ, ଏହା ଶକ୍ତିଶାଳୀ ବ୍ରିଟିଶ ସରକାରକୁ ମଧ୍ୟ ହୀନବଳ କରିଦେବ । ଅହିଂସ ସଂଗ୍ରାମର ସଫଳତା ଉପରେ ଦେଶବାସୀଙ୍କ ଦୃଢ଼ ବିଶ୍ୱାସ ସ୍ଥାପିତ ହେଲା । ଅହିଂସା-ସତ୍ୟାଗ୍ରହ ହେଲା ଭାରତୀୟ ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ଆୟୁଧ ।

ସ୍ୱାଧୀନତା ପରେ ମଧ୍ୟ ଦେଶୀ ଓ ବିଦେଶୀ ପୁଞ୍ଜିପତିମାନେ ସେମାନଙ୍କର ହୀନ ଚକ୍ରାନ୍ତରୁ ନିବୃତ୍ତ ହେଲେ ନାହିଁ । ମୁକ୍ତ ଅର୍ଥନୀତିର ପରିଣତି ସ୍ୱରୂପ ଆମ

ଦେଶରେ ବିଦେଶୀ ବେପାରୀଙ୍କର ପ୍ରତିଷ୍ଠା ଓ ପ୍ରଭାବ ବଢ଼ିଲା । ସେମାନଙ୍କ ଲୋଲୁପ ଆଖି ପୁଣି ଲୁଣ ଉପରେ ପଡ଼ିଲା । ଲୁଣର ବ୍ରିକି ପରିମାଣ ବେଶୀ ଓ ଲାଭ ବି ଅଧିକ । ଗୁଜୁରାଟରେ କାଣ୍ଡଲା ବନ୍ଦର ନିକଟରେ ୧୫ ହଜାର ଏକର ପରିମିତ ଜମିରେ ଏକ ଲୁଣ କାରଖାନା ବସାଇବା ପାଇଁ ନରସିଂହ ରାଓଙ୍କର କଂଗ୍ରେସ ସରକାର 'କାରଗିଲ' ନାମକ ଏକ ବିରାଟ ଆମେରିକୀୟ କମ୍ପାନୀକୁ ଅନୁମତି ଦେଲେ (୧୯୯୨ ଅଗଷ୍ଟ) । ଏହା ପଛରେ ଯୁକ୍ତିଥିଲା, ଉତ୍ପାଦିତ ଲୁଣ ରପ୍ତାନି କରାଯିବ, ଏହାର ଉତ୍ପାଦନ ଖର୍ଚ୍ଚ କମ୍ ହେବ ତେଣୁ ଲୋକେ ଶସ୍ତାରେ ଲୁଣ ପାଇବେ । କିନ୍ତୁ ଏହି କାରଖାନାରେ ଲୁଣ ମଟାଗଲେ କେତେଲକ୍ଷ ଲୁଣ ମରାଳି ବେକାର ହେବେ ଓ ତାଙ୍କ ପରିବାର ଉପାଷ ରହିବ ଏବଂ ଗୋଟିଏ ବିଦେଶୀ କାରଖାନାରୁ ଲୁଣ ମରା ଆରମ୍ଭ ହେଲେ ଆଉ ନୂଆ ଲୁଣ କାରକାନା ସ୍ଥାପନ କରିବାକୁ କୌଣସି ବିଦେଶୀ କମ୍ପାନୀକୁ ଅନୁମତି ମିଳିବ କି ନାହିଁ ଏହା କେହି ପ୍ରକାଶ କଲେ ନାହିଁ । ସରକାରଙ୍କ ପ୍ରକୃତ ଉଦ୍ଦେଶ୍ୟ ପଦାରେ ପଡ଼ିଲା । ପ୍ରଗତିଶୀଳ, ସୋସାଲିଷ୍ଟ ଓ କମ୍ୟୁନିଷ୍ଟ, ଗାନ୍ଧିବାଦୀମାନେ ବିରାଟ ଜନଆନ୍ଦୋଳନ ଆରମ୍ଭ କଲେ, ସତ୍ୟାଗ୍ରହୀମାନେ ଗିରଫ ହେଲେ । ଶେଷରେ କାରଖାନା ସ୍ଥାପନ ପାଇଁ କାରଗିଲ କଂପାନୀକୁ ଦିଆଯାଇଥିବା ଅନୁମତି ପ୍ରତ୍ୟାହାର କରାଗଲା । ବିଦେଶୀ ବେପାରୀଙ୍କ ଭାରତରେ ଲୁଣ କାରଖାନା ବସାଇବାର ସ୍ୱପ୍ନ ବାସ୍ତବ ହେଲା ନାହିଁ ।

ଏହି କ୍ଷତର ଯନ୍ତ୍ରଣା ଦେଶୀ ଓ ବିଦେଶୀ ପୁଞ୍ଜିପତିମାନଙ୍କ ପାଇଁ ଦୁର୍ବିସହ ଥିଲା । ଆମ ଦେଶର ଅଧିକାଂଶ ରାଜନୀତିକ ଓ ବ୍ୟୁରୋକ୍ରାସୀ ଏମାନଙ୍କ ହାତ ବାରିସି । ଇଉନିସେଫ୍ ଏମାନଙ୍କ କାର୍ଯ୍ୟକୁ ଆନ୍ତର୍ଜାତିକ ସ୍ୱୀକୃତି ଦେବାର ଠିକା ନେଉଛି କହିଲେ ଚଳେ । କାରଣ ସମ୍ମିଳିତ ଜାତି ପ୍ରତିଷ୍ଠାନ (U.N) ଆମେରିକାର ମୁଠାରେ । ଏପରି ଅବସ୍ଥାରେ ବହୁ ରାଷ୍ଟ୍ରୀୟ ବେପାରୀମାନେ ଶୋଷଣର ନୂଆ ଉପାୟ ପାଞ୍ଚିଲେ । ସ୍ଥିର ହେଲା ଆୟୋଡ଼ିନ୍ ଲୁଣ ସମସ୍ତେ ଖାଇବେ, କାରଣ ଏହା ନଖାଇଲେ ଗଳଗଣ୍ଡ ରୋଗ (Goitre) ହେବ । ଦେଶରେ ଆୟୋଡ଼ିନ୍ ଲୁଣ ପ୍ରସ୍ତୁତ କରିବା ପାଇଁ କାରଖାନା ବସିବା ଦରକାର ହେବ । ସରକାରୀ ନିୟନ୍ତ୍ରିତ କାରଖାନାରେ ପର୍ଯ୍ୟାପ୍ତ ପରିମାଣରେ ଲୁଣ ମିଳିବ ନାହିଁ । କାରଣ ଏହାର ପରିଚାଳନା ଦାୟିତ୍ୱରେ ଥିବା ଅଧିକାରୀ ଓ ବିଶାରଦ ମାନଙ୍କ ଦକ୍ଷତା, ଅଭିଜ୍ଞତା ଓ ନିଷ୍ଠାର ଅଭାବ ଥାଏ । ସେଥିପାଇଁ ଏବେ ବହୁ ସରକାରୀ ପ୍ରତିଷ୍ଠାନକୁ ଘରୋଇ ତଥା ବ୍ୟକ୍ତିଗତ ପରିଚାଳନାଧୀନ କରାଯାଉଛି । ତେଣୁ ଆୟୋଡିନ୍ ଯୁକ୍ତ ଲୁଣ ଦେଶୀ ଓ ବିଦେଶୀ ମାଲିକାନାରେ ଥିବା କାରଖାନା ଗୁଡ଼ିକରେ ପ୍ରସ୍ତୁତ ହେବ ।

ଏହା ଜାଣି ମଧ ନରସିଂହ ରାଓ ସରକାର (ଭାରତ ସରକାର) ୧୯୯୩ ମସିହାରେ ଏକ ଆଦେଶ ଜାରିକରି ଲୋକଙ୍କ ପାଇଁ କେବଳ ଆୟୋଡିନ୍ ମିଶା ଲୁଣ ଖାଇବା ବାଧ୍ୟତାମୂଳକ କରିଦେଲେ । ଅର୍ଥର ପ୍ରଲୋଭନ ଦେଖାଇ ଦେଶର ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ଏହି ଆଦେଶ ସପକ୍ଷରେ ଜନମତ ସୃଷ୍ଟି କରିବା ପାଇଁ ନିୟୋଜିତ କଲେ । କଟାଘା'ରେ ଚୂନ ଦେଲା ଭଳି ଏହି ଆଦେଶକୁ ଆହୁରି କଡ଼ାକଡ଼ି କରି ଗତ ନଭେମ୍ବର ୨୮ ତାରିଖରେ ଭାରତ ଓ ସରକାର ଆଦେଶ ଜାରି କରିଛନ୍ତି ଯେ ଏଣିକି ସାଦାଲୁଣ ଉତ୍ପାଦନ କରିବା, ବିକ୍ରୀ କରିବା ବା ଗଚ୍ଛିତ ରଖିବା ଦଣ୍ଡନୀୟ ଅପରାଧ ହେବ । ଏଥିପାଇଁ ଛ'ମାସ ଯାଏ 'ସଶ୍ରମ କାରାଦଣ୍ଡ ବା ଏକ ହଜାର ଟଙ୍କା ଜୋରିମାନା ଦଣ୍ଡ ଦିଆଯାଇ ପାରିବ । ଏହି ଆଦେଶ ୨୮ ତାରିଖ ମଇ ୧୯୯୮ରୁ କାର୍ଯ୍ୟକାରୀ ହେବ । କିନ୍ତୁ ସାମାଜିକ, ଅର୍ଥନୈତିକ, ସ୍ୱାସ୍ଥ୍ୟଗତ ଆଦି ଯେକୌଣସି ଦୃଷ୍ଟିରୁ ବିଚାର କଲେ ଆୟୋଡ଼ିନ୍ ଲୁଣ ଖାଇବା ପାଇଁ ସମସ୍ତଙ୍କୁ ବାଧ୍ୟ କରିବାର କାରଣ ନାହିଁ ।

(୧) ଏହା ସତ ଯେ ଦେହରେ ଆୟୋଡ଼ିନ୍ ଅଂଶ କମ୍ ଥିଲେ 'ଗଳଗଣ୍ଡ' ରୋଗ ହୁଏ । ଭାରତରେ ଏକ

ନିର୍ଦ୍ଦିଷ୍ଟ ଅଞ୍ଚଳର ପ୍ରାୟ ୩୦ ଲକ୍ଷ ଲୋକଙ୍କର ଆୟୋଡିନ୍ ଅଭାବ ଅଛି । ଏଥିପାଇଁ ଅଧିକା ୯୭ କୋଟି ୭୦ ଲକ୍ଷ ଲୋକଙ୍କୁ ଅର୍ଥାତ୍ ଭାରତର ସବୁଲୋକଙ୍କୁ ଆୟୋଡ଼ିନ୍ ମିଶା ଲୁଣ ଖାଇବାକୁ କାହିଁକି ବାଧ କରାଯିବ । ବରଂ ଡାକ୍ତରୀ ପରୀକ୍ଷାରୁ ଯେଉଁମାନଙ୍କର ଆୟୋଡ଼ିନ୍ ଅଭାବ ଅଛି ବୋଲି ଜଣାଯିବ ସେମାନଙ୍କୁ ଏହି ଲୁଣ ଖାଇବାକୁ ଦିଆଯିବା ଉଚିତ । ଇଉରୋପର ବିଭିନ୍ନ ଦେଶରେ ଗଳଗଣ୍ଡ ରୋଗୀ ଥିଲେ ମଧ ଆୟୋଡ଼ିନ୍ ମିଶା ଲୁଣ ଖାଇବା ବାଧତାମୂଳକ ହୋଇ ନାହିଁ ।

(୨) ଓଡ଼ିଶାରେ ଜଣେ ସାଧାରଣ ଲୋକପାଇଁ ଦିନକୁ ୧୦୦ରୁ ୧୫୦ ମାଇକ୍ରୋ ଗ୍ରାମ ଆୟୋଡ଼ିନ୍ ଦରକାର । (ଏକ ମାଇକ୍ରୋଗ୍ରାମ ଗୋଟିଏ ଗ୍ରାମ୍‌ର ୧୦ଲକ୍ଷ ଭାଗରୁ ଭାଗେ) କିନ୍ତୁ ଏହି ରାଜ୍ୟରେ ଜଣେ ବ୍ୟକ୍ତି ସାଦାଲୁଣ ପନିପରିବା, ଚାଉଳ, ଗହମ, ମାଛ, କଙ୍କଡ଼ା ଆଦି ଖାଇ ଦିନକୁ ୨୯୩ ମାଇକ୍ରୋଗ୍ରାମ ଆୟୋଡ଼ିନ୍ ପାଇଯାଏ, ଭାରତରେ ଏହାର ପରିମାଣ ହାରାହାରି ୨୫୦ରୁ ୨୯ ମାଇକ୍ରୋଗ୍ରାମ । ତେଣୁ ସମସ୍ତେ ଆୟୋଡ଼ିନ୍ ମିଶା ଲୁଣ କାହିଁକି ଖାଇବେ ।

(୩) ଜଣେ ଲୋକର ଯେତିକି ଦରକାର ତାହାଠାରୁ ସେ ଅଧିକ ଆୟୋଡ଼ିନ୍ ଖାଇଲେ, ତାହାର ରୋଗହୁଏ, ଗଳଗଣ୍ଡ ରୋଗ ବି ହୋଇପାରେ । ଭାରତର ଯେଉଁ ଅଞ୍ଚଳରେ ଆୟୋଡିନ୍ କମ୍ ମିଳେ ସେଠାରେ ପ୍ରତି ୧୦୦୦ ଲୋକଙ୍କ ମଧରୁ କେବଳ ଦୁଇଜଣଙ୍କର ଆୟୋଡ଼ିନ୍ କମ୍ ଥାଏ । ନିଜ ଖାଦ୍ୟରୁ ଯେଉଁ ୯୯୮ ଜଣ ଆବଶ୍ୟକ ଆୟୋଡ଼ିନ୍ ପା'ନ୍ତି, ସେମାନଙ୍କୁ ଲୁଣରେ ଆୟୋଡ଼ିନ୍ ମିଶାଇ ଖାଇବାକୁ ଦେଲେ ଗଳଗଣ୍ଡ ସମେତ ବିଭିନ୍ନ ରୋଗ ଭୋଗିବାକୁ ପଡ଼ିବ । ତା'ଛଡ଼ା ଆୟୋଡ଼ିନ୍ ଅଭାବ ବ୍ୟତୀତ ଅନ୍ୟ କାରଣରୁ ମଧ ଗଳଗଣ୍ଡ ରୋଗ ହୁଏ ।

(୪) ବିଭିନ୍ନ ରୋଗର କାରଣ ଓ ପ୍ରତିଷେଧ ବ୍ୟବସ୍ଥା ରହିଛି । ସବୁ ରୋଗର ନିରାକରଣ ପାଇଁ ଖାଦ୍ୟରେ ପ୍ରତିଷେଧକ ମିଶାଯାଏ ନାହିଁ । ସାର ଯୁକ୍ତ ଖାଦ୍ୟର ଅଭାବରୁ କୁଷ୍ଠ ରୋଗ ଭଳି କେତେକ ରୋଗ ହୁଏ । ସମସ୍ତଙ୍କ ପାଇଁ ଉଚ୍ଚମାନର ଖାଦ୍ୟର ବ୍ୟବସ୍ଥା ହେଉନାହିଁ ।

ପ୍ରକୃତ କଥା ହେଲା ଧନୀ ପୁଞ୍ଜିପତିମାନେ ପ୍ରଚୁର ଅର୍ଥ ଲାଭ କରିବା ଉଦ୍ଦେଶ୍ୟରେ ନାନା ଉପାୟରେ ରାଜନୀତିଜ୍ଞ ଓ ପ୍ରଶାସନ ଅଧିକାରୀମାନଙ୍କୁ ପ୍ରଲୋଭିତ ଓ ପ୍ରଭାବିତ କରି ନିଜର ଅର୍ଥକରୀ ଯୋଜନାମାନ କାର୍ଯ୍ୟକାରୀ କରନ୍ତି । ଦେଶରେ ବହୁ ପରିମାଣରେ ଲୁଣ ଉତ୍ପାଦନ ଓ ବିକ୍ରି ହୁଏ ବୋଲି, ସେମାନେ ଏହା ଉପରେ ନିଜର ଏକଚାଟିଆ ଅଧିକାର ପ୍ରତିଷ୍ଠିତ କରି ଯଥେଷ୍ଟ ଲାଭବାନ ହେବା ପାଇଁ ସବୁ ପ୍ରକାର ଉଦ୍ୟମ କରନ୍ତି । ନଚେତ୍ ଏକଦା ଲୌହ ଜଗତର ସମ୍ରାଟ ଟାଟା କଂପାନୀ କାହିଁକି ଲୁଣ ତିଆରି କରି ବିକନ୍ତା । ଗଳଗଣ୍ଡ ରୋଗର ନିରାକରଣ ପାଇଁ ସରକାର ଏତେ ବ୍ୟସ୍ତ ଅଥଚ ସବୁ ରୋଗର ମୂଳ ମଦ, ଅଫିମ, ଗଞ୍ଜା, ସିଗାରେଟ୍ ଆଦି ନିଶା ଦ୍ରବ୍ୟର ବ୍ୟବହାର ରହିତ କରୁ ନାହାନ୍ତି କାହିଁକି !

ଏବେ ସାଦା ଲୁଣ କେଜିର ଦାମ ଦୁଇ ଟଙ୍କା ଓ ଆୟୋଡିନ୍ ଲୁଣ ଦାମ କେଜି ପିଛା ଛ'ଟଙ୍କା । ସାଦା ଲୁଣର ଉତ୍ପାଦନ ବିକ୍ରୀ ବନ୍ଦ ହୋଇଗଲେ ଲୁଣ କାରଖାନାର ମାଲିକମାନେ ଲୁଣ ଦର ଆହୁରି ବଢ଼ାଇଦେବେ । ଗରିବ ଲୋକ ଏହାକୁ କିଣି ଖାଇବା ପାଇଁ ସକ୍ଷମ ହେବେ ନାହିଁ । ସାଧାରଣ ଲୋକଙ୍କ ବିରୁଦ୍ଧରେ ଦେଶୀ ଓ ବିଦେଶୀ ବେପାରୀମାନଙ୍କର ଏକ ଚକ୍ରାନ୍ତ, ସରକାର ସେମାନଙ୍କ ହାତରେ ଏକ ଖେଳନା ।

ଗତ ୫ ତାରିଖ ଜୁନ୍‌ରୁ ନୂତନ ଲବଣ ଆଇନ୍ ଭାଙ୍ଗିବା ପାଇଁ ଲବଣ ସତ୍ୟାଗ୍ରହ ସାରା ଦେଶରେ ଚାଲିଛି । ଏହି କଳା ଆଇନ୍‌କୁ ଉଠାଇ ଦେବା ପାଇଁ ସରକାରଙ୍କୁ ବାଧ କରିବା ଏହି ଲବଣ ସତ୍ୟାଗ୍ରହର ଉଦ୍ଦେଶ୍ୟ । କୌଣସି ଠାରେ ସରକାର ସାଦା ଲୁଣ ଉତ୍ପାଦନ ଓ ବିକ୍ରୟରେ ବାଧା ଦେଲେ ତାହାର ପ୍ରତିରୋଧ କରାଯାଉଛି । ଏହି ଶୋଷଣ ବିରୋଧି ସଂଗ୍ରାମରେ ଅଧିକରୁ ଅଧିକ ଲୋକ ସଂପୃକ୍ତ ହେଉଛନ୍ତି ।

ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କରିଥିଲେ, ତାଙ୍କର ଅନୁଗାମୀମାନେ ଏହି ସତ୍ୟାଗ୍ରହକୁ ବର୍ତ୍ତମାନ ଚଳାଉଛନ୍ତି । ବସ୍ତୁତଃ ଏହା ଏକ ଶୋଷଣ ବିରୋଧି ଅଭିଯାନ, ଏଥିରେ ବହୁ ବ୍ୟକ୍ତି ଯୋଗଦେଲେ ବର୍ତ୍ତମାନର ବ୍ୟବସ୍ଥାରେ ମଧ୍ୟ ପରିବର୍ତ୍ତନ ହେବ । ଏକ ସୁସ୍ଥ ସମାଜ ପ୍ରତିଷ୍ଠାର ବାଟ ଖୋଲିଯିବ । ଉଲ୍ଲେଖଯୋଗ୍ୟ ଯେ ସାଦାଲୁଣ ବନ୍ଦ ବିରୁଦ୍ଧରେ ସଂପ୍ରତି ଆନ୍ଧ୍ର ହାଇକୋର୍ଟ ନିଜର ମତ ପ୍ରଦାନ କରିଛନ୍ତି ।

ଦେଉଳ ସାହି, କଟକ - ୮

(୧-୭-୯୮ "ସମାଜରୁ" ଗୃହୀତ)

## ଦେଶର ଋଣ ୯ ଲକ୍ଷ କୋଟି ଟଙ୍କା: ଅର୍ଥମନ୍ତ୍ରୀ

ନୂଆଦିଲ୍ଲୀ, କେନ୍ଦ୍ର ସରକାରଙ୍କ ଆଭ୍ୟାନ୍ତରୀଣ ଓ ବାହ୍ୟ ଋଣ ୮ ଲକ୍ଷ ୭୯ ହଜାର ୭୨୭ କୋଟି ଟଙ୍କାରେ ପହଞ୍ଚିଛି ବୋଲି ଅର୍ଥମନ୍ତ୍ରୀ ଯଶୱନ୍ତ ସିହ୍ନା ରାଜ୍ୟସଭାରେ ପ୍ରକାଶ କରିଛନ୍ତି ।

ଆଜି ଗୃହରେ ସରକାରଙ୍କ ଋଣ ସମ୍ପର୍କିତ ଏକ ପ୍ରଶ୍ନର ଉତ୍ତର ଦେଇ ଅର୍ଥମନ୍ତ୍ରୀ କହିଥିଲେ ଯେ ଗତ ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ଦେଶର ବୈଦେଶିକ ଋଣ ଏକ ଲକ୍ଷ ୬୧ ହଜାର ୪୨୮ କୋଟି ଟଙ୍କାରେ ପହଞ୍ଚିଥିବାବେଳେ ଆଭ୍ୟନ୍ତରୀଣ ଋଣ ପରିମାଣ ୭ ଲକ୍ଷ ୧୮ ହଜାର ୨୯୯ କୋଟି ଟଙ୍କାରେ ପହଞ୍ଚିଛି ଓ ୧୯୯୭-୯୮ରେ ବୈଦେଶିକ ଋଣ ବାବଦରେ ୪ ହଜାର ୧୫୦ କୋଟି ଟଙ୍କାର ସୁଧ ପୈଠ କରାଯାଇଥିଲା । ସେହିପରି ଆଭ୍ୟନ୍ତରୀଣ ଋଣ ବାବଦରେ ୬୧ ହଜାର ୫୫୦ କୋଟି ଟଙ୍କାର ସୁଧ ପ୍ରଦାନ କରାଯାଇଥିଲା । ●

(ସମାଜ ୭-୧୨-୯୮)

## ଓଡ଼ିଶା ସରକାରଙ୍କ ରାଜକୋଷୀୟ ନିଅଣ୍ଟ ୧୮ ଶହ କୋଟି ଟଙ୍କାରୁ ଊର୍ଦ୍ଧ୍ୱ

ଓଡ଼ିଶାରେ ସରକାରଙ୍କର ବର୍ଷକୁ ବର୍ଷ ରାଜସ୍ୱ ନିଅଣ୍ଟ ବଢ଼ି ଚାଲିଥିବା ଯୋଗୁଁ ଏହାକୁ ଭରଣା କରିବା ପାଇଁ ଅଧିକରୁ ଅଧିକ ପରିମାଣ ଋଣ ଅଣାଯାଇ ରାଜକୋଷୀୟ ନିଅଣ୍ଟ ପରିମାଣକୁ ବଢ଼ାଯାଉଛି । ଏବେ ଓଡ଼ିଶା ସରକାରଙ୍କ ବାର୍ଷିକ ରାଜକୋଷୀୟ ନିଅଣ୍ଟ ପରିମାଣ ୧୮୦୦ କୋଟି ଟଙ୍କାକୁ ଟପିଗଲାଣି ।

୧୯୮୦-୮୧ ଆର୍ଥିକ ବର୍ଷରେ ସରକାରଙ୍କ ରାଜସ୍ୱ ନିଅଣ୍ଟ ନ ଥିଲା । ସେହି ବର୍ଷ ସରକାରଙ୍କର ପ୍ରାୟ ୭୪କୋଟି ୫୦ ଲକ୍ଷ ଟଙ୍କା ରାଜସ୍ୱ ବଳକାଥିଲା । ୧୯୯୦-୯୧ ବର୍ଷ ବେଳକୁ ବାର୍ଷିକ ରାଜସ୍ୱ ନିଅଣ୍ଟ ୧୯କୋଟି ୬୦ଲକ୍ଷ ଟଙ୍କା ଥିବାବେଳେ, ୧୯୯୪-୯୫ ବେଳକୁ ଏହା ବାର୍ଷିକ ପ୍ରାୟ ୪୬୦ କୋଟି ଟଙ୍କାରେ ପହଞ୍ଚିଥିଲା । ୧୯୯୭-୯୮ ଆର୍ଥିକ ବର୍ଷ ଶେଷ ବେଳକୁ ରାଜ୍ୟ ସରକାରଙ୍କ ବାର୍ଷିକ ରାଜସ୍ୱ ନିଅଣ୍ଟ ପରିମାଣ ୯୪୫ କୋଟି ୯୧ଲକ୍ଷ ଟଙ୍କାରେ ପହଞ୍ଚିଥିଲା ।

ରାଜ୍ୟ ସରକାରଙ୍କ ଯୋଜନା ପ୍ରଣୟନ ସହ ସମ୍ପୃକ୍ତ ଅର୍ଥନୀତିଜ୍ଞମାନଙ୍କ ମତ ହେଉଛି ଯେ ରାଜସ୍ୱ ନିଅଣ୍ଟ ବୃଦ୍ଧି ପାଇବାରୁ ଏହା ଭରାଣା କରିବା ପାଇଁ ଅଧିକରୁ ଅଧିକ ଋଣ ଅଣାଯାଇ ଅଣ ଉତ୍‌ଥାନ କ୍ଷେତ୍ରରେ ବିନିଯୋଗ କରାଯାଉଛି । ଏହି ଋଣ ଉପରେ ସୁଧର ହାର ବଢ଼ିଚାଲୁଥିବାରୁ ରାଜସ୍ୱ ଖାତାରୁ ନିଅଣ୍ଟିଆ ପରିମାଣ ବୃଦ୍ଧି ସହ ରାଜକୋଷୀୟ ନିଅଣ୍ଟ ବଢ଼ି ବଢ଼ି ଚାଲୁଛି ।

ଏବେ ଓଡ଼ିଶା ସରକାରଙ୍କ ଋଣଭାର ହୁ ହୁ ହୋଇ ବଢ଼ିଚାଲିଛି । ୧୯୮୫-୮୬ ଆର୍ଥିକ ବର୍ଷରେ ରାଜ୍ୟ

The great Indian humanist saint Gandhi have made the deepest impression on my life and philosophy. Both achieve inner fulfilment through the order of Love-principle. - **Albert Schweitzer**

ସରକାରଙ୍କ ମୋଟ୍ ଋଣ ପରମାଣ ୨୨୭୦ କୋଟି ଟଙ୍କା ଥିବାବେଳେ ୧୯୯୦-୯୧ ବେଳକୁ ଏହା ୪୫୩୮ କୋଟି ଟଙ୍କାରେ ପହଞ୍ଚିଥିଲା । ୧୯୯୪-୯୫ ବର୍ଷ ବେଳକୁ ରାଜ୍ୟ ସରକାରଙ୍କ ଋଣ ପରିମାଣ ୭୯୫୮ କୋଟି ଟଙ୍କା ଥିବାବେଳେ, ଚଳିତ ଆର୍ଥିକବର୍ଷ ଶେଷବେଳକୁ ଏହା ୧୪, ୭୮୪ କୋଟି ୪୬ଲକ୍ଷ ଟଙ୍କାରେ ପହଞ୍ଚିବ ବୋଲି ଅନୁମାନ କରାଯାଉଛି । ଏହି ହାରରେ ଋଣ ପରିମାଣ ବୃଦ୍ଧି ପାଇଲେ ୨୦୦୫ ମସିହା ମାର୍ଚ୍ଚ ଶେଷବେଳକୁ ଓଡ଼ିଶା ସରକାରଙ୍କ ଋଣର ପରିମାଣ ୩୦,୬୨୦ କୋଟି ୬୧ ଲକ୍ଷ ଟଙ୍କାରେ ପହଞ୍ଚିଯିବ ବୋଲି ଆଶଂକା କରାଯାଉଛି । ଏଠାରେ ଉଲ୍ଲେଖନୀୟ ଯେ ଏବେ ଓଡ଼ିଶାର ମୁଣ୍ଡପିଛା ହାରାହାରି ଋଣଭାର ୪୦୮୪ ଟଙ୍କାରେ ପହଞ୍ଚିଲାଣି ।

ଗତ ଆର୍ଥିକ ବର୍ଷରେ ଓଡ଼ିଶା ସରକାର କେନ୍ଦ୍ର ସରକାରଙ୍କଠାରୁ ୧୧୫୩ କୋଟି ୬୮ ଲକ୍ଷ ଟଙ୍କା ଋଣ ଆଣିଥିବା ବେଳେ, ଋଣ ଓ ସୁଧ ବାବଦକୁ ୮୨୮ କୋଟି ୭୮ଲକ୍ଷ ଟଙ୍କା ପରିଶୋଧ କରିଛନ୍ତି । ଅର୍ଥାତ୍ ବର୍ଷକ ମଧ୍ୟରେ ରାଜ୍ୟ ସରକାରଙ୍କ କେନ୍ଦ୍ରୀୟ ଋଣର ପରିମାଣ ୧୧୫୩ କୋଟି ୬୮ ଲକ୍ଷ ଟଙ୍କା ଦର୍ଶାଯାଇଥିଲେ ମଧ ବାସ୍ତବରେ ରାଜ୍ୟ ସରକାର ମାତ୍ର ୩୨୪ କୋଟି ୯୦ ଲକ୍ଷ ଟଙ୍କା ପାଇଛନ୍ତି । ରାଜ୍ୟର ଅଣଯୋଜନା ରାଜସ୍ୱ ଖର୍ଚ୍ଚ ମଧ୍ୟରୁ ୫୦ଭାଗ କର୍ମଚାରୀମାନଙ୍କ ବେତନ ଓ ପେନ୍‌ସନ ବାବଦରେ ଚାଲି ଯାଉଥିବାବେଳେ, ସୁଧଦେୟ ବାବଦରେ ୨୬ ଭାଗ ବ୍ୟୟ ହେଉଛି । ଏ ପରିସ୍ଥିତିରେ ରାଜ୍ୟର ଯୋଜନା ସମ୍ବଳ ଯାହା ଆସୁଛି ସେଥିରୁ ପ୍ରାୟ ୯୦ଭାଗ ହେଉଛି ଋଣ ଅର୍ଥ । ଏହି ଭିତ୍ତିଭୂମିରେ ରାଜ୍ୟର ଆୟ ବିଶେଷଭାବେ ବୃଦ୍ଧି ପାଇପାରୁନାହିଁ । ଫଳରେ ଜାତୀୟ ସ୍ତରର ମୁଣ୍ଡପିଛା ଆୟ ଓ ରାଜ୍ୟର ମୁଣ୍ଡପିଛା ଆୟ ମଧ୍ୟରେ ବ୍ୟବଧାନ ୧୯୮୦-୮୧ ମସିହାରେ ମାତ୍ର ୩୧୬ ଟଙ୍କା ଥିବାବେଳେ ଏବେ ତାହା ୧୨୦୦ ଟଙ୍କାରୁ ଅଧିକ ହୋଇଗଲାଣି । ●●●

(ତା ୩-୧୨-୯୮ 'ସମାଜ'ରୁ ଗୃହୀତ)

## ଆୟୋଡ଼ିନ୍ ଲୁଣରୁ ହଡ଼ା ବଳଦର ଦୁଃଖ ଯାଏ

ଲୁଣ ଓ ହଡ଼ାବଳଦର ଦୁଃଖ ବଖାଣିବା ପୂର୍ବରୁ 'ଗଧିଆ ଓ ମେଣ୍ଢାଛୁଆ'ର କଥାଟି କୁହାଯାଇପାରେ । କାହିଁକି ନା ଉପସ୍ଥିତ ବିଷୟଟି ସହିତ ମେଣ୍ଢାଛୁଆ କାହାଣୀର ବେଶ୍ କିଛି ସାମଞ୍ଜସ୍ୟ ରହିଛି ।

ଜଙ୍ଗଲରେ ଖୁସିମନରେ ଖେଳୁଥିଲା ନିରୀହ ମେଣ୍ଢଛୁଆଟିଏ । ଝରଣାକୂଳରେ ଠିଆ ହୋଇଥିବା ଗଧିଆର ଦୃଷ୍ଟି ମେଣ୍ଢାଛୁଆର କୋମଳ ଦେହ ଉପରେ ପଡ଼େ ଓ ତା' ପାଟିରୁ ଲାଳ ଗଡ଼େ । ସେଇଠୁ ମନେ ମନେ ସୁନ୍ଦର ଯୋଜନାଟିଏ ତିଆରି କରେ ଗଧିଆ । ସମ୍ରାଟ ଢଙ୍ଗରେ ତାଗିଦ କଲାଭଳି ଡାକେ ମେଣ୍ଢାଛୁଆକୁ ଗଧିଆ । ନିରୀହ ପ୍ରଜା.... ସେ ମେଣ୍ଢାଛୁଆଟି ନସରପସର ହେଇ ଆସି ଗଧିଆ ସାମ୍ନାରେ ଖାଡ଼ାହୁଏ । ବଦ୍‌ମାସ୍ ମୁଁ ଝରଣାପାଣି ପିଇବି ବୋଲି ଡକେଇଚି; ତୁ ଉପରମୁଣ୍ଡରେ ପାଣି ଗୋଳିଆ କରୁଛୁ ? ଆଖି ଦେଖାଇ କହିଲା ଗଧିଆ ଓ ଉତ୍ତରରେ ମେଣ୍ଢାଛୁଆ ପାଣିରେ ଆଦୌ ପଶିନାହିଁ ବୋଲି ନେହୁରା ହୋଇ କହିଲା । ଗଧିଆ କିନ୍ତୁ ନଛୋଡ଼ବନ୍ଧା । ଦାରୋଗାବାବୁ ବାଡ଼ି ଠୁକେଇବା ଭଳି ଢଙ୍ଗରେ ଗଧିଆ ଅଧିକ ଉତ୍ତେଜିତ ହୋଇ କହିଲା... ''କିରେ ତୋର ଏତେ ବହପ... । ମୋ ମୁହଁରେ ଜବାବ୍ ଦେଉଛୁ ? ହେଲା ଏବେ ତୁ ପାଣି ଗୋଳି କରିନାହୁଁ; କିନ୍ତୁ ତୋ ବାପା ଅଜା ଯେ ଉପରମୁଣ୍ଡରେ ପାଣି ଗୋଳି କରି ନଥିବେ ତାର ଗ୍ୟାରେଣ୍ଟି କିଏ ଦେବ ? ମୁଁ ତୋତେ ନିଶ୍ଚୟ ଖାଇବି ।''

କଥାଟିକୁ ଥାକ ଦେଉଛି ଏଇଠି । କାହିଁକି ନା ମେଣ୍ଢାଛୁଆଟିକୁ ଖାଇବାକୁ ମନସ୍ଥ କରିଥିବା ଗଧିଆକୁ କ'ଣ କେତେବେଳେ ବି ମେଣ୍ଢାମାନେ ସମଝାଇ ପାରିବାକୁ ସକ୍ଷମ ହେବେ ? ଆପାତତଃ ମେଣ୍ଢାଛୁଆମାନଙ୍କୁ ଗଧିଆମାନେ ଅବଶ୍ୟ ଭକ୍ଷଣ କରିବେ ଓ ଏଥିପାଇଁ କିଛି ନା କିଛି ଗୋଟେ ବାହାନା

ଗଧିଆମାନଙ୍କୁ ଖୋଜିବାକୁ ହବ । ଏଣେ ଧୂର୍ତ୍ତ ଗଧିଆଟି ଭଳି ସରକାର ଦିନେ କହିବାର ଶୁଣାଗଲା ଯେ, ଏଣିକି ବଜାରରେ ପଗଡ଼ ବିକ୍ରୀ କରିବା ମନା । କେହି ଯଦି କହିଲେ ଯେ କିମ୍ପାଇ ମହାପ୍ରୁ ? ସରକାରଙ୍କ ଶ୍ରୀମୁଖରୁ ଶୁଣିବାକୁ ମିଳିଲା ଯେ, କତା ଶିଳ୍ପ ବା Coir Industryର ସୁରକ୍ଷା ପାଇଁ ସରକାର ଚିନ୍ତିତ ।

ଏଥକୁ ଆପଣ ଯଦି କହିବେ ଯେ, ମହାଭାଗ । ବଡ଼ ବଡ଼ ଲାଭଦାୟକ ଉଦ୍ୟୋଗ (ତୈଳ, ଇସ୍ପାତ) ଗୁଡ଼ିକୁ ସରକାର ଶାଗମାଛ ମୂଲରେ ବିକ୍ରୀ କରି ଦେଉଥିଲା ବେଳେ କତାଶିଳ୍ପ ପାଇଁ ଏତେ ମୁଣ୍ଡବିନ୍ଧା କାହିଁକି ? ବ୍ରାହ୍ମଣୀପାଳ ଚାର୍ଜକ୍ରୋମକୁ ୫୦ କୋଟି ଟଙ୍କା କ୍ଷତିରେ ବିକ୍ରୀ କରିଥିବା ବେଳେ ଓଡ଼ିଶାର ଭାସ୍କର ସୂତାକଳ, ଓ.ଟି.ଏମ୍. ଓ କୋଣାର୍କ ଟିଭିକୁ ତ ବିକ୍ରୀ କରିବାର ବ୍ୟବସ୍ଥା ହେଲାଣି । ବ୍ୟାଙ୍କ ଓ ବୀମାଶିଳ୍ପର ଘରୋଇକରଣ ପାଇଁ ସରକାର ବାହାଦୂର ଅଣ୍ଟାଭିଡ଼ି ଥିବାବେଳେ କ'ଣ ପେପ୍ସି ଏବଂ କୋକାକୋଲାର ଏକଚାଟିଆ ବଜାରରୁ ପଗଡ଼କୁ ପ୍ରତିଦ୍ୱନ୍ଦିତାକୁ ହଟାଇବା ପାଇଁ ଏଇ ଅଭିନବ ନୀତି ପ୍ରଣିତ ହୋଇଛି କି ? ଗଧିଆ ଭଳି ଏମନ୍ତ ପ୍ରଶ୍ନରେ ସରକାର ଲାଠି ନ ଉଠାଇଲେ ବି ନୀତିରୁ ଓହରିବା ନିଶ୍ଚୟ କଷ୍ଟକର ହେବ । କାହିଁକି ନା' ଗୋଟିଏ ପୁଞ୍ଜିବାଦୀ ରାଷ୍ଟ୍ରର ସରକାର (ସେ ଯେକୌଣସି ଦଳ ହେଉନା କାହିଁକି) ବିଦେଶୀ ଓ ଦେଶୀ ପୁଞ୍ଜିପତିମାନଙ୍କ ସ୍ୱାର୍ଥକୁ ହିଁ ଅଗ୍ରାଧିକାର ଭିତ୍ତିରେ ସର୍ବାଦୌ ରକ୍ଷା କରିଥାଏ । ତେଣୁ ମେଣ୍ଢାଛୁଆଙ୍କ ଭଳି ସାଧାରଣତଃ ଏଠି ହୁଏ ବିଚରା ଜନଗଣର ଦୁର୍ଦ୍ଦଶା ।

ଏଥର ଆୟୋଡ଼ିନ୍ ଲୁଣ ପ୍ରସଙ୍ଗର ଅବତାରଣ କରାଯାଉ । ଏକଦା ବ୍ରିଟିଶ ସରକାର ଥିଲା ଏଠି । ସିଏ ଯେବେ ଆଇନ କଲା ଯେ, ଭାରତୀୟମାନେ ଆଉ ଲୁଣ ମାରିପାରିବେ ନାହିଁ କି ବଜାରରେ ବିକ୍ରୀବଟା କରିପାରିବେ ନାହିଁ; ସେତେବେଳେ ଆମେ ହଲ୍ଲା କଲୁ ଯେ, "ବିଦେଶୀ ଲୁଣ ବେପାରିଙ୍କ ସ୍ୱାର୍ଥର ବିଲାତ ସରକାର ଆମର ଦେଶୀୟ ଅର୍ଥନୀତି ଉପରେ ପଦାଘାତ କରୁଛନ୍ତି ।" ପାଠକେ... ଅବିକଳ ଏବେ ଏଇ ଉଦାରୀକରଣ ନୀତି ଚାଲିବା ଦିନର ଆମ ଭାରତ ସରକାର ମଧ ଏମନ୍ତ ଆଇନ ସବୁ କାର୍ଯ୍ୟକାରୀ କରିବା ଆରମ୍ଭ କରିଦେଇଛନ୍ତି । ସବୁଠୁ ବୀଭତ୍ସ ଓ ନିର୍ମମ ହେଉଛି ଆୟୋଡ଼ିନ ଲୁଣ ନୀତି । ଆଜି ନୁହଁ ଏଇ ନୀତିଟି କାର୍ଯ୍ୟକାରୀ କରିବାର ମସୁଧା ବିଗତ କଂଗ୍ରେସ କରାକର ଅମଳରୁ ଆରମ୍ଭ ହୋଇଛି । ୧୪ ଦଳିଆ ସାମ୍ମୁଖ୍ୟ ସରକାର ଏହି ନୀତିକୁ କାଏମ ରଖିଥିବା ବେଳେ ସଂପ୍ରତି ବି.ଜେ.ପି. ମେଣ୍ଟ ସରକାର ଏହାକୁ କାର୍ଯ୍ୟକାରୀ କରିବା ପାଇଁ ବଦ୍ଧପରିକର ହୋଇଉଠିଛି ।

ସରକାରଙ୍କ ଏହି ବ୍ୟାକୁଳତାର କାରଣ କ'ଣ ବୋଲି ପ୍ରଶ୍ନ କଲେ, ଉତ୍ତର ମିଳୁଛି ଯେ, "ଲୋକଙ୍କୁ ଗଳଗଣ୍ଡ ରୋଗରୁ ରକ୍ଷା କରିବା ପାଇଁ ଦେଶୀ କରକଚା ଲୁଣକୁ ନିଷିଦ୍ଧ କରିବାକୁ ହେଉଛି ।" କିନ୍ତୁ ଏଣେ ଚିକିତ୍ସା ବିଜ୍ଞାନୀମାନେ ମତ ଦିଅନ୍ତି ଯେ, ଆଗର ଶାଗ ଓ ପନିପରିବା ମଧରେ ଯେତିକି ପ୍ରାକୃତିକ ଆୟୋଡ଼ିନ୍ ରହିଛି ସେତିକି ହିଁ ଆମ ପାଇଁ ଯଥେଷ୍ଟ । ଆଉ ଅଧିକ ଆୟୋଡିନ୍‌ର ଆବଶ୍ୟକତା ନାହିଁ । ତେଣୁ ବାଧ୍ୟତାମୂଳକ ଭାବେ ଆୟୋଡିନ ଲୁଣ ପ୍ରଚଳନକୁ ବିରୋଧ କରି ସେଦିନ (୧୯୯୫) ୩୦୦ ଜଣ ଚିକିତ୍ସା ବିଜ୍ଞାନୀ ତତ୍‌କାଳୀନ ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ । ଏଥି ସହ ଏ ଦେଶର ବହୁ ସଚେତନ ବୁଦ୍ଧିଜୀବୀ ମଧ ସେମାନଙ୍କ ଲେଖା ଜରିଆରେ ଏକଥା ପ୍ରତିପାଦିତ କରିବାକୁ ଚାହିଁଥିଲେ ଯେ, "ଭାରତର ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ଏଇ ରୋଗର ପ୍ରାଦୁର୍ଭାବ ଆଦୌ ନାହିଁ ।" କେବଳ ଯାହା ହିମାଳୟ ପାଦଦେଶର କେତେକ ଅଞ୍ଚଳରେ ଏଇ ରୋଗ ପ୍ରାୟତଃ ଦେଖିବାକୁ ମିଳେ । ତେଣୁ ସରକାର ସେହିସବୁ ଅଞ୍ଚଳରେ କେବଳ ସାଧାରଣ କରକଚା ଲୁଣର ବିକ୍ରୀ ଉପରେ ନିଷେଧାଦେଶ ଜାରି କରିବା ଉଚିତ୍ ।

ଏଣେ ଟାଟା, ରିଲାୟାନ୍ସ ଓ ହିନ୍ଦୁସ୍ତାନ ଲିଭର ଭଳି ଭାରତୀୟ ବହୁରାଷ୍ଟ୍ରୀୟ କମ୍ପାନୀ, ଯେଉଁମାନେ କି

ବର୍ତ୍ତମାନ ଭାରତୀୟ ଲୁଣ ବଜାରରେ ପ୍ରବେଶ କରି ବଜାର ସଂକଟକୁ ପାରି ହେବାକୁ ଚାହୁଛନ୍ତି; ସେମାନେ ସେମାନଙ୍କର ଏକଚାଟିଆ ବ୍ୟବସାୟ ପାଇଁ ସରକାରଙ୍କୁ ଏଭଳି ସନ୍ତୁଷ୍ଟ କରିପାରିଛନ୍ତି ଯେ, ପାରମ୍ପରିକ କରକଚା ଲୁଣକୁ ଲୁଣ ବଜାରରୁ ତଡ଼ିଦେବା ପାଇଁ... ଆଜି ଆମ ଦେଶର ସରକାରଙ୍କୁ ଏଭଳି ଏକ ମାରାତ୍ମକ ଲୁଣ ଆଇନ ପ୍ରଣୟନ କରିବାକୁ ପଡୁଛି । ଖାସ୍ କରି ଦେଶୀୟ ବହୁରାଷ୍ଟ୍ରୀୟ ଉଦ୍ୟୋଗୀମାନଙ୍କୁ ଖୁସି କରିବାକୁ ଯାଇ ଆଜି ଏ ଦେଶର ତଥାକଥିତ ଗଣତାନ୍ତ୍ରିକ ସରକାର ଗରିବ ଗୁରୁବାଙ୍କ ଦାନାପାଣି ଉପରେ କେବଳ ଧୂଳି ପକାଉନାହାନ୍ତି; ଅଧିକନ୍ତୁ ଭାରତୀୟ କୃଷିର ମେରୁଦଣ୍ଡ ରୂପେ ଠିଆ ହୋଇଥିବା ଚାଷୀକୁଳର ଏକମାତ୍ର ଭରସା ତା'ର ବଳଦର କୁଣ୍ଡାପାଣିକୁ ମଧ୍ୟ 'ଟାଟା ବିରଳା'ଙ୍କ ଲାଭ ପାଇଁ ଉଜାଡ଼ିଦେବାକୁ ବସିଛନ୍ତି ।

ରୋଗ ପାଇଁ ଯଦି ସରକାର ଏତେ ଚିନ୍ତିତ ତେବେ ସେ ପ୍ରଥମେ ମଦ, ସିଗାରେଟ, ଗଞ୍ଜେଇ ସମତେ ସମସ୍ତ ନିଶାଦ୍ରବ୍ୟକୁ ନିଷିଦ୍ଧ କିରବା ଉଚିତ । କାହିଁକି ନା , ଦେଶର ପ୍ରାୟ ୧୫କୋଟି ଲୋକ ବିଭିନ୍ନ ଭାବେ ଏହି ନିଶାସେବନ ପାଇଁ ହିଁ ରୋଗାକ୍ରାନ୍ତ । ଏହାବାଦ୍ ରପ୍ତାନିଭିତ୍ତିକ କ୍ରୋମ୍ ଓ ଆଲୁମିନା (ଘରୋଇ) କାରଖାନାକୁ ମଧ୍ୟ ବନ୍ଦ କରିଦେବା ଉଚିତ । କାହିଁକି ନା ଏହିସବୁ ରପ୍ତାନି ଭିତ୍ତିକ ଉତ୍ପାଦନ କେବଳ ୟୁରୋପୀୟ ରାଷ୍ଟ୍ରକୁ ରପ୍ତାନି ହୋଇଥାଏ । ଆମ ଦେଶ ପାଇଁ ଏହାର କୌଣସି ଉପଯୋଗିତା ନଥିବା ସ୍ଥଳେ; ଏହି ସବୁ କାରଖାନାରୁ ଯେଉଁ ବିଷାକ୍ତ ବର୍ଜ୍ୟବସ୍ତୁ (Waste Product) ବାହାରେ ତାହା ସମୁଦାୟ ପରିମଣ୍ଡଳକୁ ବିଷାକ୍ତ କରିଦିଏ । କାହିଁକି ନା ଏକ ଟନ୍ ଆଲୁମିନା ବିଦେଶକୁ ରପ୍ତାନି କରି ସାରିବା ପରେ ଶିଳ୍ପୋଦ୍ୟୋଗୀ ତା'ର ମୁନାଫା ପାଇଁ ଏ ଦେଶର ମାଟିରେ ପ୍ରାୟ ସାତଟନ୍ ମଇଳା ଅଜାଡ଼ିଥାଏ । ଫଳରେ ବିଭିନ୍ନ ଦୁରାରୋଗ୍ୟ ଅଚିହ୍ନା ବ୍ୟାଧିରେ ଏ ଦେଶର ଲକ୍ଷ ଲକ୍ଷ ନାଗରିକ ପୀଡ଼ିତ ହୋଇଥାନ୍ତି । ତେଣୁ ସରକାର ବିଷାକ୍ତ ବର୍ଜ୍ୟବସ୍ତୁ ବାହାରୁଥିବା ସମସ୍ତ ରପ୍ତାନି ଭିତ୍ତିକ କାରଖାନାକୁ ବନ୍ଦ କରିଦେବା ଉଚିତ ।

କିନ୍ତୁ ଯେହେତୁ ଅସଲରେ 'ଗଳଗଣ୍ଡ' ରୋଗକୁ ନିୟନ୍ତ୍ରଣ ପାଇଁ ହିଁ ସରକାରର ଆଦୌ କାଣିଚାଏ ବି ଇଚ୍ଛା ନାହିଁ । କେବଳ ଆୟୋଡ଼ିନ୍ ଲୁଣ ବ୍ୟବସାୟୀମାନଙ୍କୁ ଏକଚାଟିଆ ବଜାର ଦେଇ ପର୍ଯ୍ୟାପ୍ତ (maximum) ଲାଭ ଉଠାଇବାର ଅପୂର୍ବ ସୁଯୋଗ ସୃଷ୍ଟି ଲକ୍ଷ୍ୟରେ ଏହି ନିୟମ କାର୍ଯ୍ୟକାରୀ ହେଉଛି; ତେଣୁ ଏକ ଜନକଲ୍ୟାଣକାରୀ ରାଷ୍ଟ୍ରର ସରକାର ଭାବେ ଘଡ଼ିଏ ଜିଦ୍ ନେଇ ନୁହେଁ, ୯୭ କୋଟି ଭାରତୀୟଙ୍କ ନିମ୍ନଲିଖିତ ସମସ୍ୟା ପ୍ରତି ସହାନୁଭୂତିର ସହ ଦୃଷ୍ଟିଦେବାକୁ ନିବେଦନ କରୁଛି ।

ଏକ : ଏ ଦେଶର ୧୬ ଭାଗ ଲୋକ ଦିନକୁ ୩ଟଙ୍କା ମାତ୍ର ମଜୁରି ପାଉଥିବା ସ୍ଥଳେ ଆଉ ୧୮ ଭାଗ ଲୋକ ଆୟ କରନ୍ତି ମାତ୍ର ଦିନକୁ ୫ ଟଙ୍କାର ମଜୁରି । ଫଳରେ ଏହି ୩୪ ଭାଗ ଲୋକ ଓଳିଏ ବି ଭାତ ଖାଇବାକୁ ପାଆନ୍ତି ନାହିଁ । ମାଣ୍ଡିଆ ଜାଉ ବ ଜାଉଳିଆ ପାଣି... ଓ ଶାଗସିଝା ଏମାନଙ୍କର ଖାଦ୍ୟ । 'ଲୁଣ' ଟିପେ ହେଉଛି ଏମାନଙ୍କ ତରକାରୀ । ପୁଣି ଅଖାଦ୍ୟ ଖାଇ... ବଣ ଜଙ୍ଗଲର ଦୂଷିତ ପରିବେଶରେ ଗଳଗଣ୍ଡଠାରୁ ଅଧିକ ମାରାତ୍ମକ ରୋଗରେ ଏମାନେ ମରନ୍ତି । ଏମାନଙ୍କ ପାଇଁ ଗଳଗଣ୍ଡ ଏକ ରୋଗ ମଧ୍ୟ ନୁହେଁ । ତେଣୁ ରୋଗ ଆଳରେ ମାତ୍ର ୫/୬ଟି ଭାରତୀୟ ପରିବାରର ସୁଖସମୃଦ୍ଧି ପାଇଁ ୩୩କୋଟି ଗରିବ ଭାରତୀୟଙ୍କୁ ସାମାନ୍ୟ ଟିକିଏ ଲୁଣରୁ ବଞ୍ଚିତ କରିବାଟା କେତେଦୂର ଯୁକ୍ତିସଂଗତ ? କାହିଁକି ନା ଆଜି ପ୍ୟାକେଟ ଲୁଣର ଦାମ ୬ଟଙ୍କା ରହିଛି । କିନ୍ତୁ କରକଚା ଲୁଣ ନିଷିଦ୍ଧ ହେବା ପରେ ଏହାର ଦାମ ୧୨ ଟଙ୍କାରୁ ମଧ୍ୟ ଅଧିକ ହେବ । ଫଳରେ ଏଇ ପେଜ-ଶାଗ-ଜାଉ ଖିଆ ଗରିବମାନେ କେବେ ବି କ'ଣ ପ୍ୟାକେଟ ଲୁଣ କିଣିପାରିବେ ? ସୁବର୍ଣ୍ଣ ସ୍ୱାଧୀନତାର ଭାରତରେ ଏମାନଙ୍କୁ କ'ଣ ଅଲଣା ଖାଇବାକୁ ବାଧ କରିବାଟାକୁ ଗଣତନ୍ତ୍ର କୁହାଯିବ ?

ଦୁଇ: ଭାରତର ୭୦ ଭାଗ ଲୋକ ଚାଷ ଉପରେ ନିର୍ଭର କରନ୍ତି । ମାତ୍ର ଅଳ୍ପ କେତେଜଣ ବୃହତ୍ ଚାଷୀଙ୍କ ହାତରେ ଏ ଦେଶର ୬୮ ଭାଗ ଚାଷଜମି ଥିବା ସ୍ଥଳେ ମାତ୍ର ୩୨ ଭାଗ ଚାଷଜମି ପ୍ରାୟ ସମୁଦାୟ ୯୭ କୋଟି ଭାରତୀୟଙ୍କର । ସେଥିରୁ ୪୦ଭାଗ ହେଉଛନ୍ତି ଜମିହୀନ ଓ ଦିନ ମଜୁରିଆ । ବାକି ଯେଉଁମାନେ ରହିଲେ ସେମାନେ ଭାଗଷାଷୀ, ଛୋଟ ଚାଷୀ ବା ନାମମାତ୍ର ଚାଷୀ ସ୍ତରର । ବସ୍ତୁତଃ ଏହି ଚାଷୀମାନେ 'ହଳବଳଦ'ରେ ହିଁ ଚାଷ କରନ୍ତି । ଗାଈ ବଳଦଙ୍କୁ ଭାରତୀୟ ଚାଷୀ ଗୋମାତା କହେ ଓ ପୂଜା କରେ । ଫଳରେ ବଳଦଙ୍କୁ କୁଣ୍ଡାପାଣି ବା ପେଜପାଣି ଦେବା ବେଳେ ସେଥିରେ ଆଞ୍ଜୁଳାଏ ଲୁଣ ମିଶାଇଥାଏ । ଚଷାପୁଅ ବଳଦଙ୍କର ଅଭ୍ୟାସ ଏମିତି ଯେ, ବିନା ଲୁଣରେ ସେ କୁଣ୍ଡାପାଣି ଛୁଇଁବ ନାହିଁ । ଏଥକୁ ଆୟୋଡ଼ିନ ଲୁଣ ଯାହା ଭାଗଚାଷୀ, ଛୋଟଚାଷୀ ଓ ନାମମାତ୍ରଚାଷୀଙ୍କ ପାଇଁ ଅତି ମହଙ୍ଗା ହବ; ସେ ଗାଈ ବଳଦଙ୍କୁ ଆଉ ଲୁଣ ଟିକେ ଦେବାକୁ ସକ୍ଷମ ହେବ ତ ? ଚାଷୀର ହଡ଼ାବଳଦଙ୍କୁ ଅନାହାରରେ ମାରିବା ଭଳି କଥା ଶେଷରେ ହେବ ନାହିଁ କି ? ଗୋମାତା ଓ ଗୋସମ୍ପଦ ନେଇ ଚିତ୍କାର କରୁଥିବା ବି.ଜେ.ପି. ସରକାରଙ୍କର ଯଦି ଚାଷୀର ବଳଦ ଓ ତା'ର କୁଣ୍ଡାପାଣି ପ୍ରତି ନଜର ନଥାଏ ତେବେ ତାଙ୍କୁ ଆମେ ଛଳନାକାରୀ ବା ହିପୋକ୍ରେଟ କହିବା ଠିକ୍ ହେବ କି? ତାହେଲେ ଟାଟାର ସୁଖ ଠଉଁ ଆମ ଚାଷୀକୁଳର ହଡ଼ାବଳଦଙ୍କ ଦୁଃଖ ନେଇ ସରକାରଙ୍କ ମନ ତରଳିବା ଯାଏ ଅପେକ୍ଷା କରିବାକୁ ହେବ ନା ଚାଷୀମାନେ ଆପଣା ବିପତ୍ତି ବିରୁଦ୍ଧରେ ପୁଣି ଥରେ ସଂଗଠିତ ହେବା ଠିକ୍ ହେବ ? ●●●

(ୟୁ.ଏନ. କଲେଜ, ଅଡଶପୁର,କଟକ-୭୫୪ ୦୧୧)
(୬-୬-୯୮ ''ଧରିତ୍ରୀ'' ରୁ ଗୃହୀତ)

# ଗାନ୍ଧି ଲୁଣ ଆଉ ମିଳିବ ନାହିଁ

**ବୈଷ୍ଣବ ଦାସ**

ବ୍ରିଟିଶ ସରକାରଙ୍କୁ ଭାରତରୁ ତଡ଼ିବା ପାଇଁ ଆନ୍ଦୋଳନ ଚାଲିଥାଏ । ଆନ୍ଦୋଳନର ନେତୃତ୍ୱ ନେଇଥାନ୍ତି ମହାତ୍ମା ଗାନ୍ଧି । ଗାନ୍ଧିଜୀଙ୍କ ଆହ୍ୱାନରେ ହଜାର ହଜାର ଛାତ୍ର ପାଠପଢ଼ାରେ ଡୋରିବାନ୍ଧି ସାମିଲ ହେଉଥାନ୍ତି ସ୍ୱାଧୀନତା ସଂଗ୍ରାମରେ । ଛାତ୍ର, ଯୁବକ, ଶ୍ରମିକ, ଚାଷୀମୂଲିଆ ଓ ବୁଦ୍ଧିଜୀବୀ ସମସ୍ତଙ୍କ ମନରେ ଥାଏ ଦେଶ ସ୍ୱାଧୀନତାର ଏକ ଅପୂର୍ବ ଉଚ୍ଛାବ । ହସିହସି ବ୍ରିଟିଶ ସରକାରର ନିର୍ଯ୍ୟାତନ ସହୁଥାନ୍ତି ।

କି ଧନୀ, କି ଗରିବ ସମାଜର ସବୁ ବର୍ଗର ଲୋକଙ୍କର ଆବଶ୍ୟକତା ଲୁଣ । ଚିନି କିମ୍ବା ଅନ୍ୟ କୌଣସି ଖାଦ୍ୟ ସାମଗ୍ରୀ ନହେଲେ ଚଳି ହେବ; କିନ୍ତୁ ଲୁଣବିନା ତାହା ସମ୍ଭବ ନୁହେଁ । ତତ୍କାଳୀନ ଇଂରେଜ ସରକାର ନିଜ ଦେଶରୁ ଲୁଣ ଆଣି ଭାରତରେ ବିକ୍ରି କରିବା ସଙ୍ଗେ ସଙ୍ଗେ ଆମର ଦେଶୀଲୁଣ ଉପରେ ଅବକାରୀ ଟିକସ ବସାଇ ପ୍ରଚୁର ରାଜସ୍ୱ ଆଦାୟ କରୁଥିଲେ ଓ ଲୁଣ ଉତ୍ପାଦନ କରିବାର ଏକଚାଟିଆ ଅଧିକାର ନିଜ ହାତରେ ରଖିଥିଲେ । ମହାତ୍ମା ଗାନ୍ଧି ଏହି ଏକଚାଟିଆ ଲୁଣ ଉତ୍ପାଦନ ବିରୋଧରେ ସ୍ୱର ଉତ୍ତୋଳନ କଲେ । ପାଣି ପବନ ପରି ସମୁଦ୍ରରୁ ଲୁଣ ମାରିବା ମଧ ପ୍ରକୃତିର ଦାନ । ଏହି ଅଧିକାରକୁ ଆମଠାରୁ କେହି ଛଡ଼ାଇ ନେଇପାରିବେ ନାହିଁ ବୋଲି ଗାନ୍ଧିଜୀ ଦୃଢ଼ଯୁକ୍ତି ରଖିଥିଲେ । ଗାନ୍ଧିଜୀ ଏହି ଲବଣ ଆଇନ ବିରୋଧରେ ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ଗୁଜରାଟର ନିଜ ଆଶ୍ରମରୁ ଦାଣ୍ଡିଯାତ୍ରା କଲେ । ଆଶ୍ରମଠାରୁ ଦାଣ୍ଡିଗ୍ରାମ ଥିଲା ୨୪୧ ମାଇଲ ଦୂର ସମୁଦ୍ର କୂଳରେ । ଯାତ୍ରାର ୨୪ଦିନ ପରେ ଅପ୍ରେଲ ୫ ତାରିଖରେ ଦାଣ୍ଡିଗ୍ରାମରେ

His Execellency Mahatma Gandhi Esq. - Kalkatta, India Wardha, (The main post office is asked to direct this letter.) - **A letter in Sabarmati Ashram**

ପହଞ୍ଚି ଗାନ୍ଧିଜୀ ଓ ତାଙ୍କର ସହଯାତ୍ରୀମାନେ ଇଂରେଜ ସରକାରର ଲୁଣ ଆଇନକୁ ଅମାନ୍ୟ କରି ସମୁଦ୍ର କୂଳରୁ ଲୁଣ ମାରିଲେ । ଏହାଥିଲା ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଆନ୍ଦୋଳନର ଆରମ୍ଭ ।

ସାରା ଭାରତରେ ଏହି ଆଇନ ଅମାନ୍ୟ ଆନ୍ଦୋଳନ ଲୋକଙ୍କ ମଧ୍ୟରେ ଏକ ନୂଆ ଉନ୍ମାଦନା ସୃଷ୍ଟି କଲା । ଚାରିଆଡ଼େ ଚାଲିଲା ଲବଣ ସତ୍ୟାଗ୍ରହ । ଏହି ଲବଣ ଆଇନ ଅମାନ୍ୟ ଆନ୍ଦୋଳନ ବ୍ରିଟିଶ ସରକାରକୁ ଭୟଭୀତ କଲା । ଫଳରେ ୧୯୨୯ ମସିହା ଡିସେମ୍ବର ୩୧ ତାରିଖରେ କଂଗ୍ରେସର ଲାହୋର ଅଧିବେଶନରେ ଗ୍ରହଣ କରାଯାଇଥିବା ପ୍ରସ୍ତାବ 'ଭାରତର ପୂର୍ଣ୍ଣ ସ୍ୱାଧୀନତା'କୁ ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ ବାଟ ଫିଟାଇଲା । ଶେଷରେ ବାଧହୋଇ ଇଂରେଜ ସରକାର ଲୁଣ ଆଇନକୁ ବାତିଲ କଲେ । ସେହିକାଳରୁ ସମୁଦ୍ର ତଟରୁ ମରାଯାଉଥିବା ଲୁଣକୁ ଗାନ୍ଧି ଲୁଣ ଭାବେ କୁହାଯାଉଛି ।

ଦେଶ ସ୍ୱାଧୀନତା ପରେ ପ୍ରଥମ କରି ୧୯୯୨ ମସିହା ଅଗଷ୍ଟ ୨୪ ତାରିଖରେ ନରସିଂହ ରାଓଙ୍କ ଅମଳରେ ପ୍ରଧାନମନ୍ତ୍ରୀଙ୍କ ଦପ୍ତର ଅଧୀନରେ ଥିବା ଫରେନ ଇନଭେଷ୍ଟମେଣ୍ଟ ପ୍ରମୋଶନ ବୋର୍ଡର ନିର୍ଦ୍ଦେଶରେ ବିଶ୍ୱର ବୃହତ୍ତମ ଆମେରିକୀୟ ବହୁରାଷ୍ଟ୍ରୀୟ କାରଗିଲ କମ୍ପାନୀକୁ ଗୁଜରାଟର କଛ ଜିଲାରେ ଏକ ରପ୍ତାନି ବର୍ଦ୍ଧିଷ୍ଣୁ ଲୁଣ ଉତ୍ପାଦନ ପ୍ରକଳ୍ପ ବସାଇବାକୁ ଭାରତ ସରକାରଙ୍କ ଶିଳ୍ପ ବିଭାଗ ଅନୁମତି ପ୍ରଦାନ କଲେ । ଏଥିପାଇଁ ଗୁଜରାଟର କାଣ୍ଡଲା ବନ୍ଦର ଅଧୀନରେ ଥିବା ୧୫ ହଜାର ଏକର ଉତ୍କୃଷ୍ଟ ଜମି କାରଗିଲକୁ ଦେବାପାଇଁ ଭୂପୃଷ୍ଠ ପରିବହନ ବିଭାଗ ସ୍ଥାନ ନିରୂପଣ କଲେ । ଏହି ନିଷ୍ପତ୍ତି ବିରୋଧରେ ସେତେବେଳେ ଜର୍ଜ ଫର୍ଣ୍ଣାଣ୍ଡେଜ, ସୁରେନ୍ଦ୍ରମୋହନ, ଚନ୍ଦ୍ରଶେଖର, ରବିରାୟ ସମରେନ୍ଦ୍ର କୁଣ୍ଡୁ, ଶାନ୍ତି ପଟେଲ, ଭାଇ ବଇଦ୍ୟ ପ୍ରମୁଖ ହାଇଦରାବାଦଠାରେ 'ସମାଜବାଦୀ ଅଭିଯାନ' ନାମରେ ଏକ ସଙ୍ଗଠନ ଗଠନ କରି ଆନ୍ଦୋଳନ ଆରମ୍ଭ କଲେ । ଲେଖକଙ୍କ ସମେତ ଓଡ଼ିଶାରୁ ପ୍ରାୟ ୪୦/୫୦ ଜଣ ଏହି ଅଭିଯାନରେ ସାମିଲ ହୋଇଥିଲେ । ଏହି ଆନ୍ଦୋଳନକୁ ଭିତ୍ତିକରି ଗତ ୨୯।୮।୯୩ ତାରିଖରେ ଦୈନିକ 'ସମାଜ'ରେ ଭାରତର ଦ୍ୱିତୀୟ ଲବଣ ସତ୍ୟାଗ୍ରହ ନାମରେ ଲେଖକଙ୍କର ଏକ ପ୍ରବନ୍ଧ ପ୍ରକାଶ ପାଇଥିଲା । ୧୯୯୩ ମସିହା ମଇମାସ ୨୯ ତାରିଖଠାରୁ କାଣ୍ଡାଲ ବନ୍ଦର ନିକଟରେ ସତ୍ୟାଗ୍ରହ ଚାଲିଲା । ପ୍ରତିଦିନ ଶହ ଶହ ଲୋକ ଶୋଭାଯାତ୍ରାରେ ଯାଇ ସେଠାରେ ସତ୍ୟାଗ୍ରହ କରିବା ସଙ୍ଗେ ସଙ୍ଗେ ଗିରଫ ହେଲେ । ଏହି ସତ୍ୟାଗ୍ରରେ ସମାଜବାଦୀ ଅଭିଯାନ ବ୍ୟତୀତ ଗାନ୍ଧି ସଙ୍ଗଠନ, ଜନତାଦଳ, କମ୍ୟୁନିଷ୍ଟ ଦଳ, ସର୍ବସେବା ସଂଘ, ନର୍ମଦା ବଞ୍ଚାଅ ସଂଘ, ସ୍ୱାଧୀନତା ସଂଗ୍ରାମୀ ସଂଘ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ । ଫଳରେ କାରଗିଲ କମ୍ପାନୀର କାଣ୍ଡଲା ବନ୍ଦର ନିକଟରେ ଲୁଣ ଉତ୍ପାଦନ କରିବାର ପ୍ରକଳ୍ପ ବସାଇବାର ଅନୁମତି ରଦ୍ଦ ହେଲା ।

ନରସିଂହ ରାଓ ଏହି ଆନ୍ଦୋଳନ ନିକଟରେ ମୁଣ୍ଡ ନୁଆଁଇଥିଲେ ମଧ୍ୟ ସେହିବର୍ଷ ଆଇଓଡ଼ିନ୍ ଯୁକ୍ତ ଲୁଣ ଖାଇବାକୁ ଲୋକଙ୍କୁ ବାଧ କରିବା ପାଇଁ ଏକ ଆଦେଶନାମା ଜାରିକଲେ ଓ ସାଦାଲୁଣ ଉପରେ ନିଷେଧାଦେଶ ଆଣିବା ପାଇଁ ଏକ ଆଇନ ପ୍ରସ୍ତୁତ କରିବାକୁ ବାଟ ଫିଟାଇଦେଲେ । ଫଳରେ ୧୯୯୭ ମସିହା ଜାନୁଆରୀ ମାସରେ କେନ୍ଦ୍ର ସରକାରଙ୍କ 'ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ' ବିଭାଗ ପକ୍ଷରୁ ୧୯୫୪ ମସିହା 'ଖାଦ୍ୟ ଅପମିଶ୍ରଣ ନିରୋଧ ଆଇନ' ଓ ୧୯୫୫ ମସିହା 'ଖାଦ୍ୟ ଅପମିଶ୍ରଣ ନିରୋଧ ନିୟମ'ରେ ସଂଶୋଧନ ଆଣିବା ଲାଗି ବିଜ୍ଞପ୍ତି ଜାରି କରାଯାଇ ଜନସାଧାରଣଙ୍କ ଆପତ୍ତି ଗ୍ରହଣ ପାଇଁ ରଖାଗଲା । ଆପତ୍ତିମାନ ମିଳିବା ପରେ କେନ୍ଦ୍ର ସରକାର ଖାଦ୍ୟ ନୀତି ଉପରେ ଗଠିତ ହୋଇଥିବା କେନ୍ଦ୍ର କମିଟି ସହ ପରାମର୍ଶ କରି ସାଦାଲୁଣ ବା ଗାନ୍ଧିଲୁଣ ବିକ୍ରି କରିବା ଏବଂ ଗଚ୍ଛିତ ରଖିବା ଉପରେ ଗତ ନଭେମ୍ବର ୨୭ ତାରିଖରେ

ସରକାରୀ ଗେଜେଟ ମାଧ୍ୟମରେ ନିଷେଧାଦେଶ ଜାରି କରିଛି । ଫଳରେ ୧୯୫୫ ମସିହା ଖାଦ୍ୟ ଅପମିଶ୍ରଣ ନିରୋଧ ନିୟମର ୪୪ (ଜି) ବଳରେ 'ଛ'ମାସ ପରେ ଅର୍ଥାତ ୧୯୯୮ ମଇ ୨୮ ତାରିଖଠାରୁ କୌଣସି ବ୍ୟକ୍ତି ସାଦାଲୁଣ ଲୋକଙ୍କ ଖାଦ୍ୟଭାବେ ବ୍ୟବହାର ପାଇଁ ବିକ୍ରି କରିପାରିବେ ନାହିଁ, ବିକ୍ରି କରିବା ପାଇଁ ସାଧାରଣରେ ମଧ୍ୟ ପ୍ରଦର୍ଶିତ କରିପାରିବେ ନାହିଁ, କିମ୍ବା ଏହାକୁ ଗଚ୍ଛିତ ରଖିପାରିବେ ନାହିଁ । ଲୁଣ ମାରିବାକୁ ଏହି ସଂଶୋଧିତ ଆଇନ ବା ନିୟମରେ କୌଣସି ପ୍ରତିବନ୍ଧକ ନଥିଲେ ମଧ୍ୟ ଲୋକଙ୍କ ବ୍ୟବହାର ପାଇଁ ଘରେ ଗଚ୍ଛିତ ରଖିବା ଓ ବିକ୍ରି କରିବା ଉପରେ ନିଷେଧାଦେଶ ଥିବାଯୋଗୁଁ ସାଦାଲୁଣ ବା ଗାନ୍ଧିଲୁଣ ଉତ୍ପାଦନ କରିବାର ଆବଶ୍ୟକତା ଉପଲବ୍ଧି କରାଯାଇପାରୁନାହିଁ । କେବଳ ପଶୁମାନଙ୍କ ବ୍ୟବହାର, ଶିଳ୍ପ ଓ ଔଷଧ ତିଆରି କ୍ଷେତ୍ରରେ ଏହି ସାଦାଲୁଣର ବ୍ୟବହାର କରାଯାଇ ପାରିବ; କିନ୍ତୁ ଏଥିପାଇଁ ଆବଶ୍ୟକ ହେଉଥିବା ଲୁଣର ପରିମାଣ ବହୁନଗଣ୍ୟ ।

ସରକାର ଦେଶୀ ଓ ବିଦେଶୀ ପୁଞ୍ଜିପତି ଲୁଣ ନିର୍ମାଣକାରୀଙ୍କୁ ସ୍ୱାର୍ଥସାଧନ ପାଇଁ ଏହି ଆଇନ ଓ ନିୟମ ସଂଶୋଧନ କରିଛନ୍ତି । ଆଇଓଡିନ୍‌ଯୁକ୍ତ ଲୁଣ ନଖାଇଲେ ଗଳଗଣ୍ଡ ରୋଗ ହେବ ବୋଲି କୁହାଯାଉଛି । ଏହା ଅବଶ୍ୟ ସତ୍ୟ ଯେ, ଆଇଓଡିନ୍ ଅଭାବ ହେଲେ ଗଳଗଣ୍ଡ ଜନିତ ରୋଗ ହୁଏ । ଭାରତରେ ଏହି ରୋଗୀଙ୍କ ସଂଖ୍ୟା ସତକଡା ଏକଭାଗରୁ କମ୍ । ଯେଉଁମାନଙ୍କର ଆଇଓଡିନ୍ ଅଭାବ ଅଛି ସେହିମାନଙ୍କୁ କେବଳ ଆଇଓଡିନ ଯୁକ୍ତଲୁଣ ଖାଇବାକୁ ପରାମର୍ଶ ଦିଆଯାଇପାରେ । ତାନକରି ଦେଶର ସତକଡା ୯୯ ଭାଗରୁ ଅଧିକ ଲୋକଙ୍କୁ କାହିଁକି ଆଇଓଡିନ୍‌ଯୁକ୍ତ ଲୁଣ ଖାଇବାକୁ ବାଧ୍ୟ କରାଯାଉଛି, ତାହା ସରକାର ଜନସାଧାରଣରେ ସ୍ପଷ୍ଟ କରିବା ଚାହି । ସମୁଦ୍ରଜଳ ଓ ମାଟିରୁ ଉତ୍ପନ୍ନ ପନିପରିବା, ଚାଉଳ, ଗହମ ତୁଳଅଡିରୁ ଯେତିକି ଆଇଓଡ଼ିନ ମିଳୁଛି ତାହା ଜଣେ ସାଧାରଣ ମଣିଷ ପାଇଁ ଯଥେଷ୍ଟ ବୋଲି ଡାକ୍ତର ଓ ସ୍ୱାସ୍ଥ୍ୟ ବିଶେଷଜ୍ଞମାନେ ମତ ଦେଉଛନ୍ତି । ତଥାପି ସରକାର ତାଙ୍କର ମତ ପରିବର୍ତ୍ତନ କରିବାକୁ ପ୍ରସ୍ତୁତ ନୁହନ୍ତି ଯେତେବେଳେ ଏହି ସାଦାଲୁଣ ବା ଗାନ୍ଧିଲୁଣ ମଣିଷର ବ୍ୟବହାର ପାଇଁ ନିଷେଧହୋଇ ଆଇନ ସଂଶୋଧନ ହେଲା, ଯେଉଁମାନେ ଏହି ଆଇନକୁ ନମାନି ଗାନ୍ଧିଲୁଣ ବ୍ୟବହାର କରିବେ ସେମାନେ ନିଶ୍ଚିତଭାବେ ଆଇନ ଅନୁଯାୟୀ ଦଣ୍ଡିତ ହେବେ ।

ଲୁଣ ଉତ୍ପାଦନ ଦେଶୀ ବା ବିଦେଶୀ ପୁଞ୍ଜିପତିଙ୍କ ହାତକୁ ଗଲେ ସେମାନେ ଏଥିରୁ ପ୍ରଚୁର ଲାଭ ଉଠାଇବେ । ବର୍ତ୍ତମାନ ଏକ କେଜି ସାଦାଲୁଣ ବଜାରରେ ଦୁଇଟଙ୍କା ମଧ୍ୟରେ ବିକ୍ରି ହେଉଥିବାବେଳେ ଆଇଓଡ଼ିନ ଯୁକ୍ତଲୁଣ ଛ'ଟଙ୍କାରେ ବିକ୍ରି ଚାଲିଛି । ଯେତେବେଳେ ସଂପୂର୍ଣ୍ଣଭାବେ ସାଦାଲୁଣ ଆଉ ବଜାରରେ ମିଳିବନାହିଁ ସେତେବେଳେ ଲୁଣ କମ୍ପାନୀମାନେ ମନମୁଖି ଦର ବଢ଼ାଇ ଚାଲିବେ ।

ବର୍ତ୍ତମାନ ଭାରତରେ ସାଦାଲୁଣ ବା ଗାନ୍ଧିଲୁଣ ଉତ୍ପାଦନରେ ବହୁ ଲୋକ କାମ କରୁଛନ୍ତି । ବଡ଼ ବଡ ଦେଶୀ ଓ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଯାନ୍ତ୍ରିକ ପ୍ରକ୍ରିୟାରେ ଲୁଣ ମାରିଲେ ସାଦାଲୁଣ ଉତ୍ପାଦନ କରିବାରେ ନିୟୋଜିତ ବ୍ୟକ୍ତିମାନେ ବେକାର ହେବେ । ନିଯୁକ୍ତି ଆମ ଦେଶ ନିକଟରେ ବଡ଼ ପ୍ରଶ୍ନ । କଚ୍ଛ ଜିଲାର ଗାନ୍ଧିଗ୍ରାମ ସିଭିଲ ଜଜକୋର୍ଟରେ ଏକ ବିବୃତିରେ 'କାରଗିଲ କମ୍ପାନୀ' କହିଥିଲା ଯେ ସେମାନେ ମାତ୍ର ୫୦ ଜଣ ନିଯୁକ୍ତ କରି ପଶ୍ଚିମ ଅଷ୍ଟ୍ରେଲିଆରେ ଏହାର ଥିବା ଏକ ଲୁଣ ପ୍ରକଳ୍ପରୁ ପ୍ରତିବର୍ଷ ୨୦ଲକ୍ଷ ଟନ ଲୁଣ ଉତ୍ପାଦନ କରୁଛି । ତାହାହେଲେ ଭାରତରେ ବର୍ତ୍ତମାନ ଉତ୍ପାଦିତ ହେଉଥିବା ପ୍ରାୟ ଦେଢ଼କୋଟି ଟନ ଲୁଣକୁ ଯାନ୍ତ୍ରିକ ପ୍ରକ୍ରିୟାରେ ଉତ୍ପାଦନ କରିବାକୁ ହେଲେ ମାତ୍ର ତିନିଶହ ପଚାଶଜଣ ଲୋକ ଦରକାର ପଡ଼ିବେ । ଫଳରେ ଭାରତର ଲକ୍ଷ ଲକ୍ଷ ଲୁଣଚାଷୀଙ୍କର ଜୀବିକା ବୁଡ଼ିବ ।

ବର୍ତ୍ତମାନ ସରକାର ସାଦାଲୁଣ ବା ଗାନ୍ଧିଲୁଣ ମାରିବା ପାଇଁ ବର୍ଷିକିଆ ଲିଜ ଦେଉନାହାନ୍ତି ।

ଲୁଣଚାଷୀଙ୍କ ମଧ୍ୟରେ କିପରି ବଣ୍ଟନ୍ତେ କ୍ଷ୍ଟ୍ରୀ ପଡ଼ିଗଲାଣି । ସରକାରଙ୍କ ଏହି ସଂଶୋଧିତ ଆଇନ ବିରୋଧରେ ଜନମତ ସୃଷ୍ଟି କରିବା ପାଇଁ ସର୍ବସେବା ସଂଘ, ସମାଜବାଦୀ ସଂଗଠନ ଓ ସ୍ୱାଧୀନତା ବଞ୍ଚାଅ ଅଭିଯାନ ପକ୍ଷରୁ ସତ୍ୟାଗ୍ରହର ଡାକରା ଦିଆଯାଇଛି । ଆସନ୍ତା ୫ ତାରିଖରୁ ସତ୍ୟାଗ୍ରହ ଚାଲିବ । ସତ୍ୟାଗ୍ରହୀମାନେ ଖାଣ୍ଟିଲୁଣ ବିକ୍ରିକରି ସରକାରଙ୍କ ଆଇନକୁ ଅମାନ୍ୟ କରିବେ । ସେଥିପାଇଁ ସରକାର ଯେଉଁ ଦଣ୍ଡ ଦେବେ ତାହା ସେମାନେ ଭୋଗିବାକୁ ସଂକଳ୍ପ କରି ଏହି ସତ୍ୟାଗ୍ରହରେ ସାମିଲ ହେଉଛନ୍ତି । ସାରା ଭାରତରେ ଏହି ଆନ୍ଦୋଳନ ଚାଲିବ । ଏହା ଭାରତର ହେବ ଆଜ ଏକ ଲବଣ ସତ୍ୟାଗ୍ରହ ।



ଆଡ୍‌ଭୋକେଟ୍, ବାରାବାଟୀପାଟଣା, କଟକ-୯
(୫.୬.୯୮ ''ସମାଜ'' ରୁ ଗୃହୀତ)

# ଅଧ୍ୟାତ୍ମବାଦୀ ଅର୍ଥନୀତି ଓ ପ୍ରାକୃତିକ ବିକାଶଧାରା

**ବିଜୟ କୁମାର ବେହେରା**

ସମାଜବାଦଭିତ୍ତିକ ଅର୍ଥନୀତି ଏବଂ ପୁଞ୍ଜିବାଦଭିତ୍ତିକ ଅର୍ଥନୀତିର ଲଢ଼େଇ ମଧ୍ୟରେ ଏ ପର୍ଯ୍ୟନ୍ତ ବିଶ୍ୱ ଅର୍ଥନୀତିରେ ଅନେକ ପ୍ରକାର ପରୀକ୍ଷା ନିରୀକ୍ଷା ସରିଲାଣି; ହେଲେ ଏ ମାନବ ଜାତିର ଅନେକ ମୌଳିକ ସମସ୍ୟା ଏବେ ବି ସମାଧାନ ହୋଇପାରି ନାହିଁ । ଆଜି ପୃଥିବୀ ପୃଷ୍ଠରେ ଗରିବି, ବେକାରି, ନିରକ୍ଷରତା, ମହାମାରୀ, ଯୁଦ୍ଧ ଆତଙ୍କ, ପ୍ରାକୃତିକ ବିପର୍ଯ୍ୟୟ ଭଳି ଅନେକ ସମସ୍ୟା ତଥାପି ତା'ର କାୟା ବିସ୍ତାର କରିଚାଲିଛି । ଆଶା ଥିଲା ମିଳିତ ଜାତିସଂଘର ପ୍ରତିଷ୍ଠା ପରେ ବିଶ୍ୱରେ ଶାନ୍ତି, ସଦ୍‌ଭାବ ଓ ସଂହତି ସ୍ଥାପିତ ହେବ ଏବଂ ଅର୍ଥନୈତିକ ପ୍ରଗତି ସାଙ୍ଗକୁ ସାମାଜିକ ସ୍ଥିରତା

## ଗାଁର ସେବା

ଗାଁର ସେବା କରିବୁ ଆମେ ମାଆର ସେବା କରିବୁ
ନୂଆ ଆଲୋକ ନୂଆ ଚେତନା ପୁରପଲ୍ଲୀରେ ଭରିବୁ ॥୦॥
ଦୂରେ ଫୋପାଡ଼ି ଅଳିଆ ଗଦା
କରିବୁ ରାସ୍ତା ଘାଟ ସୁବିଧା
ପୋଖରୀ ଜଳ ହେବ ନିର୍ମଳ ରୋଗବ୍ୟାଧିକୁ ତଡ଼ିବୁ ॥୧॥
ମୂର୍ଖତା ଯିବ ଦୂରକୁ ହଟି
ମଣିଷ ଭଳି ରହିବୁ ଏଠି
ଅବହେଳିତ ଗାଁ ଲୋକଙ୍କ ଦୁଃଖ କଷଣ ହରିବୁ ॥୨॥
ବିଲବାଡ଼ିରେ ଚଷିବୁ କପା
କଳିକଜିଆ କରିବୁ ଗପା
ଅନ୍ୟାୟ ଅତ୍ୟାଚାର ବିରୁଦ୍ଧେ ଜୀବନ ଦେଇ ଲଢ଼ିବୁ ॥୩॥
ଲକ୍ଷେ ଗାଁର ମଉଡ଼ ମଣି
ସେବାରେ ବଡ଼ ସାନ ନମଣି
ଗାନ୍ଧୀଜୀ ଯେପରି ଥିଲେ ତାଙ୍କ ଆଦର୍ଶ ଧରିବୁ ॥୪॥



ଆସିବ । କିନ୍ତୁ ସେ ସବୁ ଆଶା ଆଜି କେବଳ ଆଶାରେ ହିଁ ରହିଯାଇଛି ଆଜି ବି ଲକ୍ଷ ଲକ୍ଷ ନିରନ୍ନ ଜନତା ଭୋକ ଉପାସରେ ନର୍ଦ୍ଦମାରୁ ଅଇଁଠା ସାଉଁଟି ଖାଉଛନ୍ତି । ଚାଳ ଖଣ୍ଡିଏ ନପାଇ ଫୁଟ୍‌ପାଥରେ ପଡ଼ି ମରୁଛନ୍ତି । କିନ୍ତୁ କୌଣସି ପ୍ରକାର ଅର୍ଥନୀତି ସେମାନଙ୍କୁ ଉପଯୁକ୍ତ ନ୍ୟାୟ ପ୍ରଦାନ କରିପାରି ନାହିଁ । ସମସ୍ତ ପ୍ରକାର ବାଦର ଲଢ଼େଇ ଭିତରେ କେବଳ ଗୋଟିଏ ବାଦର ମୃତ୍ୟୁ ଘଟିଛି; ତାହା ହେଲା ମାନବବାଦ । ନିକଟରେ ପ୍ରକାଶିତ ବିଶ୍ୱ ମାନବ ବିକାଶ ରିପୋର୍ଟ, ୱାର୍ଡ୍‌ୱାଚ, ଫିୟୁଚରିଷ୍ଟ ଭଳି ଅନେକ ଆନ୍ତର୍ଜାତିକ ସଂସ୍ଥାର ରିପୋର୍ଟ ଏହି ସତ୍ୟକୁ ଆଜି ସାବ୍ୟସ୍ତ କରୁଛି । ଏ ସବୁ ରିପୋର୍ଟର ବିବରଣୀମାନଙ୍କରୁ ଜଣାଯାଏ ଆଜି ବିଶ୍ୱରେ ପ୍ରାୟ ୧୪୦ କୋଟି ଲୋକ ନିହାତି ଗରିବ ଅବସ୍ଥାରେ କାଳାତିପାତ କରୁଛନ୍ତି । ଅପପୁଷ୍ଟି ଜନିତ କାରଣରୁ ବିଶ୍ୱରେ ପ୍ରାୟ ୧.୫ କୋଟି ଶିଶୁ ପ୍ରତିବର୍ଷ ପ୍ରାଣ ହରାଉଥିବା ବେଳେ ପ୍ରାୟ ୬ ଲକ୍ଷ ଗର୍ଭବତୀ ମହିଳା ପ୍ରସବ ଅବସ୍ଥାରେ ମୃତ୍ୟୁବରଣ କରୁଛନ୍ତି । ପ୍ରାୟ ୧୭୦ କୋଟି ଲୋକ ସ୍ୱାସ୍ଥ୍ୟକର ପାନୀୟଜଳ ପାଇବାରୁ ବଞ୍ଚିତ ଥିଲାବେଳେ ଅନ୍ୟୁନ ୬୦ କୋଟି ଲୋକ ପୃଥିବୀରେ ବାସହୀନ ଅବସ୍ଥାରେ ପଡ଼ିରହିଛନ୍ତି । ଏତେ ସବୁ ଦୟନୀୟ ଅବସ୍ଥା ଭିତରେ ଶୁଣିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ ଯେ, ବିଶ୍ୱର ସମୁଦାୟ ବ୍ୟକ୍ତିଗତ ଖର୍ଚ୍ଚର ଶତକଡ଼ା ୮୬ ଭାଗ କେବଳ ଶତକଡ଼ା ୨୦ ଭାଗ ଲୋକ ଉପଭୋଗ କରୁଛନ୍ତି । ତେବେ ଏତେ ଗୁଡ଼ାଏ ଅନର୍ଥ ସବୁ ଜାଣିଲା ପରେ ମନରେ ସ୍ୱତଃ ପ୍ରଶ୍ନ ଆସୁଛି, ଏସବୁ ପାଇଁ ଦାୟୀ କିଏ ? ଏହାର ଉତ୍ତରରେ ଏହା ଦୃଢ଼ ଭାବରେ କୁହାଯାଇ ପାରେ ଯେ, ଆମର ଅଦୂରଦର୍ଶୀ, ଅପରିଣାମଦର୍ଶୀ ଏକ ଭୌତିକଧର୍ମୀ ଆଧୁନିକ ଅର୍ଥନୈତିକ ବ୍ୟବସ୍ଥା ହିଁ ଦାୟୀ । କାରଣ ଏଭଳି ଏକ ଅର୍ଥନୈତିକ ବ୍ୟବସ୍ଥା ଯାହାକୁ ଆମେ ଏକ ବସ୍ତୁବାଦୀ ଅର୍ଥନୀତି (Materialistic Economics) କହିବା ଏଥିରେ ପ୍ରଥମରୁ ଆମେ ଜୀବନର ଭୌତିକ ବିକାଶ ଉପରେ କେବଳ ଗୁରୁତ୍ୱ ପ୍ରଦାନ କଲୁ; ଜୀବନର ଅନ୍ୟ ଶ୍ରେଷ୍ଠ ଦିଗ ଆତ୍ମିକ ବିକାଶକୁ ସମ୍ପୂର୍ଣ୍ଣ ଭାବେ ଉପେକ୍ଷା କଲୁ । ହଁ, ଏଭଳି ଏକ ଅର୍ଥନୀତି ପ୍ରାଥମିକ ପର୍ଯ୍ୟାୟରେ ଆମକୁ ଅନେକ କିଛି ଲାଭ ଦେଲା କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ଆମକୁ କେବଳ ଧ୍ୱଂସମୁଖକୁ ଟାଣିନେଲା; ଯାହାକି ଆମେ ଆଜି ଜୀବନର ଛତ୍ରେ ଛତ୍ରେ ଅନୁଭବ କରୁଛୁ । ଆଜି ଆମ ପାଖରେ ପ୍ରଚୁର ଟଙ୍କା ଅଛି, ହେଲେ ଶାନ୍ତି ନାହିଁ । ଆମ ପାଖରେ ଅନେକ ଅସ୍ତ୍ର ଅଛି, ହେଲେ ସୁରକ୍ଷା ନାହିଁ । ଆମ ପାକରେ ଅନେକ ସୁବିଧା ସାଧନ ଅଛି, ହେଲେ ସବୁକିଛି ଅସାଧ୍ୟ ମନେ ହେଉଛି । ଆମେ ସବୁବେଳେ ନିଜକୁ ଅସୁରକ୍ଷିତ ମନେକରୁଛେ । ତେବେ ଏସବୁ ଘଟୁଛି କେବଳ ଆମର ଆସୁରୀ ଜୀବନଯାପର ପ୍ରଣାଳୀ ପାଇଁ ଏବଂ ଏଭଳି ଏକ ଜୀବନ ପ୍ରଣାଳୀକୁ ଆମର ଭୋଗବାଦୀ ଅର୍ଥନୀତି ହିଁ ପ୍ରୋତ୍ସାହିତ କରୁଛି । ଏଭଳି ଏକ ଅର୍ଥନୈତିକ ବ୍ୟବସ୍ଥା ଭିତରେ ଆମେ ଆଜି ଆମର ମଣିଷପଣିଆକୁ ସମ୍ପୂର୍ଣ୍ଣ ଭାବରେ ଭୁଲିଗଲୁଣି । ନିହିତ ସ୍ୱାର୍ଥ ପାଇଁ ଆଜି ଆମେ ନିଜ ନିଜ ଭିତରେ ଲଢ଼ାଇ କରୁଛୁ । ଈଶ୍ୱରଙ୍କ ଦ୍ୱାରା ଏ ଜଗତବାସୀଙ୍କ ପାଇଁ ବରଦାନ ସଦୃଶ ଦିଆଯାଇଥିବା ପବିତ୍ର ପ୍ରକୃତିକ ସମ୍ପଦକୁ ତା'ର ଏକମାତ୍ର ଉପଭୋକ୍ତା ଭାବି ଲୁଣ୍ଠନ କରୁଛୁ । ଆମ ଭିତରେ ପବିତ୍ର ମାନବୀୟ ଗୁଣାବଳୀ ସ୍ନେହ, ପ୍ରେମ, କରୁଣାର ବନ୍ଧନ ସବୁ ତୁଟି ଗଲାଣି, ବିଶ୍ୱବ୍ୟବସ୍ଥା ଆଜି ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଲାଣି । ତଥାପି ଆମେ ନିଜକୁ ଜ୍ଞାନୀ ବୋଲି ଗର୍ବ କରୁଛୁ । ଏହି ପ୍ରସଙ୍ଗରେ ପ୍ରଖ୍ୟାତ ବୈଜ୍ଞାନିକ ଏବଂ ଦାର୍ଶନିକ ଆଇନଷ୍ଟାଇନ୍ ବହୁ ବର୍ଷ ତଳେ ଯାହା କହିଥିଲେ ତା'ର ଏବେ ବି ପ୍ରାସଙ୍ଗିକତା ଅଛି । ସେ ତାଙ୍କର "The World as I See It. ପୁସ୍ତକରେ କହିଥିଲେ Strange is our situation here upon the Earth... From the standpoint of daily life, however there is one thing we do know that man is here for sake of other men above all for those upon whose smile and wellbeing our own happiness depend, and also for the countless unknown souls with whose fate we are connected by a bond of sympathy." ଅତଏବ ଆଜି ଆମର ଭୋଗବାଦୀ ଜୀବନ ପଦ୍ଧତି ଯେତେବେଳେ

ତା'ର ଚରମ ସୀମାରେ ଆସି ପହଞ୍ଚିଲାଣି, ସାମାଜିକ ଅର୍ଥନୈତିକ ପ୍ରାକୃତିକ ଓ ଜାଗତିକ ବ୍ୟବସ୍ଥା ସବୁ ଛିନ୍ନଭିନ୍ନ ହୋଇଗଲାଣି । ଏପରିସ୍ଥଳେ ଆଜି କୌଣସି ପ୍ରକାର ଅର୍ଥନୀତି କାମକଲା ଭଳି ମନେ ହେଉନାହିଁ । ଆଜି ତ ବିଶ୍ୱର ସମସ୍ତ ଅର୍ଥଶାସ୍ତ୍ରୀମାନେ ମୁଣ୍ଡରେ ହାତଦେଇ ବସିଲେଣି ! ଉପାୟ ଖୋଜୁଛନ୍ତି, ହେଲେ ପାଉ ନାହାନ୍ତି । କିନ୍ତୁ ସେମାନେ ମନେରଖିବା ଉଚିତ ଯେ, ଯେତେ ଉପାୟ ବାହାରକଲେ ମଧ ସେମାନଙ୍କର ବସ୍ତୁବାଦୀ ଅର୍ଥନୀତି ଆଉ ଏଣିକ ଏ ମାନବ ଜାତିର ବର୍ଦ୍ଧିତ ସମସ୍ୟାମାନ ସାମାଧାନ କରିବାରେ ସକ୍ଷମ ହେବନାହିଁ । ତେଣୁ ସେମାନଙ୍କୁ ଏଣିକି ଏକ ଆଧ୍ୟାତ୍ମବାଦୀ ଅର୍ଥନୀତି (Spiritual Economics)ର ଆଶ୍ରୟ ନେବାକୁ ପଡ଼ିବ । ଏଭଳି ଏକ ଅର୍ଥନୀତିରେ ମାନବର ଭୌତିକ ବିକାଶ ଅପେକ୍ଷା ଆତ୍ମିକ ବିକାଶ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯିବ । ଏଭଳି ଏକ ଅର୍ଥନୀତିର ଉପଭୋକ୍ତା କେବଳ ଏ ମଣିଷଟି ନ ହୋଇ ହେବେ ଏ ବିଶ୍ୱର ସକଳ ଜୀବ ଏବଂ ପ୍ରାଣୀ ଏବଂ ଏହାର ମୂଳ ସିଦ୍ଧାନ୍ତ ହେବ ନିଜେ ବଞ୍ଚି ପରକୁ ବଞ୍ଚାଇବା, Live and let live. ଏଭଳି ଏକ ଅର୍ଥନୀତିରେ ଅର୍ଥ ଏବଂ ଲାଭକୁ ମୁଖ୍ୟ ଲକ୍ଷ୍ୟ ଭାବରେ ଗ୍ରହଣ କରା ନ ଯାଇ ମାନବ କଲ୍ୟାଣ ସହ ଜଗତ କଲ୍ୟାଣକୁ ମୁଖ୍ୟ ଲକ୍ଷ୍ୟ ଭାବେ ଗ୍ରହଣ କରାଯିବ । ଏ ଭଳି ଏକ ଅର୍ଥନୀତି ଉପରେ ପର୍ଯ୍ୟବସିତ ଜୀବନ ପ୍ରଣାଳୀ ହେବ ଏକ ସରଳ ଏବଂ ନିରାଡମ୍ବର ଜୀବନ ଯେଉଁଥିରେ ବାହ୍ୟ ସୁଖ ଅପେକ୍ଷା ଅନ୍ତରର ସୁଖ ଉପରେ ଶ୍ରେଷ୍ଠତା ପ୍ରଦାନ କରାଯିବ । ଏଭଳି ଏକ ଜୀବନର ବିକାଶ ଧାରାକୁ ଆଜିର ବୈଜ୍ଞାନିକ ଦୃଷ୍ଟିକୋଣରୁ ଆମେ କହିପାରିବା ପ୍ରକୃତିକ ବିକାଶ ଧାରା ବା Sustainable development ଯାହାର ଅର୍ଥ ହେଲା Development within the carrying capacity of the **Nature**. ତେବେ ଏଭଳି ଏକ ଜୀବନ ପଦ୍ଧତି ଏବଂ ଅର୍ଥନୀତିର ପରିକଳ୍ପନା ଆମ ଭାରତୀୟମାନଙ୍କ ପାଇଁ କିଛି ନୂଆ ନୁହେଁ । ଏ ସମ୍ବନ୍ଧରେ ଆମର ଜାତିର ପିତା ମହାତ୍ମାଗାନ୍ଧୀ ତାଙ୍କର ଅର୍ଥନୀତି ସମ୍ବନ୍ଧୀୟ ଅନେକ ପୁସ୍ତିକାରେ ଆଗରୁ ଅନେକ ସୂଚନା ପ୍ରଦାନ କରିଛନ୍ତି । ତେବେ ମାନବ ଜାତିର... ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଆଗାମୀ ଦିନର ନିଷ୍ଠୁର ବାସ୍ତବତାମାନଙ୍କୁ ସାମ୍ନା କରିବାକୁ ଆଗାମୀ ପିଢ଼ିକୁ ପ୍ରସ୍ତୁତ କରିବା ପାଇଁ ଆମର ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ସ୍ତରରେ ଏପରି ଏକ ଆଧ୍ୟାତ୍ମବାଦୀ ଅର୍ଥନୀତି ଶିକ୍ଷାର ଆବଶ୍ୟକତା ରହିଛି କି ନାହିଁ ତାହା ବିଚାର କରି ଦେଖିବାକୁ ଆମର ପ୍ରବୀଣ ଅର୍ଥନୀତି ବିଶାରଦମାନଙ୍କୁ ନିବେଦନ ରହିଲା । ●●●

ଭି.ଏସ୍.ଏସ୍.ନଗର, ଭୁବନେଶ୍ୱର
(୮-୨-୯୮ ''ଧରିତ୍ରୀ'' ରୁ ଗୃହୀତ)

The sight of Gandhijee in loin cloth & shawal scandalised, the French Journalists -- "was he really going to walk about London like that."

Gandhi replied with his disarming smile- "You in your country wear plus fours, but I prefer minus fours."

**- From Sabarmati Ashram**

# ଆମେରିକୀୟ ବଂଧୁଙ୍କ ଡାକରା

ଭିକ୍ଟର ଡେଭିସ୍ ହେନ୍‌ସନ୍

ଏ ଯୁଗ ହେଉଛି ଗ୍ଲୋବାଲାଇଜେସନ୍ ବା ଣର ଯୁଗ । ସାରା ବିଶ୍ୱର ଏକୀକରଣ ହେଉଛି । ଏହି ବିଶ୍ୱୀକରଣ, ବ୍ୟକ୍ତିର ଭାବନା, ବିଚାର ଓ ରେ ମଧ୍ୟ ଦୃଷ୍ଟିଗୋଚର ହେଉଛି । ବିଶ୍ୱ ସ୍ତରରେ ବାଦ ଓ ଗଭୀର ମନନ-ମନ୍ଥନ ଚାଲିଛି । ମଣିଷର ର ଆଗାମୀ ଦିନର ଦିଗ ଏହି ମନ୍ଥନ ଦ୍ୱାରା ସ୍ଥିର ବ । ଏ ଦିଗ ସର୍ବୋଦୟର ହେବ ବା ସର୍ବନାଶର ଏହା ଆମର ଆନ୍ତରିକ ବୁଝାମଣା, ବିବେକ ତଥା ପ୍ରୟାସ ଓ ପୁରୁଷାର୍ଥ ଉପରେ ନିର୍ଭର କରେ ।

(ବିଶ୍ୱର ଅପର କୋଣରେ ଛିଡ଼ା ହୋଇଥିବା ଆମେରିକୀୟ କୃଷକଙ୍କର ଏ ଆହ୍ୱାନ । ଲେଖକ ଚାଷ କରନ୍ତି ଓ କାଲିଫର୍ଣିଆ ଷ୍ଟେଟ୍ ଭର୍ସିଟିରେ ଗ୍ରୀକ୍ ଭାଷାର ପ୍ରଫେସର ମଧ୍ୟ । ଓ ଆକାଶ ଏବଂ ଶ୍ରମ ଓ ଚିନ୍ତନ ଉଭୟ କ୍ଷେତ୍ର ସାଙ୍ଗର ସମ୍ପର୍କ ରହିଛି । ପାଞ୍ଚ ପୁରୁଷଧରି ତାଙ୍କ ର ନିଜସ୍ୱ ଚାଷଜମି ରହିଛି ।ଶ୍ରମର ମୂଲ୍ୟ ୟ ମୂଲ୍ୟବୋଧ, ମାନବ ସଂସ୍କୃତିର ଉନ୍ନତି ତାଙ୍କର ଚିନ୍ତା ବିଶ୍ୱସ୍ତରୀୟ ପ୍ରତ୍ୟେକ ପ୍ରବୁଦ୍ଧ ଙ୍କର ଚିନ୍ତା ହେବା ଉଚିତ ।)

ଆମ ପରିବାର ପାଖରେ ଛୋଟ ଚାଷ ଜମି ଖଣ୍ଡେ । ଗତ ସପ୍ତାହରେ ମୁଁ ସେଥିରୁ ୨୮ ପାଉଣ୍ଡ ଟଟକା କୋଳି ତୋଳି ବଜାରକୁ ଛାଡ଼ିଥିଲି ।

ଏହି ବରକୋଳି ପ୍ୟାକେଟ୍‌ର ମୂଲ୍ୟ ମୋତେ ୭ ମିଳିଲା । ମାତ୍ର ବଜାରରେ ଏହି ପ୍ୟାକେଟଟି ଙ୍କୁ ୫୦ ରୁ ୬୦ ଡଲାର ମୂଲ୍ୟରେ ମିଳିବ ।

ଏହି ଫଳକୁ ମୁଁ ପଚେଇଲି, ବାକ୍ସରେ ଭରିଲି ଏବଂ ଟ୍ରକରେ ପଠାଇଲି । ଏହା ବଦଳରେ ମୋତେ ମାତ୍ର ୭ ଡଲାର ମିଳିଲା । ଏବଂ ଅବଶିଷ୍ଟ ପଇସା ଦଲାଲ, ଫଡ଼ିଆ ଓ ବ୍ୟବସାୟୀମାନେ ନେଇଗଲେ । ଏହିଭଳି ପ୍ରକ୍ରିୟା ଯୋଗୁଁ ସେହି କୃଷକ ଯିଏ ଏହି କୋଳିକୁ ପଚେଇ ପ୍ୟାକିଙ୍ଗ କରି ପଠାଇଥିଲା ତାକୁ ଛାଡି ଅନ୍ୟସବୁ ଲୋକ ଲାଭବାନ ହେଲେ ।

ଆଜି ଆମେରିକାର ଅନ୍ୟ ଛୋଟ କୃଷକଙ୍କର ମୁଁ ଅନେକ ଉଦାହରଣ ଦେଇପାରେ ଯେଉଁମାନେ ନିଜେ ଉପୁଜାଉଥିବା ବରକୋଳି, ନାସପାତି ବା କିଶମିଶ ଉପରେ ନିଜେ କରିଥିବା ଉତ୍ପାଦନ ଖର୍ଚ୍ଚର ମୂଲ୍ୟ ମଧ୍ୟ ପାଆନ୍ତି ନାହିଁ । କୃଷି କାର୍ଯ୍ୟକୁ ବ୍ୟବସାୟରେ ବଦଳାଇ ଦେଇଥିବା ବଡ଼ କୃଷକମାନଙ୍କର "ବଜାର କମ୍ ହେଉଥିବା" ଭଳି ସବୁଦିନିଆ ଅଭିଯୋଗ ସହିତ ମୋ କଥାକୁ ମିଶେଇ ଦେଖିବେ ନାହିଁ । ମୋ କଥା ହେଉଛି, ବିଲରେ ଝାଳ ବୁହାଉଥିବା ଜଣେ ଶ୍ରମଜୀବୀର ଡାକରା । କଠୋର ଶାରୀରିକ ଶ୍ରମ ବଦଳରେ ଆଜି ଯେଉଁ ପ୍ରକାର ଅତ୍ୟନ୍ତ ଅଳ୍ପ ଏବଂ ଅନ୍ୟାୟ ମୂଲ୍ୟ ମିଳୁଛି, ଏ ଦିଗରେ ମୁଁ ସମସ୍ତଙ୍କର ଧ୍ୟାନ ଆକର୍ଷଣ କରିବାକୁ ଚାହୁଁଛି । ଆମର ଆମେରିକୀୟ ମୂଲ୍ୟର ଆଜି ଅବମୂଲ୍ୟାୟନ ହେଉଅଛି ।

ଏହା ଦିନକୁ ଦିନ ବିକରାଳ ରୂପ ଧାରଣକରି ଚାଲିଥିବା ଏକ ରାଷ୍ଟ୍ରୀୟ ରୋଗ ଅଟେ ଯେଉଁଥି ପାଇଁକି ଉତ୍ପାଦକ ଓ ବିକ୍ରେତା ମଧ୍ୟରେ ଶ୍ରମର ଶକ୍ତି ଓ ମୂଲେଇବା ଶକ୍ତି ଭିତରେ ଥିବା ଆର୍ଥିକ ବ୍ୟବଧାନ ଆହୁରି ବଢ଼ଉଡା ଓ ଗଭୀର ହୋଇଚାଲିଛି ।

ଗତ ୨୦ ବର୍ଷରେ ଶସ୍ୟ ଉତ୍ପାଦନ କରୁଥିବା ତଥା ଅନ୍ୟ ପଦାର୍ଥ ତିଆରି କରୁଥିବା ଲୋକେ ଯାହାଙ୍କୁ କି ମୁଁ ଉତ୍ପାଦକ ବା ସୃଜନକର୍ତ୍ତା ବୋଲି ଗ୍ରହଣ କରିଥାଏ ସେମାନଙ୍କୁ ଆମ ସମାଜରେ ଘୋର ଅବହେଳା କରାଯାଉଅଛି । ସେମାନଙ୍କ ସହିତ ଘୋର ଅନ୍ୟାୟ ହେଉଅଛି । ଏମାନଙ୍କ ମଧ୍ୟରେ ମୁଁ କୃଷକ, ଶ୍ରମିକ, ବଢ଼େଇ, କମାର ସମସ୍ତ ଶ୍ରମଜୀବୀମାନଙ୍କୁ ସମାବେଶ କରୁଛି ।

ଜୀବନର ମୌଳିକ, ପ୍ରାଥମିକ ଆବଶ୍ୟକତାଗୁଡ଼ିକ ଯଥା-ଅନ୍ନ, ବସ୍ତ୍ର ଆଦି ପାଇଁ ଆମର ସମାଜ ଯେଉଁ ମୂଲ୍ୟ ଦେଉଛି ଏହା ଦିନକୁ ଦିନ କମ ହୋଇ ଚାଲିଛି । ଏଥିପାଇଁ

ପରିଣାମରେ ଆମର ସାଂସ୍କୃତିକ ଏବଂ ସାମାଜିକ ମୂଲ୍ୟବୋଧ କ୍ଷୟିଷ୍ଣୁ ହେବାରେ ଲାଗିଛି । ଅପରାଧ ବୃଦ୍ଧି ପାଉଛି । ହତାଶା ବଢ଼ି ଚାଲିଛି । ପ୍ରତିକ୍ଷେତ୍ରରେ ରାଜକୀୟ ସ୍ୱେଚ୍ଛାଚାରିତାର ପ୍ରଭାବ ବଢ଼ିଚାଲିଛି ଏବଂ ମର୍ଯ୍ୟାଦାକୁ ପଦଦଳିତ କରିଦିଆ ଯାଉଛି ।

ଏସବୁ ସତ୍ତ୍ୱେ ଆମର ରାଜନୀତିକ ନେତା ଓ ଅର୍ଥନୀତିଜ୍ଞମାନେ ତ ଆମକୁ ଏହା ବୁଝାଇ ଚାଲିଛନ୍ତି ଯେ ଏ ଯୁଗ ହେଲି ବିଶ୍ୱୀକରଣ, ମୁକ୍ତ ବଜାର, ଜ୍ଞାନ ଆହରଣ ପ୍ରବିଧିରେ ବିସ୍ଫୋରଣର ଯୁଗ । ଏ ଯୁଗ ଯେତେ ଯେତେ ଆଗକୁ ଆଗେଇ ଯିବ ଶ୍ରମର ମୂଲ୍ୟ ସେତେ ସେତେ କମିକମି ଯିବ । ଯାହାକି ଉନ୍ନତି ପାଇଁ ଅନିବାର୍ଯ୍ୟ ଏବଂ ଏହାହିଁ ତ ବିକାଶ ଓ ପ୍ରଗତି ।

ମାତ୍ର ଏହା ସତ୍ୟ ନୁହେଁ । ମୁଁ ଏପରି ପ୍ରଗତିରେ ବିଶ୍ୱାସ କରେ ନାହିଁ । ଶରୀରଶ୍ରମ କରୁଥିବା ସ୍ତ୍ରୀ-ପୁରୁଷଙ୍କୁ ତାଙ୍କ ପରିଶ୍ରମର ଫଳ କେତେ ମିଳୁଛି, ତାକୁ ହିଁ ମୋ ଦେଶର ନୈତିକତା, ନିଜ ଦେଶର ଚରିତ୍ର ତଥା ନିଜ ଦେଶର ଅସଲ ହିତର ଏକ ମାପକାଠି ବୋଲି ମୁଁ ବିଶ୍ୱାସ କରି ଆସିଛି ।

ଆମର ଦେଶ ଆଜି ଦୁଇ ଭାଗରେ ବିଭକ୍ତ ହୋଇ ଗଲାଣି । ସେଥିରୁ ଏକ ଭାଗରେ ଅସ୍ତ୍ରଶସ୍ତ୍ରଗୁଡ଼ିକର ଚଞ୍ଚକଟା ପ୍ରତିଯୋଗିତା, ବିଳାସ ତଥା ଭୋଗବାଦର ସମ୍ଭାର । ବିଗତ ଦୁଇ ଦଶକ ଧରି ଆମକୁ ନିରନ୍ତର କୁହା ଯାଉଛି ଯେ- "ଯୁବଜନଙ୍କୁ କଲେଜକୁ ପଠାଅ, ଖୁବ୍ ପଢ଼ାଅ ଏଇଥିପାଇଁ ନୁହେଁ ଯେ, ସେମାନେ ଖୁବ୍ ଜ୍ଞାନୀ, ଅଭିଜ୍ଞ, ଶିକ୍ଷିତ ବା ନୀତିବାନ୍ ନାଗରିକ ହୁଅନ୍ତୁ । ବରଂ ଏଥିପାଇଁ ପଢ଼ାଅ କାହିଁକିନା ଆମେ ଚାହୁଁ ନାହୁଁ ଯେ, ଆମର ପିଲାମାନଙ୍କୁ ମଜୁରି ଲାଗିବାକୁ ପଡୁ ବା ଅଣ୍ଡା ଭାଂଗି ବଞ୍ଚିବାକୁ ପଡୁ ।" ଆମେ ଚାହୁଁ ନାହିଁ ଯେ, ସାମାଜିକ ଓ ଆର୍ଥିକ ଦୃଷ୍ଟିରେ ପଛୁଆ କୁହାଯାଉଥିବା ଶ୍ରେଣୀ ମଧ୍ୟରେ ସେମାନଙ୍କୁ ରହିବାକୁ ପଡୁ ଯେଉଁଠି ତାଙ୍କର କୌଣସି ଭବିଷ୍ୟତ ନାହିଁ । ଆମେ ଚାହୁଁ ଯେ ଆମର ସନ୍ତାନ-ସନ୍ତତି ଶାନ୍ତି ଓ ସମୃଦ୍ଧିର ସହ ପରିପୂର୍ଣ୍ଣ ଗତିଶୀଳ ଜୀବନରୁ ବଞ୍ଚିତ ନୁହନ୍ତୁ ଏବଂ ନି[illegible] ମନମୁତାବକ ଜୀବନ ବିତାଇ ନ ପାରନ୍ତୁ । ସେମା[illegible] ହାତ-ପାଦକୁ ଦୂଷିତ କରୁଥିବା, କ୍ଲାନ୍ତପଣ [illegible] କରୁଥିବା କାମ କରିବାକୁ ନପଡ଼େ ଏଥିପାଇଁ ସେମା[illegible] 'କଲେଜକୁ ପଠାଅ ଓ ଡିଗ୍ରୀ ମିଳିବାର ବ୍ୟବସ୍ଥା' [illegible]

ଆମେ ଆମର ପିଲାମାନଙ୍କୁ କମ୍ପ୍ୟୁଟର [illegible] ପଠାଉଛୁ କାହିଁକିନା ସେ ସର୍ବାଧୁନିକ (up-to-[illegible]) ତଥ୍ୟ ପାଇବା ପଦ୍ଧତି ଶିଖିପାରିବ, କିନ୍ତୁ ଆମେ [illegible] ପିଲାଙ୍କ ହାତରେ କୋଦାଳ ବା ଫାଉଡ଼ା [illegible] ସେମାନଙ୍କୁ ଗାତ ଖୋଳିବା ପାଇଁ କେବେବି ପଠା[illegible] ନାହୁଁ । କୋଡ଼ି ବା ଖୁରୁପି ନେଇ ଘାସ କାଟିବାକୁ [illegible] ନାହୁଁ । ମଣିଷର ଜୀବନରେ ମାଟି ସହିତ କାମ [illegible] ଏବଂ ଶ୍ରମକରି ଝାଳ ବୁହାଇବାର ଠିକ୍ ଅର୍ଥରେ [illegible] ଆବଶ୍ୟକତା ଅଛି ଏବଂ ଏହା ଆ[illegible] [illegible] । ମନୁଷ୍ୟର ବିକାଶରେ ଏହାର ମଧ୍ୟ ଭାଗିଦାରୀ [illegible] ।

ଆମେରିକା କଂଗ୍ରେସ ଅତି କଟୁତାପୂର୍ଣ୍ଣ [illegible] ପରେ ନ୍ୟୁନତମ ମଜୁରୀ ଦରରେ କିଛି ବୃଦ୍ଧି କରିଛି [illegible] କିଛି ସପ୍ତାହ ପୂର୍ବେ ଶ୍ରୀ କ୍ଲିଣ୍ଟନ ଏହି ବିଧେୟକରେ ଦ[illegible] କରିଛନ୍ତି । ଏତିକି ହେଲା ପରେ ମଜୁରୀଦର [illegible] ୪.୨୫ ଡଲାର ବଦଳରେ ୫.୧[illegible] ଡ[illegible] ହୋଇଯିବାରେ ଆମଦାନୀରେ ଥିବା ଅ[illegible]ନତା [illegible] ସାଂସ୍କୃତିକ ବିଷମତାରେ ବିଶେଷ କିଛି ପରି[illegible] ହେ[illegible] ନାହିଁ ।

ଶାରୀରିକ ଶ୍ରମ କରି କାମ କରୁ[illegible] ଲୋ[illegible] କିଛି ଦେଲାବେଳକୁ ଆମର ହାତ ସବୁ[illegible] [illegible] ଚାଲିଯାଏ । ପ୍ରକୃତରେ ଦେଖିବାକୁ ଗ[illegible] ଚ[illegible], ଶ୍ରମିକ, ବଢ଼େଇ ଆଦିଙ୍କର ଶ୍ରମ ଯୋ[illegible] ହିଁ ଆ[illegible] ଅନେକ ସୁବିଧା ଭୋଗ କରିପାରିବ [illegible] ସୁଖ [illegible] ଅର୍ଜିପାରିବା, ସୁନ୍ଦର ଦେଖାଯାଇ ପାରି[illegible] ଏହା[illegible] ବଡ଼ ହୋଟେଲରେ ରହୁଥିବା ଲୋକେ, ବୁ[illegible]ଜୀବୀ [illegible] କରୁଥିବା କିଛି ବ୍ୟକ୍ତିଙ୍କୁ ଆମେ ଉଦ[illegible]ରଣି ଅ[illegible] ଯେତିକି ଦେଉଦେଉଁ ତା'ର ହଜାର ଭାଗ[illegible] ଭାଗେ [illegible]

ଜଣେ ଶ୍ରମଜୀବୀକୁ ଦେବାକୁ ଆମେ ଖୁବ୍ କୁଣ୍ଠିତ । କୌଣସି ପ୍ରକାର ବିତର୍କ ବିନା ଏ ଦେଶରେ ଆମେ ଏହା ନିଶ୍ଚିତ କରିଦେଇଛୁ ଯେ; ଯେଉଁ ସ୍ତ୍ରୀ-ପୁରୁଷ ବିଲବାଡ଼ିରେ ଲାଗିଛନ୍ତି, ଅଣ୍ଟା ଭାଙ୍ଗି ଶ୍ରମ ଝାଳ ବୁହାଉଛନ୍ତି, ରାସ୍ତା ଓ କୋଠାବାଡ଼ି ତିଆରି କରୁଛନ୍ତି ଏଭଳି ସମସ୍ତ ଶ୍ରମର ମୂଲ୍ୟ; ଏପରି ଲୋକଙ୍କ ଦ୍ୱାରା ନିର୍ଣ୍ଣୟ କରାଯାଏ ଯିଏ କଦାପି ଏହିପରି ଶ୍ରମ କରନ୍ତି ନାହିଁ ।

ଡେମୋକ୍ରେଟିକ୍ ହେଉ ବା ରିପବ୍ଲିକାନ୍, ଆମେସବୁ ଏହା ଚାହୁଁ ଯେ, ଆମ ପାଇଁ ଅନ୍ୟକେହି ସମ୍ଭାଳି ନେଉ, ଆମର ଲୁଗାପଟା ଅନ୍ୟକେହି ସଫା କରିଦେଉ, ଆମର ଶୌଚାଳୟ ଅନ୍ୟକେହି ସଫା କରିଦେଉ, ଆମର ସୁରକ୍ଷାର ଦାୟିତ୍ୱ ଅନ୍ୟ କେହି ବହନ କରୁ । ମାତ୍ର ଏଥିସହ ଆମେ ଏହ ମଧ ଚାହୁଁ ଯେ ଆମର ଏସବୁ କାମକୁ ସେ ଏତେ କମ୍ ପାରିଶ୍ରମିକରେ କରିଦେଉ ଯେପରି ଆମେ ଏକ ଏପରି ଦୁନିଆଁରେ ରହିପାରିବୁ ଯେଉଁଥିରେ ସେମାନେ ପ୍ରବେଶ ମଧ କରିପାରିବେ ନାହିଁ ।

ଏହି ଅବସ୍ଥା କେତେ ବିପଜ୍ଜନକ ଏ ସମ୍ପର୍କରେ ଆମକୁ ଇତିହାସ ଚେତାବନୀ ଦେଇଆସିଛି । ଅନେକବାର ଏ ପୃଥିବୀ ଉପରେ ଏହିପରି ସଭ୍ୟତାଗୁଡ଼ିକ ବିକଶିତ ହୋଇ ଆସିଛି ଯେଉଁଥିରେ ସରକାରୀ କର୍ମଚାରୀ ଏବଂ ରାଜଦରବାରୀମାନେ ମିଳିମିଶି ମେହନତ ଓ ପରିଶ୍ରମ କରୁଥିବା ବହୁଜନ ସମାଜ ଉପରେ ନିଜର ଶାସନ ଚଳାଇଛନ୍ତି । ସେ ସମସ୍ତ ସଭ୍ୟତାଗୁଡ଼ିକ ଶେଷରେ ନଷ୍ଟ ହେଇଗଲେ । ସେମାନଙ୍କର ଚିହ୍ନବର୍ଣ୍ଣ ରହିଲା ନାହିଁ । ରୋମ୍‌ର ସଭ୍ୟତା ହେଉ ବା ମିଶର ସଭ୍ୟତା, ସବୁର ଏହି ଦଶା ହେଲା ।

ଆଜି ଆମେ ପୁଣି କିରାଣୀ, ବିକ୍ରେତା, ପରିଚାଳକ, ଓକିଲ, ଅଧିକାରୀମାନଙ୍କ ସେନା ଛିଡ଼ା କରି ଚାଲିଛୁ । ଏହି ସେନା ପଛୁଆ କୁହାଯାଉଥିବା ଏକ ବିଶାଳ ବର୍ଗସମୂହଙ୍କ ଉପରେ ଆଧିପତ୍ୟ ଜାହିର କରି ବସିଛନ୍ତି ଏବଂ ଏହି ବିଶାଳ ବର୍ଗ ସମୂହ ନିଜ ଶ୍ରମରେ ସେହି ସେନା ପାଇଁ ଅନ୍ନ ବସ୍ତ୍ର ତିଆରି କରି ଦେଉଛି । ବାସଘର ଗଢ଼ି ଦେଉଛି । ଏହି ବ୍ୟବସ୍ଥା କେତେ ମାରାତ୍ମକ ଏହାର ଶିକ୍ଷା ପୂର୍ବରୁ ନଷ୍ଟପ୍ରାୟ ସଭ୍ୟତାଗୁଡ଼ିକରୁ ଗ୍ରହଣ କରିବା ବିଧେୟ ।

ପୂର୍ବର ସେହି ସବୁ ସଭ୍ୟତାଗୁଡ଼ିକ ବହୁତ ପ୍ରଗତି କରିଥିଲେ । ସେହି ସଭ୍ୟତାଗୁଡ଼ିକର ଭଗ୍ନାବଶେଷ ଆଜି ମଧ ଆମକୁ ଆଶ୍ଚର୍ଯ୍ୟ ଚକିତ କରିଦେଉଛି । ମାତ୍ର ସେ ସମସ୍ତ ବୈଭବ ସଉକ ବା ଆରାମ ଏବଂ ବିଳାସିତା ସମାଜର ଅଳ୍ପ କେଇଜଣ ଲୋକଙ୍କ ପାଇଁ ହିଁ ଥିଲା । ପରିଶ୍ରମୀ ଓ ଶ୍ରମଜୀବୀ ବିଶାଳ ବର୍ଗ ସମୂହ ତ ଦଳିତ ଓ ଶୋଷିତ ଥିଲେ । କ'ଣ ଏହିପରି ସଭ୍ୟତା ହେଉଛି ଆମେରିକାର ଆଦର୍ଶ ? ତେବେ ପୁଣି ମାନବୀୟ ମୂଲ୍ୟବୋଧର କ'ଣ ହେବ ? ଶ୍ରମକୁ ମର୍ଯ୍ୟାଦା ପ୍ରଦାନ ଏବଂ ମାନବ-ଗରିମାକୁ ଯଦି ଆମେ ସମ୍ମାନ ନ ଦେବା ତେବେ ଆମର ସଭ୍ୟତାର ମଧ ସେହି ଦଶା ହେବ ଯାହା ପୂର୍ବ ସଭ୍ୟତାଗୁଡ଼ିକର ହୋଇଥିଲା । ●●●

(ଏହି ଲେଖା ଆମେରିକାର ''ଦି ନ୍ୟୁୟର୍କ ଟାଇମ୍‌ସ''ରେ ପ୍ରକାଶିତ ହୋଇଥିଲା)

ଅନୁବାଦ - ରମାକାନ୍ତ ନାଥ

(୧, ଫେବୃୟାରୀ ୧୯୯୮ ''ସର୍ବୋଦୟ'' ରୁ ଗୃହୀତ)



He gave to the world a new kind of philosophy that of the dignity of man, of every man, whether ruled or ruling, free or enslaved, whether white, black, brown or yellow. He called it truth & non-violence. He called it patriotism. He called it religion. **- From Sabarmati Ashram**

# ଅନୁଭୂତି

## ଅଭିନବ ନିଶାମୁକ୍ତି ଅଭିଯାନ

ନାରାୟଣ ବେହେରା

୧୯୯୪ ମସିହା ଜୁଲାଇ ୩୦ ତାରିଖ । ପାଖ ଗାଁ ଗୋଲାପାଟଣାରୁ ବହୁ ଜାକଜମକରେ ବର ଆସିଥାଏ ଆମ ଗାଁକୁ । ହସଖୁସି, ଆନନ୍ଦ ଭିତରେ ଖିଆପିଆ ସରିଲା । ପୁରୋହିତ ବେଦୀକାମ ଆରମ୍ଭ କରି ସାରିଥାନ୍ତି । ବର ମହାଶୟ ମାଗି ବସିଲେ ଗୋଟେ ଉଇଲସ୍ଫ୍ଲେକ୍ ପ୍ୟାକେଟ ସିଗାରେଟ । ରାତି ୧୨ଟା, ଚଟୁଆ ମଫସଲ ଗାଆଁ । ଫ୍ଲେକ୍ ବା କାହୁଁ ମିଳିବ । ଚଳେଇ ନେବା ପାଇଁ ଅନୁରୋଧ କଲେ ଶାଳକ । କଣ୍ଢାପକେଇ କଳି କରିବାକୁ ଆସିଥିବା ଜଣେ ବରଯାତ୍ରୀ ତାଚ୍ଛଲ୍ୟପୂର୍ଣ୍ଣ ଭାଷାରେ କହିଲେ "ବାହାଘର କରୁଛ ଫ୍ଲେକ୍ ଆଣିନ, ଯଦି ଦରକାର ମୋ'ଠୁ ନିଅ ।" କଥାଟା ଉଚ୍ଚଶିକ୍ଷିତ ଶାଳକଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗିଦେଲା । ପଦେ ପଦେ ହେଉ ହେଉ କଥା ବଢ଼ିଲା । ଆମେ ସବୁ ରଫାସଫା ପାଇଁ ବହୁ ଚେଷ୍ଟା କଲୁ । ମାତ୍ର ଦଫା ଶେଷ, ବର ବସିଥିବା ଶେଜରୁ ନିଶା ବଟିକାଟାଏ ମିଳିଲା । ଜଣାପଡ଼ିଲା ସେ ନିଶା ବଟିକା ଖାଏ । ବର ବାହୁଡ଼ି ଗଲା ଶିଶୁପାଳ ହୋଇ ।

କେଜାଣି କାହିଁକି ଏଇ କଥାଟା ଅନେକ ଦିନ ପର୍ଯ୍ୟନ୍ତ ମୁଁ ଭୁଲି ପାରିଲି ନାହିଁ । ବାରମ୍ବାର ମନେପଡ଼ି ମୋତେ ବିବ୍ରତ କରି ପକାଉଥାଏ । ଦିନେ ଆମ ଗାଁର ହାଇସ୍କୁଲ ଓ କଲେଜରେ ପଢୁଥିବା ସବୁ ପିଲାମାନଙ୍କୁ ଏକାଠି କଲି । କେତେ ଆଲୋଚନା ସମାଲୋଚନା ଶେଷରେ ନିଷ୍ପତ୍ତି ନେଲୁ ଯେ ଆଜିଠାରୁ ଆମେ କେହି ପାନ, ବିଡ଼ି, ସିଗାରେଟ, ଗୁଡ଼ାଖୁ, ଗଞ୍ଜେଇ, ମଦ ଇତ୍ୟାଦି ସେବନ କରିବୁ ନାହିଁ । ଅବଶ୍ୟ କେତେ ପିଲା କଥା ରଖିପାରନ୍ତି ନାହିଁ, ପରବର୍ତ୍ତୀ ବୈଠକରେ ସେମାନେ ଅପମାନିତ ହୁଅନ୍ତି । ପ୍ରାୟ ୪/୫ଟା ବୈଠକ ବେଳକୁ ସମସ୍ତେ ସବୁପ୍ରକାର ବଦଭ୍ୟାସ ପରିତ୍ୟାଗ କରିଦେଲେ । ଏଥର ମନରେ ଦମ୍ଭ ଆସିଲା । ତା'ପରେ ଝିଅ ଓ ବୟସ୍କ ଲୋକମାନଙ୍କୁ ନେଇ ଅନେକଥର ବୈଠକ କଲୁ । ସୁଖର କଥା ଧୀରେ ଧୀରେ ଆବାଳ ବୃଦ୍ଧ ବନୀତା ସମସ୍ତେ ନିଶାମୁକ୍ତ ହୋଇଗଲେ ।

ଏସବୁ ସିନା ହୋଇଗଲା । ମାତ୍ର ଚଟୁଆ-ମଦ ଖୋରଧା ମୂଳକରେ ଡାକବଜା । ଆଠ ଘର ଶୁଣ୍ଢି ଦେଶୀମଦ ରାନ୍ଧନ୍ତି । ଦିନେ ସବୁ ମୁରବୀ ଲୋକ ବସି ଡାକିଲୁ ତାଙ୍କୁ । ଘଣ୍ଟାଘଣ୍ଟା ଧରି ନାନାକଥା ବୁଝାଇଲୁ । ମିଥ୍ୟା ସାକ୍ଷ୍ୟ ଦେଇ ହେଉ ବା ସରକାରୀ ସହାୟତାରେ ହେଉ ସେମାନଙ୍କ ନାମରେ ଥିବା ୨୮ଟି ଅବକାରୀ ମୋକଦ୍ଦମା ଉଠାଇ ଦେବୁ, ଚଳିବା ପାଇଁ କିଛି ଜମି ଚାଷ କରିବାକୁ ଦେବୁ, ଅନ୍ୟାନ୍ୟ ବ୍ୟବସାୟ କରିବା ପାଇଁ ଋଣର ବନ୍ଦୋବସ୍ତ କରିଦେବୁ, ଗୋଟିଏ ଯୁବକଙ୍କୁ ସଚୀବାଳୟରେ ଝାଡୁଦାର କାମରେ ନିଯୁକ୍ତି କରିଦେବୁ । ସେମାନେ ଆମ କଥାକୁ ଭାଙ୍ଗି ପାରିଲେ ନାହିଁ । ଯଦି ଭାଙ୍ଗିବେ ଆମେ ଠିକ୍‌ରୂପେ ସାକ୍ଷୀ ଦେଲେ ସବୁ କେସ୍‌ରେ ଜେଲଜୋରିମାନା ହେବା ନିଶ୍ଚିତ । ମଦ ରାନ୍ଧିବା ପାଇଁ ସେମାନେ ଅନେକ ପୋଚ୍ (ଗୋଟିଏ ମାଠିଆରେ ୫ କି.ଗ୍ରା ଗୁଡ଼ ଓ ୫୦୦ ଗ୍ରାମ ଆମୋନିଆ ସାର ପଡ଼ି ୫,୬ ଦିନ ରଖାଯାଇ ପୋଚ୍ କରାଯାଏ ସେଥିରୁ ମଦ ବାହାରେ) ରଖିଥିଲେ । ସେହି ପୋଚ୍ ଗୁଡ଼ିକର ମୂଲ୍ୟ ବାବଦକୁ ମୁଁ ତାଙ୍କୁ (ଏକହଜାର) ଟଙ୍କା ଦେଲି । ପୋଚ୍‌ଗୁଡ଼ିକ ବାଡ଼େଇ ଭାଙ୍ଗି ଦିଆଗଲା । ୧୯୯୫ ମସିହାର ପବିତ୍ର ସ୍ୱାଧୀନତା ଦିବସରେ ଆମ ଚଟୁଆ ଗାଆଁ ଏକ ସଂପୂର୍ଣ୍ଣ ନିଶାମୁକ୍ତ ଗାଁଆରେ ପରିଣତ ହେଲା । ସବୁରି ମୁହଁରେ ଆମର, ଆମ ଗାଁର, ପ୍ରଶଂସା, ପ୍ରଶସ୍ତି ଖବର କାଗଜ, ରେଡ଼ିଓ ଟେଲିଭିଜନ ସବୁଥିରେ ।

ସେତେବେଳକୁ ସମଗ୍ର ଦେଶରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ୧୨୫ ତମ ଜନ୍ମବାର୍ଷିକୀ ପାଳନ କରା ଯାଉଥାଏ । ବାପୁ ନିଶାନିବାରଣ ଉପରେ ବହୁତ ଗୁରୁତ୍ୱ ଦେଉଥିଲେ । ତାଙ୍କରି ସ୍ମୃତିରେ ଆମ ରାଜ୍ୟ ସରକାର ୫ଟି ନିଶାମୁକ୍ତ ଗ୍ରାମକୁ ଏକଲକ୍ଷ ଟଙ୍କା ଲେଖାଏ ପୁରସ୍କାର ଦେବା ପାଇଁ ଘୋଷଣା କରିଥାନ୍ତି । ବେଗୁନିଆଁ-ଆମ ନିର୍ବାଚନ ମଣ୍ଡଳୀ । ସ୍ୱୟଂ ମୁଖ୍ୟମନ୍ତ୍ରୀ ଓ ଆମ ବିଧାୟକ । ଉପନିର୍ବାଚନ ବେଳେ ଜାନକୀବାବୁ ଏକଥା ଶୁଣି ବିସ୍ମୟାବିଭୂତ ହୋଇପଡ଼ିଲେ । କିଏ ବା ବିଶ୍ୱାସ କରିବ ଏ କଥା ! ଶ୍ରୀ ଶ୍ରୀ ଶଙ୍କରେଶ୍ୱର ମହାଦେବଙ୍କ ପୀଠରେ ବସି ଆମ ଗାଁକୁ ଏକ ଆଦର୍ଶ ଗ୍ରାମରୂପେ ଗଢ଼ିତୋଳିବା ପାଇଁ ପ୍ରତିଶ୍ରୁତି ଦେଲେ । ନିର୍ବାଚନରେ ଆମେ ତାଙ୍କୁ ବିଜୟଶ୍ରୀ ବିମଣ୍ଡିତ କଲୁ । ହେଲେ, ସେ ଆମକଥା ସଂପୂର୍ଣ୍ଣ ଭୁଲିଗଲେ । କୌଣସି ଗୋଟିଏ ଗାଁ ପୁରସ୍କୃତ ହୋଇପାରିଲା ନାହିଁ ।

ବାରମାସରେ ତେର ଯାତ୍ରା ପରି ଆଜିକାଲି ସାରାବର୍ଷ କୋଟି କୋଟି ଟଙ୍କା ବ୍ୟୟରେ ବାଳକଶ୍ରମିକ ଅଭ୍ୟୁତ୍ଥାନ, ଏଡ୍‌ସ କାର୍ଯ୍ୟକ୍ରମ, ଯୌତୁକ ବିରୋଧୀ ଆନ୍ଦୋଳନ, ସାକ୍ଷରତା ଅଭିଯାନ ସଡ଼କ ସୁରକ୍ଷା ଦିବସ, ମାତୃସ୍ତନ୍ୟପାନ ଦିବସ ଇତ୍ୟାଦି ପ୍ରତିଦିନ କେତେ ଯେ ଆନ୍ଦୋଳନ, ଅଭିଯାନ ଚାଲିଛି ତାର ହିସାବ ନାହିଁ । ସତରେ ଏହାଦ୍ୱାରା ଆମ୍ଭମାନଙ୍କର କିଛି ଉନ୍ନତି ହୋଇଛି ନା ହେବ ? ଏପର୍ଯ୍ୟନ୍ତ ଆମେ ବୁଝି ପାରିଲୁ ନାହିଁ ଯେ, ଏ ସବୁ କାର୍ଯ୍ୟକ୍ରମ କେବଳ ସେ ନିଶାଗ୍ରସ୍ତ ବଡ଼ପଣ୍ଡାମାନଙ୍କର ହାତ ଚିକ୍‌କଣିଆ ମନୋରଞ୍ଜନ କାର୍ଯ୍ୟକ୍ରମ ।

ମଣିଷ ନିଶାମୁକ୍ତ ହୋଇଗଲେ ଶାରୀରିକ, ମାନସିକ, ଆଧ୍ୟାତ୍ମିକ, ବୌଦ୍ଧିକ, ବୈଚାରିକ, ସାମାଜିକ ସାଂସ୍କୃତିକ, ପାରିବାରିକ ଓ ଆର୍ଥିକ ଉତ୍କର୍ଷତା ଲାଭକରି ଆଲୋକିତ ରାଜ୍ୟରେ ବିଚରଣ କରି ପାରିବ ଏଥିରେ ସନ୍ଦେହ ନାହିଁ । ଆମ୍ଭମାନଙ୍କ ପକ୍ଷେ ଅତ୍ୟନ୍ତ ଗୌରବର କଥା ଯେ ପୁରୀ ସର୍ବୋଦୟ ମେଳା ନିଶାମୁକ୍ତି ପାଇଁ ଆମ ଗ୍ରାମକୁ ସମ୍ବର୍ଦ୍ଧନା ଓ ସଦିଚ୍ଛା ଜ୍ଞାପନ କରିଛନ୍ତି ।

ଆମେ ବାପୁଜୀଙ୍କ ପ୍ରଦର୍ଶିତ ମାର୍ଗରେ ଯତ୍‌କିଞ୍ଚିତ ଆଗେଇ ଚାଲିଛୁ । ଆସନ୍ତୁ ଏ ପବିତ୍ର ଅବସରରେ ଆମେ ପ୍ରଥମେ ନିଜକୁ, ତା'ପରେ ପରିବାରକୁ ଓ ଶେଷରେ ପଡୋଶୀମାନଙ୍କୁ ନିଶା ରାକ୍ଷସ କବଳରୁ ମୁକ୍ତକରି ବାପୁଜୀଙ୍କ ପରିକଳ୍ପିତ ରାମରାଜ୍ୟ ପ୍ରତିଷ୍ଠା କରିବା । ●

ଚଟୁଆ, ଡିଗର, ଖୋର୍ଦ୍ଧା - ୭୫୨ ୦୬୨

## ବଗିଚାକାମ

ଭାଇ, ଚାଲରେ ଏବେ ଚାଲ
କୋଡ଼ି କୋଦାଳ ହାତେ ଧରି ମାଟି ତାଡ଼ି ଚାଲ ॥୦॥

ସବୁ କାମ ଆଗେ ଭାଇ ଦାନା ମୁଠି ସାର
ଆଉ ସବୁ ପଛ, ଆଗ ଦାନାର ଯୋଗାଡ଼ ॥୧॥

ଦାନା ମୁଠି କନା ଖଣ୍ଡି ଆଗ ଦରକାର
ତେବେ ଯାଇ ପାଠପଢ଼ା ଦୁନିଆର ହାଲ ॥୨॥

ମାଟି ଦେବ ଭାତ ଲୁଗା ମାଟି ତୋର ସାର
ମାଟି ଘର ମାଟି ଦ୍ୱାର ସଦା କାରବାର ॥୩॥

ମାଟି ପାଠ ନଜାଣେ ଯେ ପାଠ ବାକି ତାର
ଆଖି ବୁଜି ଅଣ୍ଡାଳେ ସେ ନିପଟ ବେକାର ॥୪॥

ମାଟି ତାଡ଼ି ଗଢ଼ିବାରେ ସୁନାର ସଂସାର
ନିଜେ ଖଟି ନିଜେ ଭୁଂଜ ନିଜ ରୋଜଗାର ॥୫॥

ନିଜେ ଖଟି ଭୁଂଜଇ ଯେ ନିଜ ରୋଜଗାର
ସ୍ୱରାଜ ତା ନିଜ ହାତେ ଡର ନାହିଁ କାର ॥୬॥



# ବିସର୍ଜନ ଦିବସର ଅନୁଭୂତି

**ଡାଃ ଯୁଧିଷ୍ଠିର ଦୀକ୍ଷିତ**

ମହାତ୍ମା ଗାନ୍ଧୀ ପବିତ୍ର ଚିତାଭସ୍ମ ତାଙ୍କ ମହାପ୍ରୟାଣର ଚତୁର୍ଦ୍ଦଶାହ ୧୯୪୮ ଫେବୃଆରୀ ୧୨ ତାରିଖରେ ଭାରତର ବିଭିନ୍ନ ତୀର୍ଥ କ୍ଷେତ୍ରସ୍ଥ ନଦ ଓ ନଦୀରେ ବସର୍ଜନ କରାଯିବାର ଘୋଷଣା ପ୍ରକାଶ ପାଇଲା ବେଳେ ମୁଁ ପୁରୀ କଲେଜର ଛାତ୍ର ଥାଏ । ପୁରୀ ମହୋଦଧିରେ ସେଦିନ ଚିତାଭସ୍ମ ବିସର୍ଜନ ସଂବାଦ ପାଇ ପୁରୀବାସୀ ଅତ୍ୟନ୍ତ ଶୋକାକୁଳିତ ଉଦ୍‌ଗ୍ରୀବତା ପ୍ରକାଶ କରୁଥାଆନ୍ତି ।

ସଂପ୍ରତି ପୁରୀ ସର୍ବୋଦୟ ମେଳାର ସମ୍ପାଦକ ଶ୍ରୀ ଚନ୍ଦ୍ରଶେଖର ନାୟକ ଓ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଜୟକୃଷ୍ଣ ମହାନ୍ତି ଚିତାଭସ୍ମକୁ ପୂର୍ଣ୍ଣ ଶୃଙ୍ଖଳା ଓ ମର୍ଯ୍ୟାଦାର ସହ ବିସର୍ଜନର ବ୍ୟବସ୍ଥା ପାଇଁ ଆମମାନଙ୍କୁ ସ୍ୱୟଂ ସେବକ ଭାବରେ ତାଲିମ ଦେଲେ । ପୁରୀରେ ସ୍ୱାଧୀନତା ସଂଗ୍ରାମର ଏକ ବିସ୍ତୃତ ସାଧନା ପୀଠ ମଂଗୁମଠ ପରିସରରେ ଏହି ତାଲିମ ପ୍ରଦାନର ବ୍ୟବସ୍ଥା ହେଲା । ଆମେ ଯେଉଁମାନେ ଏହି ତାଲିମ ଗ୍ରହଣ କରୁଥିଲୁ ସେମାନଙ୍କ ମଧ୍ୟରେ ସେତେବେଳର କଲେଜ ଛାତ୍ର ଶ୍ରୀ ଶଶୀଭୂଷଣ ମିଶ୍ର ମଧ୍ୟ ଥିଲେ ।

ନିରୂପିତ ଦିବସ ସେହି ଫେବୃଆରୀ ୧୨ ତାରିଖରେ ଏକ ସୁସଜ୍ଜିତ ସ୍ୱତନ୍ତ୍ର ଟ୍ରେନ୍‌ରେ ରାଜ୍ୟପାଳ ✓ ଡଃ କୈଳାଶ ନାଥ କାଟ୍‌ଜୁ ଭସ୍ମ ବହନ କରି ନିର୍ଦ୍ଧାରିତ ସମୟରେ ଷ୍ଟେସନରେ ପହଞ୍ଚିଲେ । ମୁଖ୍ୟମନ୍ତ୍ରୀ ✓ ଡଃ ହରେକୃଷ୍ଣ ମହତାବ, ରାଜସ୍ୱ ମନ୍ତ୍ରୀ ✓ନବକୃଷ୍ଣ ଚୌଧୁରୀ, ✓ଗୋପବନ୍ଧୁ ଚୌଧୁରୀ ଓ ✓ ଲୋକନାଥ ମିଶ୍ର ପ୍ରମୁଖ କଂଗ୍ରେସ ନେତୃବୃନ୍ଦ ଚିତାଭସ୍ମ ସହ ଆସିଥାନ୍ତି । ସେତେବେଳେ ବିରାଟ ଜନତା ଷ୍ଟେସନରେ ସମବେତ । ଡାକବାଜୀ ଯନ୍ତ୍ରର ଉତ୍ପାତ ନଥିବାରୁ ସମସ୍ତେ ବହୁତ ଶୃଙ୍ଖଳିତ ଥାଆନ୍ତି । ଆମେ ସ୍ୱୟଂ-ସେବକମାନେ ଦୁଇ ଧାଡ଼ିରେ ଛିଡ଼ା ହୋଇ ବାଳଚର କାଇଦାରେ ପବିତ୍ର ଭସ୍ମକୁ ସ୍ୱାଗତ କଲୁ । 'ମହାତ୍ମା ଗାନ୍ଧିକି ଜୟ ବାପୁଜୀ ଅମର ରହେ' ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଉଥାଏ । ଭାରତୀୟ ଗୁର୍ଖା ସୈନ୍ୟବାହିନୀ ବନ୍ଧୁକ ମୁନକୁ ତଳକୁ ରଖି ଶୋକ ପ୍ରକାଶ ଶୃଙ୍ଖଳାରେ ଧୀରେ ଧୀରେ ଆଗଉଥାନ୍ତି । ତାଙ୍କ ପଛକୁ ଆମର ସେବାଦଳ ଓ ଆମ ପଛକୁ ବୌଦ୍ଧ ସନ୍ୟାସୀ ଓ ଧର୍ମଗୁରୁମାନଙ୍କ ଗମ୍ଭୀର ସୁମଧୁର ମନ୍ତ୍ର ଉଚ୍ଚାରିତ ହେଉଥାଏ । ବାଦ୍ୟଯନ୍ତ୍ରର ମୃଦୁ-ମନ୍ଦର ଧ୍ୱନି ନିନାଦିତ ହେଉଥାଏ । ରାଜ୍ୟପାଳ ନେତୃଗଣଙ୍କ ଗହଣରେ ଚିତାଭସ୍ମ ପାତ୍ରଟିକୁ ବକ୍ଷ ଦେଶରେ ଧାରଣ କରି ଦିଗବାରିଣୀ ପାଖରେ ନିର୍ମିତ ସ୍ୱତନ୍ତ୍ର ମଣ୍ଡପକୁ ଆଣୁଥାନ୍ତି । ରାମଧୁନ୍ ପ୍ରଚାରିତ ହେଉଥାଏ । ବେଦଧ୍ୱନୀ, ଗୀତାପାଠ ଓ ବିଭିନ୍ନ ଧର୍ମୀୟ ମନ୍ତ୍ର ପାଠ ପରିବେଶ ମଧ୍ୟରେ ବିରାଟ ଶୋକାକୁଳିତ ଜନତାଙ୍କ ଗହଣରେ ଡଃ କାଟ୍‌ଜୁ ମହୋଦଧି ଭିତରକୁ ଯାଇ ଭସ୍ମ ବିସର୍ଜନ କଲେ ।

ପରବର୍ତ୍ତୀ ସମୟରେ ସେହି ସ୍ଥାନଟିକୁ ଗାନ୍ଧୀଘାଟର ମାନ୍ୟତା ଦିଆଗଲା । ପ୍ରତିବର୍ଷ ଫେବୃଆରୀ ୧୨ ତାରିଖରେ ସେହିଠାରେ ରାଜ୍ୟସ୍ତରୀୟ ସର୍ବୋଦୟ ମେଳା ଅନୁଷ୍ଠିତ ହୋଇ ଆସୁଛି । ମହାତ୍ମା ଗାନ୍ଧିଙ୍କ ବିଚାର ଲିପିବଦ୍ଧ ଥିବା ସାହିତ୍ୟ ପାଠ ଓ ସୂତ୍ରଯଜ୍ଞ କରାଯାଉଛି । ବିଭିନ୍ନ ସ୍ଥାନରୁ ଉତ୍ସର୍ଗୀକୃତ କର୍ମୀ ଓ ସ୍ୱାଧୀନତା ସଂଗ୍ରାମୀମାନେ ମେଳାକୁ ଆସି ବିଚାର ବିମର୍ଶ ପୂର୍ବକ ଗାନ୍ଧୀ ବିଚାର ପ୍ରସାର ଉଜ୍ଜୀବିତ କରାଉଛନ୍ତି ।

ଏହି ଗାନ୍ଧୀ ଘାଟର ପରିବେଶ ଅତ୍ୟନ୍ତ ମନୋରମ ଥିଲା । ପର୍ଯ୍ୟାପ୍ତ ଝାଉଁଗଛ ଥିଲା । କାଳକ୍ରମେ ରକ୍ଷଣାବେକ୍ଷଣ ଅଭାବରେ ଖୋଦ୍ ସରକାରଙ୍କ ପରିଚାଳନାଧୀନ ଏହି ପୀଠଟି ଏବେ ମୁକ୍ତ କ୍ରୀଡ଼ାଙ୍ଗନରେ ପରିଣତ ହୋଇ ପୀଠର ଅବକ୍ଷୟ ଓ ମର୍ଯ୍ୟାଦାହାନୀ କରୁଛି । ଏହାର ସୁରକ୍ଷା ପାଇଁ ପୁରୀ ସର୍ବୋଦୟ ମେଳା ସଂଚାଳନା କମିଟି ରାଜ୍ୟ ସରକାର, ଜିଲ୍ଲାପାଳ ଓ ମୁଖ୍ୟ ତତ୍ତ୍ୱାବଧାରକ ପୁରୀ ପୌର ସଂସ୍ଥାଙ୍କ ଦୃଷ୍ଟି ଆକର୍ଷଣ

କରି ଆସୁଥିଲେ ମଧ ଅଦ୍ୟାବଧି କିଛି ହୋଇ ନାହିଁ । ଜାତୀୟ ସ୍ତରରେ ମାନ୍ୟତାପ୍ରାପ୍ତ ଗାନ୍ଧୀଘାଟର ଅବକ୍ଷୟ ଦେଖିଲେ କୋହ ଜାତ ହେଉଛି ଓ ମନ ବିଦ୍ରୋହୀ ହୋଇ ଉଠୁଛି ।

ଛାତ୍ରାବସ୍ଥାରେ ମହାତ୍ମା ଗାନ୍ଧିଙ୍କ ଚିତାଭସ୍ମ ବିସର୍ଜନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିବାରୁ ମୋ' ଠାରେ ଯେଉଁ ପୁଲକ ଜାଗ୍ରତ ହୋଇଥିଲା ତାହା ଜୀବନବ୍ୟାପୀ ଜାଗରୂକ ରହିଛି । ନିୟମିତ ଖଦୀ ପରିଧାନ, ସର୍ବୋଦୟ ପତ୍ରିକା ପାଠ, ଜାତୀୟ ପର୍ବ ପାଳନରେ ଶ୍ରଦ୍ଧା ସର୍ବୋପରି ସର୍ବୋଦୟ ମେଳାର ପ୍ରମୁଖ କର୍ମକର୍ତ୍ତା ଓ ସଦସ୍ୟ ରୂପେ ରହି ନିଜକୁ ଗୌରବାନ୍ୱିତ ମନେ କରୁଛି ।

ରାଧାଗୋବିନ୍ଦ ଲେନ୍, ମାର୍କଣ୍ଡେଶ୍ୱର ସାହି, ପୁରୀ



## ସର୍ବୋଦୟ

**ଗାନ୍ଧୀଜୀ**

ଛାତ୍ରାବସ୍ଥାରେ ପାଠ୍ୟ ପୁସ୍ତକ ଛାଡ଼ା ମୁଁ ଆଉ କିଛି ଅଧ୍ୟୟନ କରି ନଥିଲି କହିଲେ ଚଳେ, ପୁଣି କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିବା ପରେ ତ ସମୟ ବହୁତ କମ୍ ମିଳିଥାଏ । ଏହି ହେତୁରୁ ଆଜି ସୁଦ୍ଧା ମୋର ପୋଥିଗତ ଜ୍ଞାନ ବହୁତ କମ୍ । ମୁଁ ସ୍ୱୀକାର କରୁଛି ଯେ ଏ ଅନାୟାସ ବା ଜବରଦସ୍ତି ସଂଯମ ହେତୁ ମୋର କୌଣସି କ୍ଷତି ହୋଇ ନାହିଁ । ମାତ୍ର ମୁଁ ଏହା କହିପାରେ ଯେ ଯେଉଁ ଅଳ୍ପ କେତେଖଣ୍ଡ ବହି ମୁଁ ପଢ଼ିଛି, ତାହାକୁ ଠିକ୍‌ରୂପେ ହଜମ କରିବା ପାଇଁ ମୁଁ ଅବଶ୍ୟ ଚେଷ୍ଟା କରିଛି । ପୁଣି ମୋ ଜୀବନରେ ଯଦି କୌଣସି ବହି ତତ୍‌କ୍ଷଣାତ୍ ମହତ୍ତ୍ୱପୂର୍ଣ୍ଣ ରଚନାତ୍ମକ ପରିବର୍ତ୍ତନ ଘଟାଇଥାଏ ତେବେ ତାହା ହେଉଛି ରସ୍କିନ୍‌ଙ୍କର 'ଅନ୍ ଟୁ ଦିସ୍ ଲାଷ୍ଟ' ବହି । ପରେ ଏହାକୁ ମୁଁ ଗୁଜୁରାଟୀରେ ଅନୁବାଦ କରିଥିଲି ଏବଂ ତାହା 'ସର୍ବୋଦୟ' ନାମରେ ପ୍ରକାଶିତ ମଧ ହୋଇଥିଲା ।

ମୋର ବିଶ୍ୱାସ ଯେ ମୋର ଅନ୍ତରତମ ପ୍ରଦେଶରେ ଯେଉଁ ଜିନିଷ ରହିଥିଲା ତାହାର ସ୍ପଷ୍ଟ ପ୍ରତିବିମ୍ବ ମୁଁ ରସ୍କିନ୍‌ଙ୍କ ଏ ଗ୍ରନ୍ଥରେ ଦେଖିଲି ଏବଂ ସେହି ହେତୁରୁ ଏହା ମୋ ଉପରେ ତାହାର ଆଧିପତ୍ୟ ବିସ୍ତାର କଲା ଓ ତାହାର ଚିନ୍ତାଧାରା ଅନୁସାରେ ମୋ ଦ୍ୱାରା ଆଚରଣ କରାଇଲା । ଆମ ଅନ୍ତରସ୍ଥିତ ସୁପ୍ତ-ଭାବନାଗୁଡ଼ିକୁ ଜାଗ୍ରତ କରିବାର ଶକ୍ତି ଯାହା ମଧରେ ଥାଏ ସେହି କବି । ସବୁ କବିଙ୍କ ପ୍ରଭାବ ସମସ୍ତଙ୍କ ଉପରେ ଏକାଭଳି ହୁଏ ନାହିଁ । କାହିଁକି ନା ସମସ୍ତଙ୍କ ମଧରେ ସବୁ ଉଚ୍ଚ ଭାବନାଗୁଡ଼ିକ ସମାନ ମାତ୍ରାରେ ନଥାଏ ।

'ସର୍ବୋଦୟ'ର ସିଦ୍ଧାନ୍ତଗୁଡ଼ିକ ମୁଁ ଏହିପରି ବୁଝିଛି:-

୧- ସମସ୍ତଙ୍କର ମଙ୍ଗଳରେ ନିଜର ମଙ୍ଗଳ ନିହିତ ।

୨- ଓକିଲ ଓ ବାରିକ ଉଭୟଙ୍କ କାମର ମୂଲ୍ୟ ସମାନ ହେବା ଉଚିତ, କାରଣ ଜୀବିକା ଅର୍ଜ୍ଜନର ଅଧିକାର ଉଭୟଙ୍କର ସମାନ ।

୩- ସରଳ, ମୂଲିଆ ଓ ଚାଷୀଙ୍କ ଜୀବନ ହିଁ ପ୍ରକୃତ ଜୀବନ ଅଟେ ।

ପ୍ରଥମ କଥାଟି ତ ମୁଁ ଜାଣିଥିଲି । ଦ୍ୱିତୀୟଟିର ଆଭାସ ପାଇଥିଲି । ମାତ୍ର ତୃତୀୟଟି ମୋର ଚିନ୍ତାରାଜ୍ୟକୁ ଆଦୌ ଆସି ନଥିଲା । ପ୍ରଥମ କଥାଟିରେ ଶେଷ କଥା ଦୁଇଟିର ସମାବେଶ ହୋଇଛି ଏ କଥା 'ସର୍ବୋଦୟ'ରୁ ମୋତେ ସୂର୍ଯ୍ୟାଲୋକ ଭଳି ପରିଷ୍କାର ଦେଖାଗଲା । ସକାଳ ହେବାମାତ୍ରେ ମୁଁ ତଦନୁସାରେ ନିଜ ଜୀବନକୁ ଗଢ଼ିବା ଚିନ୍ତାରେ ଲାଗିଲି । ●

(ଆତ୍ମକଥା, ଭାଗ ୪, ଅଧ୍ୟାୟ ୧୮)

He is a symbol of what Indian People want. - **Charlichaplin**

# ଖାଲି କଥାରେ ଦୁଃଖ ଯାଏ ନାହିଁ

**ପାର୍ବତୀ ସ୍ୱାଇଁ**

ପୂର୍ଣ୍ଣତୋୟା ଗଙ୍ଗାକୁ ଭଗୀରଥ ପୃଥିବୀ ପୃଷ୍ଠକୁ ଆଣିବାପରି ସାଧକଶ୍ରେଷ୍ଠ ତପସ୍ୱୀ, କର୍ତ୍ତବ୍ୟନିଷ୍ଠ ତେଜସ୍ୱୀ ୰ପଣ୍ଡିତ କୃପାସିନ୍ଧୁ ହୋତା ମହାଶୟଙ୍କ ତ୍ୟାଗ ଓ ସେବାର ପ୍ରୟୋଗକ୍ଷେତ୍ର ଡେଲାଙ୍ଗ ଥାନା ବେରବୋଇ ଗ୍ରାମରେ ମହାତ୍ମାଗାନ୍ଧୀ ୧୯୩୮ ମସିହା ମଇ ମାସରେ ଗାନ୍ଧି ସେବାସଂଘ ସମ୍ମେଳନକୁ ଆସି ସାତଦିନ ଅବସ୍ଥାନ କରି ସେ ମାଟିକୁ ତୀର୍ଥ ଭୂମିରେ ପରିଣତ କରିଥିଲେ । ସେହି ବେରବୋଇ ଗ୍ରାମରେ କସ୍ତୁରବା ଟ୍ରଷ୍ଟ ଆନୁକୂଲ୍ୟରେ ସେବାମୂଳକ କାମ କରିବା ପାଇଁ ୧୯୭୨ ଅପ୍ରେଲ ମାସରେ ମା' ରମାଦେବୀଙ୍କ ପାଦଧୂଳିକୁ ମୁଣ୍ଡରେ ମାରି ମୁଁ ଆସିଲି । ମା'ଙ୍କର ସବୁ ଦିନିଆ କଥା - ''ନିଜର ସୁଖ ସ୍ୱାଚ୍ଛନ୍ଦ୍ୟକୁ ପଛକୁ ପକାଇ କର୍ତ୍ତବ୍ୟ ନିଷ୍ଠାର ସହ ପାଳନ କରିବା ହିଁ ଧର୍ମ ।''

ସେହି ଉପଦେଶକୁ ଶିରୋଧାର୍ଯ୍ୟ କରି ବେରବୋଇ ଗ୍ରାମରେ ପ୍ରଥମ ବାଲବାଡ଼ି ଓ ପରେ ମାତୃମଙ୍ଗଳ କାମକୁ ମାଧ୍ୟମ କରି ସଫେଇ, ଅସ୍ପୃଶ୍ୟତା ନିରାକରଣ, ସାକ୍ଷରତା ପ୍ରସାର, ସ୍ତ୍ରୀ ଲୋକଙ୍କ ଭିତରେ ଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ହଟାଇ ତାଙ୍କଠାରେ ଆତ୍ମବିଶ୍ୱାସ ଜାଗ୍ରତ କରିବା ଆମର ଧ୍ୟେୟ ଥିଲା । ସକାଳେ ବାଲବାଡ଼ି ସମୟରେ ମା'ମାନେ ନିଜର ପିଲାଙ୍କୁ ଛାଡ଼ିବାକୁ ଆସୁଥିଲେ । ସେମାନଙ୍କର ଆପତ୍ତି ଥିଲା- ''ଅପା ! ଆମ କରଣ, ବ୍ରାହ୍ମଣ ପିଲାଙ୍କୁ ଟିକେ ଅଲଗା ବସାଇବ । ସେମାନେ କଅଣ ହରିଜନ ପିଲାଙ୍କ ପାଖେ ଏକାଠି ବସିବେ ?'' ତେବେ ଆମେ ସେବା ମାଧ୍ୟମରେ 'ମଣିଷ ଦେହେ ଦିବ୍ୟ ଜ୍ଞାନ' - ଏହି ଭଗବତବାଣୀକୁ ବୁଝାଇ ସଫଳ ହେଲୁ । ଛୁଆଁଛୁତ ଭାବନା ଅଳ୍ପଦିନ ଭିତରେ ଉଭେଇ ଗଲା । ପିଲା ସାଙ୍ଗ ହୋଇ ପଢ଼ିଲେ, ଖେଳିଲେ ଏକସଙ୍ଗେ ଖାଇବା ପିଇବା ନିଃସଙ୍କୋଚରେ କଲେ । କ୍ରମେ ସଫାଇ, ଆଲୋଚନା ସଭା, ସହଭୋଜନ ଆଦିରେ ଗାଁ ଝିଅ ବୋହୂମାନେ ସହଯୋଗ କଲେ । ପାଖ ଗ୍ରାମର ମହିଳାମାନଙ୍କର ସହଯୋଗ ମିଳିଲା । ମାଳିସାହି, ଆଇତିନତୁଆ, ବୁଆଲି, ରେଞ୍ଚ, ଉଦୟପୁର ଆଦି ଗାଁକୁ ନେଇ ପ୍ରତିବର୍ଷ ଜାତୀୟ ଦିବସମାନ ପାଳନ କରାଗଲା । ଗାନ୍ଧୀଜୟନ୍ତୀ ପରି କସ୍ତୁରବାଙ୍କ ପୁଣ୍ୟତିଥି ପାଳନ କରାଗଲା । ଏହି ଜାତୀୟ ଦିବସରେ ମହିଳାମାନେ ବିଶେଷଭାବେ ଯୋଗଦେଇ ଗ୍ରାମସଫାଇ ପଦଯାତ୍ରା ଇତ୍ୟାଦି କରି ସଚେତନତା ସୃଷ୍ଟି କଲେ ।

୧୯୯୫ ମାର୍ଚ୍ଚ ମାସରେ ଗ୍ରାମର ଉତ୍ସାହୀ ବିଶିଷ୍ଟ ବ୍ୟକ୍ତିଙ୍କ ଉଦ୍ୟମରେ ଆନନ୍ଦମେଳା ଅନୁଷ୍ଠିତ ହେଲା । ଆମ କାର୍ଯ୍ୟକାରୀ କମିଟିର ପ୍ରତ୍ୟେକ ସଦସ୍ୟ ନିଜର ଶକ୍ତି, ବୁଦ୍ଧି ଓ ଆବଶ୍ୟକ ଅର୍ଥ ଖଟାଇ କାର୍ଯ୍ୟଯୋଜନାକୁ ତ୍ୱରାନ୍ୱିତ କରାଇଲେ । ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ପ୍ରଫୁଲ୍ଲ ନାୟକ, ସ୍ୱରାଜ୍ୟ ବିଶ୍ୱାଳ, ବ୍ରହ୍ମାନନ୍ଦ ମହାନ୍ତି ପ୍ରମୁଖ ଗୁରୁଦାୟିତ୍ୱ ବହନ କରିବାକୁ ଆଦୌ ପଛେଇଲେ ନାହିଁ । ଯେଉଁ ପିଲାଏ ଏହି କେନ୍ଦ୍ରରେ ଜନ୍ମଲାଭ କରିଥିଲେ ଓ ଯେଉଁପିଲା ଏଠାରେ ବିଦ୍ୟାରମ୍ଭ କରିଥିଲେ ସମସ୍ତେ ଉପସ୍ଥିତ ହେଲେ । ପ୍ରଥମ ପିଲାମାନଙ୍କୁ ଉପହାର ଦିଆଗଲା । ଅନ୍ୟମାନଙ୍କୁ ଦୁର୍ବାକ୍ଷତରେ ସମ୍ମାନିତ କରାଗଲା । ଶିକ୍ଷା ବିଭାଗୀୟ ଅଧିକାରୀ ଶ୍ରୀଯୁକ୍ତା ଜ୍ୟୋତ୍ସ୍ନା ବିଶ୍ୱାଳଙ୍କ ମୁଖ୍ୟ ଆତିଥ୍ୟରେ ଅନୁଷ୍ଠିତ ସେହି ସଭାରେ ଶ୍ରୀଯୁକ୍ତା ସୁମିତ୍ରା ଚୌଧୁରୀ, ଶ୍ରୀ ଶରତଚନ୍ଦ୍ର ମହାରଣା, ଅନ୍ନପୂର୍ଣ୍ଣା ମହାରାଣା, ଜୟକୃଷ୍ଣ ମହାନ୍ତି, ଚନ୍ଦ୍ରଶେଖର ନାୟକ ପ୍ରମୁଖ ସମାଜସେବୀ ଓ ସଂଗ୍ରାମୀମାନଙ୍କ ସହ ଟ୍ରଷ୍ଟର ପ୍ରତିନିଧି ତୁଙ୍ଗବିଦ୍ୟା ଦେବୀ ଆଦି ବହୁ ବିଶିଷ୍ଟ ଲୋକ ଯୋଗ ଦେଇଥିଲେ ।

ନିରକ୍ଷରତା ଦୂରୀକରଣ କାର୍ଯ୍ୟକ୍ରମରେ ନିରକ୍ଷରା ମହିଳାମାନଙ୍କୁ ସାକ୍ଷର କରିବା ପାଇଁ ସର୍ଭେ କଲୁ । ତାଙ୍କ ଅବସର ସମୟରେ ଆମେ ଘରେ ଘରେ ପଶି ପାଠ ପଢ଼ାଇଲୁ । ଗାଈ ଚରାଉଥିବା ପିଲାଙ୍କୁ ବାଘୁଆ ଘୋରଡ଼ିରେ ଯାଇ ପାଠ ପଢ଼ାଇଲୁ । କ୍ରମେ ପିଲାଏ ମନଦେଇ ପାଠ ପଢ଼ିଲେ । ଗଜେନ୍ଦ୍ର, ମୁନି, ସୁପାତି, ବିନୀ, ସୁଷମା, ସବିତା ପ୍ରଭାତୀ ଆଦି ପୁଅଝିଅମାନେ ବହି ପଢ଼ିଲେ ମିଶାଣ, ଫେଡାଣ ଶିଖିଲେ । ଏହିପରି ନିରକ୍ଷରତାରୁ ଗାଁ ସଂପୂର୍ଣ୍ଣ ସାକ୍ଷରତା ଲାଭ କଲା । ମଦ,

ଘଣ୍ଟାଇ, ଭାଙ୍ଗ ନିଶାରେ ଗାଁ ଟଳମଳ ହେଉଥାଏ । ମାଳ ବୋଲି ବୋହୂଟିଏ ସାଇବାଣୀ ଦୋକାନରେ ପଶି ତାକୁ ମଦ ନ ବିକିବା ପାଇଁ ଆକଟ କଲା ଓ ସ୍ୱାମୀକୁ ନିଶା କବଳରୁ ରକ୍ଷା କଲା । ଏହିପରି ସ୍ତ୍ରୀଲୋକମାନେ ମଦ୍ୟପ ସ୍ୱାମୀଙ୍କର ମାଡ଼, ଗାଳିକୁ ଭୟ ନକରି ତାର ବିରୋଧ କଲେ । ଏବେ ଗତ ୧୫ ଅଗଷ୍ଟରେ ଆମ ଆଶ୍ରମ ପ୍ରାଙ୍ଗଣରେ ପତାକା ଉତ୍ତୋଳନରେ ମହିଳାମାନେ ଯୋଗଦେଇ ଗାନ୍ଧୀପୀଠରେ ଶପଥପାଠ କଲେ- "ଆମ ଘରେ ନିଶା ପଶିବ ନାହିଁ । ଆମ ଗ୍ରାମରେ ନିଶା ପଶିବ ନାହିଁ ।" ପୂର୍ଣ୍ଣ ସଂକଳ୍ପର ସହ ଆଗେଇ ଗଲେ । ଏହି ଅବସରରେ ଆଡ଼ଭୋକେଟ ସ୍ୱରାଜ୍ୟ ବିଶ୍ୱାଳଙ୍କ ପରିଚାଳନାରେ ୯ଟି ସ୍କୁଲର ଛାତ୍ରଛାତ୍ରୀଙ୍କର ଏକ ବକ୍ତୃତା ପ୍ରତିଯୋଗିତା ଅନୁଷ୍ଠିତ ହେଲା । ଆମ ବାଲବାଡ଼ି ପିଲା ସୁଜାତା ପଣ୍ଡା ଓ ପୁଷ୍ପାଞ୍ଜଳି ପ୍ରତିହାରୀ ଏଥିରେ ଭାଗ ନେଲେ । ପୁଷ୍ପାଞ୍ଜଳିର ବୟସ ମାତ୍ର ୪ ବର୍ଷ । ସେ ସଭାପତିଙ୍କୁ ସମ୍ବୋଧନ କରି ଅତି ଆବେଗଭରା କଣ୍ଠରେ କହିଲା- "ଏ ସ୍ୱାଧୀନତାର ମୂଲ୍ୟକୁ ବଢ଼ାଇବାକୁ ହେବ । ମହାତ୍ମାଗାନ୍ଧୀ ଚାହିଁଥିଲେ ଦେଶ ସ୍ୱାଧୀନ ହେବ । ବେକାର ସମସ୍ୟା ଦୂର ହେବ । ଗାଁ ନିଶାକବଳରୁ ମୁକ୍ତ ହୋଇ ସୁସ୍ଥ ବାତାବରଣ ସୃଷ୍ଟି ହେବ । ସ୍ତ୍ରୀ ଲୋକମାନେ ସମ୍ମାନର ସହିତ ବଞ୍ଚିବେ । କିନ୍ତୁ ତା ହୋଇନାହିଁ ଆସନ୍ତୁ ଆଜି ଶପଥ ନେଇ ଗାନ୍ଧୀବାଣୀକୁ କାମରେ ଲଗାଇବା ।" ଲୋକେ ମନ୍ତ୍ରମୁଗ୍ଧ ପରି ଏହା ଉପଭୋଗ କଲେ । କଅଁଳ ଶିଶୁ ତୁଣ୍ଡର ଏହି ବଡ଼ କଥାଟିକୁ ଉପଲବ୍ଧ କରିବାରେ ହିଁ ଆମର ସାର୍ଥକତା ।

ଆଖପାଖ ଗ୍ରାମରେ ୫ଟି ସମୂହ ଉପାସନା ମଣ୍ଡଳ ଆମେ ଗଠନ କରିଛୁ । ବଡ଼ ବଡ଼ ଝିଅ ଓ ଗ୍ରାମର ମହିଳାମାନେ ମୁଖ୍ୟତଃ ଏଥିରେ ଭାଗ ନିଅନ୍ତି । ପାର୍ଥନା ଶେଷରେ ଗ୍ରାମସ୍ୱରାଜ୍ୟ ଓ ସ୍ୱଦେଶୀ ଦ୍ରବ୍ୟ ଉପରେ ଗୁରୁତ୍ୱ ଦିଆଯାଏ ।

ଆମର ଏହି କେନ୍ଦ୍ରଟି ଆଧ୍ୟାତ୍ମିକ, ନୈତିକ ଓ ଶାରୀରିକ ବିକାଶ ଦିଗରେ ବିରାଟ ସେତୁ ବନ୍ଧକୁ ଗୁଣ୍ଡିଚିମୁଷାର ଦାନ ଦେଉଛି କହିଲେ ଆଦୌ ଅତ୍ୟୁକ୍ତି ହେବନାହିଁ ।●

କନ୍ୟାଶ୍ରମ, ବେରବୋଇ, ପୁରୀ

## ସେବାନୁଭୂତି

ଶାନ୍ତିଲତା ନାୟକ

୧୯୭୧ ମସିହା ଠାରୁ ମୁଁ କସ୍ତୁରବା ଜାତୀୟ ସ୍ମାରକ ନ୍ୟାସରେ କାର୍ଯ୍ୟ କରୁଛି । ଏହି ସମୟ ମଧ୍ୟରେ ମୁଁ ସତ୍ୟଭାମାପୁର, ବରୀ, ଫୁଲଗଡ଼ିଆ ଓ ବେରବୋଇ କେନ୍ଦ୍ରରେ ଅବସ୍ଥାପିତ ହୋଇ ଏବେ ବରି ମାତୃମଙ୍ଗଳ କେନ୍ଦ୍ର. ଦାୟିତ୍ୱରେ ରହିଛି ।

ପ୍ରତ୍ୟେକ ସେବା କେନ୍ଦ୍ରରେ ଆଖପାଖ ଗ୍ରାମମାନଙ୍କରେ ପ୍ରସୂତି ଚର୍ଯ୍ୟା, ରୋଗୀ ଚିକିତ୍ସା, ଗ୍ରାମ ସଫାଇ, ସ୍ୱଚ୍ଛତା ଶିକ୍ଷା, ଗ୍ରାମ୍ୟ ବିବାଦ କଚିରୀକୁ ନନେବା, ଜାତୀୟ ପର୍ବ ପାଳନ ମାଧ୍ୟମରେ ଦେଶାତ୍ମବୋଧ ଶିକ୍ଷା, ସବୁଜ ସାର ପ୍ରସ୍ତୁତି, ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର, ବିଦେଶୀ ଦ୍ରବ୍ୟ ବର୍ଜନ, କ୍ରମେ ବୁଡ଼ି ଯାଉଥିବା ଗ୍ରାମ୍ୟ ଧନ୍ଦାର ପୁନଃ ପ୍ରତିଷ୍ଠା, ସାକ୍ଷରତା ପ୍ରସାର, ପତ୍ରପତ୍ରିକା ଓ ପୁରାଣ ପାଠ ଅଭ୍ୟାସ, ଶ୍ରମ ଶକ୍ତିର ଉପଯୋଗ, କୋଠପାଣ୍ଠି ଗଠନ, ଶିଶୁ ଚର୍ଯ୍ୟାରେ ମାତୃସ୍ତନ୍ୟପାନ ଉପରେ ଗୁରୁତ୍ୱ ଆରୋପ, ସାମୂହିକ ପ୍ରାର୍ଥନା ଆଦି ଗ୍ରାମ୍ୟ ସ୍ୱରାଜ୍ୟ କାମଗୁଡ଼ିକ ନିଷ୍ଠାପର ଭାବରେ ତୁଲାଇ ଆସୁଛି । ଫୁଲଗଡ଼ିଆ ସେବା କେନ୍ଦ୍ରରେ ଏରଣ୍ଡେଇ ଓ ପୋଇତଳିଆ ପ୍ରମୁଖ ଦଶଟି ଗ୍ରାମ, ବେରବୋଇ ସେବା କେନ୍ଦ୍ରରେ ରେଞ୍ଚ, ଡରାବୋଇ, ଉଦୟନାଥପୁର ପ୍ରମୁଖ ଆଠଟି ଗ୍ରାମ, ଅରଙ୍ଗାବାଦ ସେବା କେନ୍ଦ୍ରରେ ବରୀ, ହଳଦିଅଣ୍ଡା, କଣ୍ଟପୋଇ ପ୍ରମୁଖ ୧୬ଟି ଗ୍ରାମ ଉପକୃତ ହେଉଛନ୍ତି । ସରସ୍ୱତୀ ପ୍ରଧାନ ଓ ପାର୍ବତୀ ସ୍ୱାଇଁ ମୋର ମୁଖ୍ୟ ସହକର୍ମୀ ।

ସତ୍ୟଭାମାପୁରରେ ମୋର ଘର । ମୁଁ ଦୀର୍ଘ ଛବିଶ ବର୍ଷ ହେଲା ରଚନାତ୍ମକ କାର୍ଯ୍ୟ କରି ଆସୁଛି । ଆମ ଗାଁରେ ମୋର ଭାଇ, ଭାଉଜ, ପୁତୁରା ଓ ବୋହୂମାନେ ଅଛନ୍ତି । କାର୍ଯ୍ୟ କ୍ଷେତ୍ରରେ ସତ୍ୟଭାମା, ଅଞ୍ଜନା, ଝୁନି, ରଞ୍ଜିତା, ଗୋପାଳ ଶୁର୍ବାଦାନୀ ସହକର୍ମୀ ରୂପେ କାର୍ଯ୍ୟ କରୁଛନ୍ତି । ଏହି ସେବା ଆଧାରିତ କାର୍ଯ୍ୟ ମୋ ଜୀବନକୁ ଶାନ୍ତି ଓ ଆନନ୍ଦ ଦେଉଛି । ●

ସତ୍ୟଭାମା ପୁର, କଟକ

# ଗ୍ରାମ ସଂଗଠନ

**ଶ୍ରୀ ଦୋଳଗୋବିନ୍ଦ ରାଉ**

ଯାଜପୁର ଜିଲ୍ଲା 'ଧାରପୁର' ମୋ ଗାଁ । ୧୯୫୨ ମସିହାରେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଏବଂ ମା' ରମାଦେବୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଶିକ୍ଷକତା ଚାକିରୀ ଛାଡ଼ି 'ଭୂଦାନ' ଆନ୍ଦୋଳନରେ ଯୋଗ ଦେଲି । ଆମ ଗାଁ ଏବଂ ଆଖପାଖ ଗାଁର ଲୋକେ ମଧ୍ୟ ଏହି ଆନ୍ଦୋଳନରେ ଯୋଗ ଦେଲେ । ଆଚାର୍ଯ୍ୟ ହରିହର ଆମ ଅଞ୍ଚଳକୁ ଆସି ପ୍ରେରଣା ଓ ପ୍ରୋତ୍ସାହନ ଦାନ କଲେ । ବନ୍ଧୁ ଗଣେଶ ମହାନ୍ତି, ହରିଚରଣ ଜେନା, ରଙ୍ଗାଧର ଦାସ ଏବଂ ଅନ୍ୟମାନଙ୍କୁ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ଭୂଦାନ ପ୍ରଚାର ଓ ପ୍ରସାର ସହ ଧାରପୁର ଗୋପବନ୍ଧୁ ସେବକ ସଂଘ ଜରିଆରେ ଧାରପୁର ଏବଂ ଆମ ପାଖ ଗ୍ରାମର ହରିଜନ ସାହିରେ ନୈଶ ବିଦ୍ୟାଳୟ ପ୍ରତିଷ୍ଠା, ଅସ୍ପୃଶ୍ୟତା ନିବାରଣ ଓ ଭୂଦାନ ଦାନପତ୍ର ସଂଗ୍ରହ କାର୍ଯ୍ୟ ଦୀର୍ଘ ଦିନ କରିଛି ।

୧୯୫୫ ମସିହାରେ ବିନୋବାଜୀଙ୍କ ଓଡ଼ିଶା ପଦଯାତ୍ରା କାର୍ଯ୍ୟକ୍ରମରେ କୋରାପୁଟ ଜିଲ୍ଲାର ସୁନାବେଡ଼ାକୁ କେନ୍ଦ୍ର କରି ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ଦୁର୍ଲ୍ଲଭ ହନ୍ତାଳଙ୍କ ସହଯୋଗରେ ଆଦିବାସୀ କର୍ମୀ ଦୟାନିଧି ନାୟକଙ୍କୁ ନେଇ ଗାଁ ଗାଁ ବୁଲି ୧୮ ଖଣ୍ଡ ଗ୍ରାମ ଦାନ କରାଇଛି । ସ୍ୱାସ୍ଥ୍ୟଗତ କାରଣରୁ ୧୯୫୬ ମସିହାରେ କୋରାପୁଟରୁ ଫେରି ୪ ବର୍ଷ ଯାଏ ଶ୍ରୀ ମନମୋହନ ଚୌଧୁରୀ ଓ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ବିଭିନ୍ନ କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷ ସହଯୋଗ କରିଅଛି । ୧୯୬୦ ମସିହାରେ ବରୀ ଅଞ୍ଚଳରେ ପ୍ରବଳ ବନ୍ୟା ଦେଖାଦେଲା । ବନ୍ୟାଗ୍ରସ୍ତ ଲୋକଙ୍କ ଅଭଥାନ ଓ ରିଲିଫ୍ ଯୋଗାଣ କେନ୍ଦ୍ର ଦାୟିତ୍ୱରେ ରହିଲି ।

୧୯୬୫ ମସିହା ଜୁନ୍ ମାସରେ କୋରାପୁଟ ସର୍ବୋଦୟ ସମିତିରେ ଯୋଗଦେଲି । ଅମ୍ବର ଚରଖା ଦ୍ୱାରା ସୂତାକଟା ଶିକ୍ଷାଦେବା ସଙ୍ଗେ ସଙ୍ଗେ ଖଦୀବୁଣା ଓ ଗୋତିଛାଡ଼ ଆନ୍ଦୋଳନ, ବନ୍ଧକ ଭୂମି ଛାଡ଼ ଆନ୍ଦୋଳନ ଦ୍ୱାରା ସରକାରଙ୍କ ଚକ୍ଷୁଶୂଳ ହେଲି । ଅତଃପର ମୋର କର୍ମକ୍ଷେତ୍ର ଲକ୍ଷ୍ମୀପୁର ବ୍ଲକରୁ ଡାବୁଗାଁ ବ୍ଲକକୁ ସ୍ଥାନାନ୍ତରିତ ହେଲା । ୧୯୭୭ ମସିହାରେ ଆପତକାଳୀନ ସମସ୍ୟାର ସମ୍ମୁଖୀନ ହୋଇ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ମହାରଣାଙ୍କ ନିର୍ଦ୍ଦେଶକ୍ରମେ ସରକାର ବିରୋଧୀ ପ୍ରଚାରପତ୍ର ନେଇ ବିଭିନ୍ନ ଗ୍ରାମରେ ପ୍ରଚାର କରିବା ସହିତ ଲୋକଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିଥିଲି ।

୧୯୯୪ ମସିହାରେ ଡାବୁଗାଁରେ ଶ୍ରୀ ରାମକୃଷ୍ଣ ସାରଦା ସେବା ସଂଘ ପ୍ରତିଷ୍ଠା କରିଛି । ଏହାଦ୍ୱାରା ସ୍ଥାନୀୟ ଲୋକମାନଙ୍କ ମଧ୍ୟରେ ଭକ୍ତି ଏବଂ ଆଧ୍ୟାତ୍ମିକ ଚେତନା ସୃଷ୍ଟି ହେଉଛି । ଏହି ସଂସ୍ଥା ମାଧ୍ୟମରେ ଗରିବ ଆଦିବାସୀମାନଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟ ସୁବିଧା ଯୋଗାଇ ଦେବା ପାଇଁ ଯୋଜନା ଅଛି । ବର୍ତ୍ତମାନ ସର୍ବୋଦୟ ସମିତିର 'ଖାଉଟି ଭଣ୍ଡାର' ଓ 'ଖଦୀଭଣ୍ଡାର'ର ପରିଚାଳକ ଅଛି । ମୁଖ୍ୟତଃ ରଚନାତ୍ମକ-କାର୍ଯ୍ୟ ହିଁ ମୋ ମାଧ୍ୟମରେ ହୋଇଛି ।



All Land belonge to Gopal (God).
Where then is the boundary Line.
Man is the maker of that line and he can therafore un make it. - **Gandhijee**

All wealth belongs to Divine.
Those who hold it are only Trustees. -**The Mother**

# ଗୌରବାବହ ଅନୁଭୂତି

ଶ୍ରୀ ବିନାୟକ ପାଢ଼ୀ

ଗଞ୍ଜାମଜିଲ୍ଲା ପାତ୍ରପୁର ଅଞ୍ଚଳ ଚୈତନ୍ୟଚନ୍ଦ୍ରପୁର ଶାସନରେ ମୋର ଘର । ଦାରିଦ୍ର୍ୟର କଷାଘାତରେ ୧୯୪୬ ମସିହାରେ କଲିକତାର ଏକ ଝୋଟକଳରେ ଚାକିରୀ କରୁଥିଲା ବେଳେ ମୁଁ ଗାନ୍ଧି-କାମରେ ସାମିଲ ହେବା ପାଇଁ ମଉକା ଉଣ୍ଡୁଥାଏ । ସେତେବେଳେ କଲିକତାରେ ଲାଗିଥିବା ସାଂପ୍ରଦାୟିକ ଦଙ୍ଗା ମହାତ୍ମା ଗାନ୍ଧୀଙ୍କ ନିବେଦନ ଓ ପ୍ରେରଣାରେ ଶାନ୍ତ ହେବା ମୁଁ ନିଜେ ଅନୁଭବରେ ଆଣିଛି । ଗାନ୍ଧିଜୀଙ୍କ ମହାପ୍ରୟାଣ ପରେ ପୂଜ୍ୟ ଚାରୁଚନ୍ଦ୍ର ଭଣ୍ଡାରିଙ୍କ ନେତୃତ୍ୱରେ ଗଠିତ ସର୍ବୋଦୟ ମଣ୍ଡଳ ସହିତ ସାମିଲ ହୋଇ ମୁଁ ଚାକିରୀ ଛାଡ଼ିଲି । ଉତ୍ତର ବଙ୍ଗରେ ବ୍ୟାପକ ନକ୍ସଲପନ୍ଥୀ ଆନ୍ଦୋଳନ ସର୍ବୋଦୟ ମଣ୍ଡଳ ଆନୁକୂଲ୍ୟରେ ଗ୍ରାମଦାନ ମାଧ୍ୟମରେ ପ୍ରତିହତ ହେଲା । ମୁଁ ସେଠାରେ ଶାନ୍ତି ସ୍ଥାପନ କାର୍ଯ୍ୟକ୍ରମରେ ସାମିଲ ହୋଇଥିଲି ।

ଅତଃପର ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ଧର୍ମପତ୍ନୀ ମାଳତୀ ଚୌଧୁରୀଙ୍କ ପ୍ରେରଣା ନେଇ ମୁଁ ଅନୁଗୁଳ ବାଜିରାଉତ ଛାତ୍ରାବାସକୁ ଆସିଲି । ଗାନ୍ଧୀ ଶତବାର୍ଷିକୀ ଅବସରରେ ଖଦୀ ହକିଂ ଭଳି ରଚନାତ୍ମକ କାର୍ଯ୍ୟ କରିଛି । କୋରାପୁଟରେ ନକ୍ସଲପନ୍ଥୀ ସନ୍ଦେହରେ ବହୁ ନିରପରାଧ ଆଦିବାସୀଙ୍କ ପ୍ରତି ପୁଲିଶ ଜୁଲମର ପ୍ରତିବାଦ ଓ ପ୍ରତିକାର ପାଇଁ ସେଠାରେ ଅନ୍ୟମାନଙ୍କ ସହ ମୁଁ ମଧ୍ୟ ସାମିଲ ହୋଇଥିଲି । ଏହି ଅବସରରେ ଆଦିବାସୀମାନଙ୍କ ମଧ୍ୟରେ ନିର୍ଭୀକତା, ସାକ୍ଷରତା ପ୍ରସାର, ନିଶାମୁକ୍ତି, ସବୁଜ ସାର ପ୍ରସ୍ତୁତି, ତାଳ ଓ ଖଜୁରୀ ଗୁଡ଼ ତିଆରି ଆଦି ରଚନାତ୍ମକ କାର୍ଯ୍ୟ କରିଛି । ଗଚଣ୍ଡା ସେବାକେନ୍ଦ୍ର ମୋର କର୍ମପୀଠ ଥିଲା ।

୧୯୭୭ ମସିହାରୁ ରାଉରକେଲାରେ ଅଧ୍ୟାପକ ଶିବପ୍ରସାଦ ମିଶ୍ରଙ୍କ ଅଧ୍ୟକ୍ଷତାରେ ଗଠିତ ନବଜୀବନ ମଣ୍ଡଳ କେନ୍ଦ୍ରସହ ମୁଁ ସଂପୃକ୍ତ । ବେଦବ୍ୟାସରେ ସ୍ୱର୍ଗୀୟ ଆଚାର୍ଯ୍ୟ ହରିହରଙ୍କ ଚିତାଭସ୍ମ ବିସର୍ଜନ ପରେ ଖରିଆବାହାଲ ବସ୍ତି ଅଞ୍ଚଳକୁ କେନ୍ଦ୍ର କରି ନୈଶ ବିଦ୍ୟାଳୟ ମାଧ୍ୟମରେ ସାକ୍ଷରତା ପ୍ରସାର କଲି । ଜମ୍ମୁ ଅଞ୍ଚଳରେ ପ୍ରବଳ ଘୂର୍ଣିବାତ୍ୟା ଦ୍ୱାରା କ୍ଷତିଗ୍ରସ୍ତ ଲୋକମାନଙ୍କ ସାହାଯ୍ୟାର୍ଥେ ରାଉରକେଲାରୁ ସାହାଯ୍ୟ ସଂଗ୍ରହ କରି ମା' ରମାଦେବୀଙ୍କ ନେତୃତ୍ୱରେ ଖରିନାସି କେନ୍ଦ୍ରରେ ସେବା କାର୍ଯ୍ୟ କରିଛି । ଖରିଆ ବାହାଲ ବସ୍ତିରେ ୧୯୭୮ରେ ସାତଦିନ ସତ୍ୟାଗ୍ରହ କରି ଓ କାଂସବାହାଲ ଷ୍ଟେସନ ପାଖ ପଡ଼ିଆରେ ପୂଜ୍ୟା ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇ ମଦଭାଟି ଉଠାଇ ଦିଆ ଯାଇ ପାରିଛି ।

୧୯୭୫-୭୬ ମସିହାରେ ଜରୁରୀକାଳୀନ ପରିସ୍ଥିତିରେ ଦୁଇଥର ଗିରଫ ହୋଇ ରାଉରକେଲାରେ ବନ୍ଦୀ ଜୀବନ କଟାଇଛି । ରାଉରକେଲା ଷ୍ଟିଲ ପ୍ଲାଣ୍ଟରୁ ମୁଁ ଗାନ୍ଧୀ ଶାନ୍ତି ପୁରସ୍କାର ଲାଭ କରିଛି । ଉତ୍କଳ ସାଂସ୍କୃତିକ ପରିଷଦ, ବିଜ୍ଞାପିତ ଅଞ୍ଚଳ ସାଂସ୍କୃତିକ ପରିଷଦ, ଦୈନିକ 'ଉତ୍କଳମେଲ' ଓ ରୋଟାରି କ୍ଲବଙ୍କ ଦ୍ୱାରା ମୁଁ ସମ୍ମାନିତ ହୋଇଛି । ରାଉରକେଲା ସେବା କେନ୍ଦ୍ର କୌଣସି ସରକାରୀ ସାହାଯ୍ୟ ନିଏ ନାହିଁ । ସର୍ବୋଦୟ ପାତ୍ର ଓ ବଦାନ୍ୟ ଜନସାଧାରଣଙ୍କ ଆର୍ଥିକ ସାହାଯ୍ୟ ଦ୍ୱାରା କେନ୍ଦ୍ର ପରିଚାଳିତ ହୁଏ । ୧୯୮୪ ପରେ ''ବିନୋବା ଶିଶୁ ବିଦ୍ୟାଳୟ'' ସରକାର ପରିଚାଳନା କରୁଛନ୍ତି ।

ଚାକିରୀଛାଡ଼ି ସେବା ଆଧାରିତ ରଚନାତ୍ମକ କାର୍ଯ୍ୟକ୍ରମରେ ମୁଁ ଜୀବନ ବିତାଉଥିବାରୁ ଅତ୍ୟନ୍ତ ଗୌରବ ଅନୁଭବ କରୁଛି । ●

ମୁଖ୍ୟକର୍ମୀ, ଉତ୍କଳ ନବଜୀବନ ମଣ୍ଡଳ
ରାଉରକେଲା ଶାଖା, ଜଗଦା ସେବାକେନ୍ଦ୍ର

I who admire your work for the world.

- James Thomas Williom
185 Archway - 19.1.30

# ମର୍ମବେଦନା

**ଶ୍ରୀ ସୁରେନ୍ଦ୍ର ନାଥ ମହାନ୍ତି**

କେନ୍ଦ୍ରାପଡ଼ା ଜିଲ୍ଲା ଚାନ୍ଦୋଳା ପାଖ କୁଆରପୁର ଗ୍ରାମ ମୋର ଜନ୍ମସ୍ଥାନ । ମହାତ୍ମା ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ପିଲାଟି ଦିନରୁ ସ୍ୱାଧୀନତା ଆନ୍ଦୋଳନରେ ମୁଁ ଆତ୍ମୋତ୍ସର୍ଗ କରିଥିଲି । ସ୍ୱାଧୀନତା ଲାଭ ପରେ ସାଂସାରିକ ଜୀବନ ଅପେକ୍ଷା ସାମୂହିକ ଜୀବନର ସ୍ୱର୍ଗ ସୁଖ ଲାଭ ପାଇଁ ଆତ୍ମୀୟତାର ଭାବନା ନେଇ ନାନା ଘାତ ପ୍ରତିଘାତ ମଧ୍ୟଦେଇ ଗ୍ରାମସ୍ୱରାଜ୍ୟ ପ୍ରତିଷ୍ଠା ଲକ୍ଷ୍ୟରେ ଜୀବନକୁ ଉତ୍ସର୍ଗ କରିଛି ।

ଆମ ଗାଁଠାରୁ ଦୁଇମାଇଲ ଦୂରରେ କୁସନପୁରରେ ପୁରୀ ଜିଲ୍ଲା ବାଣପୁରର ଖଦୀକର୍ମୀ ଶ୍ରୀ ପୁରୁଷୋତ୍ତମ ମହାପାତ୍ରଙ୍କ ପରିଚାଳନାରେ ଏକ ସୂତାକଟା କେନ୍ଦ୍ର ଥିଲା । ସ୍ଥାନୀୟ ତନ୍ତୀମାନେ ୬୦ ଅଙ୍କର ସୂତାରେ ଭଲ ଲୁଗା ବୁଣୁଥିଲେ । ସମବାୟ ପରିଦର୍ଶକ ବ୍ରହ୍ମାନନ୍ଦ ଦାସ ନିୟମିତ ଖଦୀ ବ୍ୟବହାର କରୁଥିଲେ । ଏହି କେନ୍ଦ୍ର ଦ୍ୱାରା ଆକୃଷ୍ଟ ହୋଇ ପଥରଲଗା ଅରଟରେ ସୂତାକଟି ତନ୍ତୀ ସଦେଇ ଘଡ଼େଇଙ୍କ ଦ୍ୱାରା ବୁଣାଇ ପିନ୍ଧୁଥିଲି । ୧୯୨୮ ମସିହାରେ କଂଗ୍ରେସ ନେତ୍ରୀ ସରଳାଦେବୀ ଓ କେନ୍ଦ୍ରାପଡ଼ା ଲୋକାଲ ବୋର୍ଡ ଚେୟାରମ୍ୟାନ ରଘୁନାଥ ମହାନ୍ତି ଶଗଡ଼ରେ ଆସି ଜହଙ୍ଗର ମଠରେ ମହିଳା ସଭା କରାଇ କଂଗ୍ରେସ ବାର୍ତ୍ତା ପ୍ରଚାର କରୁଥିଲେ । ସେମାନଙ୍କଠାରୁ ଆମ ପରିବାର ସ୍ୱଦେଶୀ ଦ୍ରବ୍ୟ ଓ ଟ୍ରେଞ୍ଚ ପାଇଖାନା ବ୍ୟବହାର ଶିକ୍ଷା ପାଇଥିଲେ । ମହାତ୍ମା ଗାନ୍ଧିଙ୍କ ପ୍ରବର୍ତ୍ତିତ ବୁନିୟାଦୀ ଶିକ୍ଷା ପ୍ରଚଳନ ଗ୍ରାମ୍ୟ ସଂସ୍କୃତି ଓ କଳାକୁଶଳତାକୁ ଅଧିକରୁ ଅଧିକ ପ୍ରଚଳନ କରିବା ପାଇଁ ଧ୍ରୁବ ବେହେରା, ଗୁରୁଚରଣ ଦାସ, ସାଧୁ ଦାସ ଓ ନରହରି ରାଉତ ପ୍ରମୁଖ ସହଯୋଗୀଙ୍କ ସହ ପାଖଆଖ ଗାଁରେ ପ୍ରତ୍ୟକ୍ଷ କାର୍ଯ୍ୟ କରୁଥିଲି । ମାଳତୀ ଦାସ ଓ ଶିକ୍ଷାମଣ୍ଡଳ ପରିଦର୍ଶକ ବହୁତ ସହଯୋଗ କରୁଥିଲେ । ସ୍ୱାଧୀନତା ସଂଗ୍ରାମୀ ଶିକ୍ଷାବିତ୍ ଚିତ୍ତରଞ୍ଜନ ଦାସ ଚମ୍ପଝରି ମୁଣ୍ଡାରେ "ଜୀବନ ବିଦ୍ୟାଳୟ" ପ୍ରତିଷ୍ଠା କରି ଜାତୀୟ ସ୍ତରରେ ଏକ ଚମକ ସୃଷ୍ଟି କରିଥିଲେ । ପାଠପଢ଼ା ସହ ଶରୀରଶ୍ରମ, ଆରୋଗ୍ୟବିଧାନ, ଆସନ ପ୍ରାଣାୟମ ଇତ୍ୟାଦି ଶିକ୍ଷା ଦିଆଯାଉଥିଲା । ଏହି ପରିପ୍ରେକ୍ଷୀରେ ଭିକାରୀ ପଟ୍ଟନାୟକଙ୍କର ଜଳଚିକିତ୍ସା, ଗିରିଧାରୀ ଜଗତିଙ୍କର ପ୍ରାକୃତିକ ଚିକିତ୍ସା ଓ ଲକ୍ଷ୍ମଣ ମିଶ୍ରଙ୍କର ଗୃହବୈଦ୍ୟ ଚିକିତ୍ସା ଆମେ ଅଭ୍ୟାସ କରୁଥିଲୁ । ତଦ୍ୱାରା ଚର୍ମରୋଗ ଓ ସେରିବ୍ରାଲ ମ୍ୟାଲେରିଆ, ସାଧାରଣ ବନମାଟି ପ୍ରଲେପ ଓ ପଗଡ଼ ଜଳ ପିଇବା ଦ୍ୱାରା ମୋର ପିଉସୀ ଭଗବତୀ ଓ ଗୁରୁଚରଣ ମହାନ୍ତି ଜୀବନବ୍ୟାପୀ ଆରୋଗ୍ୟ ଲାଭ କରିଥିଲେ । ହରେକୃଷ୍ଣ ସାମଲ, ଚଉଦକୁଲାଟର ଘନଶ୍ୟାମ ପଟ୍ଟନାୟକ, ପୂଜ୍ୟ ଗୋପବନ୍ଧୁ ଚୌଧୁରୀ, ଭଗୀରଥୀ ମହାପାତ୍ର, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ପ୍ରମୁଖଙ୍କ ପ୍ରେରଣା ଓ ତତ୍ତ୍ୱାବଧାନରେ ବରୀ ଆଶ୍ରମରେ, ରାମଚନ୍ଦ୍ରପୁରସ୍ଥିତ କସ୍ତୁରବା ସ୍ମାରକ ଟ୍ରଷ୍ଟରେ, କଟକ ସ୍ୱରାଜ ଆଶ୍ରମରେ ଓ ଗୁଣନିଧି ଭବନରେ କାର୍ଯ୍ୟ କରିଥିଲି । ବରୀ ଆଶ୍ରମରେ ସବୁଜସାରର ପ୍ରୟୋଗରେ ଲାଭଦାୟକ ପନିପରିବା ଉତ୍ପନ୍ନ କରୁଥିଲୁ । ତଦାନିନ୍ତନ ଯୋଜନା କମିଶନ୍‌ର ସଦସ୍ୟ ପାନାଲାଲ ଏହି ପ୍ରୟୋଗର ସଫଳତାରେ ଅଭିଭୂତ ହୋଇଥିଲେ । ପୁରୀଜିଲ୍ଲା ବୀରବଳଭଦ୍ରପୁରର ଗୁରୁଜୀ ଫକୀର ମିଶ୍ର ତାଙ୍କ ଅଞ୍ଚଳରୁ ପାଟକପୁରା କଦଳୀପୁଆ ଆଣିଥିଲେ । ଆମ ପ୍ରୟୋଗ କ୍ଷେତ୍ରରେ ଚାଷକରି ଏକ ଆଠଗଉଣିଆ ହାଣ୍ଡିରେ ପୁରିଗଲା ଭଳି କାନ୍ଧି କାନ୍ଧି କଦଳୀ ଫଳାଉଥିଲୁ । ଗୋଟିଏ ଗୋଟିଏ ଲାଉଗଛରୁ ପ୍ରାୟ ତିନିଶହ ଲାଉ ଫଳୁଥିଲା । ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା ନିଜ ହାତରେ ମଳମୂତ୍ର ସଫାକରି ଆମର ଆଦର୍ଶ ସ୍ଥାନୀୟ ହୋଇଥିଲେ ।

ମନେ ପଡ଼ୁଛି ୧୯୩୧-୩୨ ମସିହାରେ ଉତ୍କଟ ଛୁଆଁ ଛୁଇଁ ଭାବନା ଥିଲାବେଳେ ବାଙ୍କମୁଣ୍ଡାଇ ଚାନ୍ଦୋଳ ଗ୍ରାମଦେବତାଙ୍କ ପୀଠରେ ଅନୁଷ୍ଠିତ ଅଷ୍ଟପ୍ରହରୀ

ନାମଯଜ୍ଞରେ ଶିକ୍ଷକ ବନମାଳୀ ବ୍ରହ୍ମଚାରୀଙ୍କ ନିର୍ଲିପ୍ତ ସହଯୋଗରେ ଓ ୧୯୫୨ ମସିହାରେ କଟକ ମଠସାହି ମେହେନ୍ତର ବସ୍ତିରେ ଶ୍ରୀ ରବିରାୟଙ୍କ ଉପସ୍ଥିତିରେ ଜାତି-ବର୍ଣ୍ଣ ନିର୍ବିଶେଷରେ ପଂକ୍ତି ଭୋଜନ କରାଇବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲି । ଜୟପ୍ରକାଶଜୀଙ୍କ ସଂପୂର୍ଣ୍ଣ ବିପ୍ଳବ ଆନ୍ଦୋଳନ ଓ ସନ୍ଥ ବିନୋବାଙ୍କ ଭୂଦାନ ଯଜ୍ଞରେ ସକ୍ରିୟ ଭାଗ ନେଇଛି । ସମ୍ପ୍ରତି କେନ୍ଦୁଝର ଜିଲ୍ଲା ସୋମଗିରିସ୍ଥିତ ଆଦିବାସୀ ସ୍ୱାସ୍ଥ୍ୟକେନ୍ଦ୍ରରେ ରହୁଛି । ଯେଉଁ ସୁଖୀ ଓ ସମୃଦ୍ଧି ଦେଶ ଦେଖିବାପାଇଁ ଆମେ ଆଶା ବାନ୍ଧିଥିଲୁ ତାହା ନୈରାଶ୍ୟରେ ପରିଣତ ହୋଇଥିବାରୁ ଗଭୀର ମର୍ମବେଦନା ଅନୁଭବ କରିବାକୁ ପଡୁଛି ।

ସର୍ବୋଦୟ ସେବକ , ସୋମଗିରି, ଜଘିଂରା, କେନ୍ଦୁଝର



## ଗ୍ରାମ ସ୍ୱରାଜ ପଥେ

ନରହରି ଜାନୀ

୧୯୮୮ ସାଲରେ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ମହମ୍ମଦ ବାଜି ଆଜ୍ଞାଙ୍କ ସହ ସାକ୍ଷାତ୍ ହେବାପରେ 'ସର୍ବୋଦୟ' ବିଷୟରେ କିଛି ଜାଣିଲି । ପ୍ରଥମେ ୧୯୮୮ରେ ବନେ 'ସର୍ବୋଦୟସମାଜ ସମ୍ମିଳନୀ'କୁ ଯିବା ସୁଯୋଗ ପାଇଥିଲି । ସେଥିରେ 'ଗୋ-ହତ୍ୟା ବନ୍ଦ' ସତ୍ୟାଗ୍ରହ ଚାଲିଥିବା ସ୍ଥଳ ଦେଖିଲି । ମୋ ଆଖିରୁ ଲୁହ ଝରି ଆସିଥିଲା । ସେ 'ଗୋହତ୍ୟା' ଦେଖି ଭାରତ ଭଳି ଧର୍ମପରାୟଣ ଦେଶରେ ଏଭଳି ଅପକର୍ମ ବିରୁଦ୍ଧରେ ଜନଜାଗୃତି ପାଇଁ ସଂକଳ୍ପ ନେଲି । ୧୯୮୯ ସାଲରେ ଅଖିଳଭାରତ 'ଗୋରକ୍ଷା ଅଭିଯାନରେ ଶ୍ରୀଯୁକ୍ତ ରାଧାକୃଷ୍ଣ ବଜାଜ ଓଡ଼ିଶା ଆସିଥିଲେ । ତାଙ୍କ ସହ ନବରଙ୍ଗପୁର ଠାରୁ ସାରା ଓଡ଼ିଶା ବୁଲିଲି । ୧୯୯୦ ସାଲରେ - ଆମ କୋରାପୁଟ ଜିଲ୍ଲାରୁ ଗୋରୁଗାଈ ଆନ୍ଧ୍ର ସୀମାକୁ ନେଇ ହତ୍ୟା କରା ଯାଉଥିବା ବିଷୟରେ ସିମିଳିଗୁଡ଼ା ଠାରେ ଏକ 'ଗୋରକ୍ଷା' ସଭାରେ ଯୋଗଦେଇ ଗୋରକ୍ଷା ସମ୍ବନ୍ଧରେ ଜନଚେତନା ଜାଗରଣ କରିଥିଲି । ରାମ ଜନ୍ମଭୂମି ବାବ୍‌ରିମସଜିଦ୍ ମାମଲାରେ ଘଟିଥିବା ସାମ୍ପ୍ରଦାୟିକ ସମସ୍ୟାକୁ ନେଇ ୧୯୯୧ ଜାନୁଆରୀରେ ସବୁ ସର୍ବୋଦୟ କର୍ମୀଙ୍କ ସହ ଦେଶର ଶାନ୍ତି, ସଦ୍‌ଭାବନାକୁ ବଜାୟ ରଖିବା ପାଇଁ ୪୮ ଘଣ୍ଟିଆ ଉପବାସରେ ଭାଗ ନେଇଥିଲି । ଅସହିଷ୍ଣୁ ଲୋକେ ଠେଙ୍ଗାରେ 'ବାଜି ଆଜ୍ଞା'ଙ୍କ ମୁଣ୍ଡ ଫଟାଇ ଦେଇଥିଲେ । ମୁଁ ଥିଲି ପ୍ରତ୍ୟକ୍ଷଦର୍ଶୀ । ୧୯୯୨ରେ ଦିଲ୍ଲୀରେ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ଅବାଧ ପ୍ରବେଶ ବିରୁଦ୍ଧରେ ଅନୁଷ୍ଠିତ କୃଷକ ସମାବେଶରେ ଯୋଗ ଦେଇଥିଲି । ୧୯୯୩ ସାଲରେ 'ଗ୍ରାମସ୍ୱରାଜ୍ୟ' ପ୍ରଚାର ପାଇଁ ରାଜସ୍ଥାନର ବିକାନୀର ଜିଲ୍ଲାରେ ୧୫ ଦିନ କୁମାର ପ୍ରଶାନ୍ତଙ୍କ ସହ ପଦଯାତ୍ରା କରିଥିଲି । ୧୯୯୪ ସାଲି ଜାନୁଆରୀ ମାସରେ ଅଖିଳଭାରତ 'ସନ୍ଥବିନୋବା' ଜନ୍ମଶତାବ୍ଦୀ ଉପଲକ୍ଷ୍ୟେ ଅବିନାଶ ଭାଇଙ୍କ ସହ ୨୦ଦିନ ଓଡ଼ିଶାଯାତ୍ରାରେ ଯୋଗ ଦେଇ ନବରଙ୍ଗପୁର ଜିଲ୍ଲା ମଧ୍ୟପ୍ରଦେଶ ସୀମାଠାରୁ ବୋରିଗୁମ୍ମା ପର୍ଯ୍ୟନ୍ତ ତାଙ୍କ ରହଣୀର ବ୍ୟବସ୍ଥା ସହ ତାଙ୍କ ହିନ୍ଦୀ ଭାଷଣକୁ ଓଡ଼ିଆ ଭାଷା ତଥା ଆଞ୍ଚଳିକ ଆଦିବାସୀ ଭାଷାରେ ଅନୁବାଦ କରି ଲୋକଙ୍କୁ ବୁଝାଇଥିଲି । ୧୯୯୫ ସାଲରେ ସର୍ବୋଦୟ ସମାଜ ସମ୍ମିଳନୀକୁ ଗୁଜୁରାଟ ଯାଇଥିଲି । ୧୯୯୪ ସାଲରେ ନିଜର ଏକ 'କର୍ମକେନ୍ଦ୍ର' ବାଛି ନେବାକୁ ମନ ବଳିଲା । ବାଜି ଆଜ୍ଞାଙ୍କ ସହ ପରାମର୍ଶ କରି ବିଜାପୁର ସ୍ଥିତ 'ଗାନ୍ଧୀ-ଘର'କୁ ଆଦରି ନେଲି । ଏହା ଭଗ୍ନ ଅବସ୍ଥାରେ ପଡ଼ିଥାଏ । ଗାଁରେ ଲୋକେ ସନ୍ଧ୍ୟା ହେଲେ ସେ ବାଟରେ ଯିବାକୁ ଭୟ କରୁଥିଲେ । ଏହି ଘର ସଫାସୁତୁରା କରି 'ନୟନା' ଅପାଙ୍କ ସହ ରହିବା ଅରମ୍ଭ କଲି । କ'ଣ କରିବି -ମନେ ମନେ ଚିନ୍ତା କରୁଥାଏ ଏବଂ ଲୋକଙ୍କ ସହ ମିଶୁଥାଏ । 'ଗ୍ରାମସ୍ୱରାଜ୍ୟ, କଥା କହିଲେ ଲେକେ ଶୁଣି ନ ଶୁଣିଲା ପରି ରହନ୍ତି । କ୍ରମେ ଲୋକେ ବୁଝିବାକୁ ମନ ଦେଲେ । 'ଗାନ୍ଧୀ-ବିନୋବା ସେବା ପ୍ରତିଷ୍ଠାନ' ବୋଲି ସଂସ୍ଥାଟିଏ ଗଠନ କଲୁ । 'ବାଜିଆଜ୍ଞା' କିଛି ଆର୍ଥିକ ସହାୟତା ଦେଲେ । ୨୫ ଜଣ ଛୋଟ ଛୋଟ ଝିଅଙ୍କୁ ନେଇ ଗାଁରେ

ଏକ 'କନ୍ୟାଶ୍ରମ' ଖୋଲିଲୁ । ଗାଁର ଛୋଟ ଝିଅମାନଙ୍କୁ ସ୍କୁଲରେ ପଢ଼ାଇବା ପାଇଁ ତାଙ୍କ ମା' ବାପାଙ୍କୁ ବୁଝାଇଲୁ । ଝିଅମାନଙ୍କର ଖାଇବା-ପିଇବା ଓ ବହିପତ୍ର ବ୍ୟବସ୍ଥା ପାଇଁ ମାସକୁ ପନ୍ଦରଦିନ 'ନୟନା ଅପା'ଙ୍କ ସହ ଉମରକୋଟ, ଡାବୁ ଗାଁ ବୁଲି ବୁଲି ଚାନ୍ଦା କରୁଥିଲୁ । ଆଶ୍ରମରେ ଆର୍ଥିକ ଅସୁବିଧା ଥାଏ । 'ନୟନା ଅପା ରୋଷେଇ କରନ୍ତି । ମୁଁ ଚାଉଳ ପତ୍ର ଯୋଗାଣ, ସନ୍ଧ୍ୟା ପ୍ରାର୍ଥନା ଏବଂ ପିଲାଙ୍କୁ ପାଠ ପଢ଼ାଇବା କାମ କରୁଥିଲି । ଆଉ ଅନ୍ୟାନ୍ୟ ବିଷୟ ବୁଝୁଥିଲି । ଜିଲ୍ଲାପାଳଙ୍କୁ ଲିଖିତ ଜଣାଇବାରେ ସେ ଆଶ୍ରମର ଭଙ୍ଗା ଘରକୁ ଦେଖି ୬୫ ହଜାର ଟଙ୍କା ଅନୁଦାନ ଦେଲେ । ସେଥିରେ ପଢ଼ା ଘରଟିଏ ତିଆରି ହେଲା । ଏଇଭଳି ତିନିବର୍ଷ ଆଶ୍ରମ ଚଳାଇଲି । ଗାଁ ଲୋକେ ଧୀରେ ଧୀରେ ଆମ ବିଷୟରେ ଜାଣିବା ଆରମ୍ଭ କଲେ ଏବଂ ଆମ ପାଖକୁ ଆସି କଥାବାର୍ତ୍ତା କଲେ ।

୧୯୯୬ ମସିହା ମଇମାସ ବେଳକୁ ବିଜାପୁର ଗ୍ରାମରେ 'ବନ୍ଦୋବସ୍ତ' ଚାଲିଥାଏ । ଜଣେ ଅମୀନ ଆସିଥାନ୍ତି ଏବଂ ସବୁ ପାର୍ଚ୍ଚା'କୁ ରେକର୍ଡ କରୁଥାନ୍ତି । ଆଦିବାସୀ ଗରିବ ଲୋକେ ଜମି ନିଜ ନିଜ ନାଁରେ ରେକର୍ଡ କରିବାକୁ ଅମୀନଙ୍କ ପାଖକୁ ଧାଉଁଥାନ୍ତି । ଏହି ସୁଯୋଗରେ ପରିବାର ପିଛା ତିନି ହଜାରରୁ ଉର୍ଦ୍ଧ୍ୱଟଙ୍କା ସେ ଅମୀନ ମାରି ନେଉଥାନ୍ତି । କେବଳ ସେଇ ବିଜାପୁର ଗ୍ରାମରୁ ଅମୀନ ଲକ୍ଷେ ଟଙ୍କାରୁ ଉର୍ଦ୍ଧ୍ୱ ନେଇ ଚାଲିଗଲେ ମୁଁ କ'ଣ କରିବି ଭାବୁଥାଏ । ଲୋକେ ଚୁପ୍ ଚାପ୍ ରହିଥାନ୍ତି । 'ସେଟେଲମେଣ୍ଟ' ଅଫିସକୁ ମୁଁ ଏ ବିଷୟରେ ଦରଖାସ୍ତ ଦେଲି ଏବଂ ଯାଇ ମୌଖିକ କହିଲି । ସେ ଅଫିସରଙ୍କ ଠାରୁ ଶୁଣିଲି ଯେ ଅମୀନର ବଦଳି ହୋଇ ଯାଇଛି । ମୁଁ ନିରୁପାୟ ହୋଇ ଜିଲ୍ଲାପାଳଙ୍କୁ ଲେଖିଲି । ତାଙ୍କଠାରୁ କିଛି ଉତ୍ତର ମିଳିଲା ନାହିଁ । ଜୁନ୍ ମାସରେ ରେଭିନ୍ୟୁ ଇନିସ୍‌ପେକ୍ଟର ଗାଁକୁ ଆସିଲେ । ପୂର୍ବରୁ ଚାଷ ହେଉଥିବା ଅନାବାଦୀ, ପତରା ଜଙ୍ଗଲ ଜମିକୁ ପଟ୍ଟା କରିଦେବ ବୋଲି କହି ପର୍ଯ୍ୟାପ୍ତ ଅର୍ଥ ମାରିନେଲେ । ମକ୍‌କା ଚାଷୀଙ୍କ ଠାରୁ ଦୁଇ ହଜାରରୁ ଚାରି ହଜାର ଯାଏ ଟଙ୍କା ମାରିନେଲେ । ଅଥଚ ରସିଦ ଦେଲେ ୨୦/୨୫ ଟଙ୍କାର ପୁଣି ସେହି ଜମିରେ ମୃତ୍ତିକା ସଂରକ୍ଷଣ ବିଭାଗର ଲୋକ ତହସିଲଦାରଙ୍କ ଅନୁମତି ନେଇ ଅନାବନା ଗଛ ଲଗାଇ ଜଙ୍ଗଲ କରିବାକୁ ଆସିଲେ । ବିଜାପୁର ଗ୍ରାମରେ ଦୁଇଶହ ପଚାଶ ଏକର ଜମିରେ ଗଛ ଲଗାଇବା ପାଇଁ ଗାତ ଖୋଳାଇ ଦେଲେ । ଲୋକେ ମୁଣ୍ଡରେ ହାତ ଦେଇ ନିରୁପାୟ ହୋଇ ବସିଥାନ୍ତି । କାହା ପାଟିରୁ କଥା ବାହାରୁ ନଥାଏ । ଦୀର୍ଘ ୪୦ ବର୍ଷ ଧରି ଚାଷ କରୁଥିବା ଜମି ଚାଲିଯାଉଥିବାରୁ ଲୋକେ ମନସ୍ତାପରେ ଥାନ୍ତି, ପେଟକୁ ଦାନା ଯାଉ ନଥାଏ । ଏ ପଟେ ଋଣ ଆଣି ଆର୍ ଆଇଙ୍କୁ ଟଙ୍କା ଦେଇଛନ୍ତି- ତେଣେ ଜମି ଚାଲିଯାଉଛି । ଏକଥା ମୁଁ ଆଶ୍ରମରେ ରହି ଶୁଣୁଥାଏ । ଲୋକଙ୍କ ସହ ମିଶି ବୁଝୁଥାଏ । ଲୋକେ ବହୁତ ଭୟଭୀତ ହୋଇ କହୁଥାନ୍ତି "ସରକାର ଆମକୁ ବାନ୍ଧି ନେଇଯିବ", ମୁଁ , ନୟନା ଅପା, ଗାଁ ଯୁବକ ଚନ୍ଦ୍ର ପୂଜାରୀ ମିଶି ଲୋକଙ୍କୁ ଡ଼ାକି ସଭା କରି ସାହସ ଦେଲୁ - "ଏହି ଗାଁର ଜମି ଗାଁ ଲୋକଙ୍କର - ଗାଁ ଲୋକେ ଏହାର ମାଲିକ । ସରକାର ଆମକୁ ବାନ୍ଧି ନେଉ ପଛେ ବାପା, ଗୋସେଇଁବାପା ଅମଳରୁ ଚାଷ କରୁଥିବା ଜମିକୁ ଛାଡ଼ିବା ନାହିଁ ।" କ୍ରମେ ଲୋକେ ସବୁ ବୁଝିଲେ । ଖୋଳା ହୋଇଥିବା ଗାତସବୁ ପୋତି ପକାଇଲେ -ତାହାରି ଉପରେ ଚାଷ କରି ଫସଲ କଲେ । ଆର.ଆଇ ନେଇଥିବା ପନ୍ଦର ହଜାର ଟଙ୍କାକୁ ଗାଁ ଲୋକେ ସଙ୍ଗଠିତ ହୋଇ ଫେରାଇ ଆଣିଲେ । ଫରେଷ୍ଟର ପ୍ରତିବର୍ଷ ନେଉଥିବା ଚାନ୍ଦା - ଧାନ, ମାଣ୍ଡିଆ, ବିରି, କୋଳଥ ଆଦି ଯାବତୀୟ ଶସ୍ୟ ଦେବା ବନ୍ଦ କରାଗଲା ।

ଆଗେ ଗାଁର ପୋଖରୀକୁ ନିଲାମରେ ଗାଁ ବାଲାଙ୍କୁ ନଦେଇ ପଞ୍ଚାୟତ ବାହାରଲୋକଙ୍କୁ ଦେଉଥିଲେ । ଏବେ ତାହାକୁ ଗାଁ ବାଲା ନିଜ ହାତକୁ ଆଣିଲେ । ଗାଁ ଜଙ୍ଗଲକୁ ସୁରକ୍ଷା ଦେବା ପାଇଁ ଜଗିବା ପାଳି ହେଲା । ଏହିଭଳି 'ଗ୍ରାମସ୍ୱରାଜ୍ୟ' କାମ ଆଗେଇ ଚାଲିଲା । ବଡ଼ ବଡ଼ ସଭାମାନ କାନପୁରରେ ହେଲା । ଉମରକୋଟ, ଝରୀଗାଁ ଓ ଡାବୁଗାଁ ବ୍ଲକରେ ହଜାର ହଜାର ଲୋକ ଏହି

'ଗ୍ରାମସ୍ୱରାଜ୍ୟ' କଥା ଶୁଣିବା ପାଇଁ ବିଜାପୁର ଆଶ୍ରମକୁ ଆସିଲେ । ଆମେ ବର୍ତ୍ତମାନ ପଚାଶଖଣ୍ଡ ଗାଁ'ରେ ଏହି 'ଗ୍ରାମସ୍ୱରାଜ୍ୟ' ବାର୍ତ୍ତା ପ୍ରଚାର କରି ଜଳ, ଜଙ୍ଗଲ ଓ ଜମିରେ ଗାଁ'ର ଅଧିକାରକୁ ସାବ୍ୟସ୍ତ କରିଛୁ । ଆବଶ୍ୟକ ହେଲେ ଶାନ୍ତିପୂର୍ଣ୍ଣ ଭାବେ ସତ୍ୟାଗ୍ରହ କରିବା ପାଇଁ ଗାଁ ଲୋକେ ପ୍ରସ୍ତୁତ ଅଛନ୍ତି । ତା' ଭିତରେ ନିଶା ନିବାରଣ, ସାକ୍ଷରତା, ଗାଁ'ର ପାଣ୍ଠି ସଂଗ୍ରହ, ଗାଁ ଗଣ୍ଡଗୋଳ ଗାଁରେ ତୁଟାଇବା ଭଳି କାର୍ଯ୍ୟ ଚାଲିଛି । ବିଜାପୁର ଗାଁରେ 'ମହିଳାମଣ୍ଡଳ' ଗଠନ କରି ନଅମାସ ଭିତରେ ପଚିଶ ଶହ ଟଙ୍କା ପାଣ୍ଠି କରିଛନ୍ତି ଯାହାଦ୍ୱାରା ସାହୁକାର କବଳରୁ ସେମାନେ ମୁକ୍ତି ପାଇଛନ୍ତି । ଜୀବିକା-ନିର୍ବାହ ପାଇଁ ଗାଁରୁ ସେମିତି କିଛି ସାହାଯ୍ୟ ମିଳୁନାହିଁ । ବେଳେବେଳେ ଗାଁ ଲୋକେ ପରିବାପତ୍ର ସାହାଯ୍ୟ ଦିଅନ୍ତି । ମୁଁ ଏବେ ନବରଙ୍ଗପୁର ଜିଲ୍ଲା ସର୍ବୋଦୟ ମଣ୍ଡଳର ସମ୍ପାଦକ ଭାବେ କାର୍ଯ୍ୟ କରୁଛି । ମୁଁ ବାରବର୍ଷରୁ ପିତୃହୀନ, ପରିବାରରେ ମୋ ବିଧବା ମା', ଦୁଇଭାଇ ଓ ଗୋଟିଏ ଭଉଣୀ ଅଛନ୍ତି । ଏହି 'ଗ୍ରାମସ୍ୱରାଜ୍ୟ' ପ୍ରତିଷ୍ଠା ପାଇଁ ମୁଁ ପୂରା ସମୟ ଦିଏ । ଏହି ଆଶ୍ରମରେ ରହି ସକାଳୁ ଦୁଇଘଣ୍ଟା ଶାରୀରିକଶ୍ରମ ମାଧ୍ୟମରେ ବଗିଚା କାମ କରେ । ବଡ଼ି ଭୋ'ରୁ ପାଞ୍ଚ ସରିଯାଏ ସୂତା କାଟେ । ବିଜାପୁର ଗ୍ରାମର ଶ୍ରୀ ଚନ୍ଦ୍ର ପୂଜାରୀ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ବାଜି ଆଞ୍ଜା, ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ମନ୍ତ୍ରୀ ଶ୍ରୀଯୁକ୍ତ ରବି ସିଂ ମାଝୀ ଓ ତାଙ୍କ ବୋହୂ ଶ୍ରୀମତୀ ନୟନା ମାଝୀ ମୋତେ ପୂର୍ଣ୍ଣ ସହଯୋଗ କରୁଛନ୍ତି । ●

ବିଜାପୁର, ଆଶ୍ରମ, ଭାବୁଗାଁ, ନବରଙ୍ଗପୁର

# ସେ କାଳର କୋରପୁଟ

**କୃଷ୍ଣ ସିଂହ**

୧୯୬୭ରେ ମୁଁ କୋରପୁଟ କାକରୀଗୁମ୍ମା ପଞ୍ଚାୟତର ଗିଲିପୁଟ, ଲତାପୁଟ କେନ୍ଦ୍ରରେ କର୍ମୀ ରୂପେ କାର୍ଯ୍ୟ ଆରମ୍ଭ କଲି । ସେଠାରେ ଆଗରୁ ନବଜୀବନ-ମଣ୍ଡଳର କେନ୍ଦ୍ର ଥିଲା ଓ ସେଠି ମିତ୍ତଲଜୀ (ଶ୍ରୀଯୁକ୍ତ ବାବୁଲାଲ ମିତ୍ତଲ) ରହୁଥିଲେ । ପୂଜ୍ୟ ବିନୋବାଙ୍କ ଦୃଷ୍ଟିରେ ସେ ହେଲେ ମୁନି (ଋଷି); ସର୍ବୋଦୟ ଜଗତର ଖ୍ୟାତନାମା ବ୍ୟକ୍ତି । ଆଗ୍ରା ମ୍ୟୁନିସପାଲଟିର ଚେୟାରମ୍ୟାନ, ଉତ୍ତରପ୍ରଦେଶ ବିଧାନସଭାର ସଦସ୍ୟ, ସର୍ବୋପରି ସର୍ବୋଦୟ ଆନ୍ଦୋଳନର ସେ ଥିଲେ ଅଗ୍ରଗାମୀ ତ୍ୟାଗୀ ପୁରୁଷ । ତାଙ୍କ ପରେ ନୁମା (ମାଳତୀ ଦେବୀ)ଙ୍କ ପ୍ରେରଣା ନେଇ ମୋତେ କୋରାପୁଟ ଯିବାକୁ ପଡ଼ିଲା ।

ଦେଓମାଳି ପାହାଡ଼ ତଳ ଗାଁ । ମୁଖ୍ୟତଃ କନ୍ଧ, ପରଜା ଜାତିର ଆଦିବାସୀ ରହନ୍ତି । ଘଞ୍ଚ ଅରଣ୍ୟ - ରାୟଗଡ଼ା-ଜୟପୁର ରାସ୍ତାରୁ କାକରୀଗୁମ୍ମାଠାରୁ ୭ କିଲୋମିଟର ଦୂର । ବର୍ଷରେ ୬ମାସ ବର୍ଷା- ଛୋଟ ପାବଲି (ପାହାଡ଼), କୁଟୁରାଘାଟ ତା ତଳେ ଲାତାପୁଟ ଗାଁ । ପ୍ରଥମେ ମୁଁ ଲତାପୁଟରେ ରହିଲି । ପ୍ରଥମେ ଯେଉଁଦିନ କୁଟୁରାଘଟ ଚଢ଼ି ଗାଁକୁ ଗଲି -ଦେଖିଲି ରେଭେନ୍ୟୁ ଇନ୍‌ସିପେକ୍ଟର ଓ ତାଙ୍କ ପିଅନ ଏବଂ ଫରେଷ୍ଟର ଓ ତାଙ୍କ ଗାର୍ଡ କୁଟୁରାଘାଟରୁ ଓହ୍ଲାଉଛନ୍ତି; ସାଙ୍ଗରେ ଧରିଛନ୍ତି ପନ୍ଦର-ଷୋହଳ କୁକୁଡ଼ା, ଦୁଇ-ଚାରିଟା କୁମଡ଼ା (କଖାରୁ) ଓ ଆଉରି କିଛି କାଙ୍କୁ

I can not tolerate the idea of parents writing to their children, and husbands writing to their wives not in their mother tongue, but in English. - **Mahatma Gandhi**

Modern Girls Love to be the juliet of half a dozen Romeos. They dress not to protect them selves from sun and rain, but to attract attention. - **Bapu**

ଚାଉଳ, କାନ୍ଦୁଲ । ଗାଁର ବାରିକ ଓ ଦୁଇଜଣ ଆଦିବାସୀ କାଉଡ଼ି (ଭାର) କରି ଏସବୁ ତାଙ୍କ ସାଙ୍ଗେ ନେଉଥିଲେ । ମୁଁ ଗାଁରେ ପହଞ୍ଚିବି- ଏ କଥା ଆଗରୁ ଗାଁ ଲୋକେ ଜାଣିଥିଲେ । ଜଣେ କର୍ମୀ ସେ ଗାଁକୁ ଆସିବେ ବୋଲି ଆଗରୁ ଭୂଦାନବାଲା କହିଥିଲେ । ଲଡାପୁଟ ଗାଁରେ ବୁଝିଲି- ଜାନୀଗୁଡ଼ା, ଡଙ୍ଗା ପାଇଗୁଡ଼ା ଓ ଲଡାପୁଟ ଗାଁରୁ ଏ ସବୁ ଜିନିଷ ଆଦାୟ ହୋଇଛି । ଫରେଷ୍ଟରଙ୍କ ମାଡ଼ ଯୋଗୁଁ ପାଖରେ ଥିବା ଜାନୀଗୁଡ଼ା ଗାଁର ଲୋକେ ଗାଁ ଛାଡ଼ି ଜଙ୍ଗଲକୁ ପଳାଇଛନ୍ତି । ଏ ହେଉଛି କୋରାପୁଟ ସହିତ ମୋର ଆଦ୍ୟ ପରିଚୟ ।

ଦାସ ବ୍ୟବସାୟ ଇଉରୋପରେ ହେଉଥିବା ଓ ଭାରତରେ ଦାସବଂଶ ରାଜୁତି କରିବା କଥା ଇତିହାସରେ ପଢ଼ିଥିଲି । ଅବଲୀଳା କ୍ରମେ ପରିଚିତ ହେଲି । କୋରାପୁଟର ଦାସ ପ୍ରଥା, 'ଗୋତି' ସହିତ । ଗୋତି ପ୍ରଥା ଅର୍ଥାତ୍ ଋଣ-ଦାସ ପ୍ରଥା । ଋଣ ପାଇଁ ମଣିଷ ଦାସ ହୋଇ ଯାଉଛି - ରିଙ୍ଗୁ ସାଉନ୍ତା, ଆଣ୍ଡୁସ୍ ସାଉନ୍ତା କାଳିଆ ସାଉନ୍ତା, ପୁରୁଟା ଜାନୀ, ସମାଜଜାନୀ ଆଦି ପୁରୁଖା କନ୍ଧ ମୁରବୀମାନେ ମୋତେ ବୁଝାଇଲେ । ଫରଦା, ଛାଡ଼ଣୀ, ବାଡ଼ି, କଳନ୍ତର, କାଙ୍କିଜୀ କଳନ୍ତର ଆଦି ନାମରେ ଚଳୁଥିବା ଋଣ ବ୍ୟବସ୍ଥା କିପରି ଆଦିବାସୀ ମଣିଷଙ୍କୁ ଗୋତି (ଦାସ) କରି ଦେଉଛି !!

ସେତେବେଳେ ଭୂଦାନ ଆନ୍ଦୋଳନରେ କୋରାପୁଟ ମାତିଥାଏ । ଆଦିବାସୀମାନେ ଏ ଆନ୍ଦୋଳନରେ ଝାସ ଦେଇଥାନ୍ତି । ୧୯୫୫ ବିନୋବାଜୀଙ୍କର ପଦଯାତ୍ରା ସରିଥାଏ । ବିଶ୍ୱନାଥ ଆଙ୍କା, ବାଜି ଆଙ୍କା, ରତନ ଭାଇ ସେତେବେଳେ କୋରାପୁଟର ଭୂଦାନରଥୀ । ମାଳତୀଦେବୀଙ୍କ ନବଜୀବନ ମଣ୍ଡଳର ଅପାମାନେ ବଣାଘାଟଠାରୁ ନିୟମଗିରି ପାହାଡ଼ଯାଏ ସବୁଠି ବିଛେଇ ହୋଇ ପଡ଼ିଥାନ୍ତି । ଚାରିଆଡ଼େ ଭୂଦାନ-ପ୍ରବର୍ଯ୍ୟ । ନାରାୟଣ ଦେଶାଇ ଶାନ୍ତିସେନାର ଅଖିଳ ଭାରତୀୟ ସଂଯୋଜକ ଥାନ୍ତି । ତାଙ୍କ କଲମ ଡାକ ଦେଉଥାଏ:-

"ଶାନ୍ତି ସୈନ୍ୟ ଦେଖ ଆଜି
କ୍ରାନ୍ତି ଗୀତ ଗାଉଛି
ସତ୍ୟ, ପ୍ରେମ, ଅହିଂସା ମନ୍ତ୍ର
ଦିଗ ଦିଗନ୍ତ ଛୁଉଁଛି ।"

ଶାନ୍ତିସେନାର ସଂଗଠନ ଆରମ୍ଭ ହେଲା, କନ୍ଧ ଟୋକାମାନଙ୍କୁ ଶାନ୍ତିସେନାରେ ସଜାଗଲା । କ୍ରାନ୍ତିଗୀତ ଗାଇବାକୁ ହେବ, ବନ୍ଧା ଭୂମି ମୁକୁଳାଇବାକୁ ହେବ, ଋଣ ମେଡ଼ାଇବାକୁ ହେବ, ଗୋତି ଛାଡ଼ିବାକୁ ହେବ ଏବଂ ଛଡ଼ାଇବାକୁ ହେବ । କାର୍ଯ୍ୟ କଷ୍ଟ - ପଥ ଦୁର୍ଗମ- ସାହୁକାରମାନେ ଦୁର୍ଦ୍ଧର୍ଷ ଓ ରାଜନୈତିକ ଶକ୍ତିରେ ଶକ୍ତିମାନ । ପୋଲିସ୍, ଆଇନ ତାଙ୍କର ।

ନୁମା (ମାଳତୀ ଦେବୀ)ଙ୍କୁ ମାନିବାକୁ ହେବ । ସେ ଅଗ୍ନି-ଗର୍ଭା ମହିଳା.... । ଏପରି ଗୋଟିଏ ଆନ୍ଦୋଳନର ପ୍ରସ୍ତୁତି ପର୍ବରେ ତାଙ୍କର ସ୍ୱୀକୃତି ରହିଲା । ହିଂସା. ଅହିଂସା କଥା ବୁଝାଇ ସେ ସ୍ପଷ୍ଟ କରିଦେଲେ ଯେ ବୁଭୁକ୍ଷୁ, ଭୟାଳୁ ଆଦିବାସୀ ମଣିଷ କେଉଁଠି ଭୁଲ କଲେ ତାହାକୁ ଅହିଂସା ବୋଲି ମାନିବାକୁ ହେବ । ଗୋତି ଆନ୍ଦୋଳନ ଆରମ୍ଭ ହେଲା; ଜଣେ ଆଦର୍ଶବାଦୀ ବନ୍ଧୁ ଶ୍ରୀ ରବୀନ୍ଦ୍ର ନାଥ ସାହୁ (କଟକ) ଗୋଟିଏ ମେଗାଫୋନ ଦେଲେ । ଗାଁ ଗାଁରେ ଆନ୍ଦୋଳନ ସୂତ୍ରପାତ ହେଲା । ଶାନ୍ତିସେନାର ପିତଳ ବ୍ୟାଜ୍ (ଶାନ୍ତିସୈନିକ) ମଗା ହେଲା ବନାରସରୁ । ହଳଦିଆ କନା ମୁଣ୍ଡରେ ବାନ୍ଧି କନ୍ଧ ଟୋକାମାନେ ଶାନ୍ତିସେନାନର ପିତଳ ବ୍ୟାଜ୍ ମାରି ଗାଁରେ, ହାଟରେ, ବଜାରରେ ଦଳ ଦଳ ହୋଇ ଶୋଭା ଯାତ୍ରାରେ ବାହାରିଲେ । ଗୀତ ବୋଲିଲେ-

"ବନ୍ଧା ଭୂମିରେ ଲଙ୍ଗଳ ପୂରାଇ ତୁ କଷି ଯା
ଶୁଝନା ତୁ ଗୋତିଋଣ ଗୋତି ଦିଏ ଫାଇଦା ।
ବାଡ଼ି ହାଟ କଳନ୍ତର ଋଣ ସବୁ ବୁଡ଼ିଲା
ଉଠରେ ଖମାରି ଗୋତି-ମୁକ୍ତି ବେଳ ଆସିଲା ।
ଯେତେ ଥିଲେ ସାହୁକାର ଫଟକାର ଅସଲ
ସରିଗଲା ଏବେ ତାଙ୍କ ମିଛ ଫନ୍ଦି ଫିକର ।
'ଗ୍ରାମଦାନ' ତୋଫାନରେ ବଳ ତୋର ବଢ଼ିଲା
ଉଠରେ ଖମାରୀ ଗୋତି-ମୁକ୍ତି ବେଳ ଆସିଲା ।"

ଏକ ରକମର ବନାଗ୍ନି ଯେମିତି ଦଶମନ୍ତପୁର, କୋରାପୁଟ, ସେମିଳିଗୁଡ଼ି, ଲକ୍ଷ୍ମୀପୁର, ନାରାୟଣପାଟଣା, ପଡ଼ିଆ, ପଟାଙ୍ଗି ଆଦି ଅଞ୍ଚଳରେ ବ୍ୟାପିଗଲା । ଜିଲ୍ଲାପାଳ ଥାନ୍ତି ପ୍ରେମାନନ୍ଦ ତ୍ରିପାଠୀ (IAS) । ଆମ ଲକ୍ଷ୍ୟ ଉଦ୍ଦେଶ୍ୟ ତାଙ୍କୁ ବୁଝାଇଲି - ବନ୍ଧୁ ହୋଇଗଲେ ସେ । ଆଇନର ପରିସର ମଧ୍ୟରେ ଯାହା ସମ୍ଭବ ସେ ଚେଷ୍ଟା କରିଛନ୍ତି କରିବା ପାଇଁ । ଆନ୍ଦୋଳନ ରୂପ ନେଲା- ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସାଧାରଣ ମଣିଷ ଅଣ୍ଟା ସିଧା କରି ଠିଆ ହେଲା । ଆନ୍ଦୋଳନ, ଭୟରୁ ମୁକ୍ତି ଦେଲା ଏ ଶୋଷିତ ମଣିଷକୁ । ପୁରାଘାଟ ଗାଁରେ ସାହୁକାର ମାନେ ସେମିଳିଗୁଡ଼ା ପୁଲିସକୁ ନେଇ ଗୋତିମାନଙ୍କୁ ମାଡ଼ ଦେଲେ । ଶିବ ଭୋଇ (ଶିବ ଗୋତି) କୁଆଡ଼େ ଗଲା - ଆଜି ସୁଦ୍ଧା ତିରିଶି ବର୍ଷ ଧରି ତାର ଖୋଜ ଖବର ନାହିଁ । ବନ୍ଧା ଭୂମି ଚଷି ପରଜା ଚକ ଗାଁର ବାଇଶି ଜଣ ଛଅମାସ ଜେଲ୍ ଗଲେ । ସେହି କେଶ୍‌ରେ ଆମେ ମଧ ପଡ଼ିଲୁ । ପଣ୍ଡିତ କୃପାସିନ୍ଧୁ ହୋତା ଏ ସମୟରେ ଆସି ମୋ ପାଖରେ ପ୍ରାୟ ଏକମାସ ରହି ସାହସ ଦେଲେ । ସେ ହାଟମାନଙ୍କରେ ଶୋଷଣ ଅତ୍ୟାଚାର ବିରୁଦ୍ଧରେ ଭାଷଣ ଦେଲେ- କୋରାପୁଟ ଜିଲ୍ଲା ମୋଟୁ ଠାରୁ ଚନ୍ଦ୍ରପୁର ଯାଏ ।- କୋରାପୁଟ ଜିଲ୍ଲା ଆନ୍ଦୋଳନ ଦ୍ୱାରା ଶୋଷକ ଶୋଷିତ ଭେଦ ବାରି ହୋଇ ପଡ଼ିଲା । ଅଜ୍ଞ ସରଳ ମଣିଷ ଅଧିକାର ନେଇ ଥରେ ସଚେତନ ହେଲେ ସେ ଆଉ କିଛି ମାନେ ନାହିଁ । ଆନ୍ଦୋଳନକୁ ସଂପୂର୍ଣ୍ଣ ଅହିଂସକ ଦୃଷ୍ଟି ନେଇ କରାଗଲେ ମଧ ବୁଲୁଭାଇ (ଶ୍ରୀ ମନମୋହନ ଚୌଧୁରୀ)ଙ୍କ ପରି ବିଜ୍ଞ ଲୋକମାନେ ଏଥିରେ ହିଂସାର ଆଭାସ ନେଇ ଆଶଙ୍କା ପ୍ରକାଶ କଲେ- ମୋର ମନେହୁଏ ବୁଲୁଭାଇ ଏଥି ପ୍ରତି ଆଗ୍ରହ ରଖିଥିଲେ ଏହାର ସ୍ୱରୂପ ଆହୁରି ବ୍ୟାପକ ହୋଇ ଓଡ଼ିଶାରସମସ୍ତ ପାର୍ବତ୍ୟ ଅଞ୍ଚଳକୁ ବ୍ୟାପିଥାନ୍ତା । କଳାହାଣ୍ଡି, ବଲାଙ୍ଗିର, ଗଞ୍ଜାମ ପ୍ରଭୃତି ଏହିପରି ସମସ୍ୟା ଥିଲା ଏବଂ ଭୂଦାନର ଭିତ୍ତିଭୂମି ମଧ ଥିଲା ।

ଏହି ସମୟରେ ଏକ ରଇତ ସଭା ମୁଁ ଆରମ୍ଭ କରିଥିଲି । ଏଥିରେ ପ୍ରଗତି ଶୀଳ ଭାବନା ରଖୁଥିବା ଲୋକେ ସାମିଲ ହେଲେ ଏବଂ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ପରେ ଏହି ରଇତ ସଭାର ନିଜକୁ ସଭାପତି କରି ଶ୍ରୀ ହରିଶ୍ଚନ୍ଦ୍ର ବକ୍‌ସିପାତ୍ର, ତାଙ୍କ ପ୍ରଥମ ନିର୍ବାଚନ ଜିତି ବିଧାୟକ ହେଲେ । ଅଥଚ ତାଙ୍କର ଏ ଆନ୍ଦୋଳନ ସହିତ କୌଣସି ସମ୍ପର୍କ ନଥିଲା ।

ଅତୀତର ସ୍ମୃତିଚାରଣ ଏକ ମଧୁର ଭାବାବେଶର ସ୍ୱାକ୍ଷର ବହନ କରିଥାଏ- ସ୍ମୃତି ଖୁବ୍ ଅଭୁଲା । ଏକ ଉଦାହରଣ ଦେଇ ମୋ କଥା ଶେଷ କରୁଛି । ୧୯୬୪ ସାଲର କଥା । ଦଶମନ୍ତପୁର, ପଢାର ଗାଁର କିଛି ଆଦିବାସୀ ପରଜା ଲୋକ ପଞ୍ଚୁଡ଼ା ପାଖରେ କୋରାପୁଟ ଯିବା ପାଇଁ ଅପେକ୍ଷା କରିଥାନ୍ତି - ଟ୍ରକଟିଏ ଆସିଲା- ହାତ ଦେଖାଇଲେ- ଟ୍ରକ ତାଙ୍କୁ ନନେଇ ଚାଲିଗଲା; ତା ଭିତରୁ ଜଣେ କେହି ଆଦିବାସୀ ଲୋକ କହିଲା- "ଫଟକାର୍ (ଠକ) ଲରୀ, ପନ୍ଦି (ଜାଲିଆତି) ଲରୀ (ସେ ଟ୍ରକ) ସେ ଆମକୁ ନେଲା ନାହିଁ ।" କୋରାପୁଟ ଯିବା ପାଇଁ ଏମାନଙ୍କ ପରି ଦଶମନ୍ତପୁର ଥାନାର ଜଣେ କନେଷ୍ଟବଳ (ଆଦିବାସୀ ଭାଷାରେ ଜମାନ) ସେଠି ଥିଲେ । ସେ ମଧ ଟ୍ରକକୁ ଅଟକାଇବାକୁ ଚେଷ୍ଟା କରିଥିଲେ - ତାଙ୍କୁ ବି ଟ୍ରକ ନେଲା ନାହିଁ । ଏହି ଅବସରରେ ସେ କନେଷ୍ଟବଳ ଆଦିବାସୀମାନଙ୍କ ନାଁ ଗାଁ ଟିପି ନେଲେ । ସାତ ଆଠ ଦିନ ପରେ ଦେଖାଗଲା ରାତିରେ ଦୁଇଜଣ କନେଷ୍ଟବଳ ପଢାର ଗାଁରେ ପହଞ୍ଚିଲେ । ସଦରମୁଣ୍ଡାରେ (ଗାଁ ଲୋକଙ୍କ ନିଶାପ ମଣ୍ଡପ) ଗାଁ ଲୋକ ବସିଲେ । କନେଷ୍ଟବଳ ଦୁଇଜଣ କହିଲେ- ତମ ଗାଁ ବସିଗଲା ବିପଦ ଆସିଗଲା । ତମ ଗାଁର ଏହିସବୁ ଲୋକ ଲକ୍ଷେ ଟଙ୍କାର ଟ୍ରକକୁ ହୁଡ଼ି ଦେଲେ; ଡ୍ରାଇଭରକୁ ଗାଳି ଦେଲେ । କିଛି ହୁଅନ୍ତା ନାହିଁ- କିନ୍ତୁ ଲରୀକୁ ଗାଳି ଦେବାରୁ ସରକାର ଲରୀ ଧରି ପକାଇଛି ।" ଏକଥା ଶୁଣି ଗାଁ ଲୋକେ ତଟସ୍ଥ । ସତେ ଯେପରି ମୁଣ୍ଡରେ ଚଡ଼କ ପଡ଼ିଲା !! ଏ କେଶ୍‌କୁ ଫିଟେଇ

ଦେବା (ମୁକୁଳାଇବା) ପାଇଁ ଶହେ ଟଙ୍କା, କାହୁଲ, କୁକୁଡ଼ା, ଚାଉଳ ଆଦି ବହୁତ ଜିନିଷ ଦାବୀ କଲେ । ଏତେକ ଦେବାର ସାମର୍ଥ୍ୟ ଲୋକଙ୍କର ନଥିଲା । ପନ୍ଦର କିଲୋମିର ଘୋର ଜଙ୍ଗଲ ମଧ୍ୟରେ ତାଲି ଚାଲି ଆସି ରାତିରେ ମୋ ପାଖରେ ପହଞ୍ଚି ସବୁ କଥା କହିଲେ । ମୁଁ ସକାଳୁ ପଙ୍କାରରେ ଯାଇ ପହଞ୍ଚିଲି । ହିସାବ୍ ଦେଲି । ଗାଁ ଲୋକେ ଲକ୍ଷେ ଟଙ୍କାର ଲରୀକୁ ହୁଡ଼ିବାର ବିପଦରୁ ରକ୍ଷା ପାଇଲେ ।

ଏପରି ଥିଲା ସେ କାଳର କୋରାପୁଟ । ଆଜି ସେ ଯୁଗ ବଦଳି ଯାଇଛି । ଯୁଗର ପ୍ରତିଯୋଗିତାରେ କ୍ରମଶଃ ଜଟିଳ ହୋଇ ସରଳ ଆଦିବାସୀ ନିଜକୁ ପ୍ରତିଯୋଗୀ କରିବାକୁ ଆଜି ଉଦ୍ୟମ କରୁଛି ।



# ବିଜାପୁରରେ ଗ୍ରାମସ୍ୱରାଜ୍ୟ ଆନ୍ଦୋଳନ

**ନୟନା ମାଝୀ**

ନବରଙ୍ଗପୁର ଜିଲ୍ଲା ଡାବୁଗାଁ ବ୍ଲକ କୋଇଲାରି ଗ୍ରାମ (ପୋ: ଜୁନାପାଣି)ରେ ମୋର ଘର । ୧୯୯୧ ସାଲରୁ ମୁଁ ସର୍ବୋଦୟମଣ୍ଡଳ ସହ ସଂପୃକ୍ତ । ମୁଁ ଏ ଅଞ୍ଚଳରେ ବୁଲି ନିଶାନିବାରଣ କାମ ବରାବର କରୁଛି । ଯାତ୍ରାପର୍ବରେ ମଦଦୋକାନ ବନ୍ଦ କରିବା ଯୁବକ ପିଲାଙ୍କୁ ଏକାଠିକରି ତାର ବିରୋଧ କରିବା ଓ ଡାବୁଗାଁ ବ୍ଲକ ବିଡ଼ିଓ ଲାଞ୍ଚ ନେଇଥିବା ବିରୋଧରେ ଆମରଣ ଅନଶନରେ ବସି ସଫଳତା ପାଇଛି ।

୧୯୯୩ରେ ମୁଁ କୋରାପୁଟ ଜନ ଆନ୍ଦୋଳନରେ ଯୋଗଦେଇ ମଦ ବିରୋଧୀ ଭାଷଣ ଦେଇଥିଲି । ସେହିଦିନଠାରୁ ଗାନ୍ଧୀ କସ୍ତୁରବା ସ୍ମାରକ ଟ୍ରଷ୍ଟ ତରଫରୁ ମୁଁ କର୍ମୀରୂପେ ନିଯୁକ୍ତି ଲାଭ କଲି । ମୋର କାର୍ଯ୍ୟ କୁଶଳତାକୁ ସର୍ବୋଦୟ ନେତ୍ରୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ବହୁ ପ୍ରଶଂସା କରିଥିଲେ ।

ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀ ଓ ନବରଙ୍ଗପୁର ଜିଲ୍ଲା ସର୍ବୋଦୟ ମଣ୍ଡଳର ସମ୍ପାଦକ ନରହରି ଭାନୀଙ୍କ ସହ ଗ୍ରାମସ୍ୱରାଜ୍ୟ କାମରେ ଲାଗିଛି । ୧୯୯୪ରେ ଅଖିଳଭାରତ ସନ୍ତ ବିନୋବା ଜନ୍ମ ଶତବାର୍ଷିକୀ ଗ୍ରାମସ୍ୱରାଜ୍ୟ ପଦଯାତ୍ରାରେ ଆସିଥିବା ଅବିନାଶ ଚନ୍ଦ୍ର ଭାଇଙ୍କ ଶସ୍ତ କାର୍ଯ୍ୟକ୍ରମରେ ନରହରି ଭାଇଙ୍କ ସହ ମିଶି ତାଙ୍କ ରହଣି ବ୍ୟବସ୍ଥା ଏବଂ ପନ୍ଦର ଦିନ ପଦଯାତ୍ରା କରିଛି ।

୧୯୯୫ ସାଲରେ ବିଜାରପୁର ଆଶ୍ରମରେ ରହି କନ୍ୟାଶ୍ରମ ପରିଚାଳନା ଦାୟିତ୍ୱ ଗ୍ରହଣ କଲି । ଗ୍ରାମସ୍ୱାରାଜ୍ୟ ଭିତ୍ତିକ କାମ, ନିଶାନିବାରଣ ସହ ଗାଁର ଜଳ, ଜଙ୍ଗଲ ଓ ଜମିରେ ଗ୍ରାମର ସଂପୂର୍ଣ୍ଣ ଅଧିକାର, ମହିଳାପାଣି ସଂଗ୍ରହ, ଟଙ୍କା ନେଇଥିବା ରାଜସ୍ୱ ନିରୀକ୍ଷକଙ୍କ ବିରୋଧରେ ସ୍ୱର ଉତ୍ତୋଳନ ତଥା ବିଭିନ୍ନ ଆନ୍ଦୋଳନାତ୍ମକ କାର୍ଯ୍ୟରେ ନରହରି ଭାଇଙ୍କ ସହ କାର୍ଯ୍ୟରତ ଅଛି । ମାସକୁ ପ୍ରାୟ ଦଶଗୋଟି ସଭା କରି ଲୋକଙ୍କ ଭିତରେ ସ୍ୱଦେଶୀ ଜାଗରଣ, ନିଶା ନିବାରଣ, ସାକ୍ଷରତା ଅଭିଯାନ ଇତ୍ୟାଦି ଜନ ହିତକର କାର୍ଯ୍ୟରେ ଆଜି ପର୍ଯ୍ୟନ୍ତ ନିୟୋଜିତ ରହିଛି ।

ମୋର ଜୀବିକା ନିର୍ବାହ ପାଇଁ ଗାନ୍ଧୀ କସ୍ତୁରବା ଟ୍ରଷ୍ଟ ତରଫରୁ ମାସିକ ତିନିଶତ ଟଙ୍କା ସାହାଯ୍ୟ ମିଳୁଛି । ମୁଁ ମୋର ଘର କୋଇଲାରୀ ଛାଡ଼ି ବିଜାରପୁରରେ ରହୁଛି ଏବଂ ଲୋକଙ୍କ ସାହାଯ୍ୟରେ ଚଳୁଛି । ଉତ୍କଳ ସର୍ବୋଦୟମଣ୍ଡଳ, ଗାନ୍ଧୀ ସ୍ମାରକନିଧି ସହ ମୋର ସୁସମ୍ପର୍କ ରହିଛି । ପୌନାରସ୍ଥିତ ବିନୋବାଜୀଙ୍କର ଆଶ୍ରମକୁ ଦୁଇଥର ମିତ୍ରମିଳନ ସମାବେଶକୁ ଯାଇଛି ।

ମୁଁ ସ୍ୱାଧୀନତା ସଂଗ୍ରାମୀ ରବି ସିଂ ମାଝିଙ୍କ ମଝିଆଁ ବୋହୂ । ମୋର ସ୍ୱାମୀ ବାରବର୍ଷ ପୂର୍ବେ ଚାଲିଗଲେ । ମୋର ଚାରି ପୁଅ ଦୁଇ ଝିଅ । ବଡ଼ପୁଅକୁ ବାହା କରାଇଛି । ଗୋଟିଏ ଝିଅ ଓ ଦୁଇପୁଅ କୋଇଲାରୀରେ ରହନ୍ତି । ଗୋଟିଏ ଝିଅ ମୋ ପାଖରେ ଅଛି । ଗୋଟିଏ ପୁଅକୁ ମୁଁ କୋରାପୁଟ ସର୍ବୋଦୟ ସମିତିରେ ଶିକ୍ଷା ପାଇଁ ଛାଡ଼ିଛି । ବିଶେଷ ଜମିବାଡ଼ି ନାହିଁ । ବର୍ଷକୁ ୬ ମାସ ଚଳିଯାଏ । ବାକିଦିନ ପିଲାମାନେ ମୂଲଲାଗି ପେଟ ପୋଷନ୍ତି । ●

ବିଜାପୁର ଆଶ୍ରମ, ନବରଙ୍ଗପୁର

# ନବରଙ୍ଗପୁରରେ ନବ ନିର୍ମାଣ

ମହମ୍ମଦ ୮ ୀ

ଅବିଭକ୍ତ କୋରାପୁଟରେ ଗାନ୍ଧୀ ପୂଜ୍ୟ ରାଧ ବିଶ୍ୱାସରାୟଙ୍କର ପ୍ରେରଣା କ୍ରମେ ସନ ୧୯୩. ଖ୍ରୀଷ୍ଟାବ୍ଦରେ ମୁଁ ପାଠପଢ଼ା ଛାଡ଼ି ସ୍ୱେଚ୍ଛାକୃତ ଭାବେ କଂଗ୍ରେସ ଆଡ଼କୁ ପ୍ରଭାବିତ ହେଲି । ସେତେବେଳେ ଆମର ଶିକ୍ଷକ ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ ମଧ ବିଶ୍ୱାସରାୟଙ୍କ ପ୍ରେରଣାରେ ଶିକ୍ଷକତାରୁ ଇସ୍ତଫା ଦେଇ କଂଗ୍ରେସରେ ଯୋଗଦେଲେ । ମୁଁ, ଲକ୍ଷିଚନ୍ଦ୍ର ଦାସ ଓ ରଘୁନାଥ ଚୌଧୁରୀ ଜୟପୁର ମହାରାଜଙ୍କ ଅନ୍ୟାୟ ବେଠି ଆଦି ସମ୍ପର୍କରେ ଲୋକଲୋଚନକୁ ଆଣି ପାରିଥିଲି । ସାହୁକାର ଓ କଣ୍ଟ୍ରାକ୍ଟରଙ୍କ ଜୁଲମରୁ ବନ୍ଧାଗୋତି, ଛିଡ଼ିଣି ଗୋତି ବେଠି ବେଖାରୀ ବିରୋଧରେ ଜନଚେତନା ଜାଗ୍ରତ କରୁଥିଲି । ସନ ୧୯୩୮ ଖ୍ରୀଷ୍ଟାବ୍ଦରେ ରାଧାକୃଷ୍ଣ ବିଶ୍ୱାସରାୟଙ୍କର ନେତୃତ୍ୱ ଏବଂ ମାର୍ଗଦର୍ଶନରେ ଅବିଭକ୍ତ କୋରାପୁଟ ଜିଲ୍ଲାର ସାଧାରଣ ଲୋକଙ୍କୁ ନେଇ ତିନିମାସ ପାଇଁ ଏକ ପ୍ରଶିକ୍ଷଣ ଶିବିର ହୋଇଥିଲା । ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଋଷିପ୍ରାଣ ଆଚାର୍ଯ୍ୟ ହରିହର, ଗୋକୁଳାନନ୍ଦ ମହାନ୍ତି, ପଣ୍ଡିତ ରଘୁନାଥ ମିଶ୍ର ପ୍ରମୁଖ ଶିବିର ପରିଚାଳନା କରିଥିଲେ । ମଝିରେ ମଝିରେ ପଣ୍ଡିତ ନୀଳକଣ୍ଠ ଗୋଦାବରୀଶ ମିଶ୍ର ଓ ବିଶ୍ୱନାଥ ଦାସ ଆସି ଯୋଗ ଦେଉଥିଲେ । ଏଠି ନୂଆପୁଟ ପ୍ରଶିକ୍ଷଣ ଶିବିର ଅବିଭକ୍ତ କୋରାପୁଟ ଜିଲ୍ଲାର ସ୍ୱାଧୀନତା ଆନ୍ଦୋଳନ ପାଇଁ ମୂଳଦୁଆ ପକାଇଥିଲା । ଯାହା ଫଳରେ କୋରାପୁଟ ଜିଲ୍ଲାରେ ସ୍ୱାଧୀନତା ଚେତନା ଖେଳିବାକୁ ଲାଗିଲା । ଷାଠିଏ ହଜାରରୁ ଅଧିକ ଲୋକ କଂଗ୍ରେସର ଚାରିଅଣିଆ ସଭ୍ୟ ହୋଇଥିଲେ ।

ବାଣୀ ସତ୍ୟାଗ୍ରହ ଆରମ୍ଭ ପୂର୍ବରୁ ମୁଁ ମହାତ୍ମାଗାନ୍ଧୀଙ୍କ ସାକ୍ଷାତ ପାଇଁ ସେବାଗ୍ରାମ ଯାଇଥିଲି । ଗାନ୍ଧିଜୀଙ୍କ ପ୍ରେରଣା ନେଇ କଂଗ୍ରେସ କାମରେ ନିୟୋଜିତ ହେଲି । ବାଣୀ ସତ୍ୟାଗ୍ରହରେ ମୁଁ ଦୁଇଥର ଜେଲଦଣ୍ଡ ଭୋଗିଥିଲି । ପରେ "ଭାରତଛାଡ଼" ଆନ୍ଦୋଳନରେ ଝାସ ଦେଲି । ନବରଙ୍ଗପୁରର ସମସ୍ତ ଆନ୍ଦୋଳନରେ ଭାଗନେଲି । ବାଣୀ ସତ୍ୟାଗ୍ରହରେ ପ୍ରାୟ ଶହେ ଲୋକ ଓ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ଏକହଜାର ଲୋକ ଆମ ଜିଲ୍ଲାରୁ ଜେଲ ...ଥିଲେ । ସେଥିମଧ୍ୟରୁ ଆମର ସଂଗ୍ରାମୀ ଭାଇ ଲକ୍ଷ୍ମଣ ନାୟକଙ୍କୁ ବ୍ରହ୍ମପୁର ଜେଲରେ ମିଥ୍ୟା ଅଭିଯୋଗରେ ଫାସୀଦଣ୍ଡ ଦିଆଯାଇଥିଲା । ସେ ଶହୀଦ ହେଲେ । ମୋତେ ଆଜୀବନ କାରାଦଣ୍ଡ ମିଳିଥିଲା । ପରେ ୭ ବର୍ଷକୁ କମିଲା । କିନ୍ତୁ ୩ ବର୍ଷ ୬ ମାସରେ ମୁଁ ଖଲାସ ହେଲି ।

୧୯୫୩ରେ ବିହାର ଚାଣ୍ଡିଲ୍ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଇଥିଲି । ସେଠାରେ ସନ୍ଥ ବିନୋବାଜୀଙ୍କର ସାକ୍ଷାତ ମିଳିଲା । ବିନୋବାଜୀ ମୋତେ ଆଶୀର୍ବାଦ କରି କହିଲେ ଯେ ତୁମେ କୋରାପୁଟ ଜିଲାରେ ଗାନ୍ଧୀଙ୍କ କାମ କରୁଛ । ସେଠାରେ ଭୂଦାନ କାମ ମଧ ଚାଲୁରଖ । ରମାଦେବୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ତତ୍ତ୍ୱାବଧାନରେ ଅବିଭକ୍ତ କୋରାପୁଟ ଜିଲ୍ଲାକୁ ଭୂଦାନ ହିସାବରେ ଦୁଇଭାଗ କରାଗଲା ।

୧. Upper Sub-division ଉଚ୍ଚ ଭୂଦାନ ମଣ୍ଡଳ

୨. Lower Sb-division ନିମ୍ନ ଭୂଦାନ ମଣ୍ଡଳ

ପ୍ରଥମ ମଣ୍ଡଳଟି ଗୁଣୁପର, ରାୟଗଡ଼ା ଓ କୋରାପୁଟକୁ ନେଇ ବିଭକ୍ତ ହୋଇଥିଲା ଏବଂ ଏହାର ମୁଖ୍ୟ ପୁରୋଧା ଥିଲେ ବିଶ୍ୱନାଥ ପଟ୍ଟନାୟକ । ଦ୍ୱିତୀୟ ଭୂଦାନ ମଣ୍ଡଳ ନବରଙ୍ଗପୁର, ମାଲକାନଗିରି ଓ ଅମରକୋଟକୁ ନେଇ ଗଠିତ ହୋଇଥିଲା । ଏହାର ମୁଖ୍ୟ ପୁରୋଧା ଥିଲି ମୁଁ । ବିନୋବାଜୀଙ୍କ ୮ ମାସର ଓଡ଼ିଶା ଯାତ୍ରାରୁ କୋରାପୁଟ ଜିଲ୍ଲାରେ ହିଁ ୪ ମାସ କଟିଥିଲା । ୨୦୫ଟି ଗ୍ରାମଦାନ ମିଳିଲା । ଏହାର ନବ ନିର୍ମାଣ ଦାୟିତ୍ୱ ପୂଜ୍ୟ ଆନ୍ନାସାହେବ ସହସ୍ରବୁଦ୍ଧେ ନେଇଥିଲେ । ଆନ୍ନାଜୀ ଅବିଭକ୍ତ କୋରାପୁଟ ଜିଲ୍ଲାର ଗ୍ରାମଦାନର ମୁଖ୍ୟ ଥିଲେ । ଶେଷରେ ଜିଲ୍ଲାଦାନ ହେଲା ଓ ବିଭିନ୍ନ

ଅଞ୍ଚଳର ରଚନାତ୍ମକ କର୍ମୀମାନେ ଯଥା- ଗୁଜୁରାଟ, ମହାରାଷ୍ଟ୍ର, କଟକ ଓ ପୁରୀରୁ ଆସି କାମରେ ଯୋଗଦେଲେ । ମୁଁ ନବରଙ୍ଗପୁର ସବ୍‌ଡିଭିଜନ ଦାୟିତ୍ୱରେ ଥିଲି । ଗ୍ରାମଗୁଡ଼ିକରେ ଜମିବଣ୍ଟନର କାର୍ଯ୍ୟନିଷ୍ଠା ବଢ଼ି ଚାଲିଲା । ଜମି ନଥିବା ଲୋକେ ଜମି ପାଇଲେ, ହଳ ନଥିବା ଲୋକେ ହଳ ପାଇଲେ ଓ ଗ୍ରାମସଭା ଗଢ଼ି ଲେକେକେ ସେହି ପାଣ୍ଠିରୁ ଋଣ ନେଲେ । ଫସଲ ଆଦାୟ ପରେ ଋଣ ପରିଶୋଧ କରୁଥିଲେ । ୩୫୦ ଗ୍ରାମରେ ଗ୍ରାମପାଣ୍ଠି ଥିଲା । ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ଦ୍ୱାରା ଜାରି କରାଯାଇଥିବା ଆପତକାଳୀନ ପରିସ୍ଥିତିରେ ସର୍ବୋଦୟ କର୍ମୀଙ୍କ ମଧ୍ୟରେ ବିଚାରଭେଦ ଦେଖାଦେଇ ସର୍ବୋଦୟ ପରିଷଦର ଜନ୍ମ ହୋଇଥିଲା । ଏହି ପରିପ୍ରେକ୍ଷୀରେ ସର୍ବୋଦୟ ପରିଷଦ ସରକାରୀ ଅନୁଦାନ ଗ୍ରହଣ କଲେ ।

ସନ ୧୯୪୦ ସାଲରେ ଝରି ଗାଁ ବ୍ଲକ ଅନ୍ତର୍ଗତ ବିଜାପୁର ଗ୍ରମରେ ଆଖପାଖ ୫୦ ଖଣ୍ଡ ଗ୍ରାମକୁ ନେଇ ଏକ କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ଏହି କେନ୍ଦ୍ରରେ ପୂଜ୍ୟ ରମାଦେବୀ ଓ ଗୋପବନ୍ଧୁଙ୍କ ଉଦ୍ୟମରେ ପାନୀୟ ଜଳର ସୁବିଧା ପାଇଁ ଏକ କୂପ ଖୋଳା ଯାଇଥିଲା । ଏହାପରେ ନବଜୀବନ ମଣ୍ଡଳ କେନ୍ଦ୍ର ମଧ ପ୍ରତିଷ୍ଠିତ ହେଲା । ଏହି ଗ୍ରାମର ଏକତା ଦେଖି ଜୟପ୍ରକାଶ ନାରାୟଣ' ଗୋପବାବୁ, ରମାଦେବୀ, ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମନମୋହନ ଚୌଧୁରୀ, ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ ହୋତା ପ୍ରମୁଖ ଗାନ୍ଧୀବାଦୀ ନେତାମାନେ ଏହି ଗ୍ରାମକୁ କର୍ମକ୍ଷେତ୍ର କରିଥିଲେ ।

ଏହି ଅଞ୍ଚଳରେ ବର୍ତ୍ତମାନ ଛଅଜଣ କର୍ମୀ ଅଛନ୍ତି । ସେମାନେ ହେଲେ ୧-ନରହରି ଜାନୀ, ୨-ନୟନା ମାଝୀ, ୩-ଚନ୍ଦ୍ର ପୂଜାରୀ, ୪-ଫଗୁଣ ଭଦ୍ରା, ୫-ବଳୀ ମାଝି, ୬-ସମ୍ବାରୁ ମାଝୀ । ଏମାନଙ୍କ ନେତୃତ୍ୱରେ ଗ୍ରାମସ୍ୱରାଜ୍ୟ କାମ ଚାଲିଛି । ଏହି କର୍ମୀମାନେ ବର୍ତ୍ତମାନ ନିମ୍ନରେ ଦିଆଯାଇଥିବା କାର୍ଯ୍ୟଗୁଡ଼ିକ ସମ୍ପନ୍ନ କରି ଚାଲିଛନ୍ତି ।

୧- ରାଜସ୍ୱ, ପୋଲିସ ଓ ବନ ବିଭାଗଗୁଡ଼ିକରୁ ଲାଞ୍ଚ ଉଚ୍ଛେଦ ।

୨- ଆଦିବାସୀମାନଙ୍କର ବେଦଖଲ ଜମିକୁ ପୁଣି ପ୍ରାପ୍ତ କରିବା ।

୩- ଗ୍ରାମ ପୋଖରୀଗୁଡ଼ିକୁ ଠିକାଦାର କବଳରୁ ମୁକ୍ତ କରିବା ।

୪- ନିଶା ନିବାରଣ ଓ ମଦବିରୋଧୀ ଆନ୍ଦୋଳନ ଚଳାଇବା ।

୫- ମହିଳା ସଙ୍ଗଠନ ମାଧ୍ୟମରେ ଗ୍ରାମ୍ୟପାଣ୍ଠି ଗଠନ କରିବା ।

ଆଶ୍ରମର କର୍ମୀମାନଙ୍କ ପାଇଁ ପନିପରିବା ଓ ଶସ୍ୟ ଆକାରରେ କିଛି କିଛି ସାହାଯ୍ୟ ଗ୍ରାମବାସୀ ଦେଇ ଆସୁଛନ୍ତି । କସ୍ତୁରବା ଟ୍ରଷ୍ଟ, ସର୍ବୋଦୟ ମଣ୍ଡଳ, ଉତ୍କଳ ନବଜୀବନ ମଣ୍ଡଳ, ଗାନ୍ଧୀ ସ୍ମାରକନିଧିଙ୍କ ସହିତ ସୁସମ୍ପର୍କରେ ଆମେ ସମସ୍ତେ ରହିଛୁ । ଏହିଭଳି ଝରିଗାଁ ବ୍ଲକ୍‌ର ପଚାଶ ଖଣ୍ଡ ଗ୍ରାମରେ ଜଳ, ଜମି ଓ ଜଙ୍ଗଲ ସମ୍ପଦର ସୁରକ୍ଷା ଦିଗରେ ସଫଳତାର ସହ ଲାଗିପଡ଼ିଛୁ ।

ସୁନାରୀ ସାହି, ନବରଙ୍ଗପୁର

ସତ୍ୟଠାରୁ ବିଚ୍ଛିନ୍ନ ହୋଇ କୌଣସି ସୌନ୍ଦର୍ଯ୍ୟ ନାହିଁ ।
ସତ୍ୟ ଭିତରେ ସୌନ୍ଦର୍ଯ୍ୟକୁ ଦେଖିଲେ ପ୍ରକୃତ କଳାର ସୃଷ୍ଟି ହେବ ।
- ବାପୁଜୀ

# ନଈତାଲୀମର ବିକଳ୍ପ ନାହିଁ

**କ୍ଷେତ୍ରମୋହନ ମହାନ୍ତି**

ମୋର ବାଲ୍ୟଗୁରୁ ୰ ଅଚ୍ୟୁତାନନ୍ଦ ମହାନ୍ତି ଓ ଗାଁର ମୁଖ୍ୟ ନଟବରଙ୍କ ପ୍ରେରଣା ନେଇ ପାଠ ପଢ଼ିବାବେଳୁ ସେବେଳର ଏକମାତ୍ର ସମ୍ବାଦପତ୍ର "ସମାଜ" ପଢ଼ିବା ମୋର ଅଭ୍ୟାସରେ ପରିଣତ ହୋଇଥିଲା । ଅଚ୍ୟୁତାନନ୍ଦ ଗୁରୁଜୀ ହାତରେ ସୂତାକାଟି ତନ୍ତରେ ବୁଣାଇ ଖଦଡ଼ ପିନ୍ଧୁଥାନ୍ତି । ଆଉ ଜଣେ ଶିକ୍ଷକ ଆଶୁକବି ଶ୍ରୀ କୃଷ୍ଣଚନ୍ଦ୍ର ତ୍ରୀପାଠୀ ଖଦଡ଼ ପିନ୍ଧୁଥିଲେ ଓ ଜାତୀୟ କାର୍ଯ୍ୟକ୍ରମ ପ୍ରତି ପ୍ରେରଣା ଦେଉଥିଲେ । ଯାଜପୁର ଲୋକାଲ ବୋର୍ଡର ଚେୟାରମ୍ୟାନ ସ୍ୱାଧୀନତା ସଂଗ୍ରାମୀ ୰ ଗଦାଧର ଦଳଙ୍କ ପ୍ରେରଣା ନେଇ ମୁଁ ଉଚ୍ଚଶିକ୍ଷା ପାଇଲି । ନିୟମିତ ଖଦଡ଼ ପିନ୍ଧିବା ଅଭ୍ୟାସ କଲି । ହିନ୍ଦୀ ପ୍ରଚାରକ ପଣ୍ଡିତ ବାସୁଦେବ ଦାଶ ଯାଜପୁର ବିରଜା ହାଇସ୍କୁଲ ପାଖରେ ଏକ ରାଷ୍ଟ୍ରଭାଷା ଶିକ୍ଷାକେନ୍ଦ୍ର ଖୋଲିଥିଲେ । ମୁଁ ସେଠାରେ ଛାତ୍ର ଭାବେ ଗୃହୀତ ହେଲି ।

୧୯୪୨ "ଭାରତଛାଡ଼" ଆନ୍ଦୋଳନ ବେଳେ ମୁଁ ନବମ ଶ୍ରେଣୀରେ ପଢୁଥାଏ । ଯାଜପୁରର ସ୍ୱନାମଧନ୍ୟ ବିପ୍ଳବୀନେତା ପଦ୍ମନାଭ ରାୟଙ୍କ ନେତୃତ୍ୱରେ ଏକ ବିରାଟ ଜନତା ଯାଜପୁର କଚେରୀ ଦଖଲ କରୁଥିଲାବେଳେ ମୁଁ ସେଥିରେ ସାମିଲ ହୋଇଥିଲି । ୧୯୪୫ ମସିହାରେ ମାଟ୍ରିକ ପାଶ୍ କରି ସରକାରଙ୍କ ଅଧିକ ଶସ୍ୟ ଉତ୍ପାଦନ କାର୍ଯ୍ୟକ୍ରମରେ ଯୋଗଦେଇ କୃଷି ବିଭାଗୀୟ ସବ୍ ଓଭରସିଅର ପଦରେ ନିଯୁକ୍ତି ଲାଭ କଲି ।

୧୯୪୬ ମସିହାରେ ମହାତ୍ମା ଗାନ୍ଧୀଙ୍କ ପରିକଳ୍ପିତ ମୌଳିକ ଶିକ୍ଷା ପ୍ରତି ମୋର ଆଗ୍ରହ ଜନ୍ମିଲା । ଚାକିରୀ ଛାଡ଼ି ବରୀ - ରାମଚନ୍ଦ୍ରପୁର ଠାରେ ମୌଳିକ ପ୍ରଶିକ୍ଷଣ କେନ୍ଦ୍ରରେ ତାଲୀମ ପାଇଲି । ଅତଃପର ମୌଳିକ ଶିକ୍ଷକ ଭାବରେ ଅଦୂରବର୍ତ୍ତୀ ହାଟସାହି ବିଦ୍ୟାଳୟରେ ଶିକ୍ଷକତା କଲି । ସେଠାରେ ଅବସ୍ଥାପିତ ଗୁରୁଜୀ ଆର୍ତ୍ତବନ୍ଧୁ ମହାନ୍ତିଙ୍କ ପ୍ରେରଣା ଓ ସହଯୋଗରେ ସ୍କୁଲକୁ କେନ୍ଦ୍ରକରି ନେତାଜୀ ପାଠାଗାର ଓ ଯୁବସଂଘ ପ୍ରତିଷ୍ଠା କଲୁ । ଶ୍ରୀ ସାଧୁ ଦାସ ଓ ଜୟରାମ ବେହେରା ଗ୍ରାମରେ ଗୋଟିଏ ଗୋଟିଏ ଦଳର ନେତା ଥିଲେ । ଦଳାଦଳି ବଢୁଥିଲା । ଆମେ ସମସ୍ତ ଦଳାଦଳି ମେଣ୍ଟାଇ ଦଳଗତ ସୁସମ୍ପର୍କ ରକ୍ଷା କଲୁ । ଉଚ୍ଚତର ଟ୍ରେନିଂ ପାଇଁ ସ୍ୱନାମଧନ୍ୟ ପ୍ରଧାନଶିକ୍ଷକ ଗୌରଚନ୍ଦ୍ର ପାଢ଼ୀଙ୍କ ନେତୃତ୍ୱରେ ପରିଚାଳିତ ଅନୁଗୁଳ ମୌଳିକ ପ୍ରଶିକ୍ଷଣ ବିଦ୍ୟାଳୟରେ ତାଲୀମ ନେଇ ବରୀ ଅଞ୍ଚଳକୁ ଫେରିଆସି ଧାରପୁର ମୌଳିକ ସ୍କୁଲରେ ଯୋଗଦେଲି । ପୁରୀ ଜିଲା ଡେଲାଙ୍ଗର ସ୍ୱାଧୀନତା ସଂଗ୍ରାମୀ ଓ ମୌଳିକ ଶିକ୍ଷକ କଣ୍ଡୁରି ଚରଣ ନାୟକ ଏଠାରେ ପ୍ରଧାନ ଶିକ୍ଷକ ଥିଲେ । ବିଦ୍ୟାଳୟଟି ସରକାରୀ ହୋଇଯିବା ପରେ ସେ ଏଠାରୁ ନିଜ ଅଞ୍ଚଳକୁ ଚାଲିଗଲେ । ମୁଁ ପ୍ରଧାନ ଶିକ୍ଷକ ହେଲେ ମଧ ଶ୍ରୀ ରାଧାଶ୍ୟାମ ମହାନ୍ତିଙ୍କ ପରି ସହଯୋଗୀ ଶିକ୍ଷକମାନଙ୍କୁ ଯଥୋଚିତ ସମ୍ମାନ ଦେଉଥିଲି । ମୋର କାର୍ଯ୍ୟକାଳ ମଧରେ ବିଦ୍ୟାଳୟ ଗୃହ ନିର୍ମାଣ, ବହୁ ଫଳର ବଗିଚା ଓ ଉଚ୍ଚ ମୌଳିକ ବିଦ୍ୟାଳୟର ପ୍ରତିଷ୍ଠା ସମ୍ଭବପର ହୋଇଥିଲା ।

୧୯୫୧/୫୨ ମସିହାରେ ପ୍ରାଥମିକ ଶିକ୍ଷକମାନଙ୍କୁ ମୌଳିକ ମୌଳିକ ଶିକ୍ଷାରେ ପ୍ରତୀକ ତାଲୀମ ଲକ୍ଷ୍ୟରେ ରାଜ୍ୟସରକାର ଭ୍ରାମ୍ୟମାଣ ତାଲୀମ କେନ୍ଦ୍ରମାନ ପ୍ରତିଷ୍ଠା କଲେ । ମୌଳିକ ଗୁରୁଜୀ ନଟବର ଦେବତାଙ୍କ ସହକାରୀ ଭାବରେ ମୁଁ ଯୋଗ ଦେଲି । ଢେଙ୍କାନାଳ ଜିଲ୍ଲାରେ ସ୍ଥାନୁ ସ୍ଥାନାନ୍ତର ଭ୍ରାମ୍ୟମାଣ ଶିବିରରେ ଆମେ ପ୍ରାଥମିକ ଶିକ୍ଷକମାନଙ୍କୁ ତାଲୀମ ଦେଲୁ । ପୁଣି ପୁରୀ ଜିଲ୍ଲା ବିଶ୍ୱନାଥ ପୁର ଶାସନ ନିବାସୀ କାଶୀନାଥ ଷଡ଼ଙ୍ଗୀଙ୍କ ସହ କଳାହାଣ୍ଡି, ବଲାଙ୍ଗୀର ବରଗଡ଼ ଅଞ୍ଚଳର ଶିକ୍ଷକମାନଙ୍କୁ ତାଲୀମ ଦେଲି । ଏହାପରେ ମୌଳିକ ସ୍କୁଲ ସୁପରଭାଇଜର ଭାବରେ ଧାରପୁର, ଯାଜପୁର ଓ କେନ୍ଦ୍ରାପଡ଼ା ଅଞ୍ଚଳରେ ମୌଳିକ ସ୍କୁଲ ପରିଦର୍ଶନ ମାଧମରେ ବହୁ ପ୍ରାଥମିକ ସ୍କୁଲକୁ ମୌଳିକ ସ୍କୁଲରେ ପରିଣତ କରାଇ ପାରିଥିଲି ।

୧୯୫୪ ମସିହାରେ ସନ୍ଥ ବିନୋବାଜୀଙ୍କ ଭୂଦାନ ଯାତ୍ରା କାର୍ଯ୍ୟକ୍ରମରେ ବାଣାଶ୍ରୀ ଉଚ୍ଚ ମୌଳିକ ବିଦ୍ୟାଳୟ ରାମଚନ୍ଦ୍ରପୁର ଠାରେ ଏକ ବିରାଟ ପ୍ରଦର୍ଶନୀର ବ୍ୟବସ୍ଥା କରିଥିଲି । ଇତି ମଧ୍ୟରେ ଶିକ୍ଷାଗତ ଯୋଗ୍ୟତା ବଢ଼ାଇ ବି.ଇଡ଼ି.ରେ ଉତ୍ତୀର୍ଣ୍ଣ ହେଲି । କିଛିଦିନ ସ୍କୁଲ ସବ୍‌ଇନିସ୍‌ପେକ୍ଟର ଭାବରେ କାର୍ଯ୍ୟକରି ୧୯୮୨ ସେପ୍ଟେମ୍ବର ଆଦ୍ୟରୁ ଚାକିରୀରୁ ଅବସର ଗ୍ରହଣ କରି ରଚନାତ୍ମକ କାର୍ଯ୍ୟରେ ମନୋନିବେଶ କରିଛି । ଉତ୍କଳ ସର୍ବୋଦୟମଣ୍ଡଳ ଓ ଗାନ୍ଧୀ ସ୍ମାରକ ନିଧିଙ୍କ ସହ ସମ୍ପୃକ୍ତ ରହି ଯାଜପୁର ଜିଲାରେ ସର୍ବୋଦୟ ମଣ୍ଡଳର ଶାଖା ଗଠନ କରି ଗ୍ରାମସ୍ୱରାଜ୍ୟ ପ୍ରତିଷ୍ଠା ଲକ୍ଷ୍ୟରେ ବ୍ରତୀ ଅଛି ।

୧୯୪୮ ଠାରୁ ବହୁବାର ଗୁରୁଛାତ୍ର ତଥା ସାଙ୍ଗସାଥୀଙ୍କ ଗହଣରେ ସପରିବାର ପୁରୀ ଗାନ୍ଧୀଘାଟରେ ଅନୁଷ୍ଠିତ ସର୍ବୋଦୟ ମେଳାରେ ଭାଗନେଇ ପ୍ରସନ୍ନତା ଅନୁଭବ କରିଛି । ଦେଶକୁ ସୁଖୀ ଓ ସମୃଦ୍ଧ କରିବା ପାଇଁ ସର୍ବୋଦୟ ଆନ୍ଦୋଳନର ବିକଳ୍ପ ନାହିଁ ବୋଲି ମୋର ହୃଦବୋଧ ହୋଇଛି ।

ଗୁରୁକୃପା ସଦନ, ବିଂଝାରପୁର, ଯାଜପୁର



## ଦୁର୍ଗମ ପଥ ଏ ଭଜନ

**ଶ୍ରୀ ଗୋଲକଚନ୍ଦ୍ର ଦାସ**

୧୯୩୪ ମସିହା ଫେବୃୟାରୀ ୧୪ ତାରିଖରେ ମୋର ଜନ୍ମ । ମୋର ଘର କେନ୍ଦ୍ରାପଡ଼ା ଜିଲା ଧୂମାତ ଗ୍ରାମରେ । ମାଟ୍ରିକ ପଢ଼ିବା ପରେ ଗ୍ରାମରେ ବେକାର ଜୀବନ ବିତାଉଥିଲାବେଳେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ମା' ରମାଦେବୀଙ୍କ କାର୍ଯ୍ୟ ଦ୍ୱାରା ଆକର୍ଷିତ ହେଲି । ଆମ ଗ୍ରାମର ଶ୍ରୀ ନାରାୟଣ ଦାସ ମୋତେ ଓ ମୋର କେତେଜଣ ସାଥୀଙ୍କୁ ତାଙ୍କ ସହ ବରୀ ପଠାଇଲେ ।

ଭାଗବତ୍‌କାର କହନ୍ତି-
''ଦୁର୍ଗମ ପଥ ଏ ଭଜନ,
ଭୟେ ଭାଜନ୍ତି ଯୋଗୀ ଜନ''

ମୋ ସାଥିମାନେ ପଳାଇ ଆସିଲେ, ମାତ୍ର ମୁଁ ରହିଲି, ଗୋପବାବୁଙ୍କ ନିର୍ଦ୍ଦେଶରେ ତାଙ୍କ ପୁଅ ମନମୋହନ ମୋତେ ତାଲିମ ଦେଲେ । ମୁଁ ଗାନ୍ଧୀ ସାହିତ୍ୟ ଓ ବିବିଧ ପୁସ୍ତକ ପଢ଼ିବାର ସୁଯୋଗ ପାଇଲି । ସନ୍ଥ ବିନୋବାଜୀଙ୍କ ଭୂଦାନ ଯାତ୍ରା କାର୍ଯ୍ୟକ୍ରମରେ ସାମିଲ ହୋଇ ବରୀ ଅଞ୍ଚଳରେ ୨ ମାସ କାର୍ଯ୍ୟ କଲି । ପୁରୀରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀ ପାଇଁ ବିନୋବାଜୀଙ୍କ ସହଯାତ୍ରୀ ରହିଲି । ରାମଚନ୍ଦ୍ରପୁରରେ ୨ ମାସିଆ କର୍ମୀ ତାଲିମ ଗ୍ରହଣ କରି କୋରାପୁଟ ଭୂଦାନ ଯାତ୍ରାରେ ଭୂସଂଗ୍ରହ କାର୍ଯ୍ୟରେ ଭାଗ ନେଲି । ୧୯୫୫ରେ ବିନୋବାଜୀ ଓଡ଼ିଶାରୁ ପ୍ରତ୍ୟାବର୍ତ୍ତନ କଲେ । କୋରାପୁଟ ଓ ଗୁଡ଼ାରୀ ଅଞ୍ଚଳରେ ଭୂଦାନ ଜମି ବଣ୍ଟନ, ସର୍ବ ସେବା ସଂଘ ଆନୁକୂଲ୍ୟରେ ନିର୍ମାଣ କାର୍ଯ୍ୟରେ ଯୋଗଦେଲି । ଆଦିବାସୀ ଅଞ୍ଚଳରେ ଉତ୍କଟ ନିଶା ପ୍ରସାରଣ, ବନବିଭାଗର କର୍ମଚାରୀଙ୍କ ଶୋଷଣ, ସାହୁକାରଙ୍କ ଶୋଷଣ, ସାହୁକାରଙ୍କ ଦ୍ୱାରା ଅନ୍ୟାୟ ଅତିରିକ୍ତ ଋଣ ଆଦାୟ କରିବାର ଜୁଲମ୍ ବିରୁଦ୍ଧରେ ଆନ୍ଦୋଳନ ଚଳାଇ ରଖିଲି । ସେଥିସଙ୍ଗେ, ତା ସହିତ ସବୁଜ ସାର ତିଆରି ଓ ପାଇଖାନା ବ୍ୟବହାର ଭଳି ମୌଳିକ ସ୍ୱାସ୍ଥ୍ୟସେବାର ପ୍ରଶିକ୍ଷଣର ଏବଂ ପୟୋଗ ଯୋଗାଇଲୁ ।

୧୯୬୮ ମସିହାରୁ ମା' ରମାଦେବୀଙ୍କ ନିର୍ଦ୍ଦେଶରେ ସତ୍ୟଭାମାପୁରସ୍ଥିତ କସ୍ତୁରବା ଜାତୀୟ ସ୍ମାରକ ନିଧି କେନ୍ଦ୍ରରେ କାର୍ଯ୍ୟାଳୟ ପରିଚାଳନା ଦାୟିତ୍ୱରେ ରହିଲି । ମୁଁ ଉତ୍କଳ ସର୍ବୋଦୟ ମଣ୍ଡଳ, ସର୍ବୋଦୟ ରିଲିଫ କମିଟି, ଗାନ୍ଧୀ ସ୍ମାରକ ନିଧି ତଥା ଗ୍ରାମସେବକ ସମବାୟ ପ୍ରକାଶନ ପ୍ରଭୃତି ରଚନାତ୍ମକ ସଂସ୍ଥା ସହସଂପୃକ୍ତ ।

ଆଗଭଳି ସମାଜସେବାରେ ଉତ୍ସାହ, ଉଦ୍ଦୀପନା ଓ ମାଦକତା ଆଉ ନାହିଁ । ସର୍ବତ୍ର ଦୁର୍ନୀତି ଓ ଭ୍ରଷ୍ଟାଚାର । ତଥାପି ଯେଉଁ ନିଃସ୍ୱାର୍ଥପର, ନିଷ୍କପଟ କର୍ମୀମାନେ ଦେଶ ଓ ଦଶର ସେବା ପାଇଁ ଜୀବନକୁ ତିଳ, ତିଳ କରି ଆହୂତି ଦେଇଛନ୍ତି ତାଙ୍କର ଅମ୍ଳାନ ପ୍ରତିଭା ପ୍ରତି ଶ୍ରଦ୍ଧାଞ୍ଜଳି ହିଁ ଆମର କାମ୍ୟ । ଯୁବପିଢ଼ୀ ହୃଦୟକୁ ଅପରର ଭାବନାରେ ବେଦନାଭରା କରିପାରିଲେ ତ୍ୟାଗୀ ପୁରୁଷଙ୍କ ସାଧନା ସାର୍ଥକ ହେବ । ● ସତ୍ୟଭାମାପୁର, କଟକ

# କାଶୀପୁର ଜନଆନ୍ଦୋଳନ

ଅଲେଖ ପାତ୍ର
ରମାକାନ୍ତ ମଣ୍ଡଳ

ରାୟଗଡ଼ା ଜିଲ୍ଲାର କାଶୀପୁର ବ୍ଲକରେ ଏଲୁମିନିୟମ କାରଖାନା ପ୍ରତିଷ୍ଠା ବିରୋଧରେ ଚାଲିଥିବା ଜନ-ଆନ୍ଦୋଳନ ସମ୍ବନ୍ଧରେ ସବିଶେଷ ଖବର ବୁଝିବା ପାଇଁ ଆମେ ସେପ୍ଟେମ୍ବର ୧୮ ତାରିଖ ଦିନ କାରଖାନା ସ୍ଥାପନକୁ ବିରୋଧର ମୁଖ୍ୟସ୍ଥଳ କୁଚେଇପଦର ଠାରେ ପହଞ୍ଚିଲୁ ।

ଏ ବର୍ଷ ଜାନୁଆରୀ ମାସ ପୂର୍ବରୁ କମ୍ପାନୀ ପକ୍ଷରୁ କିଛି ନିର୍ମାଣ କାର୍ଯ୍ୟ ପାଇଁ କୁଚେଇପଦର ଗ୍ରାମ ସୀମାରେ ୪-୫ ଗୋଟି ତମ୍ବୁ ପକାଯାଇ ଜମିରେ ଡ୍ରିଲିଂ କାମ ଆରମ୍ଭ କରାଯାଇଥିଲା । ସ୍ଥାନୀୟ ଲୋକେ ବିରୋଧ କରିବାରୁ କମ୍ପାନୀ ଲୋକେ ତମ୍ବୁ ସହ ନିଜର ସମସ୍ତ ସାଧନ ଉଠାଇ ନେଇ ସେଠାରୁ ଫେରି ଚାଲି ଯାଇଥିଲେ । ବର୍ତ୍ତମାନ ସେହି ସ୍ଥାନରେ ଲୋକେ ଖରିଫ ଫସଲ କରିଥିବାର ଆମେ ଦେଖିଲୁ ।

କମ୍ପାନୀ ପକ୍ଷରୁ ଗତ ଏପ୍ରିଲ ୧୨ ଓ ୧୩ ତାରିଖରେ କୁଚେଇପଦରଠାରେ ଏକ ଦାତବ୍ୟ ଚକ୍ଷୁ ଚିକିତ୍ସା ଶିବିର ଚଳାଇବା ପାଇଁ ଏବଂ ଜିଲ୍ଲାପାଳଙ୍କୁ ତାହାର ଉଦ୍‌ଘାଟନ କର୍ତ୍ତା କରାଯାଇ ପୂର୍ବରୁ ଖୁବ୍ ପ୍ରଚାର କରାଯାଇଥିଲା । ତଦନୁସାରେ ୧୨ ତାରିଖରେ ଚିକିତ୍ସା ସାମଗ୍ରୀ ଓ ତମ୍ବୁ ଆଦି ସହ କମ୍ପାନୀ ଲୋକେ କୁଚେଇପଦର ଠାରେ ପହଞ୍ଚିଲେ । ଉଦ୍‌ଘାଟନ କରିବାକୁ ଜିଲ୍ଲାପାଳ ଆସି ସେଠାରୁ ୧୨ କିଲୋମିଟର ଦୂର ଟିକିରୀଠାରେ ଅଟକି ରହିଥିଲେ । ମାତ୍ର ଗାଁ ଲୋକେ କମ୍ପାନୀଦ୍ୱାରା ଆୟୋଜିତ ଏହି ଚକ୍ଷୁ ଚିକିତ୍ସା ଶିବିରର ସୁଯୋଗ ନେବାକୁ ଅନିଚ୍ଛୁକ ହୋଇ ପ୍ରତିବାଦ ଜଣାଇଥିଲେ । ହଜାର ହଜାର ସୁସ୍ଥ ଲୋକଙ୍କ ପେଟର ଦାନା ମାରି ଅଳ୍ପ କେତେଜଣଙ୍କର ଚକ୍ଷୁ ଚିକିତ୍ସା କରିବା କମ୍ପାନୀର ଏହା ଏକ ଚାଲ୍ ଏବଂ କମ୍ପାନୀକୁ ଏଭଳି ଚାଲ୍ ଖେଳିବାକୁ ଦିଆଯିବ ନାହିଁ ବୋଲି ଲୋକେ ଖୋଲାଖୋଲି କହିଦେବାରୁ ଆୟୋଜକମାନେ ଫେରି ଯାଇଥିଲେ ।

ବିସ୍ଥାପିତ ଲୋକଙ୍କ ରହିବା ପାଇଁ ତିଆରି ହେବାକୁ ଥିବା ଘରର ଏକ ନମୁନା-ଘର ସୁଦୂର ରାୟଗଡ଼ାଠାରୁ ଇଟା ବୁହାଇ ଆଣି କମ୍ପାନୀର କଲୋନୀ ବସାଇବା ସ୍ଥାନରେ ତିଆରି ଆରମ୍ଭ କରିଥିଲେ । କେବଳ ଛାତ ପକାଇବା ବାକି ଥିଲା । ଗତ ଜୁନ୍ ମାସ ୧୦ ତାରିଖରେ କେତେ ଖଣ୍ଡ ଗାଁର ଲୋକେ ମିଳିତ ଭାବେ ସେହି ଘରର କାନ୍ଥକୁ ଭାଙ୍ଗି ଚୂରମାର କରି ଦେଇଛନ୍ତି । ଏଥିପାଇଁ କେତେଜଣ ମହିଳାଙ୍କ ସମେତ ପ୍ରାୟ ୧୨ ଜଣଙ୍କ ନାମରେ ପୁଲିସ୍ କେସ୍ ହୋଇଛି । କଲୋନୀ ବସାଯିବା ଜମିରେ ଏବେ ଚାଷ ହୋଇଥିବାର ଆମେ ଦେଖିଲୁ । ମଜାର କଥା ହେଲା ଯେ ଯେଉଁ କରୋଲ ଗାଁର ଲୋକେ ପ୍ରଥମରୁ କମ୍ପାନୀ ପକ୍ଷରେ ଥିଲେ ସେମାନେ ଏବେ ଆନ୍ଦୋଳନ ସପକ୍ଷରେ ବାହାରିଲେଣି । କମ୍ପାନୀ ପକ୍ଷରୁ କୌଣସି ପ୍ରକାରର ନିର୍ମାଣ କାର୍ଯ୍ୟ ଏପର୍ଯ୍ୟନ୍ତ ହୋଇ ପାରିନଥିଲେ ମଧ୍ୟ ଲୋକଙ୍କୁ କ୍ଷତି ପୂରଣ ଟଙ୍କା ବାଣ୍ଟିବା କାମ ଅବ୍ୟାହତ ରହିଛି । ତେବେ ଏ କାମ ଚୋରା ଲୁଚାରେ କମ୍ପାନୀ କରୁଛି । କେତେକ ଲୋକ ଟଙ୍କା ନ ନେବା ପାଇଁ ଅଟଳ ରହିଛନ୍ତି ।

ଯେଉଁ ପାହାନ ଅଞ୍ଚଳରୁ ଖଣି ଖୋଳାଯିବ ସେଠାକାର ଲୋକଙ୍କ ନାମରେ ଜମିର ପଟ୍ଟା ନାହିଁ । ତେଣୁ ସେ ଲୋକେ ବିସ୍ଥାପିତ ହେଲେ ମଧ୍ୟ କ୍ଷତିପୂରଣ ବାବଦରେ ପଇସାଟିଏ ସୁଦ୍ଧା ପାଇବେ ନାହିଁ । କମ୍ପାନୀକୁ ପୁରାଇ ନଦେବା ପାଇଁ ସେମାନେ ଅଧିକ ଦୃଢ଼ ବୋଲି ଆମେ ଶୁଣିଲୁ । ମାତ୍ର ସେ ଅଞ୍ଚଳ କୁଚେଇପଦର ଠାରୁ ପ୍ରାୟ ୧୫ କିଲୋମିଟର ଦୂର ହୋଇଥିବାରୁ ଆମେ ସେଠାକୁ ଯାଇ ପାରିଲୁ ନାହିଁ ।

କୁଚେଇପଦରଠାରେ ମାତ୍ର ପାଞ୍ଚଘଣ୍ଟାର ରହଣୀ ଭିତରେ ଗାଁ ଲୋକେ ଯଥେଷ୍ଟ ସଂଖ୍ୟାରେ ଆମ ପାଖେ ଯୁଟି ଯାଇଥିଲେ । ସେମାନଙ୍କ ଭିତରେ ଉତ୍ସାହ ଖେଳି

ଯାଇଥିବା ବେଶ୍ ଅନୁଭବ ହେଉଥିଲା । ଛୋଟ ସଭାଟିଏ ମଧ୍ୟ କରାଯାଇଥିଲା । ସେଠାର ଆନ୍ଦୋଳନ ପ୍ରତି ଆମର ଆଗ୍ରହ ଯୋଗୁ ଗାଁ ଲୋକେ ଆମ ପ୍ରତି ଯଥେଷ୍ଟ ସୌଜନ୍ୟ ଦେଖାଇଥିଲେ । ସେ ଅଞ୍ଚଳରେ କେହି ଜଣେ କର୍ମୀ ରହି ଏଲ୍ୟୁମିନିୟମ କମ୍ପାନୀ ବିରୁଦ୍ଧରେ ଲୋକଙ୍କର ଆନ୍ଦୋଳନକୁ ସଂଗଠିତ କରି ପାରିଲେ, ଆନ୍ଦୋଳନର ତେଜ ବଢ଼ନ୍ତା ବୋଲି ଆମର ମତ ।●

୧୯୯୭ ନଭେମ୍ବର ୧୫ ସଂଖ୍ୟା 'ସର୍ବୋଦୟ'ରୁ ଗୃହୀତ

## ଶ୍ରମର ମଜୁରୀ ଭାଟିକୁ ଯାଉଚି

ସୁନନ୍ଦା ବରାଳ

ନାଲ୍କୋର ହାତ୍ୱାରେ ଉଚ୍ଚ ଶ୍ରେଣୀ ବୋଲାଉଥିବା ଲୋକେ ଦେଶୀ ଓ ବିଦେଶୀ ମଦ ଖାଇବାରେ ଅଗ୍ରଣୀ । ଯେଉଁମାନେ ତଳ ଶ୍ରେଣୀରେ ରହିଲେ ସେମାନେ ହାଣ୍ଡିଆ ପିଉଛନ୍ତି । ନିଜ ଶ୍ରମର ଦିନ ମଜୁରୀ ଭାଟିକୁ ଯାଉଛି । ସେମାନଙ୍କ ଅବସ୍ଥା ଅତୀବ ଶୋଚନୀୟ । ସରକାର ତ ମଦ ଭାଟି ଖୋଲିବାରେ ବ୍ୟସ୍ତ । ବଳାତ୍କାର ଲୋକଙ୍କୁ ମଦ ମୁହଁକୁ ଠେଲି ଦେଉଛନ୍ତି ।

ଆମେ ଏହି ଅନୀତି ବିରୁଦ୍ଧରେ ଶ୍ରମ, ମନ ଓ ଧ୍ୟାନ ଖଟାଇ ଲାଗିଛୁ ।●

ନାଲକୋ ସେବାକେନ୍ଦ୍ର, ଅନୁଗୁଳ

## ଆତ୍ମ-ନିଯୁକ୍ତିରେ ସଫଳତା

ଶ୍ରୀ ଦାମୋଦର ମିଶ୍ର

ଢେଙ୍କାନାଳ ଜିଲ୍ଲା ଭୁବନ ଅଞ୍ଚଳର ମଣିପୁର ଗ୍ରାମରେ ମୋର ଜନ୍ମ । ବର୍ତ୍ତମାନ ବୟସ ୬୧ ବର୍ଷ । ମୁଁ ଶିକ୍ଷକତା ଓ ଗ୍ରାମ ଗୋଷ୍ଠୀ ଯୋଜନାରେ ଗ୍ରାମସେବକ ଥିଲି । ପୂଜ୍ୟା ମାଳତୀ ଚୌଧୁରୀ (ନୁମା), ରମାଦେବୀ ଓ ବାପା ଗୋପବନ୍ଧୁ ଚୌଧୁରୀଙ୍କ ପ୍ରେରଣାରେ ସରକାରୀ ଚାକିରୀ ଛାଡ଼ି ସନ୍ଥ ବିନୋବାଜୀଙ୍କ ଭୂଦାନ ଆନ୍ଦୋଳନରେ ଯୋଗଦେଲି । ପୂଜ୍ୟ ବିନୋବାଜୀଙ୍କ ସହିତ ମୟୂରଭଞ୍ଜ ଜିଲ୍ଲାର ଶୀର୍ଷାଠାରୁ ଆରମ୍ଭ କରି ଖଡ଼ିଆଳରୋଡ ପର୍ଯ୍ୟନ୍ତ ସାରା ଓଡ଼ିଶା ବୁଲିଥିଲି । ମୋ ପରିବାରର ସମସ୍ତ ସଦସ୍ୟ 'ସର୍ବୋଦୟ' ମନ୍ତ୍ରରେ ଦୀକ୍ଷିତ । ଋଷି ପ୍ରତିମ ଆଚାର୍ଯ୍ୟ ହରିହରଙ୍କ ସହିତ ଢେଙ୍କାନାଳ ଜିଲ୍ଲାର ବିଭିନ୍ନ ସ୍ଥାନକୁ ପଦଯାତ୍ରା କରିଛି । ବିଶେଷ କରି ସର୍ବୋଦୟ-ପାତ୍ର କାମରେ ଦୀର୍ଘଦିନ ସମୟ ଦେଇଛି ।

ପୂଜ୍ୟା ନୁମାଙ୍କ ନିର୍ଦ୍ଦେଶରେ ଉତ୍କଳ ନବଜୀବନ ମଣ୍ଡଳର ଜଣେ କର୍ମୀ ରୂପେ ନିଯୁକ୍ତି ପାଇ ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ କଙ୍କଡ଼ାହାଡ଼ ବ୍ଲକ ଓ ପାରଳାଖେମୁଣ୍ଡି ଜିଲ୍ଲାର (ବର୍ତ୍ତମାନ ଗଜପତି) ଉଦୟଗିରି ଓ ମୋହନା ବ୍ଲକରେ ଖଦୀ ଓ ଗ୍ରାମୋଦ୍ୟୋଗ କାର୍ଯ୍ୟ କରିଛି । ମହାରାଷ୍ଟ୍ରର ନାସିକ୍ ଓ ବମ୍ବେରେ 'କ୍ଷେତ୍ର-ସଂଗଠନ' ତାଲିମ୍ ହାସଲ କରିଛି । ନିଜେ ଦାୟିତ୍ୱରେ ଥିଲାବେଳେ

## ରଜା ଘରେ ଚାକିରୀ ଖଟି....

ଗଣ କବି ବୈଷ୍ଣବ ପାଣି

ରଜାଘରେ ଚାକିରୀ ଖଟି,
ବରଷକେ ଜମା ଦି'ଦିନ ଛୁଟି ।
ପୋଡ଼ିଯାଉ ପୋଷାକ ପିନ୍ଧା
ମେ ଅମୂଲ ଧନ୍ଦା ।
ମୋଟା ଖଦୀ ସୁଖ ନମିଳେ ତହିଁରେ
ସବୁଦିନ ମନ ହୁଅଇ ଘାଣ୍ଟି ॥୧॥
ଇସ୍ତଫା କରି ଦାଖଲ
ମୁଁ ଲାଗିବି ମୂଳ,
ସେ ହୋଇବ ଭଲ ।
ବଇଷବ ଭାଷେ କରି ଚାଷବାସ
ଲଙ୍ଗଳରେ ମୋର ଚିରିବି ମାଟି ॥୨॥
ପୋଡ଼ିଯାଉରେ ଇଂରାଜୀ ଅମଳ
ହରି ନେଇଗଲା ଦେଶୁଁ ଟଙ୍କା ସୁନା
ଦେହରୁ ହରିଲା ଆମର ବଳ ।
ପଇସାରେ ପାନ ପାଞ୍ଚଟା ଛଅଟା
ଟଙ୍କାରେ ଛ'ସେର ଅଧେ ଚାଉଳ ॥୩॥

ଲକ୍ଷାଧିକ ଟଙ୍କାର ଖଦୀ ଉତ୍ପାଦନ ଓ ବିକ୍ରୟ ହୋଇଥିବା ମୋ ପକ୍ଷରେ ଅତ୍ୟନ୍ତ ଆନନ୍ଦଦାୟକ । ଗ୍ରାମ-ସ୍ୱରାଜ୍ୟ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଉତ୍କଳ ନବଜୀବନ ମଣ୍ଡଳ ଦ୍ୱାରା ସଞ୍ଚାଳିତ କଙ୍କଡ଼ାହାଡ଼ ଗ୍ରାମ ଉନ୍ନୟନ ପ୍ରକଳ୍ପରେ ସଂଗଠକ ରୂପେ ଯୋଗଦେଲି । ଏହି କାର୍ଯ୍ୟ ମକୁଆ କାଙ୍କେଣୀ ଓ ବୀରାଶାଳ ପଞ୍ଚାୟତର ମୋଟ ୨୦ ଖଣ୍ଡି ଗ୍ରାମରେ ଅଦ୍ୟାବଧି ଚାଲୁ ରହିଛି । ସମାଜର ଯୁବଗୋଷ୍ଠୀ ଉପରେ ଏହା ସୁପ୍ରଭାବ ପକାଉଛି । ଏହି ପ୍ରକଳ୍ପ ଆନୁକୂଲ୍ୟରେ ସେହି ୨୦ଟି ଗ୍ରାମରେ ହିତାଧିକାରୀ ଗରିବ, ଆଦିବାସୀ ହରିଜନ ଓ କ୍ଷୁଦ୍ର ଚାଷୀଙ୍କର ମୋଟ ୪୧୫ ଏକର ଜମି ସୁଧାର କରାଯାଇ ପାରିଛି । ଏଥିରେ ଅନୁଷ୍ଠାନ ତରଫରୁ ୨ ଲକ୍ଷ ଟଙ୍କା ଓ ହିତାଧିକାରୀମାନଙ୍କର ୪ ଲକ୍ଷ ଟଙ୍କାର ଶ୍ରମଶକ୍ତି ବିନିଯୋଗ କରାଯାଇଛି । ଏହା ଦ୍ୱାରା ସଂପୃକ୍ତ ହିତାଧିକାରୀମାନଙ୍କର ଆର୍ଥିକ ସ୍ଥିତି ଭବିଷ୍ୟତରେ ନିଶ୍ଚିତ ରୂପେ ପରିବର୍ତ୍ତିତ ହେବ ।

ପ୍ରତ୍ୟେକ ଗ୍ରାମରେ ଲୋକଙ୍କ ଆର୍ଥିକ ସ୍ଥିତିର ଉନ୍ନତି ପାଇଁ ଗ୍ରାମବାସୀଙ୍କ ସହଯୋଗ ରାଶି (own-share) ଓ ଅନୁଷ୍ଠାନର ସାହାଯ୍ୟକୁ ନେଇ କୋଠପାଣ୍ଠି ଗଠିତ ହୋଇଛି । ହିତାଧିକାରୀମାନେ ତାଙ୍କ କୌଳିକ ବୃତ୍ତିର ଲାଭାଂଶରୁ କିଛି କିଛି ପ୍ରତି ମାସରେ ଗ୍ରାମପାଣ୍ଠିକୁ ଦେଉଛନ୍ତି; ଯାହାକି ନୂତନ ହିତାଧିକାରୀଙ୍କୁ ସାହାଯ୍ୟ ଦିଆଯାଉଛି । ଏହିପରି ଭାବରେ ଏହି ପାଣ୍ଠି ରହୁଛି । ଏହି କାର୍ଯ୍ୟକ୍ରମରେ ଗ୍ରାମର ମହିଳାମାନେ ମଧ ସାମିଲ ହୋଇଛନ୍ତି । ସାଧାରଣତଃ ଏହି ସାହାଯ୍ୟ ଧାନ କୁଟିବା, ମୁଢ଼ି ଭାଜିବା, ଚୁଡ଼ା କରିବା, ବାଉଁଶ କାମ ଓ କନାର କାମ କରିବା, ଦଉଡ଼ି ବଳିବା, ଘଣାରେ ତେଲ ପେଡ଼ିବା, ମସିଣା ବୁଣିବା ପାଇଁ ଦିଆଯାଉଛି । ଏହା ଦ୍ୱାରା ଗରିବ ଲୋକମାନେ ଉପକୃତ ହୋଇ ବେଶ୍ ଦୁଇ ପଇସା ରୋଜଗାର କରିପାରୁଛନ୍ତି ଏବଂ କୌଳିକ ବୃତ୍ତିର ବିଲୋପ ନ ହୋଇ ଉତ୍ତରୋତ୍ତର ଉନ୍ନତି ସାଧିତ ହେଉଛି । ପ୍ରତ୍ୟେକ ଗ୍ରାମରେ ଗୋଟିଏ ଲେଖାଏଁ ମହିଳା ସମିତି ଓ ଏହାର ପ୍ରତିନିଧିମାନଙ୍କୁ ନେଇ ଆଞ୍ଚଳିକ ମହିଳା ସମିତି ଗଠନ କରାଯାଇଛି । ଏହା ୨/୩ ମାସରେ ଥରେ ଲେଖାଏଁ ବସୁଛି । ସେଥିରେ ମହିଳାମାନଙ୍କ ସ୍ୱାଧିକାର ଓ କର୍ତ୍ତବ୍ୟ, ବିଶେଷତଃ ଯୌତୁକ ଓ ନିଶାନିବାରଣ ପାଇଁ ବିଭିନ୍ନ ପ୍ରକାର ଯୋଜନା ହାତକୁ ନିଆଯାଇଛି ।

ବୃକ୍ଷରୋପଣ ଓ ଜଙ୍ଗଲ ସୁରକ୍ଷା କଲେ ଉଜୁଡ଼ା ଜଙ୍ଗଲକୁ ସଜାଡ଼ି ନୂତନ ଜଙ୍ଗଲ ସୃଷ୍ଟି କରାଯାଉଛି । ଗ୍ରାମ ଜଙ୍ଗଲକୁ ଗ୍ରାମବାସୀମାନେ ପାଳିକରି ଜଗାରଖା କରୁଛନ୍ତି । ଏହି ଜଙ୍ଗଲ ଲୋକଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାରେ ବର୍ତ୍ତମାନ ସାହାଯ୍ୟ କରୁଛି ।

ପଥରକା, ଖତୁରିଆ ଓ ବୀରାଶାଳ ଗ୍ରାମରେ ୨୪ ଜଣ ଆଦିବାସୀଙ୍କୁ ନେଇ ଗୋଟିଏ କମିଟୀ ଗଠନ କରାଯାଇଛି । ହିତାଧିକାରୀମାନଙ୍କ ନାମରେ କିଛି ଜମି କ୍ରୟ କରାଯାଇ କାଜୁ ରୋପଣର ସମସ୍ତ ପ୍ରକାର ବ୍ୟବସ୍ଥା ବର୍ତ୍ତମାନ ଚାଲୁ ରହିଛି । ପ୍ରତ୍ୟେକ ହିତାଧିକାରୀଙ୍କୁ 'ମଣ୍ଡଳ' ପଚାଶ ଡିସିମିଲ୍ କରି ଜମି ଦେଉଛନ୍ତି ।

ଦୁଇଗୋଟି ପଞ୍ଚାୟତର ୨୪ ଜଣ ହିତାଧିକାରୀଙ୍କୁ ନେଇ ଗଠିତ କମିଟୀ ସିମେଣ୍ଟ ଉଦ୍ୟୋଗ ଆରମ୍ଭ କରିଦେଇଛନ୍ତି । ନବଜୀବନ ମଣ୍ଡଳ ୧ ଲକ୍ଷ ୨୦ ହଜାର ଟଙ୍କା ସାହାଯ୍ୟ ଦେଇଛନ୍ତି ଓ ହିତାଧିକାରୀମାନେ ନିଜର ୨୦ ହଜାର ଟଙ୍କା ବିନିଯୋଗ କରିଛନ୍ତି । ଉତ୍ପାଦନ ଆରମ୍ଭ ହୋଇ ଯାଇଛି । ଏହି ଉଦ୍ୟୋଗ ଦ୍ୱାରା ବରପାଲି ପାଇଖାନା, ଟାଇଲ, ଘରେ ବ୍ୟବହାର ପାଇଁ କୁଣ୍ଡ ପ୍ରଭୃତି କେତେ ଗୁଡ଼ିଏ ଜିନିଷ ତିଆରି କରାଯାଉଛି । ଏହା ସ୍ଥାନୀୟ ଲୋକମାନଙ୍କ ଆବଶ୍ୟକତା ପୂରଣ କରିପାରୁଛି ।

ସ୍ଥାନୀୟ ଆବଶ୍ୟକତା ପୂରଣ ତଥା ସ୍ଥାନୀୟ ସମ୍ବଳର ଉପଯୋଗ ପାଇଁ ଗ୍ରାମୋଦ୍ୟୋଗ ସାବୁନ୍ ତିଆରି କାମ ହାତକୁ ନିଆଯାଇଛି ! ସ୍ଥାନୀୟ ମହୁଲ ତେଲ, ରାଶିତେଲ, ନିମ୍ବ ତେଲ ଓ କରଞ୍ଜତେଲ ଆଦି ଏଥିରେ ଉପଯୋଗ କରାଯାଉଛି । ସ୍ଥାନୀୟ ଚାହିଦା ପୂରଣ ସଂଗେ ସଂଗେ ଉତ୍ପନ୍ନ ସାବୁନକୁ ବାହାରକୁ ଛାଡ଼ିବାର ବ୍ୟବସ୍ଥା କରାଯାଉଛି । କୃଷିର ଉନ୍ନତି ପାଇଁ ପଥରକଟାଠାରେ ଗୋଟିଏ ଆଦର୍ଶ କୃଷିଫାର୍ମ କରାଯାଇଛି । ଏଠାରେ ଜୈବିକ ସାର ପ୍ରୟୋଗ ଦ୍ୱାରା ବିଭିନ୍ନ ପ୍ରକାରର ଚାରା ଉତ୍ପନ୍ନ କରାଯାଇ ଲୋକମାନଙ୍କୁ

ଶସ୍ତାରେ ଯୋଗାଇ ଦିଆଯାଉଛି । ଜୈବିକ ସାରର ଉପକାରିତା ଓ ରାସାୟନିକ ସାରର ଅପକାରିତା ଜାଣିବା ପରେ ଅନୁଷ୍ଠାନର ସାହାଯ୍ୟରେ ୩୭୫ଟି ଓ ଲୋକମାନଙ୍କ ସହଯୋଗରେ ଖୋଦିତ ସାତଶହ କମ୍ପୋଷ୍ଟ ପିଟ୍‌ରେ ଜୈବିକ ସାର ଉତ୍ପାଦନ କରାଯାଉଛି । କଙ୍କଡ଼ାହାଡ଼ ବ୍ଲକ୍‌ରେ ୮୦ ଜଣ ଗରିବ ମହିଳା ଅମ୍ବର ଚରଖାରେ ସୂତାକାଟି ଦିନକୁ ୨୦/୨୫ ଟଙ୍କା ପାଉଛନ୍ତି । ଗୋଟିଏ ଗୋଟିଏ କେନ୍ଦ୍ରରୁ ବାର୍ଷିକ ଲକ୍ଷାଧିକ ଗୁଣ୍ଡିସୂତା ଉତ୍ପନ୍ନ ହୋଇ ପାରୁଛି । ଏହି ସୂତାରେ ଖଦୀ ବୁଣାଯାଇ ଗ୍ରାମଗୁଡ଼ିକରେ ବିକ୍ରୟ କରାଯିବା ସଙ୍ଗେ ସଙ୍ଗେ ସହରର ବିଭିନ୍ନ ଭଣ୍ଡାରକୁ ପ୍ରେରଣ କରାଯାଉଛି ।

ଦୁଇଗୋଟି ପଞ୍ଚାୟତରେ 'ସାକ୍ଷରତା' ଅଭିଯାନ କାର୍ଯ୍ୟକ୍ରମରେ ଅପାଠୁଆ ପୁରୁଷ ଓ ମହିଳାମାନଙ୍କୁ ଶିକ୍ଷା ଦେବା ପାଇଁ ପ୍ରତ୍ୟେକ ଗ୍ରାମରେ ଜଣେ ଲେଖାଏଁ ସ୍ୱେଚ୍ଛାସେବକ ମୁତୟନ ଅଛନ୍ତି । ଅନୁଷ୍ଠାନ ତରଫରୁ ବହି, ଖଡ଼ି ଓ ସ୍ଲେଟ୍ ଯୋଗଇ ଦିଆଯାଉଛି ।

ମୋ ଘର ଏକ ସର୍ବୋଦୟ ପରିବାର । ଜାତିପ୍ରଥାର କଳୁଷତା ପରିବାରର କାହାକୁ ସ୍ପର୍ଶ କରିପାରି ନାହିଁ । ମୁଁ ଦୀର୍ଘ ୩୦ ବର୍ଷ ହେଲା ଉତ୍କଳ ନବଜୀବନ ମଣ୍ଡଳର କାର୍ଯ୍ୟକ୍ରମ ସହିତ ସଂଶ୍ଲିଷ୍ଟ । ମୋ ଝିଅ ଅରୁଣାଞ୍ଜଳି 'ବାଜିରାଉତ ଗ୍ରାମ-ଉନ୍ନୟନ ସମିତି' ନାମରେ ଏକ ଅନୁଷ୍ଠାନ ଗଢ଼ି 'ଏକତାଳି' ଓ 'ମହୁଲପାଳ' ପଞ୍ଚାୟତରେ ଗ୍ରାମସ୍ୱରାଜ ପ୍ରତିଷ୍ଠା କଳ୍ପେ ବିଭିନ୍ନ ରଚନାତ୍ମକ କାର୍ଯ୍ୟ କରୁଛି ।

କଙ୍କଡ଼ାହାଡ଼ ଅଞ୍ଚଳରେ ମୋ ବ୍ୟତୀତ ଯେଉଁମାନେ ପ୍ରକଳ୍ପକୁ ଆଗେଇ ନେଉଛନ୍ତି ସେମାନେ ହେଲେ ସର୍ବଶ୍ରୀ /ଶ୍ରୀମତୀ ଶିବବ୍ରତ ଦାସ (ସଂଯୋଜକ), ବିଭୂତିଭୂଷଣ ଦେହୁରୀ (ଶିକ୍ଷା ସଂଗଠକ), ପ୍ରମୋଦ କୁମାର ମଲ୍ଲିକ (ଖଦୀ କର୍ମୀ), ଶୈଳବାଳା ସ୍ୱାଇଁ (ଶିଶୁ ବିକାଶ କର୍ମୀ) ଓ ଡମ୍ବରୁଧର ମୁଣ୍ଡା (ସିମେଣ୍ଟ ଉଦ୍ୟୋଗ କର୍ମୀ) । ସମସ୍ତେ ସଂଗଠନ କାମ କରୁଛନ୍ତି ।

କଙ୍କଡ଼ାହାଡ଼, ଢେଙ୍କାନାଳ



# ମହାତ୍ମା ସଧାନ ମହାତ୍ମା କଷଣ

**ଶ୍ରୀ ବ୍ରଜ ସୁନ୍ଦର ଦାସ**

ମୁଁ ପୁରୀ ଜିଲ୍ଲା ସ୍କୁଲରେ ପଢୁଥିବାବେଳେ ୧୯୪୨ ''ଭାରତ ଛାଡ଼'' ଆନ୍ଦୋଳନରେ ଭାଗ ନେଇ କାରାବରଣ କରିଥିଲି । ପୁରୀ ଓ ବ୍ରହ୍ମପୁର ବନ୍ଦୀଶାଳାରେ ଦୁଇବର୍ଷାଧିକ କାଳ ବନ୍ଦୀଜୀବନ ଭୋଗ କରିଛି । ୰ନବକୃଷ୍ଣ ଚୌଧୁରୀ, ଶ୍ରୀ ଜୟକୃଷ୍ଣ ମହାନ୍ତି, ଶ୍ରୀ ଭଗବାନ ପ୍ରତିହାରୀ ଓ ଶ୍ରୀ ଅଲେଖ ପାତ୍ର ପ୍ରମୁଖଙ୍କ ସହବନ୍ଦୀ ଭାବରେ ସ୍ୱାଧୀନତା ସଂଗ୍ରାମର ଯଜ୍ଞବେଦୀରେ ନିଜକୁ ଉତ୍ସର୍ଗ କରିବାରେ ପ୍ରେରଣା ପାଇଥିଲି । କାରାମୁକ୍ତି ପରେ ମହାତ୍ମା ଗାନ୍ଧୀଙ୍କ ସେବାଗ୍ରାମ ଆଶ୍ରମରେ ମୌଳିକ ଶିକ୍ଷା ତାଲିମ ଗ୍ରହଣ କଲି । ମୋର ସୌଭାଗ୍ୟ ଯେ ମହାତ୍ମା ଗାନ୍ଧୀ ଓ ସନ୍ଥ ବିନୋବାଜୀଙ୍କ ସମ୍ପର୍କରେ ଆସିବାର ସୁଯୋଗ ପାଇଥିଲି । ମୌଳିକ ଶିକ୍ଷା ଓ ରଚନାତ୍ମକ କାର୍ଯ୍ୟ ପ୍ରତି ମୋର ଶ୍ରଦ୍ଧା ଥିବାରୁ ତଦବଧି ମୁଁ ସେହି କାର୍ଯ୍ୟରେ ବିଭିନ୍ନ କ୍ଷେତ୍ରରେ ନିୟୋଜିତ ହୋଇ ଆସିଛି । ଗାନ୍ଧୀ ସ୍ମାରକ ନିଧିର ସଂପାଦକ ଭାବରେ ପୁରୁଣାକୋଟ ଅଞ୍ଚଳରେ ୧୯୫୦-୫୧ରେ, ଅନୁଗୁଳରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ, ୧୯୫୫ ବେଳକୁ କୋରାପୁଟରେ ଭୂଦାନ ଆନ୍ଦୋଳନ ଓ ୧୯୬୬ରେ ଉତ୍କଳ ନବଜୀବନ ମଣ୍ଡଳର ସଂପାଦକ ଦାୟିତ୍ୱରେ ରହି କର୍ତ୍ତବ୍ୟ ସଂପନ୍ନ କରିଛି । ୧୯୭୪ରେ ଅବିଭକ୍ତ ଢେଙ୍କାନାଳ ଜିଲ୍ଲାରେ ଦେଖାଦେଇଥିବା ଭୟଙ୍କର ମରୁଡ଼ିଗ୍ରସ୍ତମାନଙ୍କ ସାହାଯ୍ୟ କଳ୍ପେ OXFAM ସାହାଯ୍ୟରେ ଉତ୍କଳ ନବଜୀବନ ମଣ୍ଡଳ ପକ୍ଷରୁ ଲୋକଙ୍କୁ କର୍ମମାଧ୍ୟମରେ ଉପାର୍ଜନ ଯୋଗାଇବା ପାଇଁ କାମ କଲି । ଏଥିରେ ମାଳତୀ ଦେବୀ ଓ ନବବାବୁଙ୍କ ଅନୁପ୍ରେରଣା ମିଳିଥିଲା । ମୌଳିକ ଶିକ୍ଷା କ୍ଷେତ୍ରରେ କାର୍ଯ୍ୟ କରିବା ଭିତରେ ୰ ଗୋପବନ୍ଧୁ ଚୌଧୁରୀଙ୍କ ସାଧନାପୀଠ ବରୀ ଅଞ୍ଚଳରେ ଛଅମାସ ଶିକ୍ଷକତା କରିଛି । ଅନୁଗୁଳ ମୋର ନିଜ ଅଞ୍ଚଳ ହୋଇଥିବାରୁ ବାଜି ରାଉତ ଛାତ୍ରାବାସରେ ରହି ପାଞ୍ଚ

ଆଖ ଗାଁ ଗଣ୍ଡାରେ ଜଳସେଚନ ବ୍ୟବସ୍ଥା, ଉନ୍ନତ ପନିପରିବା ଫସଲ, ପଡ଼ିଆ ଜମିକୁ ଭାଙ୍ଗି ଚାଷୋପଯୋଗୀ କରିବା ଭଳି ଗ୍ରାମ୍ୟଭିତ୍ତିକ ସେବା ମାଧ୍ୟମରେ ନୂଆ କୁଟୁମ୍ବ ଓ ଏକ ସମ୍ବେଦନଶୀଳ ସମାଜ ଗଠନରେ ସମ୍ୟକ ଅବଦାନ ଦେଇଛି । ମଙ୍ଗରୋଠ, ମାନପୁର ଓ କୋରାପୁଟର ଗ୍ରାମଦାନ ଗାଁଗୁଡ଼ିକର ନବ-ନିର୍ମାଣ ଅଭିଯାନରେ ସାମିଲ ହୋଇଥିଲି । ମୋର ଆନନ୍ଦ ଯେ ଗ୍ରାମଦାନୀ ଗାଁ କଲ୍ୟାଣସିଂହପୁରର ମେଲକାଯୁବା ଗାଁଟି ବସ୍ତୁତଃ ଯୁବା ପାଲଟି ଯାଇଥିଲା । ପୁରୁଣା ହିଡ଼ବାଡ଼ ବଦଳି ଗଲା, ନୂଆ ଚକବନ୍ଦୀ ହେଲା । ସର୍ବସେବା ସଂଘ ଦ୍ୱାରା ପ୍ରେରିତ ଆନ୍ନା ସାହେବ ସହସ୍ର ବୁଦ୍ଧେଙ୍କ ମାର୍ଗ ଦର୍ଶନରେ କୋରାପୁଟ ଆଦିବାସୀମାନେ ନବ-ନିର୍ମାଣରେ ଆଗେଇ ଚାଲିଲେ ।

୧୯୭୬ ମସିହାରୁ ଅନୁଗୁଳରେ ନିଜ ଘରେ ରହି ଗ୍ରାମସେବା ମଣ୍ଡଳ ନାମକ ଅନୁଷ୍ଠାନଟି, ଗଢ଼ିଛି । ସେହି ସଂସ୍ଥା ମାଧ୍ୟମରେ ସରକାରଙ୍କ ସହଯୋଗରେ କୃଷି, ଜଳସେଚନ ଓ ପରିବେଶର ସ୍ୱଚ୍ଛତା ଦିଗରେ ପ୍ରକଳ୍ପମାନ କାର୍ଯ୍ୟକାରୀ କରୁଛି । ମୋର ଅନୁଭୂତିକୁ ଆସିଛି ଯେ ରାଜ୍ୟରେ ବହୁ ସ୍ୱେଚ୍ଛାସେବୀ ସଂସ୍ଥା ଗଢ଼ି ଉଠୁଛି । ଦେଶୀ ବିଦେଶୀ ଅର୍ଥ ସାହାଯ୍ୟରେ ସେମାନେ ଗଠନମୂଳକ କାର୍ଯ୍ୟ କରୁଛନ୍ତି । ଆର୍ଥିକ ସାହାଯ୍ୟ ପାଇଁ ସେମାନଙ୍କୁ ଲାଞ୍ଚ ଦେବାକୁ ପଡୁଛି । ଅର୍ଥ ହିଁ ଅନର୍ଥର ମୂଳ ହୋଇଥିବାରୁ ବେଳେବେଳେ ସହକର୍ମୀମାନଙ୍କ ମଧ୍ୟରେ ବିରୋଧ ଓ ମନୋମାଳିନ୍ୟ ଦେଖାଦେଉଛି । ଆଗଭଳି ଗାଁ ଗଣ୍ଡାରେ ଏକତା ଆଉ ନାହିଁ । ଗ୍ରାମ୍ୟଶିଳ୍ପ ବଦଳରେ ଯନ୍ତ୍ରୋଦ୍ୟୋଗର ପ୍ରାଧାନ୍ୟ ବଢୁଛି । ଏହାର ପ୍ରତିରୋଧ ପାଇଁ ସନ୍ଥ ବିନୋବାଜୀଙ୍କ ମାର୍ଗଦର୍ଶନ ଆଚାର୍ଯ୍ୟକୁଳ ସଂଗଠନ ଉପରେ ଶିକ୍ଷକ ଓ ଶିକ୍ଷିତ ମହଲରୁ ଯେପରି ବଳିଷ୍ଠ ନେତୃତ୍ୱ ଆବଶ୍ୟକ, ତାହା ହେଉ ନାହିଁ । ଶୋଷକ ଓ ଶାସକମାନଙ୍କ ହାତ ମୁଠା ଟାଣ ହେଉଛି ସିନା ଢିଲା ହେଉ ନାହିଁ ।

ଏଭଳି ନୈରାଶ୍ୟଜନକ ପରିସ୍ଥିତିରେ ଗ୍ରାମସେବା ମଣ୍ଡଳକୁ ଆୟୁଧ କରି ମୁଁ ଗ୍ରାମସ୍ୱରାଜ୍ୟର ସନ୍ଦେଶ କଥା ଓ କାର୍ଯ୍ୟରେ ବିତରଣ କରୁଛି । ଫଳ କାମନା ନ ରଖି ନିଃସ୍ୱାର୍ଥ ଓ ନିର୍ଲିପ୍ତ ଭାବରେ ମୁଁ ଆଗେଇ ଚାଲିଛି । ମୋ ହୃଦୟରେ ପ୍ରତିଧ୍ୱନିତ ହେଉଛି -''ମହାତ୍ମା ସାଧନ ମହାତ୍ମା କଷଣ, ଯିବନାହିଁ ତାହା କେବେ ଅକାରଣ ।'' ●

ହାକିମପଡ଼ା, ଅନୁଗୁଳ

## ମହାତ୍ମାଜୀ

ଅଧୋଗତ ଏ ଦେଶ ତବ ପଦ ପରଶ
ଲଭି ହୋଇଲା ସଂଜୀବିତ
ମାନସ ପକ୍ଷାଘାତ ହେଲେ ତା ହେଲେ ହତ
ନିଗଡ଼, ପୟରୁ ସ୍ଖଳିତ ହେ ମହାତ୍ମାଜୀ
ଭଲା ହୋଇଲ ଯାଦୁକର
ଉଚ୍ଚାରି ଅହିଂସା ମନ୍ତର
ବଶ କଲ କେଶରୀ ହେବାକୁ ତୁମ୍ଭ ସରି
ନବହେ, ମେଦିନୀ ଅପାର ହେ ମହାତ୍ମାଜୀ ।।୧।।
କଷଣ କଣ୍ଟକର ମୁକୁଟ ବହି ଶିର
ତ୍ୟାଗର ଛଦ ପରିଧାନୀ
ଚାଳିଶ କୋଟି ଜନ ଅନ୍ତର ସିଂହାସନ
ଈଶ୍ୱର, ହୋଇଲ ବିଜ୍ଞାନୀ ହେ ମହାତ୍ମାଜୀ
ପ୍ରଜ୍ଞାର ଆଲୋକେ ତୁମ୍ଭର
ଧରା ଏ ହୋଇଲା ଭାସ୍ୱର
ଗୀତା ବେଦବେଦାନ୍ତ ହେଲେ ବିଗ୍ରହ ବନ୍ତ
ଆଶ୍ରୟୀ ଜୀବନେ ତୁମ୍ଭରି ହେ ମହାତ୍ମାଜୀ ।।୨।।
ଦଳିତର ମୁକତି ବ୍ରତେ ନିହିଲ ମତି
ଭରିଲ ମୂକ ମୁଖେ ଭାଷା
ଅଗଣିତ ଶତାବ୍ଦୀ ପାଇଁକି ଆହେ ସୁଧୀ
ଗଲ ସରଜି କେତେ ଆଶା ହେ ମହାତ୍ମାଜୀ
ଦଳିତ ଗଉରବ ଦାତା
ମୁକତ ଭାରତ ବିଧାତା
ଅସହାୟ ଅବଳ ଜାତି ଆଶା-କମଳ
ପ୍ରକାଶ କାରକ ବିଧାତା ହେ ମହାତ୍ମାଜୀ ।।୩।।



# ସର୍ବୋଦୟରେ ବୌଦ୍ଧଦର୍ଶନ

ବୋଧିପ୍ରିୟ ରାଧାକୃଷ୍ଣ ସାହୁ

ଭାରତରେ ସ୍ୱାଧୀନତା ସଂଗ୍ରାମ ପ୍ରାୟ ଅନ୍ତିମ ପର୍ଯ୍ୟାୟରେ ପହଞ୍ଚିଥାଏ । ସ୍ୱାଧୀନତା ପ୍ରାପ୍ତି ଯେ ନିଶ୍ଚିତ ଏଥିରେ ସନ୍ଦେହର ଅବକାଶ ନଥାଏ । ଏହି ସମୟରେ ଗାନ୍ଧୀଜୀଙ୍କ ମନରେ ଚିନ୍ତା ଜାଗରିତ ହୁଏ ଦେଶ ସ୍ୱାଧୀନ ହେବାପରେ ଦେଶବାସୀ କିପରି ଆଦର୍ଶ ଆଚରଣରେ ଚାଳିତ ହେବେ । ସ୍ୱାଧୀନତା ହାସଲ କରିବା ଠାରୁ ସ୍ୱାଧୀନତା ରକ୍ଷା କରିବା ଏବଂ ଦେଶକୁ ଗଢ଼ିବା ଅଧିକ କଷ୍ଟକର । ଭାରତବାସୀ ଯଦି ଦେଶପ୍ରେମୀ, କର୍ମଠ ଓ ସଦାଚାରୀ ନ ହୁଅନ୍ତି ତେବେ ସ୍ୱାଧୀନତା ବିପରୀତ ଫଳ ଦେବ । ଦେଶର ଉନ୍ନୟନ ତଥା ଅଗ୍ରଗତି ବ୍ୟାହତ ହେବ । ଏହି ଧାରଣାରେ ଉଦ୍‌ବେଳିତ ହୋଇ ଦୂରଦର୍ଶୀ ଗାନ୍ଧୀ ଏକ ନୂତନ ପରିକଳ୍ପନା, ଦେଶ ଆଗରେ ଉତ୍‌ଥାପିତ କଲେ । ଉକ୍ତ ଯୋଜନାର ନାମକରଣ କଲେ 'ସର୍ବୋଦୟ' ।

ସର୍ବୋଦୟର ସରଳ ଅର୍ଥ ହୁଏ ସବୁ ଦିଗର ଉନ୍ନୟନ ଯାହାକି ଇଂରାଜୀରେ କୁହାଯାଇ ପାରେ all out progress । ଦେଶକୁ ସଠିକ ମାର୍ଗରେ ଗଢ଼ିବାକୁ ହେଲେ ଦେଶବାସୀଙ୍କ ବ୍ୟକ୍ତିଗତ, ସାମାଜିକ, ଆର୍ଥିକ, ରାଜନୈତିକ ଏବଂ ସର୍ବୋପରି ଚାରିତ୍ରିକ ଦିଗ ପ୍ରତି ଦୃଷ୍ଟି ଦେବାକୁ ହେବ, ନିର୍ମଳ ରଖିବାକୁ ହେବ ଏବଂ ଉନ୍ନତ କରିବାକୁ ହେବ । ବାସ୍ତବରେ କି ବିରାଟ ଅଭିନବ ପରିକଳ୍ପନା ! ଏହି ସତ୍ୟକୁ ରୂପାୟନ କରିବାକୁ ଯାଇ ଗାନ୍ଧୀଜୀ ସର୍ବୋଦୟ ପରିକଳ୍ପନାକୁ ଏକ ଯୁଗାନ୍ତକାରୀ ଯୋଜନା (project) ରୂପେ ଦେଶବାସୀଙ୍କୁ ଉତ୍ସର୍ଗ କଲେ । ଯୋଜନାଟି ଭାରତର ସ୍ତୁପିକୃତ ସଂସ୍କୃତିକୁ ଏପରି ଖାପ ଖାଇଲା ଯେ ଦେଶବାସୀ ଏହାକୁ ସାଦରେ ଗ୍ରହଣ କରିନେଲେ । ସ୍ୱାଧୀନତା ସଂଗ୍ରାମର ତାଳେ ତାଳେ ସର୍ବୋଦୟ ଆନ୍ଦୋଳନ ଗତିକଲା । ସର୍ବୋଦୟ ଦର୍ଶନରେ ଗାନ୍ଧୀଜୀଙ୍କ ପରିକଳ୍ପିତ ଏକାଦଶବ୍ରତ ସନ୍ନିବିଷ୍ଟ । ଉକ୍ତ ଏକାଦଶ ବ୍ରତ ବା ଏଗାରଟି ଆଚାର ନିମ୍ନୋକ୍ତ ପ୍ରକାର-

୧- ଅହିଂସା: ପ୍ରାଣୀବଧ କରନା, ଅସ୍ତ୍ର ପ୍ରୟୋଗ କରନା, ନିଜର ଅଧିକାର ସାବ୍ୟସ୍ତ କରିବା ନିମନ୍ତେ ହିଂସାତ୍ମକ ଦଙ୍ଗା-ହାଙ୍ଗାମା କରନାହିଁ ।

୨- ସତ୍ୟ: ଯେକୌଣସି ପରିସ୍ଥିତିରେ ମିଥ୍ୟାର ଆଶ୍ରୟ ନିଅନାହିଁ । ମିଥ୍ୟା ଦ୍ୱାରା ସତ୍ୟକୁ ଛପାଇ ଦିଆଯାଇ ପାରିବ ନାହିଁ ।

୩- ଅସ୍ତେୟ: ଅପରର ଧନ ଅଥବା ଜ୍ଞାନକୁ ଅପହରଣ କରି ନିଜର ବୋଲି ପ୍ରକାଶ କର ନାହିଁ । ଏହା ଚୌର୍ଯ୍ୟ ବୋଲି ଗଣିତ ହେବ ।

୪- ବ୍ରହ୍ମଚର୍ଯ୍ୟ: ଯୌନାଚାର ସଞ୍ଚତ ଓ ସଙ୍ଗତ ରଖ । ଆଶ୍ରମବାସୀ ବ୍ରହ୍ମଚର୍ଯ୍ୟ ପାଳନ କରିବା ଶ୍ରେୟସ୍କର । ଯୌନ ବ୍ୟଭିଚାର ଦ୍ୱାରା ସମାଜ ଦୂଷିତ ହୁଏ ।

୫- ଅସଂଗ୍ରହ: ଲୋଭାସକ୍ତ ହୋଇ ନିଜର ଆବଶ୍ୟକତା ଠାରୁ ଅଧିକରୁ ଅଧିକ ଧନ ଆହରଣ କର ନାହିଁ । ଏତଦ୍ୱାରା ସମାଜରେ ବୈଷମ୍ୟ ସୃଷ୍ଟି ହେବ ।

୬- ଶରୀରଶ୍ରମ: ଏହାହିଁ ବୀର୍ଯ୍ୟ । ଶାରିରୀକ ଶ୍ରମ ବଳରେ ହିଁ ଜାତିର ଆର୍ଥିକ ସ୍ୱଚ୍ଛଳତା ଆସିବ । ଶ୍ରମହିଁ ସେବା ।

୭- ଅସ୍ୱାଦ : ଆହାରରେ ସଂଯମ ଆଚରଣ କର । ସ୍ୱାଦ ଚାଖିବାରୁ ନିବୃତ୍ତ ହୁଅ । ଖାଇବାକୁ ନ ବଞ୍ଚି ବଞ୍ଚିବାକୁ ଖାଅ ।

୮- ଭୟବର୍ଜ୍ଜନ: ଭୀରୁମାନେ ଭୟାଳୁ । ସାହସୀ ହୁଅ । ସତ୍‌ସାହସୀ ହେଲେ ନୂତନ ଦିଗନ୍ତ ଆବିଷ୍କାର କରିପାରିବେ ।

୯- ସର୍ବଧର୍ମ ସମନ୍ୱୟ: ଭାରତ ସର୍ବଧର୍ମ ଯଥା - ହିନ୍ଦୁ, ବୌଦ୍ଧ, ଜୈନ, ଖ୍ରୀଷ୍ଟିଆନ ଓ ଇସ୍‌ଲାମ ଧର୍ମର ପୀଠସ୍ଥଳୀ । ଏଣୁ ଏହିସବୁ ଧର୍ମାବଲମ୍ବୀମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଏକାନ୍ତ ଆବଶ୍ୟକ । ଅନ୍ୟଥା ଦେଶରେ ବିଶୃଙ୍ଖଳା ଓ ଅଶାନ୍ତି ଉପୁଜିବ । ଏଣୁ ପ୍ରତ୍ୟେକ ବ୍ୟକ୍ତି ଅନ୍ୟ ଧର୍ମବାଦୀଙ୍କ ପ୍ରତି ସହନଶୀଳ ହୁଅନ୍ତୁ, ସମ୍ମାନ ପ୍ରଦର୍ଶନ କରନ୍ତୁ ।

୧୦- ସ୍ୱଦେଶୀ: ଆମ ଦେଶରେ ଉତ୍ପନ୍ନ ଓ ଉତ୍ପାଦିତ ଦ୍ରବ୍ୟ ପ୍ରତି ଆମର ଆଦର ରହୁ । ସ୍ୱଦେଶୀ ପଦାର୍ଥ ବ୍ୟବହାର କଲେ ଦେଶ କୃଷି, ଶିଳ୍ପ ଓ ବିଜ୍ଞାନରେ ଅଗ୍ରଗତି କରିବ । ଦେଶର ଅର୍ଥନୀତି ସୁଦୃଢ଼ ରହିବ । ସ୍ୱାବଲମ୍ବୀ ହେବ ।

୧୧- ସ୍ପର୍ଶଭାବନା: ସ୍ପୃଶ୍ୟ-ଅସ୍ପୃଶ୍ୟ ଭାବ ମନୁଷ୍ୟକୃତ ଏକ କଳଙ୍କିତ ପ୍ରଥା । ଦେଶକୁ ସର୍ବୋତଭାବେ ଉନ୍ନତ କରିବାକୁ ହେଲେ, ଦେଶର ସ୍ୱାଧୀନତାକୁ ସୁଦୃଢ଼ କରିବାକୁ ହେଲେ ଆମକୁ ଜାତିବର୍ଣ୍ଣ ଭେଦ ଦୂର କରିବାକୁ ହେବ ।

ମହାତ୍ମା ଗାନ୍ଧୀ ଜନ୍ମର ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବେ ଭାରତରେ ଜନ୍ମ ନେଇଥିଲେ ଗୌତମ ବୁଦ୍ଧ । ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଗାନ୍ଧୀଜୀଙ୍କ ପ୍ରବର୍ତ୍ତିତ ସର୍ବୋଦୟତତ୍ତ୍ୱ ଓ ବୁଦ୍ଧଙ୍କ ଅନୁଶାସିତ ଆର୍ଯ୍ୟ ଅଷ୍ଟାଙ୍ଗମାର୍ଗ ବିଶେଷତଃ ଏକାଦଶ ସୁଚରିତଶୀଳ ମଧ୍ୟରେ ଗଭୀର ସାମଞ୍ଜସ୍ୟ ରହିଛି । ଉଦାହରଣସ୍ୱରୂପ ବୁଦ୍ଧଙ୍କର ପଞ୍ଚଶୀଳ ତଥା ସୁଚରିତଶୀଳରେ ନିର୍ଦ୍ଦେଶିତ 'ପାଣାତିପାତା ବେରମଣୀ', 'ଅଦିନ୍ନାଦାନା ବେରମଣୀ', 'ଅବ୍ରହ୍ମଚରିୟା ବେରମଣୀ', 'ମୁସାବାଦା ବେରମଣୀ' 'ଅଭିଜ୍‌ଝାୟ ବେରମଣୀ', ନୀତିଗୁଡ଼ିକ ସର୍ବୋଦୟର ଯଥାକ୍ରମେ ଅହିଂସା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ସତ୍ୟ ଓ ଅସଂଗ୍ରହ ଭାବ ବହନ କରନ୍ତି । ଏକଦା ବୁଦ୍ଧଙ୍କର ପରମ ଶିଷ୍ୟ ଆନନ୍ଦ ଆଗାମୀ ଦିନପାଇଁ ଲୁଣ ଟିକିଏ ସଞ୍ଚୟ କରି ଦେଇଥିବାରୁ ତାହା ଅସଂଗ୍ରହ ନିଷ୍ଠାଚରଣର ବିରୋଧୀ ବୋଲି ସଂଘ କର୍ତ୍ତୃକ ନିନ୍ଦିତ ହୋଇଥିଲେ । ଏତଦ୍ଉପରି ବୁଦ୍ଧଙ୍କ ଅନୁଶାସିତ 'ଆହାରେ ପ୍ରତିକୂଳ ସଂଜ୍ଞା', 'ବୀର୍ଯ୍ୟ ପାରମିତା', 'ଶଙ୍କା ଉଦ୍ଧାରଣ ବିଶୁଦ୍ଧ' ଓ ଜନ୍ମଗତ ଜାତି ଅସ୍ୱୀକାର, ଉପଦେଶଗୁଡ଼ିକ ସର୍ବୋଦୟର ଯଥାକ୍ରମେ ଅସ୍ୱାଦ, ଶରୀରଶ୍ରମ, ଭୟବର୍ଜନ ଓ ସ୍ପର୍ଶଭାବନା ନୀତିର ଅନୁକୂଳ ଅର୍ଥ ବା ଚିନ୍ତାଧାରା ବହନ କରନ୍ତି । ବୁଦ୍ଧଙ୍କ ସମୟକୁ ଖ୍ରୀଷ୍ଟଧର୍ମ ଓ ଇସ୍‌ଲାମ ଧର୍ମ ଜନ୍ମ ନେଇ ନଥିଲା । ଭାରତ ବିଦେଶୀ ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ନଥିଲା । ତେଣୁ 'ସର୍ବଧର୍ମ ସମନ୍ୱୟ ଓ ସ୍ୱଦେଶୀ' ଚିନ୍ତାର ଆବଶ୍ୟକତା ଅନୁଭୂତ ହୋଇ ନଥିଲା । ପରବର୍ତ୍ତୀ କାଳରେ ଏଗୁଡ଼ିକ ଉଦ୍‌ଭବ ହୋଇ ଗାନ୍ଧୀଜୀଙ୍କ ସମୟକୁ ଉତ୍କଟ ହୋଇଥିଲା । ଏଣୁ ଏହି ନୀତି ଦୁଇଟି ଯଥା- 'ସର୍ବଧର୍ମ ସମନ୍ୱୟ' ଓ 'ସ୍ୱଦେଶୀ' ଗାନ୍ଧୀଜୀଙ୍କ ମୌଳିକ ଓ ଯୁଗୋପଯୋଗୀ ଅନୁଶାସନ ଅଟେ ।

ଉଲ୍ଲେଖଯୋଗ୍ୟ ଯେ ଧର୍ମୀୟ ସହନଶୀଳତା ବୌଦ୍ଧଧର୍ମରେ ଅଦ୍ୱିତୀୟ ଅଟେ 'ସର୍ବଧର୍ମ ସମନ୍ୱୟ'ର ଅନୁଶୀଳନ । ବୌଦ୍ଧଧର୍ମ ପୃଥିବୀରେ ଏକମାତ୍ର ବିଶ୍ୱଧର୍ମ ଯେଉଁଥିରେ ଧର୍ମ ନିମନ୍ତେ ରକ୍ତପାତ କେବେ ଘଟି ନାହିଁ । ବୁଦ୍ଧ ସର୍ବାଦୌ ଜାତିଭେଦ, ଉଚ୍ଚନୀଚ ଓ ଛୁଆଁ ଅଛୁଆଁ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଭାରତରେ ସମବାଦ ପ୍ରଚଳନ କରିଥିଲେ । ଗାନ୍ଧୀଜୀ ଏଥିରେ ଅନୁପ୍ରାଣିତ ହୋଇ ଅସ୍ପୃଶ୍ୟତା ବିରୁଦ୍ଧରେ ଆନ୍ଦୋଳନ କଲେ । ବୁଦ୍ଧନିଶାପାନ ବିରୁଦ୍ଧରେ ଉପଦେଶ ଦେଇ ପଞ୍ଚଶୀଳ ନୀତିରେ ଏହାକୁ ସଂଯୋଗ କରି କହିଲେ "ସରାମେରୟ-ମଜ୍ଜ ପମାଦଟ୍ଠାନା ବେରମଣୀ" (ସୁରାପାନ ଆଦି ମାଦକଦ୍ରବ୍ୟ ସେବନ ଓ ଜୁଆଖେଳରୁ ବିରତ ହୁଅ) ଗାନ୍ଧୀଜୀ ମଧ୍ୟ ନିଶାପାନ ବିରୁଦ୍ଧରେ ଦୃଢ଼ଭାବେ ସ୍ୱର ଉତ୍ତୋଳନ କରିଛନ୍ତି ।

ଏଥିରୁ ପ୍ରତୀୟମାନ ହୁଏ ଯେ ବୁଦ୍ଧ ଓ ବୁଦ୍ଧବାଦକୁ ଗାନ୍ଧୀ ଶ୍ରେଷ୍ଠ ସମ୍ମାନ ଦେଇଥିଲେ । ଏପରିକି ତାଙ୍କର ଦୈନନ୍ଦିନ ପ୍ରାର୍ଥନା ସଭାରେ ସର୍ବପ୍ରଥମେ ବୌଦ୍ଧମନ୍ତ୍ର ଆବୃତ୍ତି କରାଯାଉଥିଲା - "ନମ ମ୍ୟୋହୋ ରେନ୍‌ଗେ କ୍ୟୋ" (ଶ୍ୱେତପଦ୍ମପରି ନିର୍ମଳ ସଦ୍ଧର୍ମକୁ ନମସ୍କାର କରୁଅଛି ।) ବୌଦ୍ଧଧର୍ମର ମୌଳିକ ନାମ ହୁଏ 'ସଦ୍ଧର୍ମ' । ସତ୍ ଓ ସତ୍ୟଭିତ୍ତିକ ଧର୍ମ । ସର୍ବୋଦୟବାଦ ବୁଦ୍ଧବାଦର ଏକ ସଂକ୍ଷିପ୍ତ ଓ ନବୀନ ସଂସ୍କରଣ କହିଲେ ଅତ୍ୟୁକ୍ତି ହେବନାହିଁ । ●



ବୋଧିନିକେତନ, ପୁରୀ

# ମନଲାଖି କଥା

## ମୋ ମା' ମୋର ଭାଷା

୧୯୧୪ ମସିହାର କଥା । ଦକ୍ଷିଣ ଆଫ୍ରିକାରେ ରହୁଥିବା ଭାରତୀୟଙ୍କ ମର୍ଯ୍ୟାଦା ରକ୍ଷା ପାଇଁ ସତ୍ୟାଗ୍ରହ କରି ବିଜୟୀ ହୋଇ ମହାତ୍ମାଜୀ ଭାରତ ଫେରୁଥାନ୍ତି । ବିଜୟୀ ବୀର ବାରିଷ୍ଟର ଗାନ୍ଧୀଙ୍କୁ ଦେଖିବା ଓ ତାଙ୍କ ସହ ସାକ୍ଷାତାଲୋଚନା କରିବା ପାଇଁ ବମ୍ବେ ବନ୍ଦରରେ ପ୍ରବଳ ଭିଡ଼ । ସାଧାରଣ ଜନତାଙ୍କ ସାଙ୍ଗକୁ ବହୁ ପତ୍ରପତ୍ରିକାର ପ୍ରତିନିଧିମାନେ ମଧ୍ୟ ଜମା ହୋଇଥାନ୍ତି । ତାଙ୍କ ଭିତରେ ଥାନ୍ତି ଜଣେ ପାରସୀ ପତ୍ର ପ୍ରତିନିଧି । ତାଙ୍କ ଘର ଗୁଜୁରାଟରେ । ମାତୃଭାଷା ତାଙ୍କର ଗୁଜୁରାଟି । ତଥାପି ମହାତ୍ମାଜୀଙ୍କ ସହ ମାତୃଭାଷା ଅପେକ୍ଷା ଇଂରାଜୀରେ କଥାବାର୍ତ୍ତା ହେବାକୁ ସେ ଗୌରବ ମଣିଲେ । ସେତେବେଳେ ଇଂରାଜୀର ମୋହ କାହିଁରେ କ'ଣ ଇଂରାଜୀରେ ବିପଦ ଯେ କେହି ନଜାଣିଛି ସେ କି ମଣିଷ । ଘରେ ସ୍ୱାମୀ ସ୍ତ୍ରୀ ସଂଗେ, ବାପ ପୁଅ ସଙ୍ଗେ ଇଂରାଜୀରେ କଥାବାର୍ତ୍ତା ହେବାକୁ ପୌରୁଷ ମଣୁଥିଲେ । ଇଂରାଜୀ ନପଢ଼ିଲେ ପୁରୁଷାର୍ଥ ହେବନାହିଁ ବୋଲି ଧରି ନିଆଯାଉଥିଲା । ତେଣୁ ସେହି ଗୁଜୁରାଟୀ ପ୍ରତିନିଧି ଜଣକ ଗାନ୍ଧିଜୀଙ୍କ ସହ ଇଂରାଜୀରେ କଥାବାର୍ତ୍ତା କରିବାକୁ ଶ୍ରେୟ ମଣିଲେ । ବାପୁଜୀ ତାଙ୍କ ପ୍ରଶ୍ନର ଉତ୍ତର ଦେବେ କ'ଣ - ଶୁଣୁ ଶୁଣୁ କହିଲେ-

"ଭାଇ ! ତୁମେ ହିନ୍ଦୁସ୍ଥାନୀ ମୁଁ ବି ହିନ୍ଦୁସ୍ଥାନୀ ତୁମ ମାତୃଭାଷା ଗୁଜୁରାଟୀ । ମୋର ମଧ୍ୟ ସେଇଆ । ତେବେ ତୁମେ ମୋତେ ଇଂରାଜୀରେ ପ୍ରଶ୍ନ ପଚାରୁଛ କାହିଁକି ? ତୁମେ ବୋଧହୁଏ ମନେ କରି ନେଇଚ ଯେ ମୁଁ ଦକ୍ଷିଣ ଆଫ୍ରିକାରେ କିଛିଦିନ ବସବାସ କରି ଆସିଥିବାରୁ ମୋ ମାତୃଭାଷାକୁ ଭୁଲି ଯାଇଛି । କିମ୍ବା ତୁମର ହୁଏତ ଧାରଣା ଜନ୍ମିଛି ଯେ ମୋପରି ଜଣେ ବାରିଷ୍ଟରଙ୍କ ସଂଗେ ଇଂରାଜୀରେ କଥାବାର୍ତ୍ତା କଲେ ତୁମର ଗୌରବ ବଢ଼ିବ ।"

ଏତିକିରେ ପ୍ରତିନିଧି ବିଚରା ହଡ଼ବଡ଼େଇ ଗଲେ । ତାଙ୍କ ମୁହଁ ଟଳକୁ ହୋଇଗଲା । ଏଣିକି ବାପୁଙ୍କ ସହ ତାଙ୍କର ସମସ୍ତ ଆଲୋଚନା ନିଜ ମାତୃଭାଷାରେ ହେଲା । ବାପୁଜୀଙ୍କର ସେହି କଥା ପଦକରେ ସେ ଏତେ ଅନୁପ୍ରାଣିତ ଥିଲେ ଯେ ବାପୁଜୀଙ୍କ ସ୍ୱଭାଷାପ୍ରେମ କଥାଟିକୁ ସେ ମହତ୍ତ୍ୱପୂର୍ଣ୍ଣ ଭାବରେ ତାଙ୍କ ପତ୍ରିକାରେ ପ୍ରକାଶ କଲେ ।

ପରବର୍ତ୍ତୀ ସମୟରେ ଅହିଂସା ଅସହଯୋଗର ବାର୍ତ୍ତା ପ୍ରଚାର ପର୍ଯ୍ୟାୟରେ ବାପୁଜୀ ଯେଉଁ ଅଠରଟି ରଚନାତ୍ମକ କାର୍ଯ୍ୟର ପ୍ରବର୍ତ୍ତନ କଲେ ସେଥିରେ ଏହି ସ୍ୱଭାଷାପ୍ରେମକୁ ଏକ ମୁଖ୍ୟ କାର୍ଯ୍ୟକ୍ରମ ରୂପେ ସ୍ଥାନ ଦେଇଥିଲେ । ବିଦେଶୀଭାଷା ଓ ବିଦେଶୀ ସଂସ୍କୃତିର ମୋହ ମୂଳରେ ବାପୁଜୀଙ୍କ ଆହ୍ୱାନ କୁଠାରାଘାତ କଲା । ପରାଧୀନ ଭାରତ ଜାତି ସ୍ୱଭାଷାକୁ ଉଚ୍ଚସ୍ଥାନ ଦେବାକୁ ଶିଖିଲେ । ସ୍ୱଦେଶୀ ଚିନ୍ତା ଓ ସ୍ୱାଭିମାନରେ ଜାତି ଜାଗ୍ରତ ହେଲା । ଭାରତରୁ ବିଦେଶୀ ଶାସନ ଲୋପ ପାଇଲା । ମନେ ପଡୁଛି ପ୍ରକୃତି କବି ଗଙ୍ଗାଧରଙ୍କର ଗୋଟିଏ ଉକ୍ତି -

"ମାତୃଭୂମି ମାତୃଭାଷାର ମମତା
ଯା ହୃଦେ ଜନମି ନାହିଁ,
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ?"

● "ଉତ୍କଳପ୍ରସଙ୍ଗ" ୧୯୮୨ ଜାନୁୟାରୀରୁ ଗୃହୀତ

ଜଣେ ପାପିଷ୍ଠ ହାତରୁ ରକ୍ଷା ପାଇବା ଇଚ୍ଛାରେ କେହି ଯଦି ମୋ ଉପରେ ଗୁଳି ଚଳାଏ, ତେବେ ମୁଁ କହିବି, ସେ ପ୍ରକୃତ ଗାନ୍ଧୀକୁ ହତ୍ୟା କରିପାରିବ ନାହିଁ । ଯାହାକୁ ସେ ପାପିଷ୍ଠ ବୋଲି ମନେ କରିଥିଲା, ତାହାର ହିଁ ବିନାଶ ହେବ । - **ମହାତ୍ମା ଗାନ୍ଧୀ**

## ମୋ ଟିକି ପେନସିଲି

୧୯୧୫ ଡିସେମ୍ବର ଦିନକର ଘଟଣା । କଂଗ୍ରେସ ଅଧିବେଶନ ସଂକ୍ରାନ୍ତରେ ବାପୁ ବମ୍ବେରେ ରହୁଥାନ୍ତି । ଦିନେ ତାଙ୍କର କେଉଁଆଡ଼କୁ ଯିବାର ଥାଏ । ସବୁ ସଜ ହେଉଥାଏ । ମାତ୍ର ବାପୁଜୀ କୌଣସି ଗୋଟିଏ ଜିନିଷକୁ ବହୁତ ପରିଶ୍ରମକରି ଖୋଜୁଥିବା ଦେଖାଗଲା । ପାଖରେ ଥାନ୍ତି କାକା କାଲେଲକର । ପଚାରିଲେ- ''ବାପୁଜୀ କ'ଣ ଖୋଜୁଛନ୍ତି ?''

''ମୋର ଟିକି ପେନ୍‌ସିଲ''

ବାପୁଜୀଙ୍କୁ ଖୋଜିବା କଷ୍ଟରୁ ରକ୍ଷା କରିବା ପାଇଁ କଲେଲକରଜୀ ତାଙ୍କ ପାଖେ ଥିବା ଅନ୍ୟ ଏକ ପେନ୍‌ସିଲ ବାପୁଜୀଙ୍କୁ ବଢ଼ାଇ ଦିଅନ୍ତେ ବାପୁଜୀ କହିଲେ

- ''ନାନା- ଏ ପେନ୍‌ସିଲ ମୁଁ ଖୋଜୁନାହିଁ ମୁଁ ଖୋଜୁଛି ସେହି ଟିକି ପେନ୍‌ସିଲଟି ଯାହାକୁ ମାନ୍ଦ୍ରାଜରେ, ଟିକି ପିଲାଟିଏ ମୋତେ ଦେଇଥିଲା । କେତେ ସ୍ନେହ ଓ ଆଗ୍ରହରେ ଦେଇଥିଲା ସେ ପେନ୍‌ସିଲଟି ଃ ମୁଁ କ'ଣ ତାକୁ ହଜାଇପାରେ ।''

ଦୁହେଁ ଖୋଜିବାରେ ଲାଗିଲେ । ଟିକି ପେନ୍‌ସିଲଟି ମିଳିଗଲା । ବାପୁଜୀଙ୍କ ମୁଖମଣ୍ଡଳରେ ପ୍ରସନ୍ନତା ଫୁଟି ଉଠିଲା ।

ମୂଲ୍ୟ ଦୃଷ୍ଟିରୁ ପେନ୍‌ସିଲଟି ଅତ୍ୟନ୍ତ ତୁଚ୍ଛ । ମାତ୍ର ସେଥିରେ ଯେଉଁ ସାତ୍ତ୍ୱିକ ପ୍ରେମର ଭାବନା ପୂରି ରହିଛି ତା'ର ମୂଲ୍ୟ କିଏ ଦେବ ? ସେତ ଅନମୋଲ । ସେଥିପାଇଁ ବାପୁଜୀଙ୍କ ଆଶ୍ରମ ପ୍ରାର୍ଥନାରେ ବୋଲାଯାଏ-

''ନାମ କି ମହିମା ହୟେ ଅନମୋଲ
କେଶବ ମାଧବ ଗୋବିନ୍ଦ ବୋଲ ।''

● ''ଉତ୍କଳ ପ୍ରସଙ୍ଗ'' ୧୯୮୦, ଜାନୁୟାରୀରୁ ଗୃହୀତ

## ବାହା ନହୁଅ ପଛେ ଯୌତୁକଦିଅ ନାହିଁ

ପାଠ ପଢୁଆ ପିଲାଏ ସ୍କୁଲ କଲେଜର ତର୍କ ସଭାରେ ଯୌତୁକ ପ୍ରଥା ବିରୁଦ୍ଧରେ ବହୁତ କହୁଛନ୍ତି- ଅଥଚ ବାସ୍ତବ କ୍ଷେତ୍ରରେ ଠିକ୍ ଓଲଟା । ବିଭାଘର ପାଇଁ କୁଳୀନତା, ଗୋତ୍ର, ପାତ୍ରଶୁଦ୍ଧି, ଲଗ୍ନ କିଛି ଦରକାର ହେଉନାହିଁ । କନ୍ୟାପକ୍ଷ ବରପକ୍ଷଙ୍କୁ କେତେଦେବେ ତାରି ଉପରେ ସବୁ ନିର୍ଭର କରୁଛି । ସରକାର ଏବେ ଯୌତୁକ ବିରୋଧ ଆଇନ କରିଛନ୍ତି ସତ- ମାତ୍ର କିଏ କାହା ନାଁରେ ଶ୍ୱଶୁର କ୍ୱାଇଁ ନାଁରେ ନା ସମୁଦି ସମୁଦିଙ୍କ ନାଁରେ । ଏହା ଏକ ସାମାଜିକ ବ୍ୟାଧି । ଏହାର ମୂଳୋତ୍ପାଟନ ପାଇଁ ବାପୁଜୀ ଯୁବକ-ଯୁବତୀମାନଙ୍କୁ ନାନାଭାବରେ ଉତ୍ସାହ ପ୍ରଦାନ କରିଥିଲେ ।

୧୯୭୭ ନଭେମ୍ବର ୨୯ ତାରିଖରେ ସିଲୋନସ୍ଥିତ ରାମନାଥ ବାଳିକା କଲେଜରେ ଉଦ୍‌ବୋଧନ ଦେଇ ବାପୁଜୀ କହିଥିଲେ- ''ପାର୍ବତୀ ସ୍ୱାମୀ ପାଇବାପାଇଁ ପଇସା ଖର୍ଚ୍ଚ କରିନଥିଲେ କି ତାଙ୍କୁ କୌଣସି ପୁରୁଷ କିଣିନେବେ ସେଥିରେ ସେ ରାଜି ହୋଇ ନଥିଲେ । ନାରଦ ପାର୍ବତୀଙ୍କ ଆଗରେ ଶିବଙ୍କ ରୂପଭେକ ବର୍ଣ୍ଣନା କରି କହିଥିଲେ ଯେ ଶିବ କାଙ୍ଗାଳ, ଭସ୍ମବୋଳା ଅରୂପ ମାତ୍ର ବ୍ରହ୍ମଚାରୀ । ପାର୍ବତୀ ସେଥିରେ ରାଜି ହେଲେ । ସପ୍ତସତୀଙ୍କ ମଧ୍ୟରୁ ଅନ୍ୟତମ ପାର୍ବତୀଙ୍କ ଆଦର୍ଶ ତୁମେ ଅନୁକରଣ କର । କୁ-ଯୌତୁକପ୍ରଥାକୁ ପ୍ରତିରୋଧ କର ।''

ସଂପ୍ରତି ପାକିସ୍ଥାନ ଅନ୍ତର୍ଭୁକ୍ତ ସିନ୍ଧୁ ପ୍ରଦେଶରେ ଯୌତୁକପ୍ରଥାର ଭୟାବହତା ସବୁଠାରୁ ବେଶୀ । ସେ ଅଞ୍ଚଳରେ ଯୌତୁକପ୍ରଥାକୁ ଦେତି-ଲେତି କୁହାଯାଏ । ୧୯୨୯ ଫେବୃୟାରୀ ୫ ତାରିଖରେ କରାଚୀର ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ ବାପୁଜୀ କହିଲେ- ''ଯାହାଙ୍କୁ ସହଧର୍ମିଣୀ କୁହାଯାଉଛି, ତାଙ୍କୁ ପଣ୍ୟରୂପେ ବ୍ୟବହାର କରନାହିଁ । ସମାଜକୁ ପକ୍ଷାଘାତରୁ ରକ୍ଷାକର । ମୋ ଦାୟିତ୍ୱରେ ଯଦି ଝିଅଟିଏ ଥାନ୍ତା, ମୁଁ ପଛେ ତାକୁ ଜୀବନଯାକ ଅବିବାହିତା ରଖନ୍ତି ଯୌତୁକପାଇଁ କଡ଼ାଏ କଉଡ଼ିଆଶା କରୁଥିବା ଯୁବକ ହାତକୁ ତାକୁ ଟେକିଦିଅନ୍ତି ନାହିଁ ।''

## ସତ୍ୟାଗ୍ରହରେ 'ଶତ୍ରୁ' ନାହିଁ

୧୯୩୯ ମସିହାର ଘଟଣା । ଦ୍ୱିତୀୟ ମହାଯୁଦ୍ଧ । ଜାପାନୀ ମାଡ଼ି ଆସିବ- ଏହି କୋକୁଆଭୟ ଭାରତ ସାରା ବିଶେଷତଃ ସମୁଦ୍ର ଉପକୂଳ ରାଜ୍ୟରେ ବ୍ୟାପି ଯାଇଥାଏ । ଓଡ଼ିଶା ଏକ ଉପକୂଳବର୍ତ୍ତୀ ରାଜ୍ୟ । ଓଡ଼ିଶାବାସୀଙ୍କ ମନରୁ ଭୟ ଦୂର କରି ସେମାନଙ୍କ ମନୋବଳ ଅତୁଟ ରଖିବା ପାଇଁ ବାପୁଜୀ ତାଙ୍କର ପଟ୍ଟଶିଷ୍ୟା ମୀରାବେନ୍‌ଙ୍କୁ ଓଡ଼ିଶା ପଠାଇଥା'ନ୍ତି । ମୀରାବେନ୍‌ଙ୍କ ପ୍ରଥମ ନାମ ମିସ୍ ସ୍ଲେଡ । ସେ ବିଲାତର ଜଣେ ସୈନ୍ୟାଧକ୍ଷଙ୍କ ଝିଅ । ପ୍ରଥମ ମହାଯୁଦ୍ଧରେ ବାପାଙ୍କ ସହ ରଣକ୍ଷେତ୍ରକୁ ଯାଇ ଯାହା ଦେଖିଲେ ଆଉ ସହି ପାରିଲେ ନାହିଁ । ଶାନ୍ତି ଖୋଜିଲେ । ପରମ ଦାର୍ଶନିକ ରୋମାରୋଲାଁ ତାଙ୍କୁ ପରାମର୍ଶ ଦେଲେ- ''ଗାନ୍ଧୀଙ୍କ ପାଖକୁ ଯାଅ ଶାନ୍ତି ପାଇବ ।'' ମିସ୍ ସ୍ଲେଡ ଭାରତ ଆସି ଗାନ୍ଧିଜୀଙ୍କ ଠାରୁ ଦୀକ୍ଷା ନେଲେ । ଗାନ୍ଧୀ-ଧର୍ମରେ ଦୀକ୍ଷିତା ହେଲେ । ନାଆଁ ବଦଳାଇ ସେ ହେଲେ ''ମୀରାବେନ୍-ମୀରା ଭଉଣୀ'' ।

୧୯୪୨ ମଇ ୨୯- ପୁରୀ ସିଂହଦ୍ୱାରରେ ମୀରାବେନ୍ ସଭା କଲେ । ବିଦେଶୀ ଆକ୍ରମଣରୁ ଆତ୍ମରକ୍ଷା ପାଇଁ ଅହିଂସକ ମାର୍ଗ ବୁଝାଇଲେ । ସ୍ୱାବଲମ୍ବନ ଓ ସ୍ୱଦେଶୀ ଉପରେ ବହୁତ ଗୁରୁତ୍ୱ ଦେଲେ । ବାପୁଜୀଙ୍କ ସତ୍ୟାଗ୍ରହର ଉପଯୋଗିତା ବୁଝାଇଲେ । ସଭାରେ ପୁରୀର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଉପସ୍ଥିତ ଥାନ୍ତି । ବିଶିଷ୍ଟ ଐତିହାସିକ ଓ ସମାଜସେବୀ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ପ୍ରଶ୍ନ କଲେ-

''ଶତ୍ରୁ ଯଦି ଭୋକିଲା ହୋଇ ଆମ ଦ୍ୱାରସ୍ଥ ହୁଏ ଆମେ ତାଙ୍କୁ ଭୋଜନ ଦେବା କି ନାହିଁ ?''

ମୀରାବେନ୍ ଟିକିଏ ହସିଦେଇ ଉତ୍ତର ଦେଲେ-

''ବାପୁଜୀ ଆମକୁ ଯେଉଁ ସତ୍ୟାଗ୍ରହ ଓ ଅହିଂସାର ମାର୍ଗ ବତାଇଛନ୍ତି ସେ ଅଭିଧାନରେ 'ଶତ୍ରୁ ଶବ୍ଦ ନାହିଁ । ଶତ୍ରୁ ଶବ୍ଦ ବଦଳରେ 'ଆକ୍ରମଣକାରୀ' ବ୍ୟବହାର କରାଯାଇପାରେ । ତାହାହେଲେ ପ୍ରଶ୍ନର ରୂପ ବଦଳିଯିବ ଓ ଉତ୍ତର ମଧ୍ୟ ସହଜ ହେବ । ଖାଦ୍ୟାଭାବ ହିଁ ଆକ୍ରମଣକାରୀଙ୍କ ପରାଜୟ କାରଣ ହୋଇଥାଏ । କୌଣସି ଆକ୍ରମଣକାରୀ ଅସ୍ତ୍ରଶସ୍ତ୍ର ଧରି ଖାଦ୍ୟପାଇଁ ଦ୍ୱାରସ୍ଥ ହୁଅନ୍ତି ନାହିଁ । ସେତେବେଳେ ସେମାନେ ଅସ୍ତ୍ର-ଶସ୍ତ୍ର ହୀନ ଶରଣାର୍ଥୀ । ସେମାନଙ୍କୁ ଆଶ୍ରୟ ଦେବା, ଖାଦ୍ୟ ଦେବା ସତ୍ୟାଗ୍ରହୀର ଧର୍ମ ।''

(୧୯୮୦ ଜାନୁଆରୀ ସଂଖ୍ୟା ଉତ୍କଳ ପ୍ରସଙ୍ଗରୁ ସୂହୀତ)



## ଗାନ୍ଧିଜୀଙ୍କ ମିତବ୍ୟୟିତା

ଶ୍ରୀ ଗଣେଶ୍ୱର ମହାପାତ୍ର

ଭାରତର ମୁକ୍ତି ତଥା ଜଗତର ମଂଗଳ ଚାହୁଁଥିବା କର୍ମ ଜଂଜାଳୀ ଗାନ୍ଧି ନିଜର ଦୈନଦିନ ଖର୍ଚ୍ଚର ହିସାବ ରଖୁଥିଲେ । ବାରିଷ୍ଟରି ପଢ଼ିବା ପାଇଁ ଇଂଲଣ୍ଡରେ ଥିଲାବେଳେ ମଧ୍ୟ ସେ ଏହି ଅଭ୍ୟାସକୁ ବଜାୟ ରଖିଥିଲେ । ଏହା ଫଳରେ ସେ ମିତବ୍ୟୟୀ ହୋଇ ପାରିଲେ ଓ ତାଙ୍କ ମାର୍ଫତ ରହୁଥିବା ବିଭିନ୍ନ ଟ୍ରଷ୍ଟ ଓ ସଂସ୍ଥାର ଲକ୍ଷ ଲକ୍ଷ ଟଙ୍କାର ହିସାବ ରଖି ସମସ୍ତଙ୍କର ବିଶ୍ୱାସଭାଜନ ହୋଇ ପାରିଥିଲେ ।

### ସ୍ୱାଭିମାନ:

ଦକ୍ଷିଣ ଆଫ୍ରିକାର ପ୍ରିଟୋରିଆରେ ଥିଲା ବେଳେ ନିଜର ବାଳ କାଟିବାକୁ ଏକ ସେଲୁନ୍‌କୁ ଯାଇଥିଲେ । ମାତ୍ର ଇଂରେଜ ବାରିକ କଳା ଲୋଚିର ବାଳ କାଟିବାକୁ ମନା କରି ଦେବାରୁ ଗାନ୍ଧି କଇଁଚିଟିଏ କିଣି ଦର୍ପଣ ସାମ୍ନାରେ ନିଜ ବାଳ ନିଜେ କାଟିଲେ । ଏହି ବାଳ କଟାରେ ସମାନୁପାତିକତା ରହିଲା ନାହିଁ । କଚିରୀର ସାଥୀ ଓକିଲମାନେ ଗାନ୍ଧିଙ୍କୁ ଏପରି ବେଶରେ ଦେଖି ବହୁତ ରହସ୍ୟ କଲେ । କେହି କେହି ପଚାରିଲେ- ମୂଷା ଆପଣଙ୍କ ବାଳ କାଟି ଦେଇଛିକି ? ଏହି ରହସ୍ୟର ଉତ୍ତର ଦେଇ ଗାନ୍ଧିଜୀ କହିଥିଲେ, ବାରିକର ଦୋଷ ନାହିଁ, ତାର ବ୍ୟବସାୟ ନ ବୁଡ଼ାଇବା ପାଇଁ ତା କଥା ମାନି ମୋ ନିଜ କାମ ମୁଁ ନିଜେ କରିଛି ।

**ସମୟାନୁବର୍ତ୍ତିତା:**

ଥରେ ବଡ଼ଲାଟଙ୍କ ସହ ତାଙ୍କର ଦେଖା ହେବା ପାଇଁ ସମୟ ଧାର୍ଯ୍ୟ ଥାଏ । ଗାନ୍ଧି ତଦନୁଯାୟୀ ନିରୂପିତ ସମୟରେ, ନିର୍ଦ୍ଦିଷ୍ଟ ସ୍ଥାନରେ ପହଁଚିଗଲେ । ମାତ୍ର ବଡ଼ଲାଟଙ୍କ ଆସିବା ଚାରି ପାଞ୍ଚ ମିନଟ୍ ଡେରି ହେବାରୁ ସେଠାରୁ ବାହୁଡ଼ି ଆସିଲେ । ନିଜର ତ୍ରୁଟି ଯୋଗୁଁ ବଡ଼ଲାଟ ଗାନ୍ଧିଙ୍କ ପାଖରେ ଦୁଃଖ ପ୍ରକାଶ କରିଥିଲେ ।

**ଶୃଙ୍ଖଳା ଓ ସଂଯମ:**

ଥରେ ଗାନ୍ଧି ଉତ୍ତର ଓଡ଼ିଶାରୁ ଦକ୍ଷିଣ ଓଡ଼ିଶା ଟ୍ରେନ୍‌ରେ ଆସୁଥାନ୍ତି । ବ୍ରହ୍ମପୁରରେ ସକାଳେ ତାଙ୍କର ଉଦ୍‌ବୋଧନ ଦେବାର ଥାଏ । କଟକରେ ରହଣି କାର୍ଯ୍ୟକ୍ରମ ଥାଏ । ମାତ୍ର ତାଙ୍କର ଦର୍ଶନେଚ୍ଛୁ ବହୁ ଛାତ୍ରଙ୍କ ସମେତ ସାଧାରଣ ଜନତା ରାତି ଅଧରେ କଟକ ଷ୍ଟେସନ୍‌ରେ ଜମା ହୋଇଗଲେ । ଗାଡ଼ିକୁ ଅଟକାଇବା ପାଇଁ ଲାଇନ୍ ଉପରେ ବସି ଗାନ୍ଧିଜୀଙ୍କର ଓ ଭାରତ ମାତାଙ୍କର ଜୟ ଜୟକାର କରିବାକୁ ଲାଗିଲେ । ଗାନ୍ଧିଜୀ ଘୁମାଇ ପଡ଼ିଥାନ୍ତି । ଧ୍ୱନି ଶବ୍ଦରେ ଉଠି ପଡ଼ି ତାଙ୍କ କକ୍ଷରେ ସ୍ଥାପିତ ଡାକବାଜୀ ଯନ୍ତ୍ର ମାଧ୍ୟମରେ ଆକଟ କରି କହିଲେ ଯେ ସମସ୍ତେ ନିଜ ନିଜ ସ୍ଥାନରେ ବସିଯାନ୍ତୁ । ଶୋଇବା ଲୋକକୁ ନିଦରୁ ଉଠାଇବା ଏକ ବିଶୃଙ୍ଖଳିତ ଆଚରଣ । ତେଣୁ ଗାନ୍ଧିଙ୍କ ପ୍ରତି ଜିନ୍ଦାବାଦ ନକହି ବରଂ ମୁର୍ଦ୍ଦାବାଦ କହିବାକୁ ସେ ବିରକ୍ତି ପ୍ରକାଶ କରିଥିଲେ । ସମବେତ ଜନତାଙ୍କୁ ହୁସିଆର କରି ସେ କହିଲେ ଯେ ରାଜଧାନୀ ବା ସହରର ଲୋକେ ବିଶୃଙ୍ଖଳିତ ହେଲେ ଗାଁ ଲୋକେ କ'ଣ ଶିଖିବେ ? ଶୃଙ୍ଖଳା, ସଂଯମ ଓ ଐକ୍ୟ ରଖି ପାରିଲେ ହିଁ ସ୍ୱାଧୀନତା ମିଳିବ ଓ ସୁରକ୍ଷିତ ହେବ ଏତିକିବେଳେ ଲୋକେ ଅପସରି ଯାଇଥିଲେ ଓ ଟ୍ରେନ୍ ଗନ୍ତବ୍ୟ ସ୍ଥଳକୁ ଗାନ୍ଧିଙ୍କୁ ନେଇ ଚାଲିଲା ।

**ଶିକ୍ଷା ସଫାଇରୁ ଶୁଭାରଂଭ ହୁଏ:**

ମହାତ୍ମା ଗାନ୍ଧିଙ୍କ ସର୍ବୋଦୟ ବିଚାରଧାରାର ସଫଳ ପ୍ରବକ୍ତା ଥିଲେ ଆଚାର୍ଯ୍ୟ ବିନୋବା । ସାବରମତୀ ଆଶ୍ରମରେ ଗାନ୍ଧୀଙ୍କ ସହ ତାଙ୍କର ପ୍ରଥମ ସାନ୍ନିଧ ଲାଭ ବେଳେ ସେ ଦେଖିଲେ ଯେ ଗାନ୍ଧି ତାଙ୍କ ସହ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରୁଛନ୍ତି । ତତ୍ ସଂଗେ ବସି ପରିବା ମଧ କାଟୁଛନ୍ତି । ଗୁଣିଗ୍ରାହୀ ବିନୋବା ଏହି ଅନୁଭବକୁ ବିଚାର ମନ୍ଥନ ଦ୍ୱାରା ସିଦ୍ଧ କରିନେଲେ ଯେ ଗାନ୍ଧିଙ୍କ ଠାରେ ବିଚାର ଓ ଅଚାରର ସମନ୍ୱୟ ହୋଇଛି । ଏହା ତାଙ୍କୁ ଅନୁପ୍ରାଣୀତ କରାଇଥିଲା । ସେ ଆଶ୍ରମରେ ରହି ଜ୍ଞାନ ଓ କର୍ମର ସମନ୍ୱୟ ମାଧ୍ୟମରେ ବ୍ରହ୍ମ ବିଦ୍ୟାର ସାଧନା କରିବାକୁ ଲାଗିଲେ ।

ଆଶ୍ରମରେ ଅନ୍ତେବାସୀଙ୍କ ପାଇଖାନା ମେହେନ୍ତର ସଫା କରୁଥିଲେ । ଏହା ବର୍ଣ୍ଣ ବୈଷମ୍ୟର ଘୋର ପ୍ରତିବନ୍ଧକ ଉପଲବ୍ଧି କରି ବିନୋବା ଓ ତାଙ୍କ ଭାଇ ନିଜ ହାତରେ ସମସ୍ତଙ୍କ ମଳମୂତ୍ର ସଫା କଲେ । ଗାନ୍ଧିଙ୍କ ବିଚାର ଧାରାରେ ଏହା ଗଭୀର ଆଲୋଡ଼ନ ସୃଷ୍ଟି କଲା । ବିନୋବାଙ୍କ ଏହି ବିଚାର ଧାରା ଗାନ୍ଧୀ ଉପଲବ୍ଧି କଲେ । ଏଣିକି ମଳମୂତ୍ର ସଫାଇ ପାଇଁ ମେହେନ୍ତର ରହିଲେ ନାହିଁ । ସମଗ୍ର ଭାରତର କର୍ମୀମାନଙ୍କ ପାଇଁ ଏହା ଏକ ବ୍ରତରେ ପରିଣତ ହୋଇଗଲା । ସମସ୍ତେ ଉପଲବ୍ଧି କଲେ ଯେ ସମସ୍ତ ପ୍ରକାର ଶିକ୍ଷା ସଫାଇରୁ ହିଁ ଆରମ୍ଭ ହେବା ସମୀଚୀନ । ●

ଅଧ୍ୟକ୍ଷ, ସର୍ବୋଦୟ ମେଳା କମିଟି, ପୁରୀ

ସ୍ୱଦେଶ ପ୍ରେମର ଆଦର୍ଶ ଆମମାନଙ୍କୁ ଶିକ୍ଷା ଦେଉଛି ଯେ, ଦରକାର ପଡ଼ିଲେ ବ୍ୟକ୍ତିକୁ ପରିବାର ପାଇଁ, ପରିବାରକୁ ଗ୍ରାମ ପାଇଁ ଗ୍ରାମକୁ ଜିଲ୍ଲା ପାଇଁ ଜିଲ୍ଲାକୁ ପ୍ରଦେଶ ପାଇଁ, ପ୍ରଦେଶକୁ ଦେଶପାଇଁ ଏବଂ ଦେଶକୁ ସମଗ୍ର ମାନବ ଜାତିର କଲ୍ୟାଣ ପାଇଁ ବିସର୍ଜନ ଦେବାକୁ ହେବ । ଏହି ଜାତୀୟତାରେ ଜାତି ବିଦ୍ୱେଷର କୌଣସି ସ୍ଥାନ ନାହିଁ । -ଗାନ୍ଧିଜୀ

ମୃତ୍ୟୁ ଜୀବନର ରୂପାନ୍ତର । ସୁତରାଂ ଯେଉଁଠାରେ ମୃତ୍ୟୁର ସମ୍ମୁଖୀନ ହେବି, ସେହିଠାରେ ହିଁ ତାକୁ ଆଲିଙ୍ଗନ କରିବି । - ବାପୁ

# ସ୍ୱରାଜମନ୍ତ୍ରର ଜନ୍ମଦାତା

୧୯୦୮ ମସିହା ସେପ୍‌ଟେମ୍ବର ୨୩ ତାରିଖ । ସମୁଦ୍ର ସେପାରି ବ୍ରହ୍ମଦେଶର ମାଣ୍ଡାଲେ ବନ୍ଦୀଶାଳାରେ ଜଣେ ମହାରାଷ୍ଟ୍ରୀୟ ଅପରାଧୀଙ୍କୁ ଦେଖିବାକୁ ମିଳିଲା । ୬ ମିଟର ଲମ୍ବ ଓ ୪ ମିଟର ଚଉଡା ଏକ କାଠ-ଘରେ ଦୀର୍ଘ ୬ ବର୍ଷ ସେ ବନ୍ଦୀଜୀବନ ବିତାଇଲେ । ତାଙ୍କର ଏକମାତ୍ର ଅପରାଧ ଥିଲା ରାଜଦ୍ରୋହ । ବିଦେଶୀ ଗୋରା ସରକାରର ସମସ୍ତ ଅପକୀର୍ତ୍ତିକୁ ପଦାରେ ପକାଇ ସେ ହେଲେ ରାଜଦ୍ରୋହୀ । ତାଙ୍କ ରାଜଦ୍ରୋହର ବିଚାର ପାଇଁ ବ୍ରିଟିଶ ବିଚାରାଳୟର ସବୁ ପରମ୍ପରା ଭାଙ୍ଗିଗଲା । ରାତିରେ କୋର୍ଟ ବସିଲା । ବନ୍ଦୀ ନିଜର ନିର୍ଦ୍ଦୋଷତା ପ୍ରମାଣ କରିବାକୁ ଦୀର୍ଘ ୨୧ ଘଣ୍ଟା ଧରି ବୟାନ ଦେଲେ । ଅତ୍ୟନ୍ତ ନିର୍ଭୀକ ଭାବରେ ବିଚାରାଳୟରେ ସେ ଜଣାଇଲେ ଯେ - "**ସ୍ୱାଧୀନତା ପାଇଁ ଇଚ୍ଛେଇ ପ୍ରତ୍ୟେକଙ୍କ ଜନ୍ମଗତ ଅଧିକାର । ସମଗ୍ର ଦେଶକୁ ସରକାର ଏକ ବନ୍ଦୀଶାଳାରେ ପରିଣତ କରିଛନ୍ତି । ବିଲାତର ଲୋକଙ୍କ ପରି ଆମେ ସ୍ୱାଧୀନ ଓ ସଚେତନ ଜୀବନ ଯାପନ କରିବାକୁ ଦୃଢ଼ ପ୍ରତିଜ୍ଞ** । ମୁଁ ବନ୍ଦୀଶାଳାରେ ଆବଦ୍ଧ ରହିଲେ ମୋର ଉଦ୍ଦେଶ୍ୟ ସଫଳତାର ସହିତ ସାଧିତ ହୋଇପାରିବ । ଏହା ପରମେଶ୍ୱରଙ୍କ ଇଚ୍ଛା ।"

ବନ୍ଦୀଙ୍କର ଜନସାଧାରଣଙ୍କ ଉପରେ ଅଖଣ୍ଡ ପ୍ରଭାବ ଥିଲା । ତାଙ୍କ ଦଣ୍ଡାଦେଶରେ ଯେଉଁ ନାହିଁ ନଥିବା ହରତାଳ ଓ ବିକ୍ଷୋଭ ହୋଇଥିଲା ସେଥିରେ ଗୁଳିରେ ୩୦ ଜଣ ନିହତ ଓ ଶତାଧିକ ଘାଏଲ ହୋଇଥିଲେ । ତାଙ୍କର ଅଗାଧ ପାଣ୍ଡିତ୍ୟ, ଗଭୀର ଦେଶାତ୍ମବୋଧ ନିର୍ଭୀକ ସାମ୍ବାଦିକତା ଓ ଜନଗଣଙ୍କ ଉପରେ ଅଖଣ୍ଡ ପ୍ରଭାବକୁ ଉପଲବ୍ଧି କରି ଭାରତ ସରକାର ତାଙ୍କୁ ଏପରି ଭୟ କରୁଥିଲେ ଯେ ଦେଶଭିତରେ ନରଖି ଦ୍ୱୀପାନ୍ତରିତ କରାଇ ଦେଲେ ।

ବନ୍ଦୀଙ୍କ ପକ୍ଷରେ ବନ୍ଦୀଶାଳାଟି ହୋଇଥିଲା ଏକ ସାଧନାଗାର । ପାଲି, ଫରାସୀ ଓ ଜର୍ମାନ ଭାଷା ସେହିଠାରେ ସେ ଶିଖିଗଲେ । ତାଙ୍କ ଧର୍ମପତ୍ନୀ ସତ୍ୟଭାମାଙ୍କୁ ସେ ହରାଇଲେ । ଦୀର୍ଘ ୪୧ ବର୍ଷର ଦାମ୍ପତ୍ୟ ଜୀବନ ଛିନ୍ନ ହୋଇଗଲା । ତଥାପି ସାଧନାର ଅନ୍ତ ହେଲା ନାହିଁ ।

ଧର୍ମ-ଦର୍ଶନ ଜଗତରେ ଆଲୋଡ଼ନ ଓ ବିସ୍ମୟ ସୃଷ୍ଟି କରିଥିବା '**ଗୀତାରହସ୍ୟ**' ତାଙ୍କ ବନ୍ଦୀଜୀବନର ଅଭିନବ ପ୍ରସୂତି । ୮୦୦ ଦିସ୍ତା କାଗଜରେ ଖଣ୍ଡିଆ ଦଣ୍ଡିଆ ପେନ୍‌ସିଲରେ ୧୦୮ ଦିନ ଧରି ଚାରିଶହ ବହିରୁ ତଥ୍ୟସଂଗ୍ରହ କରି ପାଣ୍ଡୁଲିପିଟିକୁ ସେ ପ୍ରସ୍ତୁତ କରିଥିଲେ । ମନ୍ତ୍ରଦ୍ରଷ୍ଟା ବୈଦିକ ଋଷିଙ୍କ ପରି ସେ ଗୀତୋକ୍ତ ସ୍ଥିତପ୍ରଜ୍ଞ ଲକ୍ଷଣରେ ଭୂଷିତ ଥିଲେ । କଥିତ ଅଛି, ବନ୍ଦୀଶାଳାରେ ଗୀତାର ସ୍ଥିତପ୍ରଜ୍ଞ ଲକ୍ଷଣ ପାଠରେ ମନୋନିବେଶ କରି ବିନା କ୍ଲୋରୋଫର୍ମରେ ନିଜର ପଠା ଘା ଅପରେସନକୁ ସେ ଯେପରି ସହ୍ୟ କରିଗଲେ, ଡାକ୍ତରିମହଲରେ ଗଭୀର ବିସ୍ମୟ ଓ ଆଲୋଡନ ସୃଷ୍ଟି କରିଥିଲା ।

ବନ୍ଦୀଶାଳାରେ ଘରଚଟିଆ ଗୁଡ଼ିକ ବେଢ଼ିଯାଇ ତାଙ୍କ ହାତରେ ଖାଉଥିବା ଏକ ଅଭିନବ ଘଟଣା । ପଚାରିଲେ କହନ୍ତି "ଭଗବତ୍ ସୃଷ୍ଟିରେ କୌଣସି ଜୀବ ଏପରିକି ବିଷଧର ସର୍ପ ପ୍ରତି ମୋର ଅସତ୍ ଭାବନା; ଘୃଣା ବା ଭୟ ନଥିବାରୁ ସେମାନେ ମୋତେ ସୁଖ ପାଉଛନ୍ତି ।"

"ଆହାରେ ଭଲ, ମନ୍ଦ ନାହିଁ, ଯେ ସ୍ଥାନେ ଯେମନ୍ତ ମିଳଇ ।" ଏହି ଭଗବତବାଣୀକୁ ସେ ଅକ୍ଷରେ ଅକ୍ଷରେ ପାଳୁଥିଲେ । ତାଙ୍କର ଆଦର୍ଶ ଥିଲା - "**ବଞ୍ଚିବା ପାଇଁ ଖାଅ, ଖାଇବା ପାଇଁ ବଞ୍ଚ ନାହିଁ ।**"

**ଲାଲ-ବାଲ-ପାଲ** - ବିଦେଶୀ ଶାସନରେ ଆତଙ୍କ ସୃଷ୍ଟି କରିଥିବା ଏହି ଅପରାଧୀ ହେଉଛନ୍ତି **ଲୋକମାନ୍ୟ ବାଲ ଗଙ୍ଗାଧର ତିଲକ** । ଲାଲା ଲଜପତ୍ ରାୟ ଓ ବିପିନ୍ ଚନ୍ଦ୍ର ପାଲ୍‌ଙ୍କର ସେ ଥିଲେ ଅନ୍ୟତମ ସାଥୀ । ସ୍ୱାଧୀନତା ସଂଗ୍ରାମରେ ଫକୀର ପରି ଭିକ୍ଷା ନମାଗି ଯୁଦ୍ଧ ମନୋବୃତ୍ତିରେ ଦାବୀ ହାସଲ ଏହି ତ୍ରିମୂର୍ତ୍ତିଙ୍କର ଧ୍ୱନୀ ଥିଲା ।

**ଜୀବନ ଝଲକ** - ମହାରାଷ୍ଟ୍ରର ରତ୍ନଗିରିରେ ୧୮୫୬ ଜୁଲାଇ ୨୩ରେ ତିଳକଙ୍କର ଜନ୍ମ । ତାଙ୍କ ବାପା ଥିଲେ ସ୍କୁଲ ଶିକ୍ଷକ ଓ ପରେ ପରିଦର୍ଶକ । ୧୦ ବର୍ଷ ବୟସରେ ବୋଉକୁ ଓ ୧୬ ବର୍ଷ ବୟସରେ ବାପାଙ୍କୁ ସେ ହରାଇଥିଲେ । ୨୧ ବର୍ଷ ବୟସରେ ଗଣିତଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ଡିଗ୍ରୀ ହାସଲ କରିଥିଲେ । ଶିକ୍ଷାଦାନ ଶିକ୍ଷକତା ପ୍ରତି ତାଙ୍କର ଆଗ୍ରହ ଥିବାରୁ ଚିପ୍ଳେଙ୍କର, ଅଗରକର ଓ ମହାଦେବ ଯୋଶୀଙ୍କ ପରି ସମଧର୍ମୀ ମାନଙ୍କୁ ନେଇ ୧୮୮୦ ନବବର୍ଷର ପ୍ରଥମ ଦିନ ସେ ଏକ **ଜାତୀୟ ବିଦ୍ୟାଳୟ** ସ୍ଥାପନ କଲେ । ମାତ୍ର ୪ ବର୍ଷ ମଧ୍ୟରେ ସହସ୍ରାଧିକ ଛାତ୍ର ହୋଇଗଲେ । ଫରଗୁସନ କଲେଜ ତାଙ୍କର

ଅନ୍ୟତମ ସୃଷ୍ଟି । ସେ ନିଜେ ଗଣିତ ପଢ଼ାଉ ଥିଲେ । ଅଧକ୍ଷ ଆପ୍ଟେ, ଅଗରକର ଓ କେଲକରଙ୍କ ପରି ବହୁ ଜାତୀୟବାଦୀ ବିଦ୍ୱାନ ଅଧାପକ ଏହି କଲେଜ ସହ ସଂପୃକ୍ତ ହେଲେ ।

ଦେଶମ୍‌ବୋଧର ପ୍ରଚାର ପାଇଁ 'କେଶରୀ' ଓ 'ମରହଟ୍ଟା' ନାମକ ସମ୍ବାଦ ପତ୍ର ମାଧମରେ ଅନ୍ୟାୟର ବଳିଷ୍ଠ ବିରୋଧ, **ଗଣପତି ଓ ଶିବାଜୀ ଉତ୍ସବ** ମାଧମରେ ସାମ୍ପ୍ରଦାୟିକ ସଂପ୍ରୀତି ପ୍ରତିଷ୍ଠା, ମହାରାଷ୍ଟ୍ରରେ ଭୀଷଣ ପ୍ଲେଗ ଓ ଦୁର୍ଭିକ୍ଷରେ ସରକାରଂ ପ୍ରତିକାଚ ଅବ୍ୟବସ୍ଥାରେ ଅତିଷ୍ଠ ହେବା ଦ୍ୱାରା ସରକାରଙ୍କ ରାଜ୍ରୋଦାହ ହେଲା । ଅଧାପକ ପାରାଞ୍ଜପେଙ୍କ ସମେତ କର୍ମୀମାନେ ରାଜଦ୍ରୋହ ଅପରାଧରେ ଗିରଫ ହେଲେ । ବିଚାରପତିଙ୍କ ତମ୍ବୁ ଚାରିପଟେ ଦଶହଜାର ଲୋକଙ୍କ ନାହିଁ ନଥିବା ବିକ୍ଷୋଭ ଦେଖି ଶାନ୍ତି ପ୍ରତିଷ୍ଠା ପାଇଁ ବିଚାରପତି ତିଳକଙ୍କ ସାହାଯ୍ୟ ନେଇଥିଲେ । ୧୮୮୨ ଜୁଲାଇ ୧୭ରେ ତାଙ୍କୁ ଚାରିମାସ କାରାଦଣ୍ଡ ଭୋଗ କରିବାକୁ ପଡିଲା ୧୮୮୯ରେ ପ୍ରଥମ କରି ତିଳକ କଂଗ୍ରେସରେ ଯୋଗଦେଲେ । ତାଙ୍କର ପ୍ରଚାର ଥିଲା ଜାତି-ଧର୍ମ-ବର୍ଣ୍ଣ-ଜୀବିକା-ଶିକ୍ଷା ନିର୍ବିଶେଷରେ କଂଗ୍ରେସ ସମସ୍ତଙ୍କର । ୧୯୦୫ ଅକ୍ଟୋବର ୧୬ରେ ବଡଲାଟ ଲଡ କର୍ଜନ ବଙ୍ଗଦେଶର ଅସ୍ତିତ୍ୱ ଲୋପ ପାଇଁ ଯେଉଁ ଅପରିଣାମ ଦର୍ଶୀ ହୁକମନାମା ଜାରି କରିଥିଲେ ତହିଁରୁ ସ୍ୱଦେଶୀ ଆନ୍ଦୋଳନ ଜନ୍ମ ନେଲା । ତିଳକ ଏହି ଆନ୍ଦୋଳନକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କଲେ । ଭାରତୀୟ ଶିଳ୍ପକୁ ପ୍ରୋତ୍ସାହନ ଦେବା ପାଇଁ ପଇସିକିଆ ପାଇଣ୍ଡି ଗଢ଼ି ଉଠିଲା ।

**ସମାଜ ସଂସ୍କାର** - ତିଳକଙ୍କ ମତରେ - "୧୬ ବର୍ଷରୁ କମ ବୟସର ଝିଅ ଓ କୋଡିଏ ବର୍ଷରୁ ବୟସର ପୁଅ ବିଭା ହେବେ ନାହିଁ । ୪୦ ବର୍ଷ ବୟସପରେ କୌଣସି ପୁରୁଷ ବିବାହ ହେବାକୁ ମନକଲେ ବିଧବା ବିଭା ହିଁ କରିବେ । କୌଣସି ବିଧବା ଲଣ୍ଡା ହେବେ ନାହିଁ । ଯୌତୁକ ଓ ନିଶା ବର୍ଜନ କରାଯିବ । ଏ ସଂସ୍କାର ଗ୍ରହଣ କରିବା ଲୋକେ ନିଜ ଆୟର ଏକ ଦଶମାଂଶ ପ୍ରଚାରକଙ୍କୁ ଦାନ କରିବେ । ଅସ୍ପୃଶ୍ୟତା ବିଧିର ବିଧାନ ବୋଲି ସ୍ୱଂୟ ଭଗବାନ ଯଦି କହନ୍ତି ତେବେ ମୁଁ ସେହି ଭଗବତ୍ ସ୍ଥିତିକୁ ଅସ୍ୱୀକାର କରିବି ।" ମାତୃଭାଷା ମାଧରେ ଶିକ୍ଷା ଦାନ ଓ ନାଗରି ଲିପିରେ ରାଷ୍ଟ୍ର ଭାଷା ହିନ୍ଦୀର ସେ ଦୃଢ଼ ସମର୍ଥକ ଥିଲେ ।

**ସ୍ୱରାଜ ମନ୍ତ୍ର** - ୧୯୦୬ କଲିକତା କଂଗ୍ରେସରେ ସ୍ୱରାଜ୍ୟ ହାସଲ ପାଇଁ ସଂଗ୍ରାମ ପ୍ରସ୍ତାବ ପ୍ରଥମ କରି ଗୃହୀତ ହେଲା । ତିଳକ ଥିଲେ ଏହାର ପ୍ରାଣ ପ୍ରତିଷ୍ଠାତା । ସେଥିଲେ ଯଥାର୍ଥ ଲୋକମାନ୍ୟ । ସରକାର ବିରୋଧୀ ଥିଲେ ମଧ ସେ ସରକାରଙ୍କୁ ଶତ୍ରୁ ମନେକରୁ ନଥିଲେ । ସେତେବେଳେ ଆଜିକାଲି ପରି ଆଞ୍ଚଳିକ ଭେଦ ନଥିବାରୁ ତିଳକଙ୍କୁ ସବୁଆଡର ଲୋକେ ନିଜର କରିନେଥିଲେ । ୧୮୯୭ରେ ଦୁଇଜଣ ସାହେବଙ୍କ ହତ୍ୟା ସଂକ୍ରାନ୍ତରେ ତିଳକଜୀ ଗିରଫ ହେବାରେ ବ୍ୟଥିତ ହୋଇ ତାଙ୍କ ସପକ୍ଷରେ ଲଢ଼ିବା ପାଇଁ ବଙ୍ଗାଳୀ ମାନେ ୫୦ହଜାର ଟଙ୍କା ସଂଗ୍ରହ କରି ପଠାଇବା ଏହାର ପ୍ରକୃଷ୍ଟ ନିଦର୍ଶନ ।

**ତିଳକ ମୋର ଗୁରୁ** - ମହାତ୍ମା ଗାନ୍ଧୀତିଳକଙ୍କୁ ନିଜର ଗୁରୁ ଓ ପିତୃ ପତିମ ମନେକରୁଥିଲେ । ତିଳକଙ୍କ ସ୍ମୃତିରେ ରତ୍ନଗିରିକୁ ଏକ ତିର୍ଥ ସ୍ଥାନ ମନେ କରିବା ପାଇଁ ସେ ଯେଉଁ ଆବେଗ ପୂର୍ଣ୍ଣ ଉଦ୍‌ବୋଧନ ଦେଇଥିଲେ ତାହା ଏହାର ପ୍ରମାଣ । (ୟଂ ଇଣ୍ଡିଆ ୧୭.୩.୨୭)

**ମହାପ୍ରୟାଣ** - ସ୍ୱାଧୀନ ଭାରତରେ କୌଣସି ପଦ ପଦବୀର ବ୍ୟାମୋହରେ ଜଡ଼ିତ ନହୋଇ ଶିକ୍ଷକତା କରିବାକୁ ତିଳକଙ୍କ ଏକମାତ୍ର ଆକାଂକ୍ଷା ଥିଲା । ମାତ୍ର କାଳ ସହିଲା ନାହିଁ ସ୍ୱାଧୀନତା ପ୍ରାପ୍ତିର ୨୭ବର୍ଷ ଆଗରୁ ୧୯୨୦ ଅଗଷ୍ଟ ୧ ରାତି ଘ ୧୨.୪୦ରେ ବୀରପୁରୁଷ ତିଳକ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

**ଶୋକବାର୍ତ୍ତା** - ମାହାତ୍ମା ଗାନ୍ଧୀ କହିଲେ - "ଏକ ପରାକ୍ରମ ଶାଳୀ ସିଂହର ଗର୍ଜନ ରୁଦ୍ଧ ହୋଇଗଲା । ଦେଶପ୍ରେମ ଛଡା ସେ ଆଉ କିଛି ଜାଣୁ ନଥିଲେ । ନିଷ୍ଠକ ଗଣତନ୍ତ୍ରବାଦୀ ଭାବରେ ସେ ଅବିସ୍ମରଣୀୟ ରହିବେ ।" ଡ଼ଃ ରାଧାକୃଷ୍ଣନଙ୍କ ମତରେ - "ତିଳକ ଜଣେ ଜ୍ଞାନପିପାସୁ ରାଜନୀତିଜ୍ଞ" । ବମ୍ବେ ହାଇକୋର୍ଟର ଯେଉଁ କକ୍ଷରେ ତାଙ୍କୁ ଦୁଇଥର ଦଣ୍ଡାଦେଶ ହୋଇଥିଲା ସେହି କକ୍ଷରେ ଦୀର୍ଘ ୪୮ ବର୍ଷପରେ ତତ୍କାଳୀନ ପ୍ରଧାନ ବିଚାରପତି ଏମ୍. ସି. ଚଗଲା **ତିଳକ-ସ୍ମାରକୀ-ଫଳକ** ଉନ୍ମୋଚନ କରି କହିଥିଲେ - "ଦେଶକୁ ଅଧିକ ଭଲପାଉ ଥିବାରୁ ସେ ଦଣ୍ଡ ଭୋଗିଲେ । ଇତିହାସ ଏହାର ମୂକସାକ୍ଷୀ ।"

ଆସନ୍ତୁ ସେହି ଦିବଙ୍ଗତ ଆତ୍ମା ପ୍ରତି ସମ୍ମାନ ଜଣାଇ ତାଙ୍କ ପ୍ରଦର୍ଶିତ ମାର୍ଗରୁ ଯତକିଞ୍ଚିତ ଅନୁସରଣ କରି ଧନ୍ୟ ହେବା ।

(ସର୍ବୋଦୟ ମେଳା, ପୁରୀ)

## ହିନ୍ଦୁସ୍ତାନ ହମାରା ହୈ

ଆଜ ହିମାଳୟକୀ ଚୋଟୀ ସେ ଫିର ହମନେ ଲଲକାରା ହୈ
ଦୂର ହଟୋ, ଦୂରହଟୋ, ଦୂରହଟୋ ଐ ଦୁନିଆ ବାଲୋ ହିନ୍ଦୁସ୍ତାନ ହମାରା ହୈ ॥
ଯହାଁ ହମାରେ ତାଜ ମହଲ ହୈ ଔର କୁତବ ମିନାରା ହି
ଯହାଁ ହମାରେ ମନ୍ଦିର ମସଜିଦ ଶିଖୋଁକା ଗୁରୁଦ୍ୱାରା ହୈ
ଇସ ଧରତୀ ପର କଦମ ବଢ଼ାନା ଅତ୍ୟାଚାର ତୁମ୍ହାରା ହୈ
ଦୂର ହଟୋ, ଦୂର ହଟୋ, ଦୂର ହଟୋ ଐ ଦୁନିଆ ୱାଲୋ ହିନ୍ଦୁସ୍ତାନ ହମାରା ହୈ ॥୧॥
ସୁରୁ ହୁଆ ହୈ ଜଙ୍ଗ ତୁମ୍ହାରା ଜାଗ ଉଠୋ ହିନ୍ଦୁସ୍ତାନୀ
ତୁମ୍ ନ କିସିକେ ଆଗେ ଝୁକନା ଜର୍ମନୀ ହୋ ୟା ଜାପାନୀ
ଆଜ ସଭିକେ ଲିୟେ ହମାରା ୟହୀ କୌମୀ ନାରା ହୈ
ଦୂର ହଟୋ, ଦୂର ହଟୋ, ଦୂର ହଟୋ ଐ ଦୁନିଆ ୱାଲୋ ହିନ୍ଦୁସ୍ତାନ ହମାରା ହୈ ॥୨॥

(ଶିଷମତ)

(ଶ୍ରୀ ଗୌରକୃଷ୍ଣ ଦାସ - ତେନ୍ତୁଳିଆପଡ଼ା, ଖୋରଧାଙ୍କ ଠାରୁ ପ୍ରାପ୍ତ)

## କାହାନ୍ତି ରାମ, କାହିଁ ସେ ରାଜ୍ୟ

ଗାନ୍ଧୀ ସଙ୍କଳ୍ପିତ ଧର୍ମ ନିରପେକ୍ଷ
ଗଣତନ୍ତ୍ର ରାଷ୍ଟ୍ର ମୋ ପରା
ଗଣ ନାହିଁ କେହ୍ନେ ହେଲା ଗଣତାନ୍ତ୍ର
ବିଶ୍ୱଯାକ ବାଜେ ନାଗରା
ଭାଇହେ .... ନୁହଁଇ କିଏ ଲୋକହସା
ମେଘନାହିଁ ଯେବେ ଆକାଶ ମଣ୍ଡଳେ
ହେଲା କେଉଁ ପରି ବରଷା (୧)

ଖୋଜିଲେ ହେ ଆଜ ନମିଳେ ସମାଜ
ବାଦ ମାତ୍ର ଅଛି ଦେଶରେ
କି ସମାଜବାଦ ଏହାକୁ କହିବା
ପଡିଲା ନା ପରିହାସରେ
ଭାଇହେ .... ଯଦି କେହି କହେ ଗର୍ବରେ
ଭାରତ ମହିମା ବିଭବ ଗାରିମା
ପଡିଲା ଅତଳ ଗର୍ଭରେ (୨)

ଗ୍ରାମ ଭାଙ୍ଗିଲାଣି ଗୋଷ୍ଠୀ ଆଉ ନାହିଁ
କିମ୍ବା ଗ୍ରାମ ଗୋଷ୍ଠୀ ଯୋଜନା
ଯୋଜନା ଯାକ ଯେ ଭଣ୍ଡୁର ହେଲାଣି
ପୂରି ଗଲାଣି ଦୁର୍ବାସନା
ଭାଇ ହେ .... କେ ଫିଙ୍ଗିବ ଏ ଆବର୍ଜନା
ଦୁର୍ଗନ୍ଧ ମଇଳା ଉପରେ କି ହେବ
ଲଗାଇ ଧୂପ ଗୋରଚନା (୩)

ରାମ ପ୍ରଭୁ ନାହିଁ ମନ୍ଦିର କିମ୍ବାଇଁ
ଅଯୋଧ୍ୟା ହେଲା କୁରୁକ୍ଷେତ୍ର
ରାମ୍ ନୀତି ରାମ, ପାଳିବାକୁ ସତ୍ୟ
ନ ଖୋଜଇ କାହାରି ନେତ୍ର
ଭାଇ ହେ .... ଶିଖନ୍ତେ ରାମ ଆଚରଣ
ତ୍ୟାଗ ନିଷ୍ଠ ରାମ ସମ ମଣିଥିଲେ
କି ରାଜ ପ୍ରାସାଦ ଅରଣ୍ୟ (୪)

# ଧର୍ମୀୟବାଣୀ

## ବୁଦ୍ଧବାଣୀ

ଅନ୍ଧବିଶ୍ୱାସ ଓ ଅଜ୍ଞାନତା ଅଧୋଗତିର କାରଣ । ଖଳବ୍ୟକ୍ତିକୁ ପ୍ରିୟ ମଣି ସଜ୍ଜନକୁ ଅଶ୍ରଦ୍ଧା ବିଫଳତାର ହେତୁ । ନିଦ୍ରାଳୁ, ଆଳସ୍ୟ ପରାୟଣ ଓ କ୍ରୋଧୀ ହୁଅନାହିଁ । ବୃଦ୍ଧ ପିତାମାତାଙ୍କ ଭରଣପୋଷଣକୁ କର୍ତ୍ତବ୍ୟ ମନେ କର । ଦାନକ୍ଷମ ଥିବା ସତ୍ତ୍ୱେ ଶ୍ରମଣ, ବ୍ରାହ୍ମଣ ବା ଅନ୍ୟ କେହି ଯୋଗ୍ୟ ଗ୍ରହୀତାକୁ ମିଥ୍ୟା କହି ବଞ୍ଚିତ କରାଅ ନାହିଁ । ବିପୁଳ ଧନ ସମ୍ପଦକୁ କେବଳ ନିଜ ସ୍ୱାର୍ଥରେ ବ୍ୟୟ କରନାହିଁ । ଜାତି-ଧନ-କୁଳ ଅଭିମାନୀ ହୋଇ ଦୀନଦୁଃଖୀଙ୍କୁ ଅବଜ୍ଞା କରନାହିଁ । ପର-ଦାର ଗମନ, ମଦ୍ୟପାନ, ନିଶା ସେବନ ଓ ଜୁଆ-ଏହି ଚତୁର୍ବିଧ ଦୁଷ୍କର୍ମ ଜୀବନକୁ ଅଧୋଗାମୀ କରେ । ବିଗତ ଯୌବନ ବା ବାର୍ଦ୍ଧକ୍ୟରେ ସ୍ୱଚ୍ଛ ବୟସ୍କା ତରୁଣୀକୁ ଯେ ବିବାହ କରେ, ସେ ପତ୍ନୀକୁ'ତ ସନ୍ତୁଷ୍ଟ କରିପାରେ ନାହିଁ ; ପୁଣି ତା' ଚରିତ୍ରରେ ସନ୍ଦେହ ଆଣିଥାଏ । ଏପରି ସନ୍ଦେହୀ ଓ ଇର୍ଷା-ଦଗ୍ଧ ବ୍ୟକ୍ତି ସୁଖରେ ନିଦ୍ରା ଯାଇପାରେ ନାହିଁ । ନିଜ ପତନକୁ ନିଜେ ଆମନ୍ତ୍ରଣ କରେ । କ୍ଷତ୍ରିୟ ଅବା ବଳଶାଳୀ, କୁଳାଭିମାନୀ, ନିର୍ଦ୍ଧନ ପୁରୁଷ ଲୋଭାତୁର ହୋଇ ଦୁର୍ବଳର ଧନ ସମ୍ପତ୍ତି ଅପହରଣ କଲେ ନିଶ୍ଚିତ ପରାଭବ ପାଇବେ । ଦୂରଦର୍ଶୀ ଜ୍ଞାନୀ ଆର୍ଯ୍ୟପୁରୁଷ ସୁମଙ୍ଗଳ ବୁଦ୍ଧ ଶାସନରେ ଚାଳିତ ହେଲେ ସୁଖରେ ଜୀବନଯାତ୍ରା ନିର୍ବାହ କରିପାରିବେ । ଯଦି ଦୁଃଖକୁ ଭୟ କରୁଥାଅ ଓ ଦୁଃଖ ତୁମର ଅପ୍ରିୟ, ତେବେ ବୁଦ୍ଧ, ଧର୍ମ ଓ ସଂଘରେ ଆଶ୍ରୟ ନିଅ । ତାହାହେଲେ ଦେବତାମାନେ ସର୍ବଦା ରକ୍ଷା କରିବେ ।

(ବୋଧିପ୍ରିୟ ରାଧାକୃଷ୍ଣ ସାହୁଙ୍କ ଦ୍ୱାର ଲିଖିତ
''ବୁଦ୍ଧ-ଶାସନ'' ପୁସ୍ତିକାରୁ ଗୃହୀତ)

## ଇସ୍‌ଲାମ ଧର୍ମ ଉପଦେଶ

କ୍ଷୁଧାର୍ତ୍ତଙ୍କୁ ଖାଦ୍ୟ ଦାନ, ଜ୍ଞାତ ଅଜ୍ଞାତ ସମସ୍ତଙ୍କୁ ସାଦର ଅଭିବାଦନ, ଶିଷ୍ଟାଚାର, ଅତିଥି ସତ୍କାର ଓ ବାକ୍ୟରେ ଶୁଦ୍ଧତା ଇସ୍‌ଲାମର ମୂଳମନ୍ତ୍ର । ଏକଚାଟିଆ କାରବାର ଇସ୍‌ଲାମ୍‌ରେ ଅବୈଧ । କାୟ ମନୋବାକ୍ୟରେ ପରର ଅନିଷ୍ଟ ସାଧନ ଓ ବିନା କାରଣରେ ରକ୍ତପାତ କରୁଥିବା ବ୍ୟକ୍ତି ଈଶ୍ୱରଙ୍କ ଶତ୍ରୁ । ପ୍ରକୃତ ମୁସଲମାନ ବଦାନ୍ୟତାକୁ କର୍ତ୍ତବ୍ୟ ମନେକରେ । ଧର୍ମ ନିର୍ବିଶେଷରେ କ୍ଷୁଧାର୍ତ୍ତଙ୍କୁ ଖୁଆଏ । ପୀଡ଼ିତର ପରିଚର୍ଯ୍ୟା କରେ । ଅନ୍ୟାୟରେ ଅବରୁଦ୍ଧ ବ୍ୟକ୍ତିକୁ ମୁକ୍ତି ଦିଏ । ନିଜର ଅନିଷ୍ଟ କରିଥିବା ବ୍ୟକ୍ତିକୁ କ୍ଷମା ଦିଏ । ଯେଉଁ ଗୃହରେ ଅନାଥଟିଏ ଉପକୃତ ହୁଏ, ତାହା ଯଥାର୍ଥ ଜଣେ ମୁସିଲିମ୍‌ର ଘର । ପଡୋଶୀ କ୍ଷୁଧାତୁର ଥିଲାବେଳେ ଯେ ଆକଣ୍ଠ ଭୋଜନ କରେ, ସେ ଯଥାର୍ଥ ମୁସ୍‌ଲିମ୍ ନୁହେଁ । ଦାସ ହେଉ ବା ମୁକ୍ତ ହେଉ, ଓଟ ହେଉ ବା ଛେଳି ହେଉ କାହାରି ପ୍ରତି କଟୁକ୍ତି ବା ଅନ୍ୟାୟ ବ୍ୟବହାର କରନାହିଁ । ସ୍ୱଶ୍ରମାର୍ଜ୍ଜିତ ଧନରୁ ଭିକ୍ଷା ଦେବା ହିଁ ଯଥାର୍ଥ ଦାନ । ଭିକ୍ଷା ନ କରି ଯେ ନିଜର ଶରୀରଶ୍ରମ ଦ୍ୱାରା ଜୀବିକା ନିର୍ବାହ କରେ, ଈଶ୍ୱର ତାକୁ ଆଶୀର୍ବାଦ କରନ୍ତି । ବିଶ୍ୱାସ ନଥିଲେ ବା ମନରେ ଅହଂକାର ଥିଲେ ସ୍ୱର୍ଗଲାଭ ହୁଏ ନାହିଁ । ଯେ ପରସ୍ପରକୁ ସୁଖ ପାଇବାକୁ ଶିଖି ନାହିଁ, ସେ ବିଶ୍ୱସ୍ତ ନୁହେଁ । ସାରା ରାତି ଈଶ୍ୱର ଉପାସନା ଠାରୁ ରାତିରେ ଘଣ୍ଟାଏ ଜ୍ଞାନ ଦାନ କରିବା ବହୁ ଗୁଣରେ ଭଲ । ଶୈଶବରୁ ସମାଧିସ୍ଥ ହେବାଯାଏ ଜ୍ଞାନ ଆହରଣ କର । ଯେ ନିଜକୁ ଚିହ୍ନିଛି, ସେ ଈଶ୍ୱରଙ୍କୁ ଚିହ୍ନିଛି । ଈଶ୍ୱରଙ୍କ ସୃଷ୍ଟିର ପ୍ରତ୍ୟେକ ଜୀବ ଏକ ପରିବାର ଭୁକ୍ତ । ସେମାନଙ୍କର ଭଲ କଲେ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି । ଡାକି ବଢ଼ାଇ ଭିକ୍ଷା ଦିଅ ନାହିଁ

ଯଦି ଧନୀ ଲୋକେ ନିଜ ଧନ ଓ କ୍ଷମତାକୁ ସ୍ୱେଚ୍ଛାପ୍ରଣୋଦିତ ପ୍ରସନ୍ନ ଚିତ୍ତରେ ସମାଜ କଲ୍ୟାଣ ପାଇଁ ତ୍ୟାଗ ନ କରନ୍ତି ତେବେ ରକ୍ତାକ୍ତ ବିପ୍ଳବ ଅବଶ୍ୟ ଘଟିବ - ବାପୁଜୀ

କିମ୍ବା ଦାନ କର ନାହିଁ । ଡାହାଣ ହାତ ଦେଲାବେଳେ ବାମ ହାତ ଯେପରି ନ ଜାଣୁ । ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିବା ହିଁ ସର୍ବୋତ୍କୃଷ୍ଟ ଜିହାଦ (ଧର୍ମଯୁଦ୍ଧ) ଅଟେ । ପ୍ରକୃତ ମୁସଲମାନ ଖାଦ୍ୟରେ ଅପମିଶ୍ରଣ କରେ ନାହିଁ, ଚୋରୀ କରେ ନାହିଁ । ସୁରାପାନ କରେ ନାହିଁ, ଲୁଣ୍ଠନ କରେ ନାହିଁ କି ଆତ୍ମସାତ୍ କରେ ନାହିଁ । ଜଣେ ବିବାହିତ ମହିଳାଙ୍କୁ ଫୁସୁଲାଇ ସ୍ୱାମୀଠାରୁ ବିଚ୍ଛିନ୍ନ କରିନେବା ଯଥାର୍ଥ ମୁସ୍‌ଲିମ୍‌ର କାର୍ଯ୍ୟ ନୁହେଁ । ଅତିରିକ୍ତ ସୁଧ ନେବା ଓ ଦେବା, ତତ୍ ସଂକ୍ରାନ୍ତୀୟ ଦଲିଲ ଲେଖିବା ଓ ସାକ୍ଷ୍ୟ ପ୍ରଦାନ କରିବା ବ୍ୟକ୍ତି ସମପରିମାଣରେ ଦୋଷୀ । ପକ୍ଷୀ ଶାବକକୁ ଧର ନାହିଁ । ପକ୍ଷୀବସାରୁ ଅଣ୍ଡା ଲୁଟି ନିଅ ନାହିଁ । ପିପିଲିକା ପରି କ୍ଷୁଦ୍ର ଜୀବଟିଏ ହେଲେ ମଧ୍ୟ ତାକୁ ବଳି ଦିଅ ନାହିଁ ବା ଅଗ୍ନିରେ ନିକ୍ଷେପ କର ନାହିଁ । ମହିଳାମାନଙ୍କୁ ନିଜର ମାତା, ମାଉସୀ ବା କନ୍ୟା ସ୍ଥାନରେ ବ୍ୟବହାର କର । ନିଜର ଦାନକୁ ପ୍ରତ୍ୟାହାର କରିବା, କୁକୁର ତାର ବାନ୍ତିକୁ ଚାଟିଲା ସଙ୍ଗେ ସମାନ । ନିଜ ହାତରେ ଦିନକର ଖାଦ୍ୟ ଥିବା ଯାଏ ଭିକ୍ଷା ମାଗିବା ନିଷେଧ । ଉପବାସ କଲାବେଳେ ମନରେ କ୍ରୋଧ ଓ ଅନିଷ୍ଟ ଚିନ୍ତା ନରହୁ । ଜଣେ କ୍ରୋଧୋନ୍ମତ୍ତ ବ୍ୟକ୍ତି ଦୁଇଜଣଙ୍କ ଝଗଡ଼ାକୁ ମୀମାଂସା କରିପାରିବ ନାହିଁ । ଜଣେ ଶ୍ରମଜୀବୀର ଝାଳ ମରିବା ପୂର୍ବରୁ ତାକୁ ତାର ଖଟଣିର ମୂଲ୍ୟ ଦେଇଦିଅ । ମସ୍‌ଜିଦ୍‌ଠାରୁ ନିଜ ଘରଟି ମହିଳାଙ୍କ ପାଇଁ ଉତ୍କୃଷ୍ଟତର । ଶରୀରଟି ଯେପରି ସୁନ୍ଦର, କର୍ମବିନ୍ୟାସ ସେପରି ସୁନ୍ଦର ହେଉ । ହେ ପ୍ରଭୁ ! ମୋତେ ଗରିବ କରି ରଖ ଓ ସେହି ଭାବରେ ମୋର ପରଲୋକ ହେଉ । ଭଗବତ ବିଶ୍ୱାସ ହିଁ ଆତ୍ମାକୁ ଶୁଦ୍ଧ କରେ ।

(ଶ୍ରୀରାମକୃଷ୍ଣ ମଠ ମାଇଲାପୁର, ମାଡ୍ରାସଙ୍କ ଦ୍ୱାରା ପ୍ରକାଶିତ Thus spoke prophet Muhammed ପୁସ୍ତିକାରୁ ସଂକଳିତ)

## ଖ୍ରୀଷ୍ଟୀୟ ଉପଦେଶ

ଦୁଷ୍ଟର ପ୍ରତିରୋଧ ଦୁଷ୍ଟାମିରେ କର ନାହିଁ । ଯେ କେହି ତୁମର ଡାହାଣ ଗାଲରେ ଚାପୁଡ଼ା ମାରେ ତାହାକୁ ଅନ୍ୟ ଗାଲ ମଧ୍ୟ ଦେଦେଖାଇଦିଅ । ତୁମର ସ୍ୱର୍ଗସ୍ଥ ପିତା ଯେପରି ଶୁଦ୍ଧ ତୁମ୍ଭେମାନେ ସେହିପରି ଶୁଦ୍ଧ ହୁଅ । ଦାନ କରୁଚ ବୋଲି ଗାଇ ହୁଅନାହିଁ । ଡାହାଣ ହାତ ଯାହା କରୁଛି, ବାମ ହସ୍ତ ତାହା ନଜାଣୁ । ତୁମ ଭାଇର ଆଖିରେ ଥିବା କୁଟା ଟିକକ ଦେଖୁଛ, ଅଥଚ ତୁମ ଆଖିରେ ଯେଉଁ କଡ଼ି କାଠଟିଏ ଅଛି; ତାହା ଦେଖି ପାରୁନାହିଁ । ଜଣେ ଲୋକର ଜୀବନ ତାର ସମ୍ପତ୍ତିର ପ୍ରାଚୁର୍ଯ୍ୟ ଉପରେ ନିର୍ଭର କରିପାରେନାହିଁ । ମନୁଷ୍ୟ ଯାହା ବୁଣେ, ତାହା ହିଁ କାଟିବ । ଈଶ୍ୱର ବିଦ୍ରୂପର ପାତ୍ର ନୁହଁନ୍ତି । ଜଣ ଜଣ ହୋଇ ଆମ ପ୍ରତ୍ୟେକଙ୍କୁ ଈଶ୍ୱରଙ୍କ ଛାମୁରେ ନିଜର ହିସାବ ଦେବାକୁ ହେବ । ପ୍ରତିବେଶୀକୁ ଆତ୍ମତୁଲ୍ୟ କର । ଓଟଟିଏ ଛୁଞ୍ଚିର ଛିଦ୍ରଦେଇ ଅନାୟାସରେ ପ୍ରବେଶ କରି ପାରେ, ମାତ୍ର ଜଣେ ଧନୀଲୋକ ପକ୍ଷରେ ଈଶ୍ୱରଙ୍କ ରାଜ୍ୟରେ ପ୍ରବେଶ ଦୁଃସାଧ୍ୟ । ଭୌତିକ ସମ୍ପଦ ବଢ଼ାଅ ନାହିଁ - ସେଥିରେ କଳଙ୍କ ଲାଗିଯିବ - ଚୋର ପଶିବେ - ଚୁରି କରିନେବେ । ତେଣୁ ସ୍ୱର୍ଗୀୟ ସମ୍ପଦ ବଢ଼ାଅ । ପୀଡ଼ିତର ସେବା କର । କୁଷ୍ଠରୋଗୀର ଘା' ଧୋଇଦିଅ, ମୃତ ବ୍ୟକ୍ତିର ସଂସ୍କାର କର, ଶୟତାନକୁ ପରିବର୍ଜନ କର । ଧୂର୍ତ୍ତଙ୍କ ପରି ଚତୁର ଓ କପୋତଙ୍କ ପରି ଶାନ୍ତିପଦ ହୁଅ । ଶରୀର - ହତ୍ୟାକାରୀଙ୍କୁ ଦେଖି ଡର ନାହିଁ । କାରଣ ସେ ଆତ୍ମାର ବିନାଶ ଘଟାଇ ନପାରେ । ଯାହା ଶରୀର ଓ ଆତ୍ମା ଉଭୟର ବିନାଶ ଘଟାଏ, ତାକୁ ହିଁ ଭୟ କର । ନିଜ ଧର୍ମପତ୍ନୀଙ୍କୁ ତ୍ୟାଗକରି ଦ୍ୱିତୀୟଦାର ପରିଗ୍ରହ କରିବା ଓ ନିଜ ପତିକୁ ଛାଡ଼ି ଆଉଥରେ ବିବାହ କରିବା ଦୂଷଣୀୟ । ଯେ ତୁମକୁ ମାଇଲିଏ ଯିବାକୁ ବାଧ୍ୟକରେ, ତା' ସହିତ ଦୁଇ ମାଇଲି

A customer is the most important visitor on our premises. He is not dependent on us. We are dependent on him. We are not doing him a favour by serving him. He is doing us a favour by giving us an opportunity to do so - **Mahatma Gandhi**

ଯିବାକୁ ଆଗଭର ହୁଅ । ଭଣ୍ଡ ଧର୍ମଧ୍ୱଜୀଗଣ ଆତଙ୍କ ସୃଷ୍ଟିକାରି ହେତୁ ସର୍ବଦା, ତାଙ୍କ ପ୍ରତି ସତର୍କ ରୁହ । ଶତ୍ରୁକୁ ପ୍ରେମକର । ତୁମକୁ ଅଭିଶାପ ଦେଉଥିବା ବ୍ୟକ୍ତିକୁ ଆଶୀର୍ବାଦ କର । ଘୃଣାକାରୀର ଭଲ କର । ନିର୍ଦ୍ଦୟ ଓ ଉତ୍ପୀଡ଼ନକାରୀର ମଙ୍ଗଳ ପାଇଁ ପ୍ରାର୍ଥନା କର । ଦିବ୍ୟଦୃଷ୍ଟି ହିଁ ଶରୀରକୁ ଆଲୋକିତ କରାଏ । ଦୃଷ୍ଟି ଦୂଷିତ ହେଲେ ସାରା ଜଗତ କଳୁଷିତ ହୋଇଯାଏ । ଜଣେ ଅନ୍ଧ ଆଉ ଜଣେ ଅନ୍ଧକୁ ଦିଗ୍‌ଦର୍ଶନ ଦେଇପାରେ ନାହିଁ । ସେ ଦୁହେ ଅତଳ ଗର୍ତ୍ତରେ ପଡ଼ିଯିବା ନିଶ୍ଚିତ । ଭୋଜିଭାତ କରୁଥିଲେ ଦରିଦ୍ର, ଛୋଟା, କେମ୍ପା ଓ ଅନ୍ଧଙ୍କୁ ଆମନ୍ତ୍ରଣ କର । କୋକିଶିଆଳୀର ବିଲ ଅଛି; ଶୂନ୍ୟରେ ବିହରୁଥିବା ପକ୍ଷୀର ବସା ଅଛି; ଅଥଚ ମାନବପୁତ୍ରର ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନାହିଁ । ଏ କଥା ଅନୁଭବରେ ଆଣ । ହତ୍ୟା କରନାହିଁ । ଅପମିଶ୍ରଣ କରନାହିଁ । ଚୋରି କରନାହିଁ କି ମିଥ୍ୟା ସାକ୍ଷୀ ଦିଅନାହିଁ ।

(ବାଙ୍ଗାଲୋର୍‌ସ୍ଥିତ ବାଇବେଲ ସୋସାଇଟି ଅଫ୍ ଇଣ୍ଡିଆଙ୍କ ପ୍ରକାଶିତ ପର୍ବତ ଉପରୁ ଉପଦେଶ ପୁସ୍ତକରୁ ଗୃହୀତ)

## ଗୁରୁନାନକଙ୍କ ଉପଦେଶ

ଈଶ୍ୱର ଏକ । ଅଥଚ ତାଙ୍କର ଅସୀମ ରୂପ ରହିଛି । ସେ ସାରା ବ୍ରହ୍ମାଣ୍ଡର ସ୍ରଷ୍ଟା । ସେ ମାନବ ରୂପରେ ମଧ ଅବତୀର୍ଣ୍ଣ ହୁଅନ୍ତି । ତାଙ୍କର ପୁନର୍ଜନ୍ମ ନାହିଁ ତାଙ୍କର ବିନାଶ ହୁଏନାହିଁ, ତାଙ୍କର କେହି ଶତ୍ରୁ ନାହାନ୍ତି, ସେ ସମସ୍ତ ଭୟଭ୍ରାନ୍ତିର ଊର୍ଦ୍ଧ୍ୱରେ । ବିପୁଳ ବିଭବର ବିନିମୟରେ କେହି ସନ୍ତୋଷ ଲାଭ କରିପାରେନାହିଁ । ସବୁ ପରମେଶ୍ୱରଙ୍କର; ତେଣୁ ତାଙ୍କର ପାଦତଳେ ଆମେ କ'ଣ ଅର୍ପଣ କରିବା ! କୌଣସି ରାଜା ବା ସମ୍ରାଟ ପ୍ରଚୁର ଧନ ସମ୍ପତ୍ତି ଓ ବିରାଟ ଭୂଖଣ୍ଡର ଅଧିକାରି ହେଲେ ମଧ ଲବେ ଈଶ୍ୱର ଭକ୍ତି ଥିବା ସାମାନ୍ୟ ପିମ୍ପୁଡ଼ି ସହିତ ସରିହେବେ ନାହିଁ । ଜନ୍ମ ମୃତ୍ୟୁର ଆତଙ୍କରେ ସେ ଘାଣ୍ଟି ହୁଏ, ସେ ସାଧୁଙ୍କର ଅନ୍ୱେଷଣ କରୁ । ଯେ ନିଜକୁ ଜଣେ ଶିକ୍ଷକ ବୋଲି ଦେଖେଇ ହୁଏ, ଅଥଚ ଅନ୍ୟର ବଦାନ୍ୟତା ଉପରେ ଜୀବିକା ନିର୍ବାହ କରେ, ତା'ପାଖେ ମୁଣ୍ଡ ନୁଆଁଅ

## ବିଦେଶୀ ଦରବ ପାଖ ନ ଯିବୁ

ଜାତୀୟ କବି ବୀରକିଶୋର

ସାରା ବିଲାତରେ ହା ହା-କାର ଆମେ
ପକାଇ ଦେବୁ ପକାଇ ଦେବୁ
ଗୋରା ବେପାରୀଙ୍କୁ ଏପାରି ସେପାରି
ନଚାଇ ଦେବୁ ନଚାଇ ଦେବୁ । (ଘୋଷା)
ଆମେ ନ କିଣିବୁ ବିଲାତି ଚିଜ
ଆଉ ନ ଆସିବ ତାଙ୍କ ଜାହାଜ
ତାଙ୍କ ଠକ ପଣ ଛଡ଼ାଇ, ଦେବୁ ଛଡ଼ାଇ ଦେବୁ ॥୧॥
ଛୁଞ୍ଚି ସୂତା ଲୁଣ କାଗଜ ଚିନି
ଯାବତ ବିଦେଶୀ ଛାଡ଼ିବୁ ଚିହ୍ନି
ଆମ ଚିଜ ଆମେ ତିଆରିନେବୁ ତିଆରି ନେବୁ ॥୨॥
ଆମେ ଦରିଆରୁମାରିବୁ ଲୁଣ
ଗୋରା ବେପାରିଙ୍କ ଭାଙ୍ଗିବୁ ଟାଣ
ତାଙ୍କ ବୁଦ୍ଧିବଳ ହଜାଇ ଦେବୁ ହଜାଇ ଦେବୁ ॥୩॥
ଗୋରା କେତେଜଣ ଆଆନ୍ତି ଏଠି
ତିରିଶ କୋଟିଙ୍କୁ ଖଟାନ୍ତି ବେଠି
ମନ କଲେ ଫୁଙ୍କି ଉଡ଼ାଇ ଦେବୁ ଉଡ଼ାଇ ଦେବୁ ॥୪॥
ଆମର ହାକିମ ଆମ କଚେରୀ
ଆମର ପୁଲିସ ଅଛନ୍ତି ଘେରି
ତେଲି ତେଲ ପରି ମିଳି ତ ଯିବୁ ମିଳି ତ ଯିବୁ ॥୫॥
ଆମରି ସଇନ ଗୁରୁଖା ଶିଖ
ବେଳ କାଳ ଉଣ୍ଡି ଛାଡ଼ିବେ ଭେକ
କୁରଡ଼ି ବେଣ୍ଟକୁ ଢୁଗାଳି ଦେବୁ ଢୁଗାଳି ଦେବୁ ॥୬॥
ଭୟ ଭ୍ରାନ୍ତି ଆଉ ନାହିଁ ତ କିଛି
ଗାନ୍ଧୀ ଆମ ଆଖି ଖୋଲି ଦେଇଛି
ଦେଶ ଲାଗି ଆମେ ଜୀବନଦେବୁ ଜୀବନଦେବୁ ॥୭॥
ବ୍ରହ୍ମା-ଶିବ ପଛେ ଆସନ୍ତୁ ଏଠି
ଆମେ ଯିବୁ ନାହିଁ ପଛକୁ ହଟି
ଅଳପ ଦିନରେ ସ୍ୱାଧୀନ ହେବୁ ସ୍ୱାଧୀନ ହେବୁ ॥୮॥

ନାହିଁ । ପକ୍ଷାନ୍ତରେ ଯେ ମୁଣ୍ଡ ଝାଳ ତୁଣ୍ଡରେ ମାରି ଜୀବିକାର୍ଜନ କରେ, ସେ ହିଁ ନମସ୍ୟ । ପ୍ରକୃତ ଗୁରୁ ଶାନ୍ତିର ପାରାବାର । ସେ ପାପ ପ୍ରକ୍ଷାଳନ କରନ୍ତି । ଯେ ସଦ୍‌ଗୁରୁଙ୍କର ସେବା କରେ, ତାକୁ ଯମଦଣ୍ଡ ଲାଗେ ନାହିଁ । କେହି ଗୁରୁଙ୍କ ସମକକ୍ଷ ନୁହଁନ୍ତି । ସତ୍‌ଗୁରୁ, ସତ୍‌ସଂଘ ଓ ସତ୍‌ନାମ ଆତ୍ମାର ବିକାଶ ପାଇଁ ଏକାନ୍ତ ଅଟେ । ଶରୀରରୁ ଆତ୍ମାର ପୃଥକ କରିବାର ଯୋଗ ଶିକ୍ଷାକର । ତାହାହେଲେ ତୁମେ ମୃତ୍ୟୁପର ମନୋମତ ଗୃହରେ ପ୍ରବେଶ କରିପାରିବ । ଧରିତ୍ରୀ ଆମର ମାତା, ଜଳ ଆମର ପିତା ଓ ବାୟୁ ଆମର ପ୍ରଭୁ ଅଟେ । ନିମ୍ନରୁ ନିମ୍ନତର ଅବସ୍ଥାରେ ପଡ଼ିଥିବା ଲୋକଙ୍କର ଯିଏ ଯତ୍ନ ନିଅନ୍ତି, ସେମାନେ ବିଭୁ କୃପାର ପାତ୍ର । ସ୍ୱର୍ଣ୍ଣକାରର କର୍ମଶାଳା ପରି ନିଜର ମନକୁ ଗଠନ କର । ଚିତ୍ତ, ଚିନ୍ତା ଓ ଶରୀରକୁ ସଂଯତ କରି ସେଥିରୁ ଐଶ୍ୱରିକ ସତ୍ୟ ସଦାଚାର ସୃଷ୍ଟିକର । ଶରୀର ଏକ କ୍ଷେତ୍ର । ସତ୍‌କର୍ମ ଏହି କ୍ଷେତ୍ରର ବୀଜ । ଈଶ୍ୱରଙ୍କ ନାମରେ ଏଥିରେ ଜଳସେଚନ କର । ହୃଦୟ ତୁମର କୃଷକ ହେଉ । ତାହା ହେଲେ ସେଥିରେ ପରମେଶ୍ୱର ଆବିର୍ଭୂତ ହେବେ ଓ ତାହାହିଁ ହେବ ନିର୍ବାଣର ସୋପାନ ।

(ମାଡ୍ରାସସ୍ଥିତ ରାମକୃଷ୍ଣ ମଠଙ୍କ ପ୍ରକାଶିତ "Thus Spoke Guru Nanak" ପୁସ୍ତିକାରୁ ଗୃହୀତ)

## ବାହ 'ଓ' ଲୁହ

ଯେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପୂର୍ଣ୍ଣ ଉପବାସ କରେ, ସେ ଭାଗ୍ୟବାନ । ପରମାତ୍ମା ସମସ୍ତ ଜଗତର ନାଥ । ଶିଶୁମାନେ ତାଙ୍କ ଫଳ ବଗିଚାର ଚାରା । ତାଙ୍କର ମୃଦୁ-ମନ୍ଦ ସମୀରଣ ସେମାନଙ୍କୁ ସତେଜ ଓ ସୁନ୍ଦର କରିବ । ଜଣେ ପାପାଚାରୀ ନିଜର ପାପ ପ୍ରକ୍ଷାଳନ ନକରି ଅନ୍ୟର ଦୋଷ ବାଛି ବସିଲେ ପରମ ପିତାଙ୍କ ଦ୍ୱାରା ଅଭିଶପ୍ତ ହେବ । ସୌଭାଗ୍ୟ ପ୍ରାପ୍ତିରେ ଉଲ୍ଲସିତ କିମ୍ବା ଦୁର୍ଭାଗ୍ୟରେ ଦୁଃଖିତ ହୁଅ ନାହିଁ, ସମୟକ୍ରମେ କୌଣସିଟି ରହିବ ନାହିଁ । ଈଶ୍ୱର ବିରୋଧୀଙ୍କୁ ବର୍ଜନ କର । ପରମେଶ୍ୱରଙ୍କ ସ୍ମରଣ ସମସ୍ତ ରୋଗର ଅପନୋଦନକାରୀ । ହୃଦୟରୁ କିରଥଙ୍କ ଶବ୍ଦ ରାଜିକୁ ପୋଛିଦିଅ । ପରମେଶ୍ୱରଙ୍କ ହାତରେ ଏକ ଅଭ୍ରାନ୍ତ ତରାଜୁ ଅଛି । ସେଥିରେ ସ୍ୱର୍ଗ, ମର୍ତ୍ତ୍ୟ ସମସ୍ତ ଓଜନ ହେଉଛନ୍ତି । ଏହି ତରାଜୁ ସମସ୍ତଙ୍କ ଭାଗ୍ୟ ବିଧାନ କରୁଛି । ସୌଭାଗ୍ୟରେ ଉଦାର ହୁଅ- ବିପଦରେ କୃତଜ୍ଞ ହୁଅ । ପ୍ରତିବେଶୀର ବିଶ୍ୱାସଭାଜନ ହୁଅ । ଅଭାବଗ୍ରସ୍ତର ବିଳାପ ପ୍ରତି ଧ୍ୟାନ ଦିଅ । ବିଚାରରେ ନ୍ୟାୟବାନ ହୁଅ । ବାକ୍ୟାଳାପରେ ସଂଯତ ହୁଅ । ନମ୍ରତା ଦେଖାଅ । ଆର୍ତ୍ତପାଇଁ ମଳୟ ଓ ପଳାତକ ପାଇଁ ଆଶ୍ରୟ ସ୍ଥଳ ହୁଅ ।

('ବରହ'ର ବିଶ୍ୱେନ୍ଦ୍ର ଦ୍ୱାରା ସଂକଳିତ "ଭଗବଦ୍ ବାଣୀ" ପୁସ୍ତକରୁ ଗୃହୀତ)

## ଖଦୀ ପିନ୍ଧିବି ମୁଁ

ଖଦୀ ପିନ୍ଧିବି ମୁଁ ଯେତେ ମୋଟା ହେଉ ।, ହସିବ ଯେ ଯେତେ ପଛେ ହସୁଥାଉ ॥୦॥

ମୋ ଦେଶ ତିଆରି ଧନ, କରିବି ଅତି ଯତନ
ଆଦରେ କିଣିବି ଦର ଯେତେ ହେଉ .... ॥୧॥
ବାଡ଼ିରେ କରିବି କପା, ସୂତା କାଟି ବି ମୁଁ ସଫା
ବୁଣି ଦେବ ତନ୍ତୀ, ଭାଇ ମୋର ସେହୁ ॥୨॥
ଯା ଲାଗି ଶହେ ହଜାର, ଭୋଗିଲେଣି କାରାଗାର
ଦେଶସାରା ଖେଳିଯାଉ ତ୍ୟାଗ ଢେଉ ॥୩॥
ନଖାଇ ଭାଇ ମରୁଛି, (ମୁଁ) ବିଳାସେ ଦିନ ସାରୁଛି
ବାବୁ ପଣିଆ ମୋହର ତୁଲିଯାଉ ॥୪॥



### ଶଯ୍ୟାତ୍ୟାଗ ପୂର୍ବରୁ

ଭୂ-ମାତାକୁ କ୍ଷମାପ୍ରାର୍ଥନାକର

ସମୁଦ୍ର ବସନେ ଦେବି ! ପର୍ବତ ସ୍ତନ ମଣ୍ଡଳେ
ବିଷ୍ଣୁ ପତ୍ନି ! ନମସ୍ତୁଭ୍ୟମ୍ ! ପାଦ-ସ୍ପର୍ଶଂ କ୍ଷମସ୍ୱମେ ॥

## ଶ୍ରୀ ସତ୍ୟସାଇ

ସାଧନାରମ୍ଭ ପାଇଁ ଯେ କୌଣସି ଦିନ ଶୁଭ । ଶତ୍ରୁକୁ ମିତ୍ର କରି ଗଢ଼ । ଭକ୍ତି-ଚାରା ଧ୍ୟାନର ପ୍ରସୂତୀ ହେଉ । ପରମେଶ୍ୱରଙ୍କ ବ୍ୟତୀତ ଆଉ କିଛି ଚିନ୍ତା କରନାହିଁ କି ତାଙ୍କ ଅନୁମତି ନନେଇ କିଛି କରନାହିଁ । ଡ଼ାକ୍ତର ରୋଗ ଚିହ୍ନେ- ପରମାତ୍ମା ଆରୋଗ୍ୟ କରନ୍ତି । ମନ ପଙ୍କିଳ ହେଲେ ବ୍ୟାଧି ଘୋଟେ । ଏହାର ପ୍ରତିକାର ପାଇଁ ଭିଟାମିନ୍ ଜି (ଗଡ଼୍) ଆବଶ୍ୟକ । ସାଧୁ ସନ୍ଥଙ୍କ ସାଧନାଲବ୍ଧ ଜ୍ଞାନକୁ ସମ୍ମାନ ଦିଅ- ବିବାଦଗ୍ରସ୍ତ କରନାହିଁ । ଅନ୍ୟର ତ୍ରୁଟି ବାଛନାହିଁ ତୁମର ତ୍ରୁଟି କେହି ଦର୍ଶାଇଲେ ଭଗବାନ ବୁଦ୍ଧଙ୍କ ପରି ନିରବ ରହ କିମ୍ବା ଧନ୍ୟବାଦ ଦିଅ । ଏକାନ୍ନବର୍ତ୍ତୀ ପରିବାରର ଗୃହିଣୀଙ୍କ ପରି ସଂସାରକୁ ପରିବାର ମନେ କରି ଉତ୍ସର୍ଗୀକୃତ ହୁଅ । ନିଜ ସଂପଦ ଓ ବିଭବକୁ ପରମାତ୍ମାଙ୍କର ବିଚାରିନ୍ୟାସୀ ହୋଇଯାଅ । ସମସ୍ତ କର୍ମକୁ ଆଗ ଈଶ୍ୱରାର୍ପଣ କର । ଅହଂକାର ଓ ମମତାକୁ ବିବେକ ଓ ବୈରାଗ୍ୟ ଅସ୍ତ୍ରରେ କାଟି ପକାଅ । ସଂସାରକୁ ତ୍ୟାଗ, ସେବା, ବିକଶିତ ହୃଦୟ ଅବସ୍ଥାରେ ସାଧନା କ୍ଷେତ୍ରରୂପେ ବ୍ୟବହାର କର । ଘର ସଫାକଲା ବେଳେ ନିଜ ହୃଦୟକୁ ସଫା କରୁଛ, ପରିବା କାଟିଲାବେଳେ ପ୍ରଲୋଭନ ଓ କାମ-କ୍ରୋଧକୁ ଟିକି ଟିକି କରି ପକାଉଛ, ରୋଟି ବେଲିଲା ବେଳେ ମାନବ ପ୍ରେମକୁ ଅଧିକରୁ ଅଧିକ ପ୍ରସାରଣ କରୁଛ ବୋଲି ମନେକର । ଆହାର ସାତ୍ତ୍ୱିକ ହେଉ । ଶରୀର ରୂପି ପାତ୍ରରେ ଇନ୍ଦ୍ରିୟରୂପି ଜଳକୁ ମନ ନମନୀୟ ହେଯାଏଁ ସାଧନା-ଇନ୍ଧନ ଜଳାଇ ସିଦ୍ଧ କର । ନିଜକୁ ଅଜ୍ଞ, ଦୁର୍ବଳ ପାପୀ, ମନେକର ନାହିଁ । ତୁମେ ଅମୃତସ୍ୟ ପୁତ୍ରାଃ । ଧ୍ୟାନ ତୁମର ପିତା, ପ୍ରେମ ତୁମର ମାତା, ଧର୍ମ ତୁମର ଭ୍ରାତା, ଦୟା ତୁମର ସନ୍ତାନ । ସେମାନଙ୍କୁ ନେଇ ସୁଖ ସଂସାର ଗଢ଼ ।

(ସତ୍ୟସାଇ ସଂଗଠନ, ପଶ୍ଚିମାଞ୍ଚଳ, ବମ୍ବେ କର୍ତ୍ତୃକ ପ୍ରକାଶିତ "ଶ୍ରୀସତ୍ୟସାଇ ସେଇଂସ୍"-"ସାଧନା" - ପୁସ୍ତିକାରୁ ଗୃହୀତ)

"କଥାରେ ହିରୋ .. କାମରେ ଜିରୋ" ... ହୁଅନାହିଁ ।

## ଯୋଗଜୀବନାନନ୍ଦ

ପ୍ରଚେଷ୍ଟା ହୀନ ଓ ପୌରୁଷହୀନ ମନୁଷ୍ୟ କାଷ୍ଠପୁତ୍ତଳିକା ସଦୃଶ । ପରିଚ୍ଛନ୍ନତା, ଶୃଙ୍ଖଳା ଓ ଶ୍ରୀରକ୍ଷାର ପ୍ରଚେଷ୍ଟା ସୌଖୀନତା ବା ବିଳାସିତା ନୁହେଁ । ମନ୍ଦ ଅଭିଳାଷ ପୂର୍ଣ୍ଣ ନହେବା ଈଶ୍ୱରଙ୍କ ଆଶୀର୍ବାଦ । ସହିଷ୍ଣୁତା ଜୀବନର ସଂଗ୍ରାମର ପ୍ରଧାନ ଅସ୍ତ୍ର । ଉଚ୍ଛୃଙ୍ଖଳ, ଅନିୟମିତ, ବିଧିବର୍ଜିତ ଆମୋଦ ପ୍ରମୋଦ ଉଭୟ ଶରୀର ଓ ମନ ଉପରେ ବିଷ କ୍ରିୟା ସୃଷ୍ଟି କରେ । ଗୃହର ବାତାୟନରୁ ବାହାରେ ଥିବା ଲୋକ ସହ କଥୋପକଥନ ଅସଭ୍ୟତା । ଭୃତ୍ୟମାନଙ୍କ ସଙ୍ଗେ ମର୍ଯ୍ୟାଦା ରଖି କଥା କହିବ । ଆତ୍ମୀୟର ଗୃହକୁ ଦିନେ ଦୁଇଦିନ ପାଇଁ ଗଲେ ମଧ ସେମାନଙ୍କୁ ଗୃହ କାର୍ଯ୍ୟରେ ସହାୟତା ଦେବ । ଧର୍ମ ସାର୍ବଜନୀନ । ଏହା ମାନବ ଧର୍ମ । ଦେଶ କାଳ-ପାତ୍ର ଭେଦରେ ଧର୍ମାଚାର ଭିନ୍ନ ହେଲେ ମଧ ଭେଦଭାବ ସମୀଚୀନ ନୁହେଁ । ପତି-ପତ୍ନୀ ମଧ୍ୟରେ ଅପ୍ରିୟ ବାକ୍ୟାଳାପ ନିଷିଦ୍ଧ । ବ୍ୟକ୍ତିଗତ ସ୍ୱାର୍ଥ ଲିପ୍ସା ପାଇଁ ପ୍ରବୃତ୍ତ ହୁଅ ନାହିଁ । ଅହଂକାରୀ ବ୍ୟକ୍ତି ସମସ୍ତଙ୍କର ଅପ୍ରିୟ । ଭୀରୁ, ଅଳସ ଓ ଆରାମ ପ୍ରିୟ ବ୍ୟକ୍ତି ଆଲମିରାର କଣ୍ଢେଇ ପରି । ଅପରର ଦୋଷଦର୍ଶୀ ନ ହୋଇ ନିଜ ଦୋଷ ଆଗେ ସଂଶୋଧନ କର ।

("ଜୀବନପଥେ" ପୁସ୍ତକରୁ ଗୃହୀତ)

## ସ୍ୱାମୀ ବିବେକାନନ୍ଦ

ହିନ୍ଦୁ-ମୁସଲମାନ-ଖ୍ରୀଷ୍ଟିୟାନ ଭେଦ ଅପସରି ଗଲେ ବେଦର ଯୁଗ ଆସିବ । ତାହାହିଁ ସତ୍ୟ-ଯୁଗ । "ମୋତେ ଛୁଅଁନା, ମୁଁ ଶୁଚି"- ଏହି ଛୁତପଛା ଚାଲୁ ରହିଲେ ସମଗ୍ର ହିନ୍ଦୁ ସମାଜ ଉନ୍ମାଦ ଆଶ୍ରମରେ ପରିଣତ ହେବ । ଯଦି ଜଗତକୁ କୌଣସି ଧର୍ମ ଶିଖାଇବାକୁ ହୁଏ, ତାହାହିଁ ନିର୍ଭୀକତାର ଧର୍ମ । ସୋଽହଂର ଧର୍ମ । ଯାହାର ହୃଦୟ ଦରିଦ୍ରର ବ୍ୟଥାରେ ବିଗଳିତ ହୁଏ, ସେ ହିଁ ମହାତ୍ମା । ମାତା ପିତାଙ୍କୁ ପ୍ରତ୍ୟକ୍ଷ ଦେବତାମଣି ସେବା କର । କ୍ଷୁଧାର୍ତ୍ତକୁ ଧର୍ମବାଣୀ ଶୁଣାଇବା ପାଗଳାମି । ମଣିଷ ପାପୀ ନୁହେଁ, ଅମୃତର ସନ୍ତାନ ।

ସଂପ୍ରସାରଣ ହିଁ ଜୀବନ, ସଂକୀର୍ଣ୍ଣତାହିଁ ମୃତ୍ୟୁ । ଶୁଦ୍ଧ ମସ୍ତିଷ୍କହିଁ ବିପୁଳ ଶକ୍ତି ଓ ପ୍ରଚଣ୍ଡ ମନୋବଳର ଆଧାର । ଅର୍ଥ ଯଶ ବା ଅଭିଳାଷ ନରଖି କର୍ମ କଲେ ମଣିଷ ବୁଦ୍ଧ ହୋଇଯିବ ।

("ତିନୋଟି ଦିବ୍ୟଜୀବନ ଓ ବାଣୀ" ଓ "ଯୁଗାଚାର୍ଯ୍ୟ" ସ୍ୱାମୀ ବିବେକାନନ୍ଦ" ପୁସ୍ତକରୁ ଗୃହୀତ)

## ଠାକୁର ନିଗମାନନ୍ଦ

ଯେଉଁ ସାଧକ ଭଗବାନଙ୍କ ପାଖରେ କିଛି କାମନା କରନ୍ତି ନାହିଁ ଭଗବାନ ତାଙ୍କୁ ଆପେ ଆପେ ଧରା ଦିଅନ୍ତି । ସାଂସାରିକ ମାୟା ମୋହକୁ ବଶୀଭୂତ କରିବାକୁ ଯେ ସାଧନା କରେ ସେ ଶାକ୍ତ । ଏହି ସାଧନାରେ ସିଦ୍ଧିଲାଭ କଲେ ସେ ବୈଷ୍ଣବ ହୋଇଯାଏ । ଶାକ୍ତ ନହେଲେ କେହି ବୈଷ୍ଣବ ହୋଇ ପାରିବେ ନାହିଁ । ଏଣୁ ଶାକ୍ତବୈଷ୍ଣବ ବିବାଦ ନିରର୍ଥକ । ସଧବା ନାରୀ ସ୍ୱାମୀ ଭିତରେ ଭଗବାନଙ୍କୁ ଓ ବିଧବା ନାରୀ ଭଗବାନଙ୍କ ଭିତରେ ସ୍ୱାମୀଙ୍କୁ ଚିନ୍ତା କରୁ । ରମଣୀତ୍ୱ ନୁହେଁ, ଜନନୀତ୍ୱ ହିଁ ନାରୀର ଭୂଷଣ । ଭଗବାନଙ୍କ ରାଜ୍ୟର ପ୍ରତ୍ୟେକ ଜୀବ-ପାପୀ ବା ପୁଣ୍ୟାତ୍ମା ସମସ୍ତେ ତୁମ ନିଜର । ଅପକାରୀକୁ ଉପକାର ଦ୍ୱାରା ଜୟ କର । ଦୁର୍ଜନକୁ କ୍ଷମା ଦ୍ୱାରା ପରାସ୍ତ କର । ଆମୋଦ ଛଳରେ କାମ, କ୍ରୋଧ ବା ମିଥ୍ୟାର ଆଶ୍ରୟ ନିଅ ନାହିଁ । ସନ୍ତାନ ସ୍ନେହରେ ଅନ୍ଧ ହୋଇ ସେମାନଙ୍କ ଅନ୍ୟାୟ ଦାବୀକୁ ପ୍ରଶ୍ରୟ ଦେବା ପୁରୁଷତ୍ୱ ନୁହେଁ । ବାହୁରେ ଶକ୍ତି ଓ ହୃଦୟରେ ଭକ୍ତି ବିକଶିତ ହେଉ । ଆତ୍ମହତ୍ୟା ମହାପାପ । ଯୁଦ୍ଧ-ମୃତ୍ୟୁ ସ୍ୱାଭାବିକ ମୃତ୍ୟୁଠାରୁ ଭଲ ।

(ନୀଳାଚଳ ସାରସ୍ୱତ ସଂଘ ପ୍ରକାଶିତ "ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ" ପୁସ୍ତକରୁ ଗୃହୀତ)

## ଶ୍ରୀ ରାମକୃଷ୍ଣ

ସବୁ ଧର୍ମ ସତ୍ୟରେ ପ୍ରତିଷ୍ଠିତ । ସବୁଧର୍ମର ଲକ୍ଷ୍ୟ ଈଶ୍ୱର ଲାଭ । ଯେତେ ମତ, ସେତେ ପଥ । ବିଶ୍ୱାସଠାରୁ ଅଧିକ କିଛି ନାହିଁ । ଈଶ୍ୱର ପରାୟଣ ବ୍ୟକ୍ତି ନାରୀକୁ ବ୍ରହ୍ମମୟୀ ଅଂଶର ମାନ୍ୟତା ପ୍ରଦାନ କରିଥାଏ । ହରି, ତ୍ରିତାପ ହରଣ କରନ୍ତି । ଲଜ୍ଜାହିଁ ନାରୀର ଭୂଷଣ । ବାଘ ଭିତରେ ଭଗବାନ ଅଛନ୍ତି ବୋଲି ବାଘ ମୁହଁକୁ ଯିବା ଅନୁଚିତ । ସଂକୀର୍ଣ୍ଣମନା ଅନ୍ୟ ଧର୍ମକୁ ନିନ୍ଦା କରେ ।

## ଶ୍ରୀ ଶାରଦା ଦେବୀ

ଖାଦ୍ୟକୁ ଈଶ୍ୱରାର୍ପଣ କରି ଗ୍ରହଣ କଲେ ଶରୀର ଓ ଚିତ୍ତ ଶୁଦ୍ଧ ହୁଏ । କ୍ଷମା ହିଁ ପରମ ତପସ୍ୟା । ରାସ୍ତା, ଘାଟ ଓ ଦେବପୀଠରେ ବହୁ ସାଧୁ ସନ୍ଥଙ୍କ ଚରଣ ରେଣୁ ପଡ଼ିଥାଏ । ଏଣୁ ଏହିସବୁ ସାର୍ବଜନୀନ ପୀଠକୁ ସଫାକଲେ ମନର ମଇଳା ସଫା ହୋଇଯାଏ । ଯାହାର ଅଛି ସେ ମାଗୁ (ଦାନ କରୁ), ଯାହାର ନାହିଁ ସେ ଯପୁ । ଗୋପାଳ ବାଳକମାନେ ଆ-ରେ, ଖା-ରେ, ନେ-ରେ, ଏହିପରି କହି ଶ୍ରୀକୃଷ୍ଣଙ୍କୁ ପାଇଥିଲେ । ଏହାହିଁ, ପ୍ରେମ ।

## ଶ୍ରୀ ଅରବିନ୍ଦ

ଈଶ୍ୱର ସବୁଠାରେ ବିରାଜମାନ । ପ୍ରତ୍ୟେକ ବ୍ୟକ୍ତି, ପଶୁପକ୍ଷୀ, ବୃକ୍ଷଲତା ଓ କାନ୍ଥବାଡ଼ରେ ପରମେଶ୍ୱର ଦିଶନ୍ତି । ତାଙ୍କୁ ପାଇବାର ମାର୍ଗ ହେଉଛି ଭକ୍ତିଯୋଗ । ମାତୃଭୂମିର ସେବାଠାରୁ ବଳି ବଡ଼ କାମ ଆଉ ନାହିଁ । ଯେଉଁଦିନ ଭାରତ ସମଗ୍ର ବିଶ୍ୱର କଲ୍ୟାଣ ପାଇଁ କାର୍ଯ୍ୟ କରିବ, ତାହାହିଁ ହେବ ମହତ୍ତ୍ୱ ଓ ଗୌରବର ଦିନ । ଅନ୍ତରର ମାନବିକତା ଜାଗ୍ରତ ହେଲେ ପଶୁତ୍ୱ ଜବଳିତ

ପୃଥିବୀରେ ବର୍ତ୍ତମାନ ଯେତେ ଲୋକ ବଞ୍ଚିଛନ୍ତି, ଗାନ୍ଧିଜୀ ସେମାନଙ୍କ ଭିତରେ ସର୍ବୋଚ୍ଚ ପୀଠରେ ଅବସ୍ଥିତ ଏବଂ ସବୁଠାରୁ ବଳି ମହାନ୍ । ଏହି କ୍ଷୁଦ୍ରକାୟ ପ୍ରାଚ୍ୟ ମାନବ କୌଣସି ପଦପଦବୀ କ୍ଷମତା ବା ଗୌରବର ଭିକାରି ନୁହନ୍ତି । ବିସ୍ମୟର କଥା ଯେ ସେ ଇଂରେଜଙ୍କ ବନ୍ଦୀଶାଳାରେ ପଚୁଛନ୍ତି । (ଡକ୍ଟର ଜନ୍, ଏଚ୍ ରୋମ୍ସ , ନ୍ୟୁୟର୍କ - 'ସମାଜ' ୨.୧୦.୯୦)

କରିପାରିବ ନାହିଁ, ଅସୀମ ଶକ୍ତିର ନାମହିଁ ମା ଭବାନୀ । ବିଦ୍ୟା, ବୁଦ୍ଧି, ବଳ ସବୁ ପରମେଶ୍ୱରଙ୍କର ଦାନ । ଏହାକୁ ଖରଚ କଲାପରେ ଯାହା ବଳକା ରହିବ ତାକୁ ବାଟାଙ୍କୁ ଫେରେଇ ଦେବାକୁ ପଡ଼ିବ । ଯେ ନଫେରାଇବ, ସେ ଚୋର ।

ସକଳ ପ୍ରକାର ଆଶକ୍ତିରୁ ମୁକ୍ତ ରହ । ସଦା ସଚେତନ ଓ ସଜାଗ ରହ । ଅନ୍ତରର ଗଭୀରତମ ପ୍ରଦେଶରେ ଚୈତ୍ୟ-ପୁରୁଷ ରହିଛନ୍ତି । ସେହି ଜୀବନ୍ତ ଭଗବାନଙ୍କର ସନ୍ଧାନ ଓ ସାନ୍ନିଧଲାଭ କର । ନିଜର ଛୋଟ ବଡ଼ ଦୋଷ ତ୍ରୁଟି, ଭୁଲ ଭ୍ରାନ୍ତି ଓ ଦୁର୍ବଳତାକୁ ଟିକିନିଖି ସଂଶୋଧନ କରି ନିଅ । ସଂପୂର୍ଣ୍ଣ ନିର୍ଭିକ ଓ ଅକପଟ ହୁଅ । ଅଯଥା ଘଣ୍ଟା ଘଣ୍ଟା ଚକ୍ଷୁ ବନ୍ଦ କରି ଧ୍ୟାନରେ ବସି ସମୟ କଟାଇବା ଅପେକ୍ଷା କାମନା ରହିତ କର୍ମକୁ ନିରବଚ୍ଛିନ୍ନ ଧ୍ୟାନ ମନେକର ।

ଅତିମାନସ ସତ୍ୟଲାଭ ପଥରେ ଏହାହିଁ ସୋପାନ ।

(ବ୍ରହ୍ମମନ୍ଦିର ପ୍ରକାଶିତ "ଶ୍ରୀଅରବିନ୍ଦ" ପୁସ୍ତକରୁ ଗୃହୀତ)

**ଶ୍ରୀମା:**

No words, Act-

ବାକ୍ୟବୀରନହୋଇ କର୍ମବୀର ହୁଅ ।

## ବ୍ରହ୍ମବିଦ୍ୟା

ସ୍ୱ ଅନ୍ତର୍ନିହିତ ଐଶୀ ଶକ୍ତିକୁ ଉପଲବ୍ଧି କରିବା ହିଁ ପରମେଶ୍ୱରଙ୍କ ମହାନ୍ ଯୋଜନାରେ ସହାୟକ ହେବାର ଅସଲ ଯୋଗ୍ୟତା । ଗପିବା ଅଭ୍ୟାସ ବର୍ଜନ କର । ତହିଁରେ ଅନ୍ୟର ନିନ୍ଦାହିଁ ବେଶୀ କରାଯାଇଥାଏ । ଗୋଟିଏ ମନ୍ଦ ଲୋକକୁ ଅଧିକ ମନ୍ଦ ନକରି ଭଲ କରିବାରେ ସାହାଯ୍ୟ କର । କେହି ନ ମାଗିଲେ ନିଜର ମତାମତ ଉପରେ ପଡ଼ି ବ୍ୟକ୍ତ କରନାହିଁ । ରାଗର ବିପରୀତ ଗୁଣ ଦୟା ବା କ୍ଷମା ଆଚରଣ କଲେ ଦୁର୍ଗୁଣ ଆପେ ଆପେ ଦୂର ହୋଇଯାଏ । ନିଃସ୍ୱାର୍ଥପର ଜୀବନ ଯାପନ ଅନ୍ତଃଶୁଦ୍ଧି ଓ ଆଲୋକିତ ଶକ୍ତିକୁ ବିକଶିତ କରାଏ । ବ୍ରହ୍ମବିତ ନିଜର ଦୈନନ୍ଦିନ କାର୍ଯ୍ୟକୁ ଅଧିକ ଦକ୍ଷତାର ସହିତ ସୁଚାରୁରୂପେ ସମ୍ପନ୍ନ କରେ । ଭୃତ୍ୟ, ଭିକ୍ଷୁକ, ପଶୁପକ୍ଷୀ ଓ ବୃକ୍ଷଲତା ପ୍ରତି ସଦୟ ଓ ସ୍ନେହଶୀଳ ହେଲେ ସେମାନେ ମୃତ୍ୟୁ ପରେ ମନୁଷ୍ୟ ଜନ୍ମ ପ୍ରାପ୍ତ ହେବେ । ଦୁଃସ୍ଥ, ରୋଗଗ୍ରସ୍ତ ଓ ବିକଳାଙ୍ଗ ଭିକାରିମାନେ ପୂର୍ବଜନ୍ମର ଅପରାଧ ହେତୁ କଷ୍ଟ ପାଉଛନ୍ତି । ସେମାନଙ୍କ ପ୍ରତି ସଦୟ ହେବାଠାରୁ ବଳି ଆଉ କିଛି ପୁଣ୍ୟ ନାହିଁ ।

(ଶ୍ରୀମତୀ ଶୈଳବାଳା ମହାପାତ୍ରଙ୍କ ଲିଖିତ 'ବ୍ରହ୍ମବିଦ୍ୟା' ପୁସ୍ତକରୁ ଗୃହୀତ ।)

## ମୋତେ ଆଉ ତୁମେ ବଳାନା

ଜାତୀୟ କବି ବୀରକିଶୋର

ରଣ ସମୟରେ ବହି ଘୋଷିବାକୁ
ମୋତେ ଆଉ ତୁମେ ବଳାନା,
ଛାତିର ରକତ ତାତି ଉଠେ ମୋର
ବାଜିବାରୁ ଯୁଦ୍ଧ ବାଜଣା ।
କି ବହି ଘୋଷିବି ପଢ଼ିବିକି ପାଠ
କି ଅଙ୍କ କଷିବି ହୋଇ ଗବକାଠ
ଯୁବକ ହୋଇ କି ବକ ହୋଇବି ମୁଁ
ବିବେକକୁ କରି ବଂଚନା ?
କୁଳବଧୂମାନେ ମରୁଛନ୍ତି ଖଟି
ସାନସାନ ପିଲା ସହୁଛନ୍ତି ଲାଠି

ଗାନ୍ଧୀ, ଗୋପବନ୍ଧୁ ଚାହିଁଛନ୍ତି ମୋତେ
ନାହିଁକି ମୋ ହୃଦେ କରୁଣା ?
ଯୁଦ୍ଧ ଇତିହାସ ହୋଇଲେ ପଠିତ
ଶୁଣି ବଂଶଧର ହୋଇବେ ଲଜ୍ଜିତ
ନରହଂତାର କଂସେଇ ଶାଳେ ମୁଁ
ଲେଖୁଥିଲି ବସି ରଚନା ।
ସତ୍ୟର ବିଜୟ ଦେଖେ ଯୁଗେ ଯୁଗେ
ହସି ହସି କଷ୍ଟ ସତ୍ୟାଗ୍ରହୀ ଭୋଗେ,
ସେ ସତ୍ୟ ଚରଣେ ପ୍ରାଣ ଢାଳିଦେବି
ଭୁଲି ଆଗ ପଛ ଭାବନା
ଭାଇ ମୋତେ ଆଉ ତୁମେ କହନା ।



## ସ୍ୱାମୀ ପ୍ରଣବାନନ୍ଦ

ମାଳା ତିଳକ ବା ମନ୍ଦିର ମସ୍‌ଜିଦରେ ଧର୍ମ ନଥାଏ । ତ୍ୟାଗ, ସଂଯମ, ସତ୍ୟ, ବ୍ରହ୍ମଚର୍ଯ୍ୟ ଓ ଶୁଦ୍ଧାଚରଣ ହିଁ ଧର୍ମ । ତୁମେ ଅମୃତର ସନ୍ତାନ । ଆତ୍ମ ଶକ୍ତି ବିକାଶ ପାଇଁ ସଦା ଚେଷ୍ଟିତ ହୁଅ । ପରର ଦୁଃଖ ଦୁର୍ଦ୍ଦଶାରେ ଯା'ର ପ୍ରାଣ କାନ୍ଦି ଉଠେ ନାହିଁ, ବିପଦ ଆପଦରେ ଯେ ବ୍ୟଥା ଅନୁଭବ କରେ ନାହିଁ ସେ ଜଡ଼ । କ୍ଷଣିକର ଉତ୍ତେଜନାରେ ହଠାତ୍ କିଛି କରି ବିପଦକୁ ବରଣ କର ନାହିଁ । ଧୈର୍ଯ୍ୟ ଧରି ସହିନେଲେ ବହୁ ଅନର୍ଥ ଓ ବିପଦରୁ ରକ୍ଷା ମିଳେ । କଥା ଓ କାମ ମଧ୍ୟରେ ବ୍ୟବଧାନ ଦୂର କର । କେବଳ ବିଶ୍ୱବିଦ୍ୟାଳୟ ଡିଗ୍ରିଧାରୀ ନୁହଁନ୍ତି, ଯେଉଁମାନେ ମହାନ୍ ସାଧନାରେ ରତ, ସେମାନଙ୍କ ନିକଟରେ ଯଥାର୍ଥ ଶିକ୍ଷା ରହିଛି ।

(ପ୍ରଣବାନନ୍ଦ ଶିକ୍ଷା ମନ୍ଦିର, ପୁରୀଙ୍କ ସୌଜନ୍ୟରୁ ପ୍ରାପ୍ତ)

## ସନ୍ଥ କବୀର

ଦୁଃଖ ଭିତରେ ଆନନ୍ଦ, ଅନ୍ଧକାର ଭିତରେ ଆଲୋକ, ଦୁର୍ବଳତା ଭିତରେ ଶକ୍ତିର ସନ୍ଧାନ ପାଇବା ହିଁ ଭଗବତ ବିଶ୍ୱାସ ।

## ଶ୍ରୀ ଅଭିରାମ ବାବା

ମୁସଲମାନ, ଖ୍ରୀଷ୍ଟିୟାନ, ହିନ୍ଦୁ ଧର୍ମାଦି ଯାକୁ ।
ଧରମ ନୁହେଁ ସେ ସମ୍ପଦ ସିନା ବୋଲି ତାହାକୁ ॥
ଧରମ ବୋଇଲେ ପୃଥିବୀ ବ୍ୟାପୀ ଗୋଟିଏ ଧର୍ମ ।
ସବୁ ବର୍ଣ୍ଣର ଅଧିକାର, ନାହିଁ କେ ବଡ଼ ସାନ ॥
ସଂସାରକୁ ଯିଏ ଧରି [illegible] ଧର୍ମଟି ସେହି ।
ହରି ଛଡ଼ା ବିଶ୍ୱ ଧାରଣେ କେହି ସମର୍ଥ ନାହିଁ ॥

(କୋଇଲି ଶିକ୍ଷା)

## ଭାଗବତ ବାଣୀ

### ଦଶମ

ନମଇଁ ନୃସିଂହ ଚରଣ — ଅନାଦି ପରମ କାରଣ
ପାପେ [illegible]ରେ ପ୍ରମାଦ — ସ୍ତିରୀ ଗର୍ଭିଣୀ ଶିଶୁବଧ
ଏ ତିନି କର୍ମ ଯେ କରନ୍ତି — ଜୀବନ ଥାଉ ସେ ମରନ୍ତି ।
ତୋର ବଇରି ଯେବେ ହରି — ସେ ଥାନ୍ତି ସର୍ବ ଘଟେ ପୂରି
ଶ୍ରଦ୍ଧା କରନ୍ତି ଯେତୁ ଧର୍ମେ — ଦୟା କହନ୍ତି ଦୁଃଖୀ ଜନେ
ଏହାଙ୍କ ଦେହେ ଥାଇ ହରି — ଏ ନଲେ ମରଇ ମୁରାରି ।
କର୍ମହୁଁ ନାହିଁ ଆନ ଦେବ — ଭୋ ତାତ କର୍ମପଦେ ସେବ ।

### ଏକାଦଶ

ବେଦ ବଚନ ଧର୍ମ ଶାସ୍ତ୍ର । — ଏ ବେନି ବିପ୍ରଙ୍କର ମତ ॥
ଏକ ନଥିଲେ କଣା ହୋଇ । — ଦୁଇ ଅଭାବେ ଅନ୍ଧ ସେହି ॥
ଦୁଃଖେ ସଞ୍ଚିତ ଯେତେ ଧନ । — ସେ ନୁହେଁ ସୁଖେ ପ୍ରୟୋଜନ ॥
କେବଳ ଯଜ୍ଞେ ପଶୁ ବଧ । — ଅନ୍ୟତ୍ର ବଧଟି ପ୍ରମାଦ ॥
ନାରୀ ସଙ୍ଗମ ଋତୁ ମତେ । — କେବଳ ପୁତ୍ର ଜନ୍ମ ଅର୍ଥେ ॥
ଜୀବର ସ୍ୱଧର୍ମ ଏ ବାଣୀ । — ସକଳ ବେଦ ବାକ୍ୟ ଭଣି ॥
ଆହାରେ ଭଲମନ୍ଦ ନାହିଁ । — ସେ ସ୍ଥାନେ ଯେମନ୍ତ ମିଳଇ ॥
ଯାବତ ନ ପୂରେ ଉଦର । — ତାବତ ଜ୍ଞାନ ନାହିଁ ତାର ॥
ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ । — ଦେଖି ସନ୍ତୋଷ ଭଗବାନ ॥
ସାକ୍ଷାତେ ଗୁରୁ ଯେ ଈଶ୍ୱର । — ଗୁରୁଙ୍କୁ ନ ମଣିବ ନର ॥
ନିନ୍ଦିତ କର୍ମେ ଯେ ତରଇ । — ଉଦ୍ଧବ ଜାଣ ଲଜ୍ଜା ସେହି ॥
ମୋହର ନାମ ଉଚ୍ଚାରିଲେ । — ସକଳ ଶୁଦ୍ଧ ହୋନ୍ତି ଭଲେ ॥
ଯେ ମେରୁ ତୁଲ୍ୟ ନାନା ଦ୍ରବ୍ୟେ । — ମୋତେ ସମର୍ପଇ ଅଭାବେ ।
ଶ୍ରଦ୍ଧା ନଥାଇ ଅନ୍ତର୍ଗତେ । — ମୁଁ ତାହା ଛୁଇଁବି କେମନ୍ତେ ॥
ସକଳ କର୍ମଫଳ ତେଜ । — ସର୍ବ ସଂପୂର୍ଣ୍ଣ ମୋତେ ଭଜ ॥
ଯେଣୁ ମୁଁ ସର୍ବ ଭୂତେ ଥାଇ । — ପର ଅପର ମୋର ନାହିଁ ॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଶୁଦ୍ର — ଚଣ୍ଡାଳ ପତିତ ବା କ୍ଷୁଦ୍ର
ସର୍ବ ସମାନ ଦେଖ ଚିତ୍ତେ — ଶୁଣ କହଇ କିଛି ତୋତେ ॥
ଶ୍ୱାନ ଚଣ୍ଡାଳ କୃମି ଖର — ଶୃଗାଳ ବାନର ଶୂକର
ଏ ଆଦି ପ୍ରାଣୀ ସାନ ବଡ଼େ — ଯେ ଆସି ମିଳିବନିଗଡ଼େ ॥
ଦୂରେ ନିକ୍ଷେପି ଲଜ୍ଜାମାନ — ଚରଣେ କରିବ ପ୍ରଣାମ
ତାହାଙ୍କ ଗୁଣ ଦୋଷ ଯେତେ — ମନେ ନଧର କଦାଚିତେ ॥
ଈଶ୍ୱର ବସେ ସର୍ବ ଦେହେ — ଏ ଘେନି ନମିବ ନିର୍ଭୟେ
ଏ ବାକ୍ୟ ସମ୍ମତ ମୋହର — ଏହି ଯେ ସର୍ବ ଧର୍ମ ସାର ॥
ଦୁର୍ଗମ ପଥ ଏ ଭଜନ — ଭୟେ ଗାଜନ୍ତି ଯୋଗୀ ଜନ
ଦାମ୍ଭିକ ନାସ୍ତିକ କପଟୀ — କୁଟୀଳ, ବିଷୟ ଲମ୍ପଟୀ ॥
ଭକତି ଶୂନ୍ୟ ମତିହୀନ — ରଜ ତାମସ ଯୁକ୍ତ ଜନ
ତାକୁ ଏ ଧର୍ମ ନ କହଇ — ଶୁଣ ଉଦ୍ଧବ ମନଦେଇ ॥

## ଆର୍ଷବଚନ

କର-ଚରଣ-କୃତଂ ବାକ୍‌କାୟଜଂ କର୍ମଜଂବା
ଶ୍ରବଣ-ନୟନଜଂ ବା ମାନସଂ ବାଽପରାଧମ୍ ।।
ବିହିତମ୍ ଅବହିତଂ ବା ସର୍ବମ୍ ଏତତ୍ କ୍ଷମସ୍ୱ
ଜୟ ଜୟ କରୁଣାବ୍‌ଧେ ! ଶ୍ରୀ ମହାଦେବ ଶମ୍ଭୋ ।।
ସ୍ୱସ୍ତି ପ୍ରଜାଭ୍ୟଃ ପରିପାଳୟନ୍ତାମ୍
ନ୍ୟାୟେନ ମାର୍ଗେଣ ମହୀଂ ମହୀଶାଃ
ଗୋ-ବ୍ରହ୍ମଣେଭଃ ଶୁଭମ୍ ଅସ୍ତୁ ନିତ୍ୟମ୍
ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ।।
ଅବିନୟଂ ଅପନୟ ତୃଷ୍ଣାଦମୟ ମନଃ
ଶମୟ ବିଷୟ ମୃଗତୃଷ୍ଣା (ଆଦିଶଙ୍କର)
ସାଧୁ ଅସାଧୁକୁ କରେ ଯେ ବେଭାର
ଚନ୍ଦନ କୁଠାରେ କରେ ସେ ବେଭାର
ଚନ୍ଦନ ଛେଦିଲେ କୁଠାର ଯାଇ
ବାସ ତାକୁ ଦେଇ ଧନ୍ୟ କରଇ ।।(ରାମଚରିତମାନସ)
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ... (ଭୀମଭୋଇ)

## ନବଧା ଭକ୍ତି

ଶ୍ରବଣଂ, କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପଦସେବନଂ
ଅର୍ଚ୍ଚନଂ, ବନ୍ଦନଂ, ଦାସ୍ୟଂ, ସଖ୍ୟମାତ୍ମ ନିବେଦନଂ

(ଜଗନ୍ନାଥ ଚରିତାମୃତ)



## ତିଥିଭେଦରେ ବର୍ଜିତ ଆହାର

ପ୍ରଥମା - କୁଷ୍ମାଣ୍ଡ, ଦ୍ୱିତୀୟା - ବୃହତି, ତୃତୀୟା - ପଟୋଳ, ଚତୁର୍ଥୀ - ମୂଳକ, ପଞ୍ଚମୀ - ବିଲ୍ୱ, ଷଷ୍ଠୀ - ନିମ୍ବ, ସପ୍ତମୀ - ତାଳ, ଅଷ୍ଟମୀ - ନାରିକେଳ, ନବମୀ - ତୁମ୍ବୀ, ଦଶମୀ - କଳମ୍ବୀ, ଏକାଦଶୀ - ଶିମ୍ବ, ଦ୍ୱାଦଶୀ - ପୂତିକା, ତ୍ରୟୋଦଶୀ - ବାର୍ତ୍ତାକୀ, ଚତୁର୍ଦ୍ଦଶୀ - ମାଷ, ପୂର୍ଣ୍ଣିମା ଓ ଅମାବାସ୍ୟା - ଆମିଷ ।

## ମୋ ଗାଁ କାହିଁକି ହତଶିରୀ

ମୋ ଗାଁଆ କାହିଁକି ହତଶିରୀ
ପଥେ ପଥେ କେତେ ପଚାସଢ଼ା ଖାତେ
ମଶା ମାଛିଙ୍କର ଲୁଚକାଳି ।।୦।।

ମୋ ଗାଁଆ ଭୂଇଁର ଘାସ ଲତା ତଳେ
କେତେ ଯେ ଲାଙ୍ଗୁଡ଼ା ପୋକ ଯୋକ ଖେଳେ
ବାହିନୀ ଚଳାଇ ପ୍ରତି ନିମେଷରେ
ତିଳେ ତିଳେ ପ୍ରାଣ ନିଏ ହାରୀ ।।୧।।

ସବୁଜ ସୁନ୍ଦର ପୋଖରୀର ଦଳ
ମଶା ସମାଜର ନିତ୍ୟ ରାସ ସ୍ଥଳ
ଗୁରୁ ଗୁଣୁ ଗୀତେ ମଧୁ ଚୁମା ସାଥେ ,
ବାତ ମେଲେରିଆ ଦିଏ ଭରି ।।୨।।

ଭାଗବତ ଟୁଙ୍ଗି ମନ୍ଦିର ଅଗଣା
କେତେ ବିଷ ବାଣ୍ଟେ ନାହିଁ ତା କଳନା
ପାଦୁକ କୁଣ୍ଡର ବିଷ ମିଶା ପଣା
ଧର୍ମନାମେ କରେ ଆୟୁଚୋରି ।।୩।।

ଆଷାଢ଼ ଗୁଣ୍ଡିଚା ଝର ଝର କାଳେ
ଚଣ୍ଡାଳ ସାଜି ବଡ଼ ଦାଣ୍ଡ ତଳେ
ବାଡ଼ିଲା ଯେ ନୀତି ଆମ ଗଜପତି,
ଛେରା ପହଁରାର ବାହାଦୂରୀ ।।୪।।

କବି କବିତାର ପଲ୍ଲୀ ମାଧୁରୀ
ସରସ ସୁନ୍ଦର ସୁନା ବୋଲା ଶିରୀ
ଫେରାଇବା ପାଇଁ ହାତଟାଣ କରି
ସଫାଇକୁ ଧର ମୂଳ କରି ... ।।୫।।



# ମଣିଷକୁ ସୁଖପାଉଥିବା ମୁଖ୍ୟମନ୍ତ୍ରୀ

**ସହବନ୍ଦୀ**

୧୯୪୨ ମସିହାର ଏକ ଭୟଙ୍କର ମୁହୂର୍ତ୍ତ । କାର୍ତ୍ତିକ ମାସ । ହଠାତ୍ ମାଡ଼ିଆସିଲା ଏକ ନାହିଁ ନଥିବା ତୋଫାନ । ଦିନେ ନାହିଁ କାଳେ ନାହିଁ, ବୁଢ଼ାବୁଢ଼ୀମାନେ ସତେ ଯେପରି ମୂକ ପାଲଟି ଯାଉଥାନ୍ତି; ତାଙ୍କ ଜୀବନକାଳ ଭିତରେ ଏ ଭୟଙ୍କର ଦୃଶ୍ୟ ସେମାନେ କେବେ ଦେଖିନାହାନ୍ତି । ପୁଣି ନୀଳଚକ୍ର ତଳେ ଏ କି କାଣ୍ଡ ! ସୁଦର୍ଶନ ଚକ୍ର ଘୂରିଲା ପରି ପବନର ସାଇଁ ସାଇଁ ଡାକ । ଶତ ଶତ ଚାଳଘର ଭୂମିନିପାତ । ପକ୍‌କାଘର ଦୋହଲି ଉଠୁଛି । ପ୍ରାବୃଟର ପ୍ରବଳ ବର୍ଷଣ । ବଡ଼ଦାଣ୍ଡ ଜନମାନବ ଶୂନ୍ୟ । ବାସହୀନମାନଙ୍କ ଅବସ୍ଥା ଗା'ଣି ଗାଇଲେ ସରିବ ନାହିଁ । ନାହିଁ ଚୁଲି, ନାହିଁ ଚାଳ । ସତେ ଯେପରି ମନେ ହେଉଛି ଖଣ୍ଡ ପ୍ରଳୟ ମାଡ଼ି ଆସୁଛି ।

(ମୁଁ ସେତେବେଳେ ପୁରୀ ବନ୍ଦୀଶାଳାରେ ଅଟକବନ୍ଦୀ) ଯୋଗକୁ ବିପ୍ଳବୀ ନବକୃଷ୍ଣ ଚୌଧୁରୀ ଥାନ୍ତି ସେହି ବନ୍ଦୀଶାଳାରେ । ବନ୍ଦୀଶାଳାର କର୍ତ୍ତା, ଭର୍ତ୍ତା ପ୍ରହରୀ ଯେ ଯାହା ଘରେ ଆତ୍ମରକ୍ଷାରତ । ଆମ ବନ୍ଦୀମାନଙ୍କୁ ବା ପଚାରେ କିଏ ? ଦୁଇଦିନ ବିତିଗଲା । ଝଡ଼ବତାସର ଅନ୍ତ ନାହିଁ । ବନ୍ଦୀମାନଙ୍କ ଭିତରେ ପ୍ରବଳ ଆଲୋଡ଼ନ, ଫାଟକ ଭାଙ୍ଗି ପଳେଇଯିବା । ନବ ବାବୁଙ୍କ ପରାମର୍ଶ ଲୋଡ଼ିଲୁ । ଆମେ ତାଙ୍କୁ ମୁରବୀ ପରି ମାନିଥାଉ । ସେ କହିଲେ, ନା । ଆମେ ପଳାୟନପନ୍ଥୀ ନୋହୁଁ । ତେଣୁ ଚାଲ, ଆଗ ବନ୍ଦୀଶାଳାରେ କୌଣସି ସୁରକ୍ଷିତ କକ୍ଷରେ ଆତ୍ମର... କରିବା । ବନ୍ଦୀଶାଳାର ବିରାଟ ପ୍ରାଚୀର ବାହାରପଟକୁ ଲାଗିଛି ଦେବାନୀ ଫାଟକ (Civil Jail) । କକ୍ଷଟିର ମୁଖ ବାହାରପଟକୁ । ନବ ବାବୁଙ୍କ ପରାମର୍ଶ ଏଇ ପାଚିରିକୁ ଭାଙ୍ଗି ଦେବାନୀ ଫାଟକରେ ପଶି ଆତ୍ମରକ୍ଷା କରିବା । ଏହା ଅତ୍ୟନ୍ତ ଯୁକ୍ତିଯୁକ୍ତ । ସମସ୍ତଙ୍କ ମନକୁ ପାଇଲା । ସେହି ବର୍ଷା ତୋଫାନ ଭିତରେ ଚାଲିଲା ପାଚିରି ଭଙ୍ଗା । ଏତେବେଳକୁ ଯାଇ ଜେଲକର୍ତ୍ତାଙ୍କ ନିଦ ଭାଙ୍ଗିଲା । ଜରୁରୀକାଳୀନ ବିଗୁଲ ବାଜିଉଠିଲା ।

ଏହି ଆତ୍ମରକ୍ଷା ସଂଗ୍ରାମ ବୃଥା ହେଲା ନାହିଁ । ସ୍ୱର୍ଗତ ସିଭିଲ ସର୍ଜନ କାଶୀନାଥ ମିଶ୍ର ସେତେବେଳେ ପୁରୀ ବନ୍ଦୀଶାଳାର ଅଧୀକ୍ଷକ । ସେ ଅତ୍ୟନ୍ତ ଭଦ୍ର ଓ ଉଦାର । ଖବର ପାଇବାମାତ୍ରେ ସେହି ବର୍ଷା ତୋଫାନରେ ତିନ୍ତିବୁଡ଼ି ଆମ ପାଖକୁ ଆସିଲେ । ବନ୍ଦୀଶାଳାର ପ୍ରତିବେଶୀ ବଡ଼ଡାକ୍ତରଖାନାର ସମ୍ମୁଖ କକ୍ଷରୁ ରୋଗୀମାନଙ୍କୁ ଅନ୍ୟତ୍ର ସ୍ଥାନାନ୍ତର କରାଯାଇ ଆମ ପାଇଁ ସେହିଠାରେ ସ୍ଥାନ କରାଗଲା । ସମସ୍ତେ ସେହି କକ୍ଷକୁ ଯାଇ ଛାତ୍ରାବାସରେ ରହିଲା ପରି ଅବସ୍ଥାନ କଲୁ । ଚାରିପାଖେ ଆରକ୍ଷୀ ଜଗିଲେ । ଆମର ଆତ୍ମରକ୍ଷା ହେଲା । ଖାଦ୍ୟପେୟ ଓ ପରିଧାନର ସମସ୍ତ ବନ୍ଦୋବସ୍ତ ହୋଇଗଲା ।

କଂଗ୍ରେସରେ ସମାଜବାଦୀ ଦଳ ସଙ୍ଗଠନରେ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା, ନବକୃଷ୍ଣ ଚୌଧୁରୀ ଥିଲେ ତହିଁର ଅନ୍ୟତମ ଉଦ୍ୟୋକ୍ତା । ସମାଜବାଦୀ ଦଳ ଭାରତରୁ ଇଂରେଜ ଶାସନର ଆଶୁ ଅବସାନ ପାଇଁ ... ଉଠିଥାନ୍ତି । ଗାନ୍ଧିଜୀ ଜନଜାଗ୍ରତିକୁ ବାଧି ... ବୋଲି ସେମାନଙ୍କର ଧାରଣା ଜନ୍ମି... ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶ ପରାମର୍ଶ ଓ ସମ୍ମତିରେ ଭାରତରୁ ଇଂରେଜ ଶାସନର ଚୂଡ଼ାନ୍ତ ଅବସାନ ପାଇଁ ୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେ ଗୋଆଲିଆ ଟ୍ୟାଙ୍କ ମଇଦାନରେ କଂଗ୍ରେସ ଯେଉଁ ଐତିହାସିକ ପ୍ରସ୍ତାବ ଗ୍ରହଣ କଲା, ସେଥିରେ କଂଗ୍ରେସ ସମାଜବାଦୀମାନଙ୍କ ଦୃଷ୍ଟିଭଙ୍ଗୀ ବଦଳିଗଲା । ସେମାନେ ମହାତ୍ମା ଗାନ୍ଧୀଙ୍କୁ ଜଣେ ଅଦ୍ୱିତୀୟ ବିପ୍ଳବୀ ବୋଲି ସ୍ୱୀକାର କରିଗଲେ । ଯେଉଁ କେତେଜଣ ମୁଷ୍ଟିମେୟ କଂଗ୍ରେସ ସମାଜବାଦୀ ଦଳରୁ ବିଚ୍ଛିନ୍ନ ହୋଇ କମ୍ୟୁନିଷ୍ଟ ହେଲେ ସେମାନେ

"ଭାରତ ଛାଡ଼" ପ୍ରସ୍ତାବର ବିରୋଧ କଲେ । ନବବାବୁ ଗାନ୍ଧୀବାଦର ଜଣେ ଶ୍ରେଷ୍ଠ ପ୍ରବକ୍ତା ଭାବରେ ଗାନ୍ଧୀଙ୍କୁ ମହାନ ବିପ୍ଳବୀ ରୂପେ ସ୍ୱୀକାର କରିଗଲେ ।

ଗାନ୍ଧୀଜୀ ପ୍ରମୁଖ ତୁଙ୍ଗ ନେତାମାନଙ୍କୁ ସେହି ୪୨ ଅଗଷ୍ଟ ୮ ତାରିଖ ରାତି ନ ପାଉ ତୋଫାନୀ ଆକ୍ରମଣ ପରି ଗିରଫ କରିନେବା ଦ୍ୱାରା ଦେଶ ନେତୃହରା ହୋଇପଡ଼ିବା ଦେଖି ଜୟପ୍ରକାଶ ପ୍ରମୁଖ ବନ୍ଦୀଶାଳାରେ ଥୟ ହୋଇ ରହିପାରିଲେ ନାହିଁ । ଭାରତସାରା ବିପ୍ଳବର ବହ୍ନି ପ୍ରଜ୍ଜ୍ୱଳନ କରିଦେବାକୁ କଂଗ୍ରେସ ସମାଜବାଦୀମାନେ ବଡ଼ ଚିନ୍ତିତ, ବିବ୍ରତ ଓ ଉଦ୍‌ବେଳିତ ହୋଇ ପଡ଼ିଲେ ।

ହଠାତ୍ ଶୁଣାଗଲା ହଜାରିବାଗ ବନ୍ଦୀଶାଳାରୁ ଜୟପ୍ରକାଶ ନାରାୟଣ, ରାମନନ୍ଦନ ମିଶ୍ର ଖସି ଯାଇଛନ୍ତି । ନବବାବୁ ସତେ ଯେପରି ଏକ ନୂତନ ଆଲୋକର ସନ୍ଧାନ ପାଇଲେ । ନବବାବୁ ପ୍ରକାଶ୍ୟରେ ମତବ୍ୟକ୍ତ କଲେ ଯେ ଜନଜାଗରଣକୁ ସରକାରୀ କର୍ମଚାରୀମାନେ ସମର୍ଥନ କରୁଥିବା ଏହାର ପ୍ରମାଣ, କାରଣ ଜୟପ୍ରକାଶଙ୍କୁ ସେ ଯାହା ଜାଣନ୍ତି ଜେଲ କର୍ତ୍ତୃପକ୍ଷଙ୍କ ବିନା ସହଯୋଗରେ ସେ କେବେ ଏପରି କରି ନଥାନ୍ତେ । ବିପ୍ଳବର ଦିଗ୍‌ଦର୍ଶନ ଓ ବାହାରେ ଆତ୍ମଗୋପନରେ ରହି ଆନ୍ଦୋଳନର ସଂଚାଳନା କରୁଥିବା ସଂଗ୍ରାମୀମାନଙ୍କ ସହ ଯୋଗସୂତ୍ର ସ୍ଥାପନ ପାଇଁ ପୁରୀ ଜେଲରୁ କେତେଜଣଙ୍କୁ ଖସାଇ ଦେବାକୁ ନବବାବୁ ମନସ୍ଥ କଲେ । ହଠାତ୍ ଶୁଣାଗଲା ସେ ନିମାପଡ଼ା ଅଞ୍ଚଳର ଦୁଇ ଜଣ ଯୁବ ରାଜବନ୍ଦୀ ଶ୍ରୀ ଅଲେଖ ପାତ୍ର ଓ ଲୋକନାଥ ସେନାପତି (ସଂପ୍ରତି ଅଲେଖ ସମ୍ବଲପୁର ଜିଲାରେ ଜଣେ ପ୍ରତିଷ୍ଠିତ ସର୍ବୋଦୟ କର୍ମୀ ଓ ଲୋକନାଥ ନିଜ ଗାଁ ଭିଲିଗ୍ରାମରେ ଗ୍ରାମସେବାରେ ମନ ଦେଇଛନ୍ତି) ବନ୍ଦୀଶାଳାରୁ ଖସିଯାଇଛନ୍ତି । କର୍ତ୍ତୃପକ୍ଷ ଆମ ଉପରେ ଅଧିକ ସତର୍କ-ଦୃଷ୍ଟି ରଖିଲେ । ଯାହାହେଉ ଏଇପରି କେତେକ ଘଟଣାରେ ଜେଲର ଓ ନାଏବ ଜେଲରଙ୍କ ବଦଳି ହୋଇଗଲା ।

ଆମେ ବ୍ରହ୍ମପୁର କେନ୍ଦ୍ର ଜେଲକୁ ବଦଳି ହେଲୁ । ନବବାବୁ ମଧ୍ୟ ବଦଳି ହେଲେ । ସେଠାରେ ଦେଖିଛି ଯୁବବନ୍ଦୀମାନଙ୍କୁ ସତ୍ୟାଗ୍ରହର ତତ୍ତ୍ୱ ବୁଝାଇବାରେ ସେ ଅନେକ ସମୟ ଦିଅନ୍ତି । ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଓ ବ୍ରଜମୋହନ ସିଂ (ଟାଟୁ ବାବୁ) ପ୍ରମୁଖଙ୍କ ଦ୍ୱାରା ବନ୍ଦୀଶାଳାର ହତାରେ ବ୍ୟବସ୍ଥିତ ଟମାଟୋ କ୍ଷେତ୍ରରେ ଶରୀରଶ୍ରମ କରନ୍ତି । ଭଗବତୀ ଚରଣ ପାଣିଗ୍ରାହୀ ସେତେବେଳେ କମ୍ୟୁନିଷ୍ଟ । ତାଙ୍କର ଆକସ୍ମିକ ବିୟୋଗବାର୍ତ୍ତା ବନ୍ଦୀଶାଳାରେ ପହଞ୍ଚିଲା । ନବ ବାବୁ କଂଗ୍ରେସରେ, ଭଗବତୀ ବାବୁ କମ୍ୟୁନିଷ୍ଟ ଦଳରେ । ନବବାବୁ କୋହ ସମ୍ବରଣ କରିପାରିଲେ ନାହିଁ । ଭଗବତୀଙ୍କ ପାଇଁ ଅନୁଷ୍ଠିତ ଶୋକ ସଭାରେ ଦେଖିଛି ନବବାବୁ ବିଶେଷ କିଛି କହିପାରିଲେ ନାହିଁ । ଭଗବତୀଙ୍କ ଦୁଇ ଶିଶୁ ସନ୍ତାନଙ୍କ କଥା ମନେପକାଇ କହିଁ କହିଁ ହୋଇ ସେହି ବିରାଟ ବନ୍ଦୀ ସମାବେଶରେ କାନ୍ଦିବାକୁ ଲାଗିଲେ । ବନ୍ଧୁମାନଙ୍କ ସହ ତାଙ୍କର ମତାନ୍ତର ଥିଲା -ମନାନ୍ତର ନଥିଲା । ସତେ ଯେପରି ଏ ଦିଗରେ ସେ ଥିଲେ ଜଣେ ଆଦର୍ଶ ପୁରୁଷ ।

ବନ୍ଦୀଶାଳାରେ ଦିନେ ସଂବାଦପତ୍ରରେ ଦେଖିଲୁ ଯେ କମ୍ୟୁନିଷ୍ଟ ଇଣ୍ଟରନ୍ୟାସନାଲ ଭାଙ୍ଗି ଦିଆଯାଇଛି । ଏହାର ଅନ୍ତର୍ନିହିତ ତତ୍ତ୍ୱର ବିଶ୍ଳେଷଣ ପାଇଁ ବନ୍ଦୀଶାଳାରେ ଆମର ଏକତ୍ର ସମାବେଶ ହେଲା । ନବବାବୁ ଓ ଜ୍ଞାନମଣ୍ଡଳ ପ୍ରଣେତା ବିଶିଷ୍ଟ ସଂଗ୍ରାମୀ ଶ୍ରୀ ବିନୋଦ କାନୁନଗୋ ସେଦିନ ଆମମାନଙ୍କୁ ଏହାର ତତ୍ତ୍ୱ ବୁଝାଇ ଯେଉଁ ବିଶ୍ଳେଷଣ ଦେଇଥିଲେ ତାହା ମନେ ପଡୁଛି । କମ୍ୟୁନିଷ୍ଟ ଇଣ୍ଟରନ୍ୟାସନାଲକୁ ଭାଙ୍ଗିଦେଇ ଦେଶର ପ୍ରବକ୍ତାମାନେ ଯେଉଁ ଆଦର୍ଶଗତ ନୀତି ନିର୍ଦ୍ଧାରଣ କଲେ, ଭାରତସ୍ଥିତ କମ୍ୟୁନିଷ୍ଟ ବନ୍ଧୁମାନେ ତହିଁରେ ଅନୁପ୍ରାଣିତ ହୋଇ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ କରିବେ ବୋଲି ନବବାବୁ ସେତେବେଳେ ଦୃଢ଼ ମତ ବ୍ୟକ୍ତ କଲେ ସଭାସ୍ଥଳ କରତାଳି ଧ୍ୱନିରେ ପ୍ରକମ୍ପିତ ହୋଇ ଉଠିଲା । ପରବର୍ତ୍ତୀ ସମୟରେ କମ୍ୟୁନିଷ୍ଟ ପାର୍ଟିର ନିର୍ବାଚନ ମାଧ୍ୟମରେ ଶାସନତନ୍ତ୍ରକୁ ଆସିବା ନୀତିରୁ ସେ

ଦିନର ନବ ବାବୁଙ୍କ ବିଚାର ସତ ପ୍ରମାଣିତ ହୋଇଛି ।

ଘଟଣାକ୍ରମେ ଭାରତ ସ୍ୱାଧୀନ ହେଲା । ନବବାବୁ ରାଜସ୍ୱ ମନ୍ତ୍ରୀ ହେଲେ ଓ ମୌଳିକ ଶିକ୍ଷାର ପ୍ରସାର ଦ୍ୱାରା ଗାନ୍ଧୀଜୀଙ୍କ ରାମରାଜ୍ୟ ସ୍ୱପ୍ନକୁ ସଫଳ କରିବା ଲକ୍ଷ୍ୟ ନେଇ ସେ କିଛି ଦିନ ମୌଳିକ ଶିକ୍ଷା ସଂଗଠକ ରୂପେ ମଧ ସରକାରୀ ଦାୟିତ୍ୱ ଗ୍ରହଣ କଲେ । ୧୯୫୦ ମସିହାରେ ସେ ଏହି ଦାୟିତ୍ୱରେ ଥିଲାବେଳେ ମୁଁ ଦେଖିଛି ଅନୁଗୁଳରେ ଅନୁଷ୍ଠିତ ସର୍ବୋଦୟ ସମ୍ମେଳନକୁ ଆସୁଥିବା ପ୍ରତିନିଧିମାନଙ୍କ ବିଛଣାପତ୍ର ସେ ନିଜେ ବହନ କରି କକ୍ଷକୁ ନେଇଯିବାରେ ଟିକିଏ ହେଲେ ଘୃଣାବୋଧ କରୁ ନଥିଲେ । ତାଙ୍କ ଦେଖାଦେଖି ଶ୍ରୀ ଉଇଲିୟମ ଜେମ୍ସ ପ୍ରମୁଖ ଉଚ୍ଚ ଅଧିକାରୀ କର୍ମକର୍ତ୍ତାମାନେ ମଧ ଅନୁରୂପ ଆଚରଣ କରୁଥିଲେ ।

୧୯୫୫ ମସିହାରେ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ବେଳେ ପୁରୀ ତାଳବଣିଆରେ ଅଖିଳ ଭାରତ ସର୍ବୋଦୟ ସମ୍ମେଳନ ଅନୁଷ୍ଠିତ ହେଲା । ଆଚାର୍ଯ୍ୟ ବିନୋବା ଭାରତରେ ଉତ୍କଟ ଧନମାନ ଭେଦ ଜନିତ ଏକ ନିଶ୍ଚିତ ଶ୍ରେଣୀ ସଂଘର୍ଷରୁ ଭାରତକୁ ରକ୍ଷା କରିବା ପାଇଁ ୧୯୫୧ ରୁ ଯେଉଁ ଭୂଦାନ ଯଜ୍ଞ ଆନ୍ଦୋଳନ ଆରମ୍ଭ କରିଥିଲେ ତାହାରି ପର୍ଯ୍ୟାୟ ଭିତରେ ପୁରୀରେ ଏ ସର୍ବୋଦୟ ସମ୍ମେଳନ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ସର୍ବୋଦୟ ମାଧମରେ ଭୂ-ବିପ୍ଳବରେ ଏକାନ୍ତ ଆସ୍ଥାବାନ୍ ସ୍ୱୟଂ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ଚୌଧୁରୀ ଏ ସମ୍ମେଳନକୁ ସୁରୁଖୁରୁରେ ସମ୍ପାଦନ କରିବାର ସମସ୍ତ ଦାୟିତ୍ୱ ନେଇଥାନ୍ତି । ମୁଁ ନିଜେ ଦେଖିଛି ପୁଲିସ୍, ବିଦ୍ୟୁତ୍, ସାଧାରଣ ସ୍ୱାସ୍ଥ୍ୟ ଇତ୍ୟାଦି ଯାବତୀୟ ବ୍ୟବସ୍ଥାରେ ବିଭାଗୀୟ ଉଚ୍ଚ ସରକାରୀ କର୍ମକର୍ତ୍ତାମାନେ ଅହରହ ଖଟୁଥାନ୍ତି । ମନେହେଉଥାଏ ସତେ ଯେପରି ସେମାନେ ପାଞ୍ଚବର୍ଷ ବୟସ୍କ ସାଧାରଣତନ୍ତ୍ର ଭାରତର ଏକନିଷ୍ଠ ଜନସେବକ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ନିଜେ ସେହି ଗହଳ ଚହଳ ମଧରେ କେଉଁଠି ରହିଯାଉଥାନ୍ତି ତାହା ଜାଣି ହେଉ ନଥାଏ । ପୁରୀ ସର୍କିଟ ହାଉସରେ କେତେଥର ଦେଖିଛି ତାଙ୍କୁ ଅଭିବାଦନ ଜ୍ଞାପନ କରିବାକୁ କର୍ତ୍ତବ୍ୟରତ ସଶସ୍ତ୍ର ପୁଲିସଙ୍କୁ ସେ ରିକ୍ତ ହସ୍ତରେ ଫେରାନ୍ତି ନାହିଁ । ତାଙ୍କର ସ୍ଥାୟୀ ବରାଦ ଥାଏ । ତାଙ୍କ ଗହଣରେ ଆସିଥିବା ତାଙ୍କ ବ୍ୟକ୍ତିଗତ ସହକାରୀ ଗାର୍ଡ଼ମାନଙ୍କୁ ଚା ଖିଆ ଦେଇ ବିଦା କରାନ୍ତି ।

୧୯୪୬ ରୁ ୧୯୫୬ ଯାଏ ନବକୃଷ୍ଣ ଚୌଧୁରୀ ରାଜସ୍ୱମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଭାବରେ ଦୀର୍ଘ ୯ ବର୍ଷ ଓଡ଼ିଶା ଶାସନ ଦାୟିତ୍ୱରେ ଥିଲେ । ୧୯୫୦ ମସିହାରେ ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ସାମାନ୍ୟ ମଧମ ଧରଣର ଶିଳ୍ପଟିଏ ସ୍ଥାପନ କରିବା ଭଳି ସମ୍ବଳ ବା ସୁଯୋଗ ଓଡ଼ିଶାରେ ନଥିଲା । ତାଲିମପ୍ରାପ୍ତ ବୈଷୟିକ ବ୍ୟକ୍ତି ମଧ ନଥିଲେ । ଏହି ପୃଷ୍ଠଭୂମିରେ ମୁଖ୍ୟମନ୍ତ୍ରୀ ଚୌଧୁରୀ ପ୍ରଥମ ପଞ୍ଚବାର୍ଷିକ ଯୋଜନାକୁ କାର୍ଯ୍ୟକାରୀ କରାଇ ରାଜ୍ୟରେ ଗୋଟିଏ କୃଷି କଲେଜ, ପଶୁପାଳନ ଓ ପଶୁଚିକିତ୍ସା କଲେଜ, କଟକ ମଧୁପାଟଣାରେ ଯୁବ ଶିଳ୍ପୋଦ୍ୟୋଗୀମାନଙ୍କୁ ଅଂଶୀଦାରର ସୁବିଧା ଦେଇ ଏକ ପଥପ୍ରଦର୍ଶକ ଶିଳ୍ପ ଯୋଜନା କାର୍ଯ୍ୟକାରୀ କରିଥିଲେ । ଡୁଡୁମା ଓ ହୀରାକୁଦ ଜଳ - ବିଦ୍ୟୁତ୍ ଯୋଜନା, ଚୌଦ୍ୱାରରେ କାଗଜକଳ, କେନ୍ଦୁଝରର ଯୋଡ଼ାଠାରେ ଓ କୋରାପୁଟର ରାୟଗଡ଼ାଠାରେ ଫେରୋମାଙ୍ଗାନିଜ କାରଖାନା, ମଧପ୍ରଦେଶ ଓ ପଶ୍ଚିମବଙ୍ଗର ପ୍ରଭାବଶାଳୀ ମୁଖ୍ୟମନ୍ତ୍ରୀମାନଙ୍କ ବିରୋଧକୁ ପ୍ରତିହତ କରାଇ ରାଉରକେଲାରେ ପ୍ରଥମ ରାଷ୍ଟ୍ରାୟତ୍ତ ଇସ୍ପାତ କାରଖାନାର ପ୍ରତିଷ୍ଠା ତାଙ୍କ ମନ୍ତ୍ରୀତ୍ୱ ଅମଳର ବିଶେଷ କୃତୀ । ଶାସନର ବିକେନ୍ଦ୍ରୀକରଣ ପାଇଁ ଅଞ୍ଚଳଶାସନ ଆଇନ ପ୍ରବର୍ତ୍ତନ କରାଇ ଜନସାଧାରଣଙ୍କୁ ଶାସନରେ ଭାଗୀଦାର କରାଇବାକୁ ସେ ଲକ୍ଷ୍ୟ ରଖିଥିଲେ । ସମଗ୍ରଦେଶରେ ଏହାଥିଲା ପ୍ରଥମ ପରିକଳ୍ପନା । ଏଥିରେ ଅମଲାତନ୍ତ୍ରର ଗାତ୍ରୋଦାହ ହେବାରୁ କଂଗ୍ରେସ ଦଳକୁ ନାନାଭାବରେ ପ୍ରଭାବିତ କରାଇ ସେହି ପ୍ରଗତିଶୀଳ ଆଇନକୁ ସେମାନେ କାର୍ଯ୍ୟକାରୀ କରାଇ ଦେଲେ ନାହିଁ । ସମ୍ବିଧାନର ମୌଳିକ ନୀତି ଭିତରେ ଶାସନର

ସବୁସ୍ତରରେ ଓଡ଼ିଆ ଭାଷାର ପ୍ରବର୍ତ୍ତନ ପାଇଁ ଓଡ଼ିଆ ଟାଇପ୍‌ରାଇଟରର ନିର୍ମାଣ ଓ ପ୍ରଚଳନ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ବେଳେ ସମ୍ଭବପର ହୋଇଥିଲା । ପ୍ରକୃତ ଭାଗଚାଷୀମାନଙ୍କୁ ଉଚ୍ଛେଦ ନକରାଇବା ପାଇଁ ଭାଗଚାଷ ଆଇନ ପ୍ରବର୍ତ୍ତନ କରାଇଥିଲେ । ଭୂ-ସଂସ୍କାର ଆଇନ ପ୍ରଣୟନ ତାଙ୍କର ଏକ ବୈପ୍ଲବିକ ବ୍ୟବସ୍ଥା ଥିଲା । ବଡ଼ବଡ଼ ଜମି ମାଲିକମାନେ ଆତଙ୍କିତ ହୋଇ ନାନା କୌଶଳରେ ଚାଷୀମାନଙ୍କୁ ବେଦଖଲ କରାଉଥିବାରୁ ନବବାବୁଙ୍କ ଆନ୍ତରିକତା ଓ ଦୃଢ଼ତା ଯୋଗୁଁ ତାହାକୁ ପ୍ରତିହତ କରାଯାଇ ପାରିଥିଲା ।

ମୁଖ୍ୟମନ୍ତ୍ରୀ ଭଳି ଶାସନର ସର୍ବୋଚ୍ଚପଦରେ ଥିଲାବେଳେ ସେ ଲୋକଙ୍କ ଠାରୁ ନିଜକୁ ଉର୍ଦ୍ଧ୍ୱରେ ନରଖି ପଣଙ୍କ ସଙ୍ଗେ ଜଣେ ହୋଇ ମିଶିଯାଉଥିଲେ । ସମ୍ବଲପୁର ସର୍କିଟ ହାଉସ୍‌ରେ ଥିଲାବେଳେ ଯୁବକମାନଙ୍କୁ ନେଇ ନଦୀ ଘାଟ ସଫାଇ, ପୌରପାଳ ରାଜେନ୍ଦ୍ର ପଣ୍ଡାଙ୍କ ଘରେ ଆତିଥ୍ୟ ଗ୍ରହଣ କଲାବେଳେ ରାତିରୁ ଉଠି ଭିଜା ଯାଇଥିବା ବିରି ଚାଉଳକୁ ନିଜ ହାତରେ ବାଟି ସେମାନଙ୍କ ପରିବାରକୁ ଉଠାଇ ଖୁଆଇବା, ରାଜଧାନୀରେ ସରକାରୀ ନିବାସରେ ଥିଲାବେଳେ କୋଡ଼ିକାଙ୍କ ଧରି ବଗିଚାକାମ କରିବା ଓ ଅନୁଗୁଳ ବାଜିରାଉତ ଛାତ୍ରାବାସ ଓ ଅନ୍ୟତ୍ର ଶିଶୁମାନଙ୍କୁ କାଖେଇ କୋଳେଇ ନେବାରେ ଲେଶମାତ୍ର ସଙ୍କୋଚ ଅନୁଭବ କରିନାହାନ୍ତି ।

ମନ୍ତ୍ରୀତ୍ୱ ତାଙ୍କର ପେଶା ନଥିଲା । ତାଙ୍କୁ ମନ୍ତ୍ରିତ୍ୱରୁ ହଟାଇବା ପାଇଁ ବହୁ ସ୍ୱାର୍ଥନ୍ୱେଷୀ ଷଡ଼ଯନ୍ତ୍ର ହୋଇଛି । ମାତ୍ର କୌଣସିମତେ କ୍ଷମତାକୁ ଜାବୁଡ଼ି ଧରିବା ପାଇଁ ସେ ଦଳୀୟ ସଂଗଠନ ଭିତରେ ନିଜର ବ୍ୟକ୍ତିତ୍ୱକୁ ବଳି ଦେଇ ନଥିଲେ । ମନ୍ତ୍ରିତ୍ୱ ଛାଡ଼ିଲେ, ଦଳ ଛାଡ଼ିଲେ । କ୍ଷମତାକୁ ଆଉ ମନ କଲେ ନାହିଁ । କ୍ଷମତାରେ ରହିବା ପାଇଁ କାହାରି ପାଖକୁ ଧାଁ ଧପଡ଼ କଲେ ନାହିଁ କି ଓଳନାଳ ହେଲେ ନାହିଁ । ସେଇ ଧୋତି ଚଦର, ଅଧିକନ୍ତୁ ବିଦେଶାଗତ ପର୍ଯ୍ୟଟକଙ୍କ ପରି ଦୁଇ କାନ୍ଧ ଗଳା ବ୍ୟାଗରେ ପିଠିରେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ବୋହି ନେଇ ଘସ୍ତ କରିବାକୁ ଶ୍ରେୟ ମଣିଲେ । ମୁଁ ତୁ ଭିତରେ କୌଣସି ପ୍ରଭେଦ ଦେଖି ପାରିଲେ ନାହିଁ । ଘର ଛାଡ଼ିଲେ, ମାଲିକାନା ଛାଡ଼ିଲେ, ଆଦିବାସୀ ଛାତ୍ର ଅଧ୍ୟୁଷିତ ଅନୁଗୁଳ ସ୍ଥିତ ବାଜିରାଉତ ଛାତ୍ରାବାସ ହେଲା ତାଙ୍କର ଆଶ୍ରୟସ୍ଥଳ ।

ବଡ଼ଭାଇ ଗୋପବନ୍ଧୁ ଚୌଧୁରୀଙ୍କ ଦେହାନ୍ତ ହେଲା । ନିଜର ଏକମାତ୍ର ପୁଅ ଗଲା । ଚୌଧୁରୀ ପରିବାରର ଏକମାତ୍ର ଉତ୍ତରାଧିକାରୀ କବୀର ଗଲେ । ନାତି ଗଲା । ତାଙ୍କରି ଆଖି ଆଗରେ ତାଙ୍କର ପ୍ରାଣାଧିକ ସ୍ୱାଧୀନତା ସଂଗ୍ରାମ ସ୍ମୃତି ବହନ କରୁଥିବା ଜାତୀୟ କଂଗ୍ରେସକୁ ଜଣେ ଜଣେ ନିଜ ନିଜ ନାଁରେ ବାଣ୍ଟିନେଇ ଛିନ୍ନଛତ୍ର କଲେ । ନବ ବାବୁ ସବୁ ଦେଖି ଦେଖି ଶେଷକୁ ନିର୍ବାକ୍ ପାଲଟିଗଲେ । ସତେ ଯେପରି ମନେକଲେ ଏ ସବୁ ବିଧାତାର ବିଧାନ । ଜନ୍ମିଥିଲେ ଏକ ଆଭିଜାତ୍ୟ ବଂଶରେ । ଅଥଚ ଆଭିଜାତ୍ୟରୁ ରାଣ ଦେଲାପରି ସେ ଦୂରେଇ ଗଲେ । କିଏ ସିନା କ୍ଷମତାକୁ ଧରି ବଡ଼ ହୁଅନ୍ତି, ନବକୃଷ୍ଣ ଚୌଧୁରୀ କ୍ଷମତାକୁ ଛାଡ଼ି ବଡ଼ ହେଲେ । ସମସ୍ତଙ୍କ ହୃଦୟରେ ସ୍ଥାନ ପାଇଲେ । ଦେଖେଇ ହେବା ତାଙ୍କ ଜାତକରେ ନଥିଲା । ତେଣୁ ତାଙ୍କ ଶୋକସଭା ପାଇଁ ଫଟୋଟିଏ ମଧ୍ୟ ସହଜଲଭ୍ୟ ହେଲା ନାହିଁ ।

ତାଙ୍କର ଅନ୍ତିମ ଜୀବନ ହେଉଛି ବର୍ଣ୍ଣାଶ୍ରମ ଧର୍ମର ଅନ୍ତିମ ପର୍ଯ୍ୟାୟ, ଯତିବ୍ରତର ଜୀବନ । ନିର୍ଗୁଣ ଅବସ୍ଥାରେ ହିଁ ସେ ଇହସଂସାରରୁ ବିଦାୟ ନେଲେ ବାଜିରାଉତ ଛାତ୍ରାବାସ, ଅନୁଗୁଳ ସ୍ଥିତ କୁଡ଼ିଆଘରେ ୧୯୮୪ ଜୁନ୍ ୨୪ରେ । ଜନ୍ମିଥିଲେ ସ୍ୱନାମଧନ୍ୟ ଅଧିବକ୍ତା ଗୋକୁଳାନନ୍ଦ ଚୌଧୁରୀଙ୍କର କଟକ ଜିଲା ଖେରସ ଗ୍ରାମର ଏକ ଜମିଦାର ପରିବାରରେ ୧୯୦୧ ନଭେମ୍ବର ୨୩ ରେ ।

ଶୁଣାଯାଏ ତିନୋଟି କଥା ତାଙ୍କୁ ବଡ଼ ବାଧୁଥିଲା । ଲୋକଙ୍କର ଧର୍ମ-ଭାବନା କମି କମି ଯାଉଛି । ଆଗେ ସମାଜ ସେବା ପାଇଁ ଯେପରି ଉଚ୍ଚ ଶିକ୍ଷିତ, ବିଦ୍ୱାନ୍ ଓ ଆଭିଜାତ୍ୟ ଘରର ପିଲାଏ ବାହାରୁଥିଲେ ଏବେ ସେପରି ନାହିଁ । ତେଣୁ ଦୁର୍ଗତଙ୍କ ଆର୍ଥିକ ସ୍ଥିତିକୁ ସୁଧାରିବା ପାଇଁ

ଯେଉଁ ବିପୁଳ ରାଷ୍ଟ୍ରୀୟ ସମ୍ପଦ ବ୍ୟୟିତ ହେଉଛି, ତାହା ପାଣିରେ ପଡ଼ିଯାଉଛି ।

ନିଜର ରାଜନୀତିକ ଜୀବନରେ ପଛଘୁଞ୍ଚା ସେ ଜାଣିନଥିଲେ । ୧୯୨୧ରେ ଅସହଯୋଗ ଆନ୍ଦୋଳନ, ୧୯୩୦ରେ ଲବଣ ସତ୍ୟାଗ୍ରହ, ୧୯୩୨ରେ ଆଇନ ଅମାନ୍ୟ ଆନ୍ଦୋଳନ, ୧୯୪୦ରେ ବାଣୀ ସତ୍ୟାଗ୍ରହ ୧୯୪୨ରେ "ଭାରତ-ଛାଡ଼" ଆନ୍ଦୋଳନ ଏପରିକି ଆପତକାଳୀନ ପରିସ୍ଥିତିକୁ ବିରୋଧ କରି ୧୯୭୫ରେ କରାବରଣ କରିଛନ୍ତି । ୧୯୨୬ରେ ଟରିକୁନ୍ଦଠାରେ କୃଷି ପ୍ରୟୋଗ, ୧୯୩୧ରେ ପୁରୀରେ ସେବାଦଳ ଟ୍ରେନିଂରେ ପ୍ରଶିକ୍ଷଣ, ୧୯୩୩ରେ କୃଷକ ଆନ୍ଦୋଳନ, ୧୯୩୮ରେ ଗଡ଼ଜାତ ପ୍ରଜା ଆନ୍ଦୋଳନ, ୧୯୪୯ରେ ମୌଳିକ ଶିକ୍ଷା ସଂଗଠକ, ୧୯୬୪ରେ ନାଗାଲାଣ୍ଡ, କାଶ୍ମୀର ଓ ରାଉରକେଲାରେ ଶାନ୍ତି ମିଶନ, ୧୯୭୨ରେ ଚମ୍ପଛିମୁଣ୍ଡା ମୌଳିକ ବିଦ୍ୟାଳୟରେ ଶିକ୍ଷକତା, ତାଙ୍କ କର୍ମ ବହୁଳତାର ଝଲକ ମାତ୍ର ।

ଧର୍ମଶାସ୍ତ୍ରରେ କୁହାଯାଇଛି ଯେ, କରୁଣାହିଁ ସର୍ବଶକ୍ତିମାନ । କରୁଣା ପାଖରେ ମୃତ୍ୟୁ ହାରମାନେ, ମାନବବାଦୀ ନବକୃଷ୍ଣ ଚୌଧୁରୀ କରୁଣାର ମୂର୍ତ୍ତିମନ୍ତ ପ୍ରତୀକରୂପେ ଚିରଂଜୀବୀ ହୋଇ ରହିଗଲେ ।



## ଘରେ ଘରେ ଚଳା ଅରଟ

ଘରେ ଘରେ ଚଳା ଅରଟ,
ଅରଟରେ ଭାଇ ଜାତିର ମୁକତି
ଅରଟ ଜାତିର କଳପ ବଟ.... (ଘୋଷା)

ଅରଟକୁ ଘରୁ ଯହୁଁ ଛାଡ଼ିଲେ
ଲକ୍ଷ୍ମୀ ଠାକୁରାଣୀ କାନ୍ଧରୁ ଗଲେ
ବିଦେଶୀ ଦରବେ ଦେଶ ଭରିଗଲା
ବାଘ ଘରେ ହେଲା ମିରିଗ ନାଟ ॥୧॥

ଗୋରୁ ଘୁଷୁରୀଙ୍କ ଚରବି ଲଗା
ବାବୁ ହେଲୁ ପିନ୍ଧି ବିଦେଶୀ ଲୁଗା
ବିଭାବରତରେ କଳଲୁଗା ଘେନି
ଧରମ କରମ କରିଲୁ ନଷ୍ଟ ॥୨॥

ଆମ କପା ସୂତା ବିଦେଶକୁ ନେଇ
ଝିଲିମିଲି ଦ୍ରବ୍ୟ ଆଣନ୍ତି ବାହି
ବଦଳେ ଟାଣନ୍ତି ଏଦେଶ ଫସଲ
ସେଥିଲାଗି ସିନା ଯାବନ୍ତ କଷ୍ଟ ॥୩॥

ଯୁଗ ଅବତାର ଜନମ ହୋଇ
ବେପାରୀ ଗୁମର ଦେଲେ ଫିଟାଇ
ଚିହ୍ନା ପଡ଼ିଗଲା ବିଦେଶୀ ଶାସନ
ଦୁଃଶାସନପରି ଚାଲେ ଅବାଟ ॥୪॥

ମହାତ୍ମା ବଚନ ମନରେ ଧାୟୀ
ଦୁଃଖୀଙ୍କି ଅରଟ ଦିଅ ଯୋଗାଇ
ନିକମା ନହୋଇ ନିଜେ ସୂତା କାଟ
ଫିଟିଯିବ ଜାତି ମୁକତିବାଟ ॥୫॥



## ଅଶୁଭଦର୍ଶନ

ଭଲ୍ଲାତଙ୍କ (ଭାଲିଆ) କର୍ଷଫଳଂ (ବାହାଡ଼ା)
କାକ ମାର୍ଜାର ମୂଷିକଂ; କ୍ଳୀବଂଚ (ନପୁଂସକ)
ଗର୍ଦ୍ଦଭଂ ଚୈବ ନ ପଶ୍ୟେତ ପ୍ରାତରେ ବହି ॥

## ଶୁଭଦର୍ଶନ

କରାଗ୍ରେ ବସତେ ଲକ୍ଷ୍ମୀଃ, କର ମଧ୍ୟେ ସରସ୍ୱତୀ
କରମୂଳେ ତୁ ଗୋବିନ୍ଦଃ ପ୍ରଭାତେ କର ଦର୍ଶନମ୍ ।

## ବିରୁଦ୍ଧ ଆହାର

୧. ମାଛ ସହ ଦୁଗ୍ଧ ।
୨. ମାଂସ ସହ ବିରି, ଦୁଗ୍ଧ, ଗୁଡ଼, ମହୁ ।
୩. ମୂଳା ଓ ରସୁଣ ସହ ଦୁଗ୍ଧ ।
୪. ମୂଳା ଶାଗ ସହ ବିରିଡାଲି ।
୫. ପାଚିଲା କଦଳୀ ସହ ଦହି ଓ ତାଳ ।
୬. ଗୁଆ ଘିଅ କଂସା ପାତ୍ରରେ ।
୭. ପୋଈ ଶାଗ ସହ ରାଶିତେଲ ।
୮. ଛତୁ ସହ ନଡିଆ ।
୯. ସୁରା ପାନ ପରେ ଗୁରିଭୋଜନ ।
୧୦. କଖାରୁ ଓ ଲାଉ ସହ ଦୁଗ୍ଧ ।
୧୧. ମହୁକୁ ଉଷୁମକରି ସେବନ ସ୍ୱାସ୍ଥ୍ୟ ପକ୍ଷରେ ଅହିତକର ।

## ଏଇ ଆମରି ଗାଁ

ଏହି ଆମରି ଗାଁ, ସୁଫଳା ସୁଜଳା,
ଶସ୍ୟ ଶ୍ୟାମଳା ସ୍ୱର୍ଣ୍ଣ ପ୍ରସୂନା ।।୦।।
ଏଠି ନିତି ନିତି ଗଙ୍ଗଶିଉଳି ଫୁଟେ,
ଆମ୍ର ଛଳର ପତ୍ର କୁଞ୍ଜେ କୋଇଲି ରାବି ଉଠେ
ନାରିକେଳର କୁଞ୍ଜେ କୁଞ୍ଜେ ପରଶି ଯାଏ ବାଆ ।।୧।।
(ଏଠି) କୁଳୁକୁଳୁ ସ୍ୱରେ ନଈଟି ଯାଏ ବହି,
ନିଜ ମନର ବହୁଦିନର ଗୋପନ କାହାଣୀ କହି
ମନ ଫୁଲାଣିଆ ସଙ୍ଗୀତ ଗାଇ ନାଉରୀ ବହେ ନାଆ ।।୨।।
ମୁଣ୍ଡର ଖାଳ ତୁଣ୍ଡରେ ମାରି, ଆମ ଗାଁ ଚଷା ଭାଇ
ବିଲ କାମରେ ଲାଗିଥାଏ ସେ ଖରା ବରଷା ସହି
ବରଷା ଶେଷେ ପାଚିଲା ଧାନ କାଟଇ ଧରି ଦାଆ ।।୩।।
ଏହି ଗାଁଆରେ ଗଢ଼ା ହୋଇଛି ମୋର ଏ ମର ପିଣ୍ଡ
ଜୀବନ ଶେଷେ ଏହାରି କୋଳେ ଗଡ଼ିବ ଦିନେ ମୁଣ୍ଡ
ଜନ୍ମେ ଜନ୍ମେ ପାଳୟିତ୍ରୀ ଏ ଦୁଃଖେ ସୁଖେ ସାହା ।।୪।।
ଏହି ଗାଁରେ ମଣିଷ ପରି ରହିବୁ ଆମେ ବଞ୍ଚି
ଘରେ ଘରେ ମୁକ୍ତି ବାରି ଦେବୁ ଯତନେ ସିଞ୍ଚି
ଫେରାଇ ଆଣିବୁ ପୂର୍ବ ଶିରୀ ତା ଯଶ ଭରା ନାଆଁ ।।୫।।

## କହ କେଉଁ ଜାତି ପାଇଛି ମୁକତି

କହ କହ କେଉଁ ଜାତି ପାଇଛି ମୁକତି
କରି ତୁରି ହାରି ଗୁହାରୀ;
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ
ମାଗି ମାଗି ପଥ ଭିକାରୀ (ଧ୍ରୁ) ।
ଯେବେ ବାଘ ମୁହେଁ ପଡ଼େ ଶିକାର
ମିନତିରେ ପାଏ କି ସେ ଉଦ୍ଧାର
ଛାଡ଼ିକି ଦିଏ କେବେ ଧୀବର ଜାଲରୁ
ନଖଲେ ମୀନ ଆପେ ବାହାରି ।।୧।।
ଦେଖ ଆଇରିସ୍, ଚାଇନା ଜାପାନ
ଆମେରିକା ଆଫଗାନ ପଠାନ
ପରାଣ ପାତି ହେଲେ ମୁକତି
ଜୀବନ-ମରଣ ନ ବିଚାରି ।।୨।।
(ଆଜି) ଅଭିମନ୍ୟୁ ପରି ଘେରି ଚଉଦିଗୁଁ ଜନନୀକୁ ମାରି
ଆତ୍ମଶକ୍ତି ସୁବିକାଶ ସୁଦର୍ଶନ ଚକ୍ରଟି କରିଦେବ ପାରି ।।୩।।

## ଭାରତ ଭୂଇଁ ଛୁଆ

ଆମେ ଭାରତ ଭୂଇଁ ଛୁଆ
ଏଇ ଦେଶକୁ ଗଢ଼ିବୁ ଆମେ ଆମରି ହାତେ ନୂଆ ।୦।
ଯେଉଁ ଦେଶର ପଦଧୂଳି ଦରିଆ ଦିଏ ଧୋଇ
ହିମାଳୟ ମୁକୁଟ ଯାର-ଗଙ୍ଗା ସିନ୍ଧୁ ନଈ---(୧)
ଯେଉଁ ଦେଶର ଭୂଇଁ ଦିଏ ସୁନାର ଫୁଲଫଳ
କେଡ଼େ ଶୀତଳ ବାଆ ବହେ - କେଡ଼େ ମିଠାଜଳ---(୨)
ଯେଉଁ ଦେଶର ଚଷା ପୁଅ ଲଙ୍ଗଳ ଗୋଟା ଧରି
ଦୁନିଆଟାକୁ ବାଣ୍ଟଇ ପଡ଼ି ମାଟିର ବୁକୁ ଚିରି ---(୩)
ପଥରେ କରେ ଛୁଅଁର କାମ ଯେ ଦେଶ କାରିଗର
ତାଜମହଲ, କୋଣାରକ, ଦୁନିଆ ଚମତ୍କାର ---(୪)
ଯେଉଁ ଦେଶର ପୋଥି ପୁରାଣେ ଭରା ବୀର କଥା
ଯେ ଦେଶ ପୁରୁ ନୁଆଁଏ ନାହିଁ ଶତ୍ରୁ ପଦେ ମଥା ---(୫)
ଯେ ଦେଶ ଝିଅ ଦୁର୍ଗାବତୀ ଶତ୍ରୁ ସାଥେ ଯୁଝେ
ମହାତ୍ମା ଗାନ୍ଧି ପୁଅ ଯାର ଦୁନିଆ ଗୋଟା ପୂଜେ ---(୬)
ସୁନାରେ ମୋର ଭାରତ ଗଢ଼ା ରଖିବା ତାର ଟେକ
ସତ୍ୟ ପଥେ ଜୟ ଆମର କଟୁ ପଛକେ ବେକ ।---(୭)

## ଆମେ ହିନ୍ଦୁ ଆମେ ମୁସଲମାନ

ଜାତୀୟ କବି ବୀରକିଶୋର

ଆମେ ହିନ୍ଦୁ
ଆମେ ମୁସଲମାନ,
ଭାରତ ଆମର ଜନ୍ମମାଟି
ଜବର ଆମର ହିନ୍ଦୁସ୍ଥାନ
ଆମେ ହିନ୍ଦୁ ଆମେ ମୁସଲମାନ । (ଘୋଷା)
ଆମେ କୋଟି କୋଟି ଭାରତବାସୀ
ତାଟ କାରିଗର ମୂଲିଆ ଚାଷୀ
ଆମେ ଅଟୁ ଶିଖ ବୌଦ୍ଧପାର୍ଶୀ
ଆମେ ରେ ଜଇନ ଖ୍ରୀଷ୍ଟାନ ।।୧।।
ମସ୍‌ଜିଦ୍ ଯେଉଁ ମାଟିରେ ଗଢ଼
ଗୀରିଜା ମନ୍ଦିର ତହିଁରେ ଛିଡ଼ା
ଏକା ପାଣି ଏକା ପବନେ ବଂଚୁ
ଏକା ରକ୍ତରେ ଗଢ଼ା ଆମରି ଜାନ ।।୨।।

ଆମ ଇତିହାସ ଗଢ଼ିଛୁ ଆମେ
ବିଶ୍ୱ ଚମକାଇ ଆମରି ନାମେ
ଡରିନାହୁଁ କେବେ ଡରିବୁ ନାହିଁ
ଜୀବନ କରିବୁ କୋରବାନ ।।୩।।
ଆମ ଦେଶକୁ ଯେ କରିବ ଲୋଭ
ତିଳେ ହେଲେ ତାର ନେହିବ ଲାଭ
ଇଞ୍ଚେ ହେଲେ ଜାଗା ଛାଡ଼ିବୁ ନାହିଁ
ନେହିବୁ କଦାପି ବେଇମାନ
ଆମେ ହିନ୍ଦୁ ଆମେ ମୁସଲମାନ ।।୪।।

## ସର୍ବେସନ୍ତୁନିରାମୟା

ହରପ୍ରିୟା ସାହୁ

ଆମେ ପୃଥିବୀ ମତାରସନ୍ତାନ
ଜାନମିଛୁ ଏ ଧରା ଧାମରେ
ଲଭିବାକୁ ସାର୍ଥକ ଜୀବନ ।।୧।।
ଗୀତା ଧର୍ମ, ଗୀତା ମନ୍ତ ସତ୍ୟ ଓ ଅହିଂସା ଆଚରି
ସର୍ବ ଜନେ ମିତ୍ର ଭାବ ରଖି
ଜୀବନର ନଉକା ବାହିଲେ
ବାପୁଙ୍କର ସପନର ରାମ ରାଜ୍ୟ
ପ୍ରତିଷ୍ଠା କରିବା ଆମେ ଏହି ଧରାଧାମେ ।।୨।।
ସର୍ବ ଧର୍ମେ ସମାନତା ସ୍ୱଦେଶୀ, ସ୍ୱର୍ଣଭାବନା
ବିନମ୍ର ବ୍ରତ ଆଚରି, ବ୍ରହ୍ମଚର୍ଯ୍ୟେ ହୋଇ ନିଷ୍ଠାପର
ସତ୍ କାର୍ଯ୍ୟରେ ଶରୀରକୁ କରି ନିୟୋଜନ
ମନ, ପ୍ରାଣ ସମର୍ପଣ କରି ଦେବତା ପୟରେ
ଆସ ଆମେ ବ୍ରତୀ ହେବା ସର୍ବୋଦୟ ପଥେ ।।୩।।
ଆମେ ସବୁ ପାଲଟିବା ମଣିଷରୁ ଦେବତା
ଦିବ୍ୟତାର ମଧୁର ପରଶରେ ହସୁଥିବ ଏ ମାନବ
କରୁଣାର ବାରିଧାରା ଧୋଇ ଦେବ ସବୁ ଦୁଃଖ
ଝରି ଯିବ କଣ୍ଠରୁ ଏବାଣୀ
ସର୍ବେ ଭବନ୍ତୁ ସୁଖୀନଃ ସର୍ବେସନ୍ତୁ ନିରାମୟା ।।୪।।



## ଶ୍ରଦ୍ଧାଞ୍ଜଳି

ଶରତ୍ ଚନ୍ଦ୍ର ବେହୁରା

ଦରଦୀ ହେ ଆଜି ଶ୍ଳାଘ୍ୟ ଜଗତେ ତୁମ ଜୀବନର ଧାରା
ତୁମେ ଆଣିଥିଲ ଦେଶ ସ୍ୱାଧୀନତା କରିଥିଲ କେତେ କାରା ।।
ନକରି ମନ୍ତର ନକରି ଯନ୍ତର ସତ୍ୟ ଅହିଂସାର ବଳେ
ଆଧ୍ୟାତ୍ମିକ ତତ୍ତ୍ୱ କରି ଆଗୁସାର ସ୍ୱରାଜ୍ୟ ଥାପିଲ ହେଳେ ।
ଶିଖାଇନ ତୁମେ ମନ୍ତ୍ରର ସାଧନା
ଶିଖାଇନ ତୁମେ ଯନ୍ତ୍ରର ଅର୍ଚ୍ଚନା
ଶିଖାଇନ ତୁମେ ହିଂସା ଭେଦଭାବ
ଶିଖାଇନ ତୁମେ ଅଣୁ ଅସ୍ତ୍ର ରାବ ।
କର୍ତ୍ତବ୍ୟ ପଥରେ ଲଭିଥିଲ ସିଦ୍ଧି
ନେତ୍ରୁ ବୁହାଇଛ ଅଶ୍ରୁର ବାରିଧି
ତୁମ ନାମଗାଇ ଜୟତୁ ଗାନ୍ଧିଜୀ
ହସି ଉଠେ ଆଜି ଧରା ।।
ଦରଦୀ ହେ ଆଜି ଶ୍ଳାଘ୍ୟ ଜଗତେ ତୁମ ଜୀବନର ଧାରା ।

## ନମୋ ନମୋ ବୀରପୁତ୍ର

ପ୍ରତିମା ମିଶ୍ର

ବାପୁଜୀ ! ତୁମେ ଚିର ଦୀପ୍ତିମାନ
ଜାଗ୍ରତ ପ୍ରହରୀ ସମ, ସ୍ୱାଧୀନତାର ଯଜ୍ଞ ବେଦୀରେ
ସପର୍ପିତ ତୁମର ଜୀବନ ।୧।
ବଳିଦାନର ସାଞ୍ଜୁପିନ୍ଧି ଅହିଂସା-ସତ୍ୟାଗ୍ରହର ଅସ୍ତ୍ରକୁ
ସୃଷ୍ଟିକଲ ଯୁଗ ଇତିହାସ
ତୁମରି ଆହ୍ୱାନ ଭରିଦେଲା କୋଟି କୋଟି ଶଙ୍କିତ ପ୍ରାଣରେ
ଶତ ଶତ ସିଂହର ସାହସ ।୨।
ଛିନ୍ନ ହେଲା ବିଦେଶୀ ନିଗଡ଼
ମୁକ୍ତ ହେଲା ଆମ ଭାରତ ଭୂଇଁ ।
ଶହୀଦ ବର୍ଗଙ୍କ ଆତ୍ମ-ବଳୀଦାନ
ବ୍ୟର୍ଥନାହିଁରେ ବ୍ୟର୍ଥ ନାହିଁ ।୩।
କିନ୍ତୁ ହାୟ ! ତୁମ ସ୍ୱପ୍ନର ଭାରତ କେଉଁଠାରେ ହଜିଗଲା ଆଜି,
ଅବତରି ଆସ ଏ ଭୂଇଁକୁ ଥରେ
ବିକଳ କଣ୍ଠର ଆର୍ତ୍ତ ନିବେଦନ ହେଜି ।୪।
ଦେବଭୂମି ଦିବ୍ୟଭୂମି, ଭାରତଜନନୀ
ନମୋ ନମୋ ବୀରପୁତ୍ର ନମସ୍ତେ ମା ଅଭୟ ଦାୟିନୀ ।୫।



# ସମସ୍ତଙ୍କର ମା'

୧୯୧୪ ମସିହାରେ ପ୍ରଥମ ମହାସମର ବୀର ।ତାଦ୍ୟ।ରେ ଯେତେବେଳେ ସାରା ଦୁନିଆ ତ୍ରସ୍ତ, ସେଇବର୍ଷ ଏକ ଶୁଭଲଗ୍ନରେ ମଧୁବାରିଷ୍ଟରଙ୍କ କଟକ ଅଦୂରବର୍ତ୍ତୀ ସତ୍ୟଭମାପୁର ଘରେ ସୁସ୍ୱର ରେ ବାଜିଉଠୁଛି ମଙ୍ଗଳବାଜଣା । ମଧୁବାବୁଙ୍କ ଅନୁଜ ଗୋପାଳବଲ୍ଲଭଙ୍କ କନ୍ୟାର ବିଭାଘର । କନ୍ୟାଙ୍କ ସର୍ବାଙ୍ଗ ଅଳଙ୍କାରାଚ୍ଛାଦିତ । ୨୫ ଭରି ସୁନାର ପଥରବସା ଚନ୍ଦ୍ରହାର, ମୁଦି, ଖଡୁ, ପାଉଁଜି, ହସ୍ତପଦ୍ମ, ଅଳକା, ପାଦପଦ୍ମ, ଦଣ୍ଡୀ, ନୋଥ, ନାଟମୟୂର, ମୁକ୍ତାଝରା, ଓସାରିଆ ଜଡ଼ଉତ ଅଳକା, ବାଜୁ, ଅନନ୍ତ, ଏହିପରି ଶହେଭରି ସ୍ୱର୍ଣ୍ଣାଳଙ୍କାର ସହ ବିବଧ ରୌପ୍ୟାଳଙ୍କାର, ବନାରସୀ ଶାଢ଼ୀ ଓ ଫିକା ମେଘବର୍ଣ୍ଣର ସୂକ୍ଷ୍ମ ଓଢ଼ଣୀରେ ସଜ୍ଜିତା ହୋଇ କନ୍ୟା ଦିଶୁଥାନ୍ତି ସତେ ଯେପରି ସୁନାପ୍ରତିମା । ବର ବି କିଛି ଊଣା ନଥାନ୍ତି । କଟକ ଖେରସ ଜମିଦାର ଆଭିଜାତ୍ୟ ସଂମ୍ପନ୍ନ ପରିବାର ସ୍ୱନାମଧନ୍ୟ ଆଇନଜୀବୀ ଗୋକୁଳାନନ୍ଦ ଚୌଧୁରୀଙ୍କର ସୁପୁତ୍ର ସେକାଳର ମହାର୍ଘ ଡେ଼ପୁଟି କଲେକ୍‌ଟର ଗୋପବନ୍ଧୁ । ଗୋଲାପି ବନାରସୀ ଲମ୍ବା ବେକବୁଜା ଚପକନ, ଗୋଡ଼ଚିପା ପାଇଜାମା, ନାଲି ମଖମଲ ଯୋତା ପିନ୍ଧି ବର ଦିଶୁଥାନ୍ତି ବାଦଶାହ । ଖେରସରୁ ସତ୍ୟଭାମାପୁର ଦୀର୍ଘ ବରଯାତ୍ରାରେ ହାତୀ, ଛତି, ପାଲିଙ୍କି, ସବାରି, ତମଜାନ ସବୁ ଥାଏ । ଏବକାର ନାଚୁଆ ପିଲା ନଥାନ୍ତି । ବରଯାତ୍ରୀ ଭାବରେ ଆସିଥାନ୍ତି ସ୍ୱନାମଧନ୍ୟ ବୀରକିଶୋର ରାୟ, ଲକ୍ଷ୍ମୀଧର ମହାନ୍ତି, ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରମୁଖ ବହୁ ଗଣ୍ୟମାନ୍ୟ ବ୍ୟକ୍ତି । ବହୁ ଜାକଜମକରେ ବିଭାଘର ସରିଲା ।

କନ୍ୟାଟି ପିଲାଦିନେ ବହୁତ ଗୋଲ୍‌ଗାଲ୍ ଥିବାରୁ ଶ୍ରଦ୍ଧାରେ ସମସ୍ତେ ଡ଼ାକୁଥିଲେ "ବେଲ" । ବୋଉ ବସନ୍ତକୁମାରୀ ନିଜର କ୍ରନ୍ଦନରତା ପନ୍ଦରବର୍ଷର ଅଲିଅଳୀ ଝିଅ ବେଲକୁ ସବାରୀରେ ବସାଇବାକୁ ଗଲାବେଳେ ମାତ୍ର ଦୁଇ ଚାରିପଦ କଥା ଉପଦେଶ ଛଳରେ କହିଥିଲେ- " ସମସ୍ତଙ୍କୁ ଭଲପାଇବୁ, ସମସ୍ତଙ୍କୁ ଯତ୍ନ କରିବୁ, କାହାରିଠାରୁ ପ୍ରତିଦାନର ଆଶା ରଖିବୁନାହିଁ; ଏପରି ଭାବରେ ଚଳିବୁ ଯେ, ତତେ ଯେପରି କେହି ଅଳସୁଆ ବା ନିର୍ବୁଦ୍ଧିଆ କହିବେ ନାହିଁ ।

### ଶୈଶବରୁ ଶିକ୍ଷା

ବେଲଙ୍କ ବାପା ଡ଼େପୁଟି କଲେକ୍‌ଟର । ବିହାରରଗୟା ଓ ମୁଜାଫରପୁର ଭଳି ବିଭିନ୍ନ ସ୍ଥାନରେ ଥିବାରୁ ବେଲର ଶୈଶବ ସେହି ଅଞ୍ଚଳରେ କଟିଥିଲା । ବାପା ଥିଲେ ଅତ୍ୟନ୍ତ ଚରିତ୍ରନିଷ୍ଠ ଓ ନୀତିମାନ । ଥରେ ବେଲ ପଡ଼ୋଶୀଙ୍କ ବାଡ଼ିରୁ ନକହି, ନପଚାରି ଫୁଲ ତୋଳିଆଣିବାରୁ ବାପାଙ୍କ ନିର୍ଦ୍ଦେଶରେ ଚପରାଶି ସହିତ ଯାଇ ଗୃହସ୍ୱାମୀଙ୍କୁ ଫୁଲତକ ଫେରାଇ ଦେଇ କ୍ଷମାପ୍ରାର୍ଥନା କରିଥିଲା । ଘରେ କାମ କରୁଥିବା ଲୋକଙ୍କ ପରି କାହାରିକୁ "ଚାକର" କହି ଅପମାନ ନ ଦେବାକୁ ବାପା ଛଅବର୍ଷ ଦିନୁଁ ତାଗିଦ୍ କରିଥିଲେ । ଏହି ସାମାନ୍ୟ ଅଥଚ ମହାର୍ଘ ଘଟଣାରୁ ବେଲ ପିଲାଦିନୁଁ ସୁଚରିତ୍ରା ହେବାର ସୌଭାଗ୍ୟ ଅର୍ଜ୍ଜନ କରିଥିଲା । କୌଣସି ପାଠଶାଳାକୁ ନ ଯାଇ ଗୃହଶିକ୍ଷକଙ୍କ ମାଧମରେ ସେ ଓଡ଼ିଆ, ସଂସ୍କୃତ, ବଙ୍ଗଳା ଓ ଇଂରାଜୀ ଶିଖିଥିଲେ । ଶାଶୁଘରକୁ ଯିବାବେଳେ ବୋଉଙ୍କ ଉପଦେଶ, ଏସବୁ ତାଙ୍କ ଚଳଣିକୁ ଅଧିକ ସୁଚୀମନ୍ତ କରାଇବାରେ ବହୁତ ପ୍ରେରଣାଦାୟକ ହୋଇଥିଲା ।

### ଶାଶୁଶ୍ୱଶୁରଙ୍କ ମନ କିଣିଲେ

ବେଲଙ୍କ ଶାଶୁ ପଦ୍ମାବତୀ ମଧ ବେଣ୍ଟକାର ଆଭିଜତ୍ୟ ପରିବାରର ସଦାନନ୍ଦ ମହାନ୍ତିଙ୍କ ଝିଅ । ପାଠଶାଠ ସେପରି କିଛି ପଢ଼ିନଥିଲେ ମଧ ଖଣ୍ଡାଧାରରେ ଚାଲନ୍ତି । ନ୍ୟାୟ, ନୀତି, ଔଚିତ୍ୟ,

କାୟଦା କଟକଣା, ମର୍ଯ୍ୟଦାବୋଧ ସବୁଥିରେ ଖୁଣିବା, ନିକୁଟିବା ଓ ସାମାନ୍ୟ ତ୍ରୁଟି ଦେଖିଲେ ବଡ଼ସାନ ଯେ ହୋଇଥାଉ ପଛେ, ତୁଣ୍ଡେ ତୁଣ୍ଡେ ବତାଇଦେବା ତାଙ୍କ ସ୍ୱଭାବର ବିଶେଷତ୍ୱ । ଅଥଚ ନୂଆବୋହୂଟିକୁ କେବେ ସମାଲୋଚନା କରିବା ବା ଆକଟିବା ସୁଯୋଗ ତାଙ୍କୁ ମିଳିନଥିଲା । ବୋହୂ ବାପା ମା'ଙ୍କ ଉପଦେଶକୁ ଅକ୍ଷରେ ଅକ୍ଷରେ ମାନି ରକ୍ଷଣଶୀଳା ଶାଶୂଙ୍କର ହୃଦୟ କିଣିନେଇଥିଲେ । ଶ୍ୱଶୁରଙ୍କ ସହ ଖାଇବାର ସୁଯୋଗ ତାଙ୍କୁ ମିଳିଯାଉଥିଲା ।

### ଅର୍ଦ୍ଧ ନାରୀଶ୍ୱର

ସ୍ୱାମୀ ଗୋପବନ୍ଧୁ ସତେ ଯେପରି ଦୀନଦୁଃଖୀଙ୍କ ସେବା ପାଇଁ ବିଭୁପ୍ରେରିତ ଥିଲେ । ଯାଜପୁରରେ ରିଲିଫ ଅଫିସରଥିଲାବେଳେ ବନ୍ୟା ଦୁର୍ଗତଙ୍କ ପାଇଁ ମନଲାଖି କିଛି କରିନପାରିବାରୁ ବିଭାଘରର ମାତ୍ର ୭ବର୍ଷ ପରେ ଚାକିରୀରୁ ଇସ୍ତଫା ଦେଇ ସ୍ୱାଧୀନତା ସଂଗ୍ରାମ ଯଜ୍ଞବେଦୀରେ ନିଜକୁ ଉତ୍ସର୍ଗ କରିଥିଲେ । ପତ୍ନୀ ବେଲ ସେତେବେଳକୁ ''ରମାଦେବୀ'' ହୋଇଗଲେଣି । ପତିପତ୍ନୀଙ୍କର ଅଭେଦ ପ୍ରେମ । ସତେ ଯେପରି ଅର୍ଦ୍ଧନାରୀଶ୍ୱର । ବପାଙ୍କ ସହ ବିଦେଶରେ ଥିଲାବେଳେ ବୀର ଖୁଦିରାମଙ୍କ ଫାଶୀ, ମା'ଙ୍କ ଠାରୁ ଗପ ମାଧ୍ୟମରେ ଯୋଗୀ ଅରବିନ୍ଦ, ବଙ୍କିମଚନ୍ଦ୍ରଙ୍କ ଆନନ୍ଦମଠ, ରାଣାପ୍ରତାପ, ଦେବୀଚୌଧୁରାଣୀ ଦେଶସେବା ପାଇଁ କାରାବରଣ, ସ୍ୱଦେଶୀ ଜିନିଷ ବ୍ୟବହାର ଭଳି ଜାତୀୟଗାଥା ଶୁଣି ଶୁଣି ତାଙ୍କ ମନ ଜାତୀୟ ଭାବନାରେ ପୁଷ୍ଟ ହୋଇଯାଇଥିଲା । ଏହାକୁ କାର୍ଯ୍ୟରେ ଦେଖାଇବାର ବେଳ ଏବେ ଆସିଗଲା ।

### ଅଳଙ୍କାର ଛାଡ଼ିଲେ

୧୯୨୧ ମାର୍ଚ୍ଚ ୨୪ ତାରିଖରେ ମହାତ୍ମାଗାନ୍ଧୀଙ୍କ କଟକ ନଈବାଲି, ବିନୋଦବିହାରୀ ଓ କଦମର ସୁଲ ସଭାରେ ପତି ପତ୍ନୀ ଦୁହେଁ ଯୋଗଦେଲେ । ଗାନ୍ଧୀଜୀଙ୍କ ଯାଦୁକରୀ ଆହ୍ୱାନରେ ଅସୂର୍ଯ୍ୟଂପଶ୍ୟା କୁଳବଧୂ ରମାଦେବୀ ନିଜର ସମସ୍ତ ଅଳଙ୍କାର ସ୍ୱାରାଜ୍ୟ ପାଣ୍ଠିକୁ ପ୍ରକାଶ୍ୟରେ ଉତ୍ସର୍ଗ କରିଦେଲେ । ଲୋଭ ମୋହ ତାଙ୍କୁ ଟଳାଇପାରିଲା ନାହିଁ ।

### ସଂଗ୍ରାମୀ ଜୀବନ

ଏଣିକି ଆରମ୍ଭ ହେଲା ତାଙ୍କର ସଂଗ୍ରାମୀ ଜୀବନ ଏଥିପାଇଁ ଘରସଂସାର ବାଧକ ହେବା ମନେକରି ଚୌଧୁରୀଦମ୍ପତି ଗାର୍ହସ୍ଥ୍ୟ ସଂଯମକୁ ବରଣ କରିନେଲେ । ସେତେବେଳକୁ ତାଙ୍କର ଗୋଟିଏପୁଅ ଓ ଗୋଟିଏ ଝିଅ । ୧୯୨୨ରୁ ୧୯୫୮ - ବିଭା ହେବାର ମାତ୍ର ୮ବର୍ଷ ଠାରୁ ଏହି କଠୋର ସାଧନାରୁ ସେ ଓହରି ନାହାନ୍ତି । ଏଣିକି ବୁଲୁ (ମନମୋହନ) ଓ ଚୁନୀ (ଅନ୍ନପୂର୍ଣ୍ଣା) କେବଳ ତାଙ୍କର ପୁଅ ଝିଅ ହୋଇ ରହିଲେ ନାହିଁ; ଶତ ସହସ୍ର ପୁଅ ଝିଅଙ୍କର ସେ ହୋଇଗଲେ ଅତି ଆପଣାର ମା' ।

### ଖୁଆଇବାରେ ଆନନ୍ଦ

ମା' ପରି ନିଜ ହାତରେ ରାନ୍ଧିବାଢ଼ି ଖୁଆଇବାରେ ତାଙ୍କର ଅପରିସୀମ ଆନନ୍ଦ । ଅନିଚ୍ଛା ସତ୍ତ୍ୱେ ତାଙ୍କ ତୁଣ୍ଡରୁ ଥରେ ବହାରିପଡ଼ିଲା, ''ରନ୍ଧାରେ ନୁହେଁ, ଖୁଆଇବାରେ ହିଁ ତରକାରୀର ଅସଲ ସୁଆଦ ଜଣାପଡ଼େ । ଆମ ଝିଅବୋହୂମାନଙ୍କୁ ଏହି କଥାରମର୍ମ ଠିକ୍ ଠିକ୍ ବୁଝାଇଦିଆଗଲେ, ପରିବାର ବହୁତ ମଧୁମୟ ହୋଇ ଉଠନ୍ତା ।'' ସି. ଏଫ୍ (ଦୀନବନ୍ଧୁ) ଏଣ୍ଡୁଜଙ୍କ ପରି ବିଲାତୀୟ ସମାଜସେବୀ ତାଙ୍କ ରାନ୍ଧଣାକୁ ସ୍ୱୀକାର କରିଛନ୍ତି ।

ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ରମାଦେବୀ କାରାବରଣ କଲେ । କଟକ ଓ ହଜାରିବାଗ ଭଳି ସ୍ଥାନରେ ବନ୍ଦୀଜୀବନ କଟାଇଲେ । ଟିକିଏ ହେଲେ ମନ ଦବିଗଲା ନାହିଁ । ସହବନ୍ଦିନୀମାନଙ୍କୁ ପାଠପଢ଼ାଇ ଉତ୍ତମ ଚଳଣି ଓ ଉତ୍ତମ ରନ୍ଧାବଢ଼ା ଶିଖାଇ ମନୋବଳକୁ ଦୃଢ଼ କରାଇବା ହେଲା ତାଙ୍କର ଦୈନନ୍ଦିନ କାରାଜୀବନ । କୌଣସି ବନ୍ଦିନୀ ଶୋକାତୁରା ହେଲେ ତାଙ୍କୁ ପାଖରେ

ଖୁଆଇ ଶାନ୍ତ୍ୱନା ଦେବାରେ ଆନନ୍ଦ ପାଉଥିଲେ ।

### ବାନରସେନାଙ୍କ ମା'

୧୯୩୦ର ଆଇନ ଅମାନ୍ୟ ଆନ୍ଦୋଳନ ସ୍ୱାଧୀନତା ସଂଗ୍ରାମର ଏକ ଯୁଗାନ୍ତକାରୀ ଅଧ୍ୟାୟ । ବାପାମା'ଙ୍କୁ ଛାଡ଼ି ବହୁ ଛୋଟ ଛୋଟ ପିଲା ସତ୍ୟାଗ୍ରହ ଶିବିରକୁ ଆସି ନିଶା ଦୋକାନରେ ପିକେଟିଂ କଲେ । ପୁଲିସର ନିର୍ମମ ବେତ୍ରାଘାତରେ ହାତ ସେମାନଙ୍କର ରକ୍ତରଞ୍ଜିତ । ଏତେବେଳେ ମା' ରମାଦେବୀ ହିଁ ବାନରସେନାମାନଙ୍କର ଏକମାତ୍ର ଭରସା । ନିଜ ପେଟର ପିଲାପରି ସେମାନଙ୍କୁ ନିଜହାତରେ ଖୁଆଇ, ପିଠିରେ ହାତ ବୁଲାଇ ଯନ୍ତ୍ରଣାର ଉପଶମ କରାଇବାରେ ସେ ଥିଲେ ସିଦ୍ଧହସ୍ତା । ସ୍ୱୟଂ ରାମଚନ୍ଦ୍ର ରଣକ୍ଲାନ୍ତ ବାନରସେନାଙ୍କୁ ଆଉଁସି ଦେଲାପରି ।

କୁଜଙ୍ଗ ଲବଣ ସତ୍ୟାଗ୍ରହରେ ପାଖଆଖର ଶତାଧିକ ମହିଳାଙ୍କ ସମେତ ରାଣୀ ରତ୍ନମାଳୀ ଜେମାଙ୍କ ଯୋଗଦାନ ମା' ରମାଦେବୀଙ୍କ ନେତୃତ୍ୱ ଓ ସାଂଗଠନିକ ଶକ୍ତିର ଅନୁପମ ନିଦର୍ଶନ । ତାଙ୍କରି ପ୍ରେରଣାରେ ଶ୍ରୀଜଙ୍ଗ ଅଞ୍ଚଳରୁ ପନ୍ଦରଶହ ମହିଳା ଲବଣ ଆଇନ ଭଙ୍ଗ କରିଥିଲେ ।

### ହଜୁରରୁ ମଜୁର ହେଲେ

ତାଙ୍କ ଚାରି କାନ୍ଥର ଘର ଆଉ ଘର ହୋଇ ରହିଲା ନାହିଁ । ସାରା ରାଜ୍ୟକୁ ସେ ନିଜର ଘର ମନେକଲେ । ଅଳକାନଦୀ କୂଳରେ ଆଶ୍ରମ ଜୀବନଯାପନ, ୧୯୩୪ ମଇ ୯ତାରିଖରୁ ଶ୍ରୀକ୍ଷେତ୍ର ପୁରୀରୁ ଶୁଭାରମ୍ଭ ମହାତ୍ମାଗାନ୍ଧୀଙ୍କ ହରିଜନ ପଦଯାତ୍ରାରେ ସପରିବାର ଭାଗ ନେଇ ଖାଦ୍ୟପେୟାଦି ବ୍ୟବସ୍ଥାର ସୁଶୃଙ୍ଖଳ ପରିଚାଳନା, ପୁରୀରେ ଆୟୋଜିତ ଅଖିଳ ଭାରତ କଂଗ୍ରେସ ଶିବିରରେ ନେତୃତ୍ୱ, ଇଜ୍ଜତରକ୍ଷା ପାଇଁ ଛୁରୀ ଚାଳନା ଶିକ୍ଷାରେ ତାଲିମ୍ ଗ୍ରହଣକୁ ସମର୍ଥନ, ଧୋୟାଞ୍ଚଳ ବରୀରେ ଦୀର୍ଘ ଆଠବର୍ଷ ମୂଲିଆ ମୂଲିଆଣୀଙ୍କ ସହ ଜଣେହୋଇ ମିଶି ଗ୍ରାମ୍ୟ ଜୀବନଯାପନ କରି ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ ଆତ୍ମଶକ୍ତିରେ ବଳୀୟାନ୍ ସ୍ୱାଧୀନତା ସୈନିକ ସୃଷ୍ଟି, ସ୍ୱାଧୀନୋତ୍ତର କାଳରେ ଉତ୍ତର ପୂର୍ବାଞ୍ଚଳରେ ଶରଣାର୍ଥୀ ଶିବିରରେ ସେବା କାର୍ଯ୍ୟ, ସନ୍ଥ ବିନୋବାଙ୍କ ମାର୍ଗ ଦର୍ଶନରେ ସଂଗଠିତ ଭୂଦାନ ଯଜ୍ଞରେ ନିଜକୁ ଉତ୍ସର୍ଗ କରି ସ୍ୱାମୀଙ୍କ ସହ ଗ୍ରାମୁଁଗ୍ରାମାନ୍ତର ପଦଯାତ୍ରା ମାଧ୍ୟମରେ ଭୂମିହୀନଙ୍କୁ ଭୂମିଦାନ କରାଇ ଦେଶକୁ ଶ୍ରେଣୀ ସଂଘର୍ଷରୁ ରକ୍ଷା, (୧୯୫୫) ତାଙ୍କ କର୍ମବହୁଳ ସଂଗ୍ରାମ ଜୀବନର ଝଲକ ମାତ୍ର ।

### ପରିଣତ ବୟସରେ ସଂଗ୍ରାମ

୧୯୫୮ ଅପ୍ରେଲ ୨୯ରେ ତାଙ୍କର ପରମପୂଜ୍ୟ ସ୍ୱାମୀ ଗୋପବନ୍ଧୁ ଚୌଧୁରୀ ପରପାରକୁ ପ୍ରୟାଣ କଲେ । ପତି ବିଧୁରା ରମାଦେବୀ ତଥାପି ବିଶ୍ରାମ କ'ଣ ଜାଣିଲେ ନାହିଁ । ଦେଶ କ୍ରମେ ଉଚ୍ଛୃଙ୍ଖଳ ହେଉଛି ଅନୁଭବ କରି ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଆପତକାଳୀନ ଆଇନ ଜାରି କଲେ । ରମାଦେବୀଙ୍କର ଦେହ ସହିଲାନାହିଁ । ବୟସ ଆସି ହେଲାଣି ୭୬ । ପରିପକ୍ୱ ଆମ୍ବ ଲସିଗଲା ପରି ଦେହ କ୍ରମେ ଶୁଖିଯାଉଛି; ଅଥଚ ଟାକୁଆ ଟାଣ ରହିଛି । ସେହି ପୂଷଳ ମନକୁ ନେଇ ଆପତକାଳୀନ ଆଇନ ନାଗରିକ ସ୍ୱାଧୀନତାକୁ ବିପନ୍ନ କରିବା ସ୍ପଷ୍ଟ ଅନୁଭବ କରି ତହିଁର ଦୃଢ଼ ବିରୋଧ କଲେ । ବହୁ ନେତା ଓ କର୍ମୀ ବନ୍ଦୀ ହେଲେ ମଧ ତାଙ୍କୁ ବନ୍ଦୀଶାଳାକୁ ନେବାକୁ ସରକାର ସାହସ କଲେ ନାହିଁ । ତାଙ୍କ ବାସସ୍ଥାନ କଟକ ଥୋଡ଼ିଆ ସାହି ଗୁଣନିଧି ଭବନରେ ତାଙ୍କୁ ଅନ୍ତରୀଣ ବନ୍ଦୀଜୀବନ ବିତାଇବାକୁ ପଡ଼ିଲା ।

### ସମ୍ମାନ ଲାଭ

ଉତ୍କଳ ବିଶ୍ୱବିଦ୍ୟାଳୟ ସମସ୍ତଙ୍କର ମାତୃସ୍ଥାନୀୟା ଏହି ମହୀୟସୀଙ୍କୁ ସମ୍ମାନସୂଚକ ଡ଼କ୍ଟରେଟ୍ ଉପାଧି ପ୍ରଦାନ କରି ଗୌରବାନ୍ୱିତ ହୋଇଛନ୍ତି । ନାରୀ ଓ ଶିଶୁ କଲ୍ୟାଣ ପାଇଁ ଏକଲକ୍ଷଟଙ୍କାର ଯମୁନାଲାଲ ବେଜାଜ ପୁରସ୍କାର ତାଙ୍କୁ ପ୍ରଦତ୍ତ ହୋଇଛି । ଭୁବନେଶ୍ୱରରେ

ସରକାର ତାଙ୍କ ନାମରେ ବାଳିକା ମହାବିଦ୍ୟାଳୟ ପ୍ରତିଷ୍ଠା କରିଛନ୍ତି ଏଇପରି କେତେ ।

### ଆଇନକାନୁନ ହାର ମାନିଲା

୧୯୮୫ ଜୁଲାଇ ୨୨ତାରିଖରେ ମା' ରମାଦେବୀ ଐହିକ ଜଞ୍ଜାଳ ସମାପନ କରି ୰ସ୍ୱାମୀଙ୍କ ପାଖକୁ ବହାରିଗଲେ । ସେ କୌଣସି ସରକାରୀ ପଦପଦବୀରେ ନଥିଲେ ମଧ୍ୟ ରାଷ୍ଟ୍ରୀୟ ମର୍ଯ୍ୟଦା ସହକାରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସଂପନ୍ନ ହେଲା । ତିନିଦିନ ରାଷ୍ଟ୍ରିୟ ଶୋକ ପାଳନ କରାଗଲା । ଉଚ୍ଚ ନ୍ୟାୟାଳୟ ମଧ୍ୟ ଶୋକପାଳନ କଲେ । ଉପକୂଳରକ୍ଷୀ ଏକ ଜାହଜକୁ 'ରମାଦେବୀ' ବୋଲି ସରକାର ନାମିତ କରାଇଲେ । ଶତସହସ୍ର ପରିବାର ନିଜ ଘରର ଆତ୍ମୀୟଙ୍କୁ ଶୁଦ୍ଧ ହେଲାପରି ଏଗାରଦିନ ପାଳିଲେ ।

### ଆଦର୍ଶ ଭାରତୀୟ ନାରୀ

ଓଡ଼ିଶାରେ ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭରନାଥ ପାଣ୍ଡେ କହିଲେ- ''ସେ ମୋର ବଡ଼ଭଉଣୀ; ମାତ୍ର ମୁଁ ତାଙ୍କୁ ମା' ଭାବରେ ଦେଖିଆସିଥିଲି '' । ଲେଖାରେ ମାଙ୍କ ଦେଢ଼ଶୂର ପ୍ରଫେସର ଆର୍ତ୍ତବଲ୍ଲଭ ମାହାନ୍ତି କହନ୍ତି- ''ସେ କେତେ ଉପରକୁ ଉଠିଲାଣି ମାନ ସମ୍ମାନରେ । ମାତ୍ର ମୋ ପାଖରେ ଠିଆ ହେଲାବେଳେ ଓଢ଼ଣା ଟାଣୁଛି. ମୋ ମୁହଁକୁ ସିଧା ସଳଖ ଚାହିଁ କଥା କହୁନାହିଁ । ତା' ଭଳି ଜଣେ ଭାରତୀୟ ନାରୀ କୁ ପାଇ ଆମେ ଧନ୍ୟ ହେଉଛୁ'' ।

### କରୁଣାର ପ୍ରତୀକ

ଇହୁଦୀ ଧର୍ମଶାସ୍ତ୍ରରେ କୁହାଯାଇଛି -''କଠିନ ଲୁହାକୁ ଅଗ୍ନି ତରଳାଇଦିଏ, ଜଳ ଅଗ୍ନିକୁ ନିର୍ବାପନ କରେ, ବଉଦ ଜଳକୁ ବାଷ୍ପ କରିପକାଏ, ପବନ ବଉଦକୁ ଉଡ଼ାଇଦିଏ, ମଣିଷ ପବନକୁ ରୋଧ କରିପାରେ, ନିଦ୍ରା ମଣିଷକୁ କାବୁ କରେ, ମରଣ ନିଦ୍ରାକୁ ଜୟ କରିପାରେ; ମାତ୍ର ସର୍ବଶକ୍ତି ମାନ କରୁଣା ହିଁ ମୃତ୍ୟୁଞ୍ଜୟୀ ।

### ମରି ମଧ୍ୟ ଅମର ହେଲେ

ସେଦିନ ଅଗଣିତ ଶୋକାକୁଳିତ ଆବାଳବୃଦ୍ଧ ବନିତାଙ୍କ ଗହଣରେ ଶବବାହକଗଣ ରମାଦେବୀଙ୍କ ଲୌକିକ ଶରୀରକୁ ଚିତାଗ୍ନିରେ ସ୍ଥାପନ କରନ୍ତେ ଆରକ୍ଷୀଗଣଙ୍କ ଦ୍ୱାରା ଶୋକ ବିଗୁଲ ବାଜିଉଠିଲା । ପୁତ୍ର ମନମୋହନ ମୁଖାଗ୍ନି ଦେଲେ ଚିତାଗ୍ନି ଜଳିଉଠିଲା ବେଳେ ଶତସହସ୍ର କଣ୍ଠରେ ଧ୍ୱନିତ ହେଲା - ''ରମାଦେବୀ ଅମର ହେଲେ'' । ବସ୍ତୁତଃ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ ସମସ୍ତଙ୍କର ମା' ରମାଦେବୀ କାଳକାଳକୁ ଅମର ହୋଇ ରହିଗଲେ ।

ଜନ୍ମ-୧୮୯୯-ଜୁଲାଇ ୭
ପରଲୋକ-୧୯୮୫-ଜୁଲାଇ ୨୨
(ପୁରୀ ସର୍ବୋଦୟ ମେଳାନୁକୂଲ୍ୟରେ ପ୍ରଚାରିତ)

### ଓଡ଼ିଶା ପ୍ରଦେଶ ଗଠନରେ ବ୍ରିଟିଷ ପ୍ରଶାସକଙ୍କ ଅବଦାନ

୧୮୭୦ ମଇ ୪ ତାରିଖରେ କଲିକତା ସ୍ଥିତ ଏସିଆଟିକ ସୋସାଇଟି ଆନୁକୂଲ୍ୟରେ ଆୟୋଜିତ ସଭାରେ ବାଲେଶ୍ୱର ଜିଲାପାଳ ବହୁଭାଷାପ୍ରବୀଣ **ଜନ୍ ବିମ୍ସ** ଓଡ଼ିଆ ଭାଷାର ପ୍ରାଚୀନତ୍ୱ ପ୍ରତି ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ । ଏହା ଫଳରେ ବଙ୍ଗ ସରକାର ତାଙ୍କ ଡିଭିଜନରେ ଓଡ଼ିଆ ଭାଷା ପ୍ରଚଳନ କଲେ ।

ମାନ୍ଦ୍ରାଜରେ ଅବସ୍ଥାପିତ ଟି.ଜେ.ମଲଟିବି A Practical hand book of Oriya Language ନାମକ ସ୍ୱରଚିତ ଗ୍ରନ୍ଥରେ ବଙ୍ଗ, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଓ ବିଭିନ୍ନ ଦେଶୀୟ ରାଜ୍ୟରେ ଥିବା ୯୦ ଲକ୍ଷ ଓଡ଼ିଆଙ୍କୁ ଏକଶାସନାଧୀନ ପାଇଁ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ଗଠନପାଇଁ **ସାର ଷ୍ଟାଫୋର୍ଡ ନର୍ଥକୋଟ** ବ୍ରିଟିଶ ସରକାରଙ୍କୁ ସୁପାରିଶ କଲେ । Indian Polity ନାମକ ସ୍ୱ-ଲିଖିତ ଗ୍ରନ୍ଥରେ **ମେଜର ଚେଷନୀ** ସ୍ୱତନ୍ତ୍ର ଓଡ଼ିଶା ଗଠନପାଇଁ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ । ୧୯୦୦ ଡିସେମ୍ବର ୧୬ରେ **ବଡ଼ଲାଟ ଲର୍ଡ କର୍ଜନ** ପୁରୀ, ଭୁବନେଶ୍ୱର ଓ କଟକ ପରିଦର୍ଶନ କରିଥିଲେ । ଓଡ଼ିଶାର ଅତୁଳନୀୟ ଭାସ୍କର୍ଯ୍ୟ ପୂର୍ଣ୍ଣ ପ୍ରାଚୀନ କାରିଗରିର ଦୁର୍ଦ୍ଦଶାରେ ମର୍ମାହତ ହୋଇ ପ୍ରଶାସନିକ ବିଚ୍ଛେଦତା ହିଁ ଏହାର ଏକମାତ୍ର କାରଣ ବୋଲି ହୃଦବୋଧ କଲେ । ବିଚ୍ଛିନାଞ୍ଚଳ ମିଶ୍ରଣପାଇଁ ତାଙ୍କର ଦୃଢ଼ ସମର୍ଥନ ଯୋଗୁ ୩୩୭ ବର୍ଷର ବିଚ୍ଛେଦରେ ସମ୍ବଲପୁର, କଳାହାଣ୍ଡି, ପାଟଣା, ସୋନ୍‌ପୁର, ବାମଣ୍ଡା, ଗାଙ୍ଗପୁର ଓ ବଣାଇ ଓଡ଼ିଶା ଡିଭିଜନ ସହ ସାମିଲ ହେଲା କୁଳବୃଦ୍ଧ ମଧୁସୂଦନ ଓ କୃଷ୍ଣ ଚନ୍ଦ୍ର ଗଜପତି ପ୍ରମୁଖଙ୍କ ପରି ଏମାନେ ମଧ୍ୟ ସ୍ମରଣୀୟ ।

# ଟେଲିଭିଜନରୁ ତ୍ରାହି ମିଳୁ

ଡକ୍ଟର ସୂର୍ଯ୍ୟକାନ୍ତ ଦାସ

ରାଜଧାନୀ ବରମୁଣ୍ଡା ହାଉସିଂ କଲୋନୀରେ ଶକ୍ତିମାନ ଷ୍ଟାଇଲରେ ଘୂରିବାକୁ ଚାହିଁଥିବା ସ୍କୁଲଛାତ୍ରର ଶୋଚନୀୟ ମୃତ୍ୟୁ ଘଟିଛି । ହୃଦୟ ବିଦାରକ ଏ ଖବର ପଢିଲା ପରେ ମନେହୁଏ ଟିଭିରୁ ତ୍ରାହି କର ବୋଲି ଡାକିଦେବା ସମୟ ଆସିଗଲା ।

ଯୁକ୍ତରାଷ୍ଟ୍ର ଆମେରିକାରେ ଗୋଟିଏ ନୂଆ ସଂଗଠନ ସ୍ଥାପିତ ହୋଇଛି । ଏହାର ନାମ TV Free America, White Dot. ଟେଲିଭିଜନ ଖୋଲିଲେ ପର୍ଦା ଉପରେ ଯେଉଁ ଧବଳ ଆଲୋକ ଦେଖାଯାଏ, ତାହାକୁ କୁହାଯାଇଛି ହ୍ୱାଇଟ୍ ଡଟ୍ । ଟିଭି ଚାଲୁ ହେବାର ଏହା ପ୍ରଥମ ସଙ୍କେତ ।

ଏହି ଆମେରିକାନ୍ ସଂଗଠନର ଉଦ୍ଦେଶ୍ୟ ହେଲା ଯେ, ପରିବାରମାନଙ୍କରେ ଟେଲିଭିଜନ ଦେଖିବାକୁ ବ୍ୟଗ୍ରତା ହ୍ରାସ ପାଉ । ଘଣ୍ଟା ଘଣ୍ଟା ଧରି ଟେଲିଭିଜନ ସାମ୍ନାରେ ବସି ସ୍କ୍ରିନ୍‌କୁ ଅନେଇ ରହିବାଟା ଅନୁଚିତ । ଟି.ଭି.ଫ୍ରି ଆମେରିକା ସଂଗଠନ କହୁଛି, ଆମେରିକାନ୍‌ମାନେ ବର୍ଷକୁ ଅନ୍ତତଃ ପକ୍ଷେ ଗୋଟିଏ ସପ୍ତାହ ଆଦୌ ଟେଲିଭିଜନ ଦେଖନ୍ତୁ ନାହିଁ । ଏହାକୁ TV Turn off week ରୂପେ ୧୯୯୫ ସାଲ୍‌ରୁ ପାଳନ କରାଯାଇ ଆସୁଛି । ୧୯୯୮ ଏପ୍ରିଲ୍ ୨୨ରୁ ୨୮ ତାରିଖ ପର୍ଯ୍ୟନ୍ତ ଟେଲିଭିଜନ ଦେଖିବାରୁ ନିବୃତ୍ତ ରହିବା ସପ୍ତାହ ଆମେରିକାରେ ପାଳିତ ହୋଇଥିଲା ।

କେବଳ ଯୁକ୍ତରାଷ୍ଟ୍ର ନୁହେଁ କାନାଡାରେ, ବିଲାତରେ, ଡେନ୍‌ମାର୍କରେ, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡରେ ମଧ୍ୟ TV Turn off Week ପାଳିତ ହେଉଛି । ସପ୍ତାହଯାକ ନିଜଘରେ ଟେଲିଭିଜନ ନ ଖୋଲିବାକୁ ଏହି ସଂଗଠନ ସଦସ୍ୟମାନେ ଅଙ୍ଗୀକାର ବଦ୍ଧ ହୋଇଛନ୍ତି ।

ଯୁକ୍ତରାଷ୍ଟ୍ର, ଚିକାଗୋ ମହାନଗରୀ ବାସିନ୍ଦା ଜଣେ ମହିଳା Jean Lotus ଏହି ଆନ୍ଦୋଳନ ଆରମ୍ଭ କରିଛନ୍ତି । ସେ ରହୁଥିବା ଅଟ୍ଟାଳିକାର ତୃତୀୟ ନିବାସୀ ଜଣେ ଗୃହିଣୀ ଥରେ ଟେଲିଭିଜନ ପ୍ରୋଗ୍ରାମରେ ବିରକ୍ତ ହୋଇ ତାଙ୍କ ଝିଡିକି କୋଠରି ବାଟେ ଟିଭି ସେଟ୍‌କୁ ରାସ୍ତା ଉପରକୁ ଫିଙ୍ଗିଦେଲେ । ଗୃହିଣୀଙ୍କ ପାଇଁ ଏହାଥିଲା ଟେଲିଭିଜନ କାର୍ଯ୍ୟକ୍ରମ ବିରୋଧରେ ଦୃଢ ପ୍ରତିବାଦ । ଅନେକ ସମୟରେ ଟେଲିଭିଜନ ବଡ ବିରକ୍ତିକର ହୋଇପଡେ । ଗୃହିଣୀ ଜଣକ ଅସ୍ତବ୍ୟସ୍ତ ହୋଇ ଶେଷକୁ ଟିଭିକୁ ଫିଙ୍ଗିଦେଲେ । ଏହି ଘଟଣା ଦେଖି ସେହି ଫ୍ଲାଟ୍‌ରେ ରହୁଥିବା ଜିନ୍ ଲୋଟସ୍ ନାମ୍ନୀ ମହିଳା ବିସ୍ମିତ ହୋଇଥିଲେ । ସେ ଭାବିଲେ ଅନେକ ପରିବାର ଅଛନ୍ତି ଯାହାଙ୍କ ବୈଠକଖାନାରେ ଟେଲିଭିଜନ ନାହିଁ । ସେମାନେ ଟେଲିଭିଜନ କିଣିନାହାନ୍ତି; ଦେଖନ୍ତି ନାହିଁ । ଏହି ଶ୍ରେଣୀର ବନ୍ଧୁମାନଙ୍କୁ ଏକମତ କରାଇ ଜିନ୍ ଲୋଟସ୍ ant-TV movement ଆରମ୍ଭ କରି ଦେଲେ । ଗୋଟିଏ ତ୍ରୈମାସିକ ପତ୍ରିକା ପ୍ରକାଶ କଲେ । ଚିକାଗୋ ମହାନଗରୀରୁ ପ୍ରକାଶିତ ଏହି ପତ୍ରିକାର ନାମ ରଖାଯାଇଛି White Dot.

ଟି ଭି - ଫ୍ରି ଆମେରିକା ସଂଗଠନ ଏକ୍‌ଜିକ୍ୟୁଟିଭ୍ ଡାଇରେକ୍ଟରଙ୍କ ନାମ ହେଉଛି Henery Labalme. ଏହି ସଂଗଠନ କେନ୍ଦ୍ର କାର୍ଯ୍ୟାଳୟ ଯୁକ୍ତରାଷ୍ଟ୍ର ରାଜଧାନୀ ୱାଶିଙ୍ଗଟନ୍‌ରେ ଅବସ୍ଥିତ । ମିଷ୍ଟର ହେନ୍‌ରି ଲାବାମ୍ ତଥ୍ୟ ପ୍ରଦାନ କରିଛନ୍ତି-ଟିଭି ଅନବରତ ଦେଖୁଥିବା ଲୋକଙ୍କର ବହୁବିଧ ବ୍ୟାଧି ଉପୁଜିଥାଏ - "insomnia, depression, obesity, illiteracy, wasteful consumerism and a host of other modern maladis at least in past, due to too much time spent staring at the box".

'ଟିଭି-ଫ୍ରି ଆମେରିକା' ପ୍ରଦତ୍ତ ତଥ୍ୟରୁ ଜଣାଯାଉଛି, ଆମେରିକାନ୍ ପରିବାରରେ ବର୍ତ୍ତମାନ ହାରାହାରି ଦୁଇକୋଟିରୁ ଅଧିକ ଟେଲିଭିଜନ ରହିଛି । ୧୯୯୫ରେ ହାରାହାରି ୮୨ ଦଶମିକ ୨୫ ଶତାଂଶ ପରିବାରରେ ଟିଭି ଥିଲା । ସାଧାରଣ ଆମେରିକାନ୍ ଜଣେ ନିଜ ଘରେ ୩ ଦଶମିକ ୭ ଘଣ୍ଟା ସମୟ ଦୈନିକ ଦେଖି କାଳ କଟାଏ । ଦୈନନ୍ଦିନ ଯେତେ ସମୟ ଟିଭି ପାଖରେ ଜଣେ ଆମେରିକାନ୍ ବସନ୍ତି, ତାହା ସୁମାରି କଲେ ବର୍ଷକୁ ହେଉଛି ୫୬ ଦିନ ଅର୍ଥାତ୍ ବର୍ଷକରେ ହାରାହାରି ଦୁଇମାସ । ଜଣେ ଆମେରିକାନ୍‌ର ହାରାହାରି ଆୟୁଷ ୭୨ ବର୍ଷ । ତନ୍ମଧ୍ୟରୁ ଜୀବନକାଳ ମଧ୍ୟରେ ୧୧ ବର୍ଷ ଟେଲିଭିଜନ ଦେଖିବାରେ ଯାଏ ।

ଯୁକ୍ତରାଷ୍ଟ୍ରରେ ଜୀବନଧାରଣ ଶୈଳୀକୁ ଟେଲିଭିଜନ ଦର୍ଶନରୁ ମୁକ୍ତ ରଖିବାକୁ ଟିଭିମୁକ୍ତ ଆମେରିକା ନାମକ ସଂଗଠନ ଅଭିଯାନ ଚଳାଉଛି । ଆମେରିକାରେ ସଂଗଠିତ ହୋଇ କେତେକ ଲୋକ କହିଲେଣି ଟିଭି ଆସକ୍ତି ଓ ଆନୁଗତ୍ୟକୁ ଦୈନନ୍ଦିନ ଜୀବନରୁ ବାଦ୍ ଦେବାକୁ ହେବ । ଟେଲିଭିଜନ ଦେଖିବା ବନ୍ଦ କରନ୍ତୁ, ଟିଭି ସୁଇଚ୍ ଅଫ୍ କରିଦିଅନ୍ତୁ । ଅନ୍ତତଃ ବର୍ଷକୁ ଗୋଟିଏ ସପ୍ତାହ ଟେଲିଭିଜନରେ ନାଚ ତାମସା, ଖେଳକୁଦ, ଆକ୍ରମଣ-ପ୍ରତିଆକ୍ରମଣ ଦେଖି ମଜ୍ଜି ରହିବା ଅଭ୍ୟାସରୁ ନିଜକୁ ନିଗତ ରଖନ୍ତୁ । "It is time to turn off TV.

("ସମୟ" ତା ୮.୨.୯୯ ରୁ ଗୃହୀତ)

## ଉତ୍କଳର ମଣି

ଉତ୍କଳର ମଣି କହିଲେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ହିଁ ବୁଝାଏ । ୧୮୭୭ ଅକ୍ଟୋବର ୯ ତାରିଖରେ ସତ୍ୟବାଦୀର ଅଦୂରବର୍ତ୍ତୀ ଭାର୍ଗବୀ ନଦୀର ବାମ ତଟବର୍ତ୍ତୀ ସୁଆଣ୍ଡୋ ଗ୍ରାମରେ କୌଶିକ ଗୋତ୍ରୀ ପିତା ଦୈତ୍ୟାରୀ ଦାଶ ଓ ମାତା ସ୍ୱର୍ଣ୍ଣମୟୀ ଦେବୀଙ୍କଠାରୁ ତାଙ୍କର ଜନ୍ମ । ଘର ଦିଅଁ ବିନୋଦ ବିହାରୀଙ୍କ ଆଶିଷ ଲାଭକରି ଗୋପବନ୍ଧୁ ହୋଇଥିଲେ ପ୍ରଥିତ ଯଶା । ଏକାବନ ବର୍ଷ ଜୀବନ କାଳ ମଧ୍ୟରେ ଦୁଃଖିରଙ୍କିଙ୍କ ଏକନିଷ୍ଠ ସେବା, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର ଓ ଐତିହାସିକ କୃପାସିନ୍ଧୁ - ଚାରିସଖାଙ୍କୁ ନେଇ ସତ୍ୟବାଦୀରେ ମଣିଷ ତିଆରି ଲକ୍ଷ୍ୟରେ ବନବିଦ୍ୟାଳୟ ପ୍ରତିଷ୍ଠା (୧୯୦୯), ବିହାର ଓଡ଼ିଶା କାଉନ୍‌ସିଲ୍‌ର ଭାବରେ ଆଦର୍ଶ ବ୍ୟବସ୍ଥାପକତା (୧୯୧୬), ସ୍ୱନାମଧନ୍ୟ "ସମାଜ" ସଂବାଦପତ୍ରର ପ୍ରତିଷ୍ଠା ଓ ଦେଶମିଶ୍ରଣ ଆନ୍ଦୋଳନରେ ପୁରୋଧା (୧୯୧୯), ସ୍ୱାଧୀନତା ସଂଗ୍ରାମର ସୈନିକ ଭାବରେ ଓଡ଼ିଶାକୁ ଜାତୀୟ କଂଗ୍ରେସ ଓ ମହାତ୍ମାଗାନ୍ଧୀଙ୍କୁ ଆଣିବାରେ (୧୯୨୧) ସାର୍ଥକତା, ପୁରୀ, କଟକ, ଖୋରଧା ଓ ହଜାରୀବାଗରେ ବନ୍ଦୀ ଜୀବନ, "ବନ୍ଦୀର ଆତ୍ମକଥା", 'କାରାକବିତା', 'ଅବକାଶ ଚିନ୍ତା', 'ଗୋ ମାହାତ୍ମ୍ୟ' ନଚିକେତା ଉପାଖ୍ୟାନାଦି ରଚନା ମାଧ୍ୟମରେ ଶରୀର - ମନ ଓ ଆତ୍ମାର ବିକାଶ ସାଧନ, ଦୁଇ ପକ୍ଷକୁ ମିଳାଇ ମୋକଦମାରେ ଆପୋଷ ଫଏସଲାରେ ଯଥାର୍ଥ ଅଧିବକ୍ତା, ଛାତ୍ର - ଶିକ୍ଷକ - କବି - ଭାବକ ଓ ସମାଜସେବୀ ମାନଙ୍କ ପାଇଁ ସଦା ସଞ୍ଜୀବି ହୋଇ ରହିଛି । ୧୯୨୪ ଜୁନ ୨୬ ତାରିଖରେ କଟକରେ ଅନୁଷ୍ଠିତ ପ୍ରାଦେଶିକ ରାଜନୀତିକ ସମ୍ମେଳନରେ ପୁରୋଧା ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଗୋପବନ୍ଧୁଙ୍କ କୃତିତ୍ୱକୁ ସମ୍ମାନ ଜଣାଇ ତାଙ୍କୁ "ଉତ୍କଳମଣି" ରୂପେ ଆଖ୍ୟାୟିତ କରାଇଥିଲେ । ୧୯୨୧ ଅଗଷ୍ଟ ୧୩ ତାରିଖରେ "ସମାଜ"ରେ ପ୍ରକାଶିତ ବେଗୁନିଆଁ ହାଟର ଏକ ଘଟଣାକୁ ଆଳକରି ବିଦେଶୀ ସରକାର ସଂପାଦକ ଗୋପବନ୍ଧୁଙ୍କୁ ଗିରଫ କରିଥିଲେ । ବହୁ ସରକାରୀ ତାଗିଦା ସତ୍ତ୍ୱେ ଖୋରଧାର ତରୁଣ ମ୍ୟାଜିଷ୍ଟ୍ରେଟ୍ ନେତାଜୀ ସୁଭାଷଙ୍କର ଅଗ୍ରଜ ସୁରେଶ ଚନ୍ଦ୍ର ବୋଷ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ଖଲାସ କରି ଓ ନିଜେ ଚାକିରୀରୁ ଇସ୍ତଫା ଦେଇ ଯେଉଁ ଚମକ ସୃଷ୍ଟି କରିଥିଲେ ତାହା ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏକ ମାଇଲ ଖୁଣ୍ଟ । ୧୯୩୪ ମଇ ୮ ତାରିଖରେ ପୁରୀ ସିଂହଦ୍ୱାର ପାଖ ଗୋପବନ୍ଧୁଙ୍କର ଆଦ୍ୟ ପ୍ରତିମୂର୍ତ୍ତିକୁ ମହାତ୍ମାଗାନ୍ଧୀ ହରିଜନ ପଦଯାତ୍ରାର ଶୁଭ ଅବସରରେ ଉନ୍ମୋଚନ କରିଥିଲେ । ୧୯୨୮ ଜୁନ ୧୭ ଇହଲୋକରେ ତାଙ୍କର ଅନ୍ତିମ ଦିବସ । ତାଙ୍କ ଅନ୍ତିମ ଶଯ୍ୟାପାଖେ ସର୍ବ ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ, ଲିଙ୍ଗରାଜ, ହରିହର, ରାମଚନ୍ଦ୍ର ଆଚାର୍ଯ୍ୟ, ରତ୍ନାକର ପତି, ଜଗବନ୍ଧୁ ସିଂହ, ବନମାଳୀ ଦାସ, ସତ୍ୟବାଦୀ ନନ୍ଦ ଓ ରାଧାନାଥ ରଥ ପ୍ରମୁଖ ଉପସ୍ଥିତ ଥାନ୍ତି । ଦୁଇଟି ପଦ ତାଙ୍କ ତୁଣ୍ଡରୁ ବାହାରି ପଡ଼ିଲା "Forget and forgive କାହାରିପ୍ରତି ମୁଁ କିଛି ଦୋଷ କରିଥିଲେ ଭୁଲିଯାଅ ଓ କ୍ଷମାଦିଅ ।" ପୂର୍ଣ୍ଣ ସଚେତନ ଅବସ୍ଥାରେ ତାଙ୍କର ଅମର ଆତ୍ମା ପରପାରକୁ ଗମନ କରିଥିଲେ ମଧ୍ୟ କରୁଣାର୍ଦ୍ର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ଗୋପବନ୍ଧୁ ସଦା ଅମର ରହିଛନ୍ତି ।

# ସର୍ବୋଦୟ ମେଳାର ଅନୁଭୂତି

ଶ୍ରୀ ରାମଚନ୍ଦ୍ର ପ୍ରଧାନ

ମୁଁ ଢେଙ୍କାଣ୍ଟ ବ୍ଲକ ବେରବୋଇ ଉଚ୍ଚ ମୌଳିକ ବିଦ୍ୟାଳୟର ଛାତ୍ର । ସ୍ୱାଧୀନତା ସଂଗ୍ରାମର ଇତିହାସରେ ବେରବୋଇର ଏକ ପ୍ରାଧାନ୍ୟ ରହିଛି । ମହାତ୍ମା ଗାନ୍ଧୀ ୧୯୩୮ ମସିହାରେ ଗାନ୍ଧୀସେବା ସଂଘ ଅଧିବେଶନକୁ ଆସିବା ବେଳେ ଏହିଠାରେ ସପ୍ତାହେ ବ୍ୟାପୀ ରହିଥିଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପଣ୍ଡିତ କୃପାସିନ୍ଧୁ ହୋତା ଏହିଠାରେ ଏକ ଆଶ୍ରମ ପ୍ରତିଷ୍ଠା କରି ଯୁବଗୋଷ୍ଠୀଙ୍କୁ ଜାତୀୟ ସଂଗ୍ରାମ ପାଇଁ ପ୍ରସ୍ତୁତ କରୁଥିଲେ । ସେହିସବୁ ସ୍ମୃତିକୁ ଆଧାର କରି ବେରବୋଇରେ ଗଢିଉଠିଥିଲା ଏକ ମୌଳିକ ବିଦ୍ୟାଳୟ । ସ୍ୱାଧୀନ ଭାରତ ପାଇଁ ଏକାନ୍ତ ଉପଯୋଗୀ ମୌଳିକ ଶିକ୍ଷା ପୁରପଲ୍ଲୀରେ ଜାତୀୟ ଉନ୍ମାଦନା ଭରିଦେଉଥିଲା । ଦୈନନ୍ଦିନ ଘଟଣା ବଳୀ, ପାଣିପାଗ, ପରିବେଶ, ଓ ମୁଖ୍ୟତଃ ସାଧୁ ଜୀବିକା ଅର୍ଜନ ଲକ୍ଷ୍ୟରେ ମୌଳିକ ଶିକ୍ଷା ପଦ୍ଧତି ପୂଜ୍ୟ ବାପୁଜୀଙ୍କର ଏକ ବଳିଷ୍ଠ ଅବଦାନ ।

ସେହି ବିଦ୍ୟାଳୟର ଛାତ୍ରଥିବାରୁ ପିଲାଟି ଦିନରୁ ଜାତୀୟ କାର୍ଯ୍ୟକ୍ରମ ପ୍ରତି ମୋର ଶ୍ରଦ୍ଧାଥିଲା ।

ମହାତ୍ମା ଗାନ୍ଧୀଙ୍କ ପବିତ୍ର ଚିତାଭସ୍ମ ପୁରୀ ମହୋଦଧିରେ ୧୯୪୮ ମସିହା ଫେବୃଆରୀ ୧୨ ତାରିଖରେ ବିପୁଳ ଶୋକାକୁଳିତ ପରିବେଶ ମଧ୍ୟରେ ତତ୍‌କାଳୀନ ରାଜ୍ୟପାଳ ବିଶିଷ୍ଟ ଗାନ୍ଧିବାଦୀ ସ୍ୱାଧୀନତା ସଂଗ୍ରାମୀ ଡଃ କୈଳାଶନାଥ କାଟଜୁ ବିସର୍ଜନ କରିଥିଲେ । ସେହି ସ୍ମୃତିରେ ପ୍ରତିବର୍ଷ ଫେବୃଆରୀ ୧୨ ତାରିଖରେ ଗାନ୍ଧୀଘାଟରେ ସର୍ବୋଦୟମେଳା ଅଦ୍ୟାବଧି ଅନୁଷ୍ଠିତ ହୋଇ ଆସୁଛି ମୁଁ ଆଦ୍ୟରୁ ଏହି ମେଳା ସହ ସଂପୃକ୍ତ । ଆଗେ ଆମ ପୁରୀ ଜିଲ୍ଲା ପାଇଁ ସର୍ବୋଦୟ ଶାଖା ସମିତି ଗଠିତ ହୋଇଥିଲା । ମୁଁ ସେହି କମିଟିର ଉପସଭାପତି ଭାବରେ କାର୍ଯ୍ୟ କରିବାର ସୁଯୋଗ ପାଇଛି ।

ସର୍ବୋଦୟ ସହିତ ମୋର ସଂପର୍କକୁ ସ୍ମରଣ କରି ମେଳା ପରିଚାଳନା ପାଇଁ ୧୯୮୩ ମସିହାରୁ ଯେଉଁ ବିଧିବଦ୍ଧ କମିଟି ଗଠିତ ହେଉଅଛି ମୁଁ ସେହି କମିଟିର ଜଣେ ସଦସ୍ୟ । ପ୍ରାରମ୍ଭରୁ ୧୦/୧୫ ବର୍ଷଯାଏ ଯେଉଁ ଉତ୍ସାହ ଉଦ୍ଦିପନା, ନିଷ୍ଠା ଓ ଆଦର୍ଶ ଥିଲା କ୍ରମେ ତାହା ମଉଳି ଯାଉଛି । ସୂତାକଟା ପ୍ରାୟ ଆଉ ନାହିଁ । ମୋ ପରି ବହୁ ମୌଳିକ ବିଦ୍ୟାଳୟ ଓ ଆଶ୍ରମ ସ୍କୁଲର ଛାତ୍ର ଓ ଶିକ୍ଷକ ହାତକଟା ସୂତା ଆଣି ସର୍ବୋଦୟ ମେଳାରେ ମହାତ୍ମା ଗାନ୍ଧୀଙ୍କ ପ୍ରତିମୂର୍ତ୍ତୀରେ ଅର୍ପଣ କରୁଥିଲେ । ତାହା କୌଣସି ରଚନାତ୍ମକ କାର୍ଯ୍ୟକ୍ରମର ସଂସ୍ଥାକୁ ଦାନ କରାଯାଉଥିଲା । ସୂତାକଟାକୁ ମହାତ୍ମା ଗାନ୍ଧୀ ଯଜ୍ଞ ଆଖ୍ୟା ଦେଇଥିଲେ । ଶ୍ରୀମଦ୍ ଭଗବଦ୍ ଗୀତାରେ ଯେଉଁ ଯଜ୍ଞ ଶବ୍ଦର ପ୍ରୟୋଗ ଅଛି ତାହାର ଅର୍ଥ ହେଉଛି ସୃଷ୍ଟିର କ୍ଷୟ ପୂରଣ ପାଇଁ କରାଯାଉଥିବା ଶ୍ରମ ଭିତ୍ତିକ ସେବା । ମଣିଷର ତିନୋଟି ମୌଳିକ ଆବଶ୍ୟକତା ରହିଛି - ବସ ବାସ ଓ ଗ୍ରାସ । ଏହି ତିନୋଟି ପାଇଁ ପ୍ରତ୍ୟେକେ କିଛି ଶ୍ରମ କରିବାକୁ ବାଧ । ସବୁ ଯଜ୍ଞ ଶ୍ରେଣୀରେ ଯିବ । ସୂତାକଟା ସେହିପରି ଏକ ଯଜ୍ଞ । ଏହାର ମହତ୍ତ୍ୱକୁ ଗାଁ ଗହଳରେ ପ୍ରଚାର କରିବା ପାଇଁ ଏକଦା ଏକ ସୁନ୍ଦର ଗୀତ ବୋଲାଯାଉଥିଲା ।

"ଆମେ କୁଟିଖାଇ କାଟିପିନ୍ଧିବୁ
କାଣିକଉଡ଼ି କାହାକୁ ନଦେବୁ
ବିଦେଶୀ ଜିନିଷ ନକରିବୁ ସ୍ପର୍ଶ
ନିଷ୍ଠେ ଏ ଆମର ଦୃଢ଼ତା
ଆମେ ଆମ ଦେଶ ଭାଗ୍ୟ ବିଧାତା ।।"

ସ୍ୱାଧୀନ ଭାରତର ଉନ୍ନୟନ ଯୋଜନା ଗ୍ରାମ ଭିତ୍ତିକ ନ ହୋଇ ସହରଭିତ୍ତିକ ହେଉଥିବାରୁ ଲୋକେ କ୍ରମେ ଗାନ୍ଧିଙ୍କୁ ଭୁଲିଗଲେ । ସେଥି ସଙ୍ଗେ ସୂତାକଟା ଓ ଗ୍ରାମ୍ୟଶିଳ୍ପ କ୍ରମେ ଲୋପ ପାଇଗଲା । ଆନନ୍ଦର କଥା ଯେ ଜଣେ ପୋଖତ୍ ସର୍ବୋଦୋୟ ଦମ୍ପତି ଶ୍ରୀ ଅମର ନାଥ ଚଟ୍ଟୋପାଧ୍ୟାୟ ଓ ଇନ୍ଦିରା ଦେବୀ ସୁଦୂର କଲିକତାରେ ରହି ମଧ୍ୟ ନିଜ ହାତକଟା ସୂତା ସର୍ବୋଦୟ ମେଳାକୁ ପଠାଉଛନ୍ତି ।

ମୋ ବିଚାରରେ ଶରୀର ମନ ଓ ଆତ୍ମାର ସର୍ବାଙ୍ଗୀନ ବିକାଶ ହିଁ ସର୍ବୋଦୟ । ରସ୍କିନ୍‌ଙ୍କର "ଅନ ଟୁ ଦିସ ଲାଷ୍ଟ" ପୁସ୍ତକକୁ ପଢ଼ି ମହାତ୍ମା ଗାନ୍ଧୀ ଯେଉଁ ସର୍ବୋଦୟ ବିଚାର ଧାରା ପ୍ରଚାର କରିଥିଲେ ସେଥିରେ ଶ୍ରମିକ, ବାରିକ, ଓକିଲ, ଇତ୍ୟାଦିଙ୍କୁ ସମାନ ମୂଲ୍ୟବୋଧର ନିକିତିରେ ତଉଲା ଯାଇଛି ।

ମୁଁ ସର୍ବୋଦୟ ମେଳା କମିଟିର ସଦସ୍ୟ ଭାବରେ ନିଜକୁ ବହୁତ ଗୌରବାନ୍ୱିତ ମନେ କରୁଛି । ବ୍ରିଟିଶ୍ ଯୁଗରେ ଅଫିସରମାନେ Your most obedient servant ବୋଲି ଲେଖୁଥିଲେ । ଏବେ ଆମ ଅଫିସର ଗୋଷ୍ଠୀ faithfully ଲେଖୁଛନ୍ତି ? ଅଥଚ unfaithfull କାର୍ଯ୍ୟ କରୁଛନ୍ତି । ତଥାପି ହତାସ ହେବାର କିଛି ନାହିଁ । ସର୍ବୋଦୟ ମେଳା ଆନୁକୂଲ୍ୟରେ ପାଳିତ ହେଉଥିବା ଜାତୀୟ ଉତ୍ସବକୁ ବହୁ ବ୍ୟକ୍ତିଙ୍କୁ ଆମନ୍ତ୍ରଣ କରାଯାଏ । ମୁଁ କୌଣସି ପ୍ରତିଆଶା ନରଖି ଆମନ୍ତ୍ରଣ ପତ୍ର ବାଣ୍ଟେ । ଉପସ୍ଥିତି ବହୁତ କମ୍ ହୁଏ । ତଥାପି ବହୁ ଲୋକଙ୍କ ପାଖେ ଜାତୀୟ ବାର୍ତ୍ତା ପହଞ୍ଚାଇବାରେ ମୁଁ ଯେଉଁ ସୁଖ ଓ ଆନନ୍ଦ ଅନୁଭବ କରେ ତାହା ଅନିର୍ବଚନୀୟ ।

ସର୍ବୋଦୟ ଭାବନାରେ ଉଦ୍‌ବୁଦ୍ଧ ପଣ୍ଡିତ ଗୋପବନ୍ଧୁ ଏକଦା ଜଣେ ଓକିଲ ଥିଲେ । ମୁଦେଇ ମୁଦାଲା ଉଭୟ ପକ୍ଷକୁ ବସାଇ ମୋକଦ୍ଦମାର ମୀମାଂସା କରାଇବାରେ ବ୍ରତୀ ଥିବାରୁ ସେ ପେଶାଦାରୀ ଆଡ୍‌ଭୋକେଟ୍ ହୋଇପାରିଲେ ନାହିଁ ଅଥଚ ସଫଳ ଅଧିବକ୍ତା ଥିଲେ । ମୁଁ ଜଣେ ଅଧିବକ୍ତା । ତାଙ୍କର ଅଦର୍ଶରୁ କିଛି ଗ୍ରହଣ କରିପାରିଲେ ନିଶ୍ଚିତ ଧନ୍ୟ ହେବି ।

ଆଗପରି ସର୍ବୋଦୟ ମେଳାକୁ ବିପୁଳ କର୍ମୀଙ୍କ ସମାବେଶ ହେଉନଥିଲେ ମଧ୍ୟ ମେଳାର ଚଳଣି, କର୍ମୀମାନଙ୍କ ରହଣୀ ଓ ପୁରୀ ବାସୀଙ୍କ ଅନୁକୂଲ୍ୟରେ ସେମାନଙ୍କୁ ଆତିଥେୟତା ଦାନରେ କିଛି ତ୍ରୁଟି ହେଉନାହିଁ । ମାନବ ସମାଜକୁ ଅଧୋଗତିରୁ ଉଦ୍ଧାର କରିବାରେ ସର୍ବୋଦୟ ଦର୍ଶନ ହିଁ ସମର୍ଥ ଅଟେ - ଏହି ବିଚାର ମୋର ଦୃଢ଼ରୁ ଦୃଢ଼ତର ହେଉଛି । ମୁଁ ଏହି ଜାତୀୟ ସେତୁ - ବନ୍ଧରେ ଗୁଣ୍ଡିଚି ମୂଷାପରି ଯତ୍ କିଞ୍ଚିତ ଶ୍ରମ, ମନ ଓ ଧ୍ୟାନ ଦେଉଥିବାରୁ ବହୁତ ପ୍ରସନ୍ନତା ଅନୁଭବ କରୁଛି । ଆଶା କରୁଛି ଚିନ୍ତାଶୀଳ ନାଗରିକ ମାତ୍ରେ ସର୍ବୋଦୟକୁ ବ୍ରତ ସ୍ୱରୂପ ଗ୍ରହଣ କରିବେ ।

ଶ୍ରୀଗୋବିନ୍ଦ ଲେଙ୍କ
ମାର୍କଣ୍ଡେଶ୍ୱର ସାହି, ପୁରୀ

## ଗୁରୁଶିଷ୍ୟ ସମ୍ବନ୍ଧ

ଗୁରୁଶିଷ୍ୟ ବଧିର ଅନ୍ଧକା ଲେଖା
ଏକ ନ ଶୁନଇ ଏକ ନେହିଁ ଦେଖା
ହରଇ ଶିଷ୍ୟ ଧନ ଶୋକ ନ ହୃରଇ
ସୋ ଗୁରୁ ଘୋର ନରକ ମହୁଁ ପରଇ

(ରାମଚରିତ ମାନସ)

## ଅତି ନିକୃଷ୍ଟ

"ବଇଦ ନ ହୋଇ କରେ ଚିକିତ୍ସା
ଚିରା କରିଆରେ ନିବୋଡ଼ କନ୍ଥା
କଣ୍ଟା ନ ଚିହ୍ନିଣ ଶାଖେ ଦେବା
ବହୁମୂତ୍ର ରୋଗୀ ରମଣ ଇଚ୍ଛା
ଲୁଣ ନଥାଇଣ ପଖାଳ ତୃଷ୍ଣା
ବଳଦ କିଣିଲେ ନ କରି ମଚ୍ଛା
ହାଣ୍ଡିକୁ ପଇମ ନୋହିଲେ ଗଚ୍ଛା
ବୋଲେ ଦନାଇ ଏ ଅତି ନିକୃଷ୍ଟା ।"

(ସମାଜ - ୭.୭.୬୯ରୁ ଗୃହୀତ)

# ମାଗୁଣି

ଅଧ୍ୟାପକ ବିନାୟକ ମିଶ୍ର

ସର୍ବୋଦୟର ଏ ଶୁଭ ସଂଜ୍ଞାରେ ବାପୁଜୀ ଚରଣେ
ନିବେଶି ମଥା ଅଥର୍ବ ପ୍ରାଣୀ ମୁଁ ଭଲପୁଛି ବସି ଏ ଜାତି
ଜାତୀୟ ଜୀବନ କଥା କି ଥିଲା, କି ହେଲା, କି ହେଲା
କି ହେବ ମନ୍ତ୍ର ଜପି ମୁଁ ରଜନୀ-ଦିବା ସୀମାରେଖା ତାର
ନ... ା ଦେଖୁଛି, ଦେଖୁଛି ବିଲୀନ ଜୀବନ ଆଭା

ଧ୍ୱାନ୍ତ-ଜୀବନ, ଧ୍ୱାନ୍ତ-ଧରା

ସତ୍ୟ ଅହିଂସା ଅପସରି ଯାଏ କାଦମ୍ବିନୀ କୋଳେ
ଯାମିନୀ ପରା ।

ଶୁଭେ ଚଉଦିଗେ କ୍ରନ୍ଦନ ରୋଳ ଅବଳା ଢାଳୁଛି ନୟନ-ନୀର
ସର୍ବୋଦୟରେ ସିନ୍ଧୁ ତଟେ ବସି ସୁମରୁଛି ମନ ବାପୁଜୀ-ଗୀର
ଆଚାର୍ଯ୍ୟଙ୍କ ବାଣୀ ଉଭେଇ ଗଲାଣି ଗୋପବନ୍ଧୁ ଗାଥା ନଆସେ ମନେ
ନୀତି ହୀନ ଜନ କର୍ମ ସୋହାଗେ ଦୁଷ୍ଟ-ପୁଷ୍ଟ ଅନୀତି ଧନେ
ସମାଜେ ସୁଜନ ନପାଇ ଥାନ
ଆର୍ତ୍ତ ବିକଳେ ଚିତ୍କାର କରେ, "ଉଦ୍ଧାର କର ହେ ଭଗବାନ" ।
ଦୁଷ୍ଟ ଦୁରନ୍ତ ରଣ-ହୁଙ୍କାର ଅହରହ ଫୁଟେ ଯାତ୍ରା ପଥେ
ଗୁପ୍ତ ମନ୍ତ୍ରଣା, ଯୌନ- ଲାଳସା ଚରିତାର୍ଥ ହୁଏ ଅବିଧି ମତେ
ଶିଶୁ ଚିତ୍କାର, ନର ଚିତ୍କାର, ନାରୀ ଚିତ୍କାରେ ଫାଟୁଛି ନଭ
ଆଧୁତା, ଶିକ୍ଷିତା ଲଜ୍ଜିତି ବିଜୟ ଦେଖୁଥିବ ନିଶ୍ଚେ ବାପୁ ହେ ସର୍ବ
ସରଗ-ଶୋଭନ ହେ ପୂର୍ବ ପୁରୀ
ଦେଖୁଥିବ ଲାଜେ ସମଗ୍ର ଧାମରୁ ବିଶ୍ୱେ କି ପାପ ଯାଉଛି ଭରି ।
ସର୍ବୋଦୟର ଏ ଶୁଭ ଲଗନେ ମାଗେ ମୁଁ ବାପୁଜୀ ଦିଅ ହେ ବଳ
ଆସିବାରେ ଏଥେ ଅଥବା ଇଙ୍ଗିତେ ଡାକିଦିଅ କିଛି ମନ୍ତ୍ର ଜଳ
ଅବଗହି ତହିଁ ଜୀବନ ପ୍ରସରୁ ମାନବିକତାର ସୁଆଦ ଚାଖି
ପରିପନ୍ଥୀ ଆଉ ନପାଉ ତା ପଥ ଶୋଷିବାକୁ ଲହୁ କମାଣଯୋଖି
ସର୍ବୋଦୟର ଏ ଶୁଭ ବେଳେ
କର କୋରକିତ କରି ମୁଁ ମାଗୁଛି ଏତିକି,
ବାପୁଜୀ ଚରଣତଳେ ॥

ଦୋଳମଣ୍ଡପ ସାହି, ପୁରୀ



# What is Life

**Life is a/an**

Challaenge - Meet.
Struggle - Accept.
Sorrow - Over Come.
Mystery - Unfold.
Tragedy - Face.
Jay - Spread.
Love - Love.
Duty - Perform.
Romance - Enjoy.
Gomble - Watch.
Song - Sing.
Blice Embrace.
Game - Play.
Dream - Realise.
Jowrney - Complete.
Promise - Fulfil.
Beauty - Admire.
Puzzle - Solve.
Adventure - Dare.
Oppurtunity - Grasp.
God's gifty - Cherish.

# ଜଗତି କରଣ

ବେକାର, ବାଣିଜ୍ୟ, ଆଚାର, ବ୍ୟବହାର କାହିଁକି ଶରୀର ମନ ଓ ବୁଦ୍ଧି ପ୍ରତି କଥାରେ ସଂଯମ ଓ ଶୃଙ୍ଖଳା ପ୍ରୟୋଗ ଭାରତର ସ୍ୱଦେଶୀ ସଂସ୍କାର । ଦେଶର ଶାସନ ଓ ପ୍ରଶାସନରେ ସୁଦ୍ଧା ସଂଯମ ଓ ଶୃଙ୍ଖଳା, ନିରପେକ୍ଷତାର ଅଭାବ ହେଲେ ଏ ଦେଶରେ ଅବତାର ପୁରୁଷ ଜନ୍ମଲାଭ କରିଛନ୍ତି ତାର ସଂଶୋଧନ ପାଇଁ । ବଳି ମହାରାଜା ଦାନ ଧର୍ମରେ ସୁଦ୍ଧା ସଂଯମ ଓ ଶୃଙ୍ଖଳା ରକ୍ଷା ନ କରିବା ଯୋଗୁଁ ଅବତାର ପୁରୁଷ ବାମନ ତାର ସମାଧାନ ଚିନ୍ତା କଲେ । ଶାସନ ଓ ପ୍ରଶାସନରେ ସଂଯମ ଓ ଶୃଙ୍ଖଳା ରକ୍ଷା ପାଇଁ ଏ ଦେଶରେ ଗ୍ରାମ ସ୍ୱରାଜ ଓ ପଞ୍ଚାୟତ ଶାସନର ପ୍ରଚଳନ ଥିଲା । ଯେତେବେଳେ ଦରିଆପରି ଦେଶର ଲୋକେ ଗ୍ରାମପଞ୍ଚାୟତ, ଗ୍ରାମସଭା ବିଷୟରେ ଅଜ୍ଞ ଥିଲେ, ସେତେବେଳେ ଏ ଦେଶରେ ଗ୍ରାମସ୍ତରରୁ ପ୍ରଚଳନ ଥିଲା ଗଣତନ୍ତ୍ର । ରାଜତନ୍ତ୍ରର ସ୍ୱେଚ୍ଛାଚାରିତାର ନିୟନ୍ତ୍ରଣ ପାଇଁ ଗୃହୀତ ହୋଇଥିଲା ଗଣତନ୍ତ୍ରର ଶାସନଧାରା । ପଣ୍ଡିତ କ୍ୟାର୍ଲମାର୍କସ ଭାରତର ପଞ୍ଚାୟତ ଶାସନ ଉପରେ ନ'ଗୋଟି ନିବନ୍ଧ ଲେଖିଲା ପରେ ପ୍ରଲୋଟେରିଏଟ ଡେମୋକ୍ରେସି ଉପରେ ତାଙ୍କର ତାତ୍ତ୍ୱିକ ଚିନ୍ତା ପ୍ରକଟ କରିଥିଲେ ।

ଦେଶର ଜନସମୂହ ସୁସ୍ଥ ଓ ଶିକ୍ଷିତ ହୋଇ ଗଢ଼ି ନ ଉଠିଲେ, ଦେଶର ଗୋପ ଓ ଲକ୍ଷ୍ମୀ ସୁସ୍ଥ ଓ ସୁରକ୍ଷିତ ହୋଇ ଉନ୍ନତି ଲାଭ ନ କଲେ ଦେଶର ଆର୍ଥିକ ବିକାଶ ଅସମ୍ଭବ । ବର୍ତ୍ତମାନର ଜଗତିକରଣ ବରଂ ଦେଶର କ୍ଷତି କରିବ, ଲାଭ କରିପାରିବ ନାହିଁ ।

ଜଗତିକରଣ ଓ ଉଦାରୀକରଣ ପ୍ରକ୍ରିୟା ଜାତୀୟ ବ୍ୟବସ୍ଥାରେ କେତେକ ଅସୁବିଧା ସୃଷ୍ଟି କରୁଛି । ତେଣୁ ବହୁ ଦେଶରେ ତାହାର ମୃସଂକୋଚନ ଉଦ୍ୟମ ଆରମ୍ଭ ହୋଇଗଲାଣି । ଗତ ଅଗଷ୍ଟ ମାସରେ ଦୁଇ ସପ୍ତାହ ପାଇଁ ହଂକଂ ପନ୍ଦର ବିଲିୟନ ପାଉଣ୍ଡ ଖର୍ଚ୍ଚରେ ଜଗତିକରଣର ସୁନିୟନ୍ତ୍ରଣ ଉଦ୍ୟମ କରିଛି । ଗତ ସେପ୍ଟେମ୍ବର ପହିଲାରୁ ମାଲେସିଆ ଉଦାରୀକରଣ ବଜାରର ନିୟନ୍ତ୍ରଣ ଜାରି କଲାଣି । ରୁଷ ପୁଣି ବଜାରରେ ନିଜ ଦେଶର ନିୟନ୍ତ୍ରଣ ଜାରି କଲାଣି । ୟୁକ୍ରେନ ଅନେକ ବ୍ୟବସାୟରେ ବିଦେଶୀ ପ୍ରବେଶ ବନ୍ଦ କଲାଣି । ତାଇୱାନ ଓ ସିଙ୍ଗାପୁର ମଧ୍ୟ ଏ ଦିଗରେ ଉଦ୍ୟମଶୀଳ । ମୁକ୍ତ ବଜାର ମନ୍ତ୍ର ଏକ୍ଷଣି ବହୁ ଦେଶ ପାଠ କରିବା ବନ୍ଦ କଲେଣି । ମାଲେସିଆ କଳନ୍ତର ଆଠ ପ୍ରତିଶତକୁ କମାଇ ସମଗ୍ର ଅର୍ଥ ବଜାରକୁ ଜାତୀୟ ନିୟନ୍ତ୍ରଣକୁ ଆଣି ସାରିଛି । ଅନ୍ତର୍ଜାତୀୟ ମୁଦ୍ରାପାଣ୍ଠିର ବିକଳ୍ପ ବ୍ୟବସ୍ଥା ମାଲେସିଆ ଦୃଢ଼ ଭାବରେ ପ୍ରତିଷ୍ଠା କଲାଣି । ଆଇ.ଏମ୍.ଏଫ. ନିୟନ୍ତ୍ରଣ ମାନି ଥାଇଲାଣ୍ଡ, ଇଣ୍ଡୋନେସିଆ ଓ ଦକ୍ଷିଣ କୋରିଆ ଆଜି ବିଶେଷ ଅସୁବିଧାର ସମ୍ମୁଖୀନ । ଭାରତ ସରକାର ବିଶ୍ୱ ବ୍ୟାଙ୍କ ଓ ଆଇ.ଏମ୍.ଏଫ୍.ର ସୁନା ପୁଅ ହେବାକୁ ଉଦ୍ୟମ କରି ଆଜି ଯେପରି ଆଳୁ, ପିଆଜ, ଡାଲି, ତେଲ ଲୋକଙ୍କୁ ଯୋଗାଇ ଦେଇପାରୁ ନାହିଁ ଲୋକଙ୍କ, କ୍ରୟ ଶକ୍ତି ମଧ୍ୟରେ ତାହା ଅନ୍ୟ କୌଣସି ଦେଶ କରି ନାହିଁ । ବିଦେଶୀ ମୁଦ୍ରାବ୍ୟବସାୟୀ, ବିଦେଶୀ ପୁଞ୍ଜି ଲଗାଣକାରୀ ଅନ୍ତର୍ଜାତୀୟ ପୁଞ୍ଜି ଲଗାଣକାରୀ ତେଣୁ ଏକ୍ଷଣି ଅତିମାତ୍ରାରେ ଚିନ୍ତାଗ୍ରସ୍ତ । ଭାରତ ସରକାର ଏ ଅବସ୍ଥାରେ ସେମାନଙ୍କ ସଖୀ ଜଣେଇ ସାଜିବା ଆଦୌ ଉଚିତ ନୁହେଁ ।

ମାଲେସିଆ ନିଜ ବଜାରକୁ ସୁନିୟନ୍ତ୍ରିତ କରି ଦେଶୀୟ ଆଦାୟର ସୁବଣ୍ଟନ, ବେକାରୀ ଦୂରୀକରଣ ବ୍ୟବସାୟୀକ ପୁଞ୍ଜି ବିନିଯୋଗର ଯଦି ବ୍ୟବସ୍ଥା କରି ପାରିଲାଣି ଭାରତ କରି ପାରିବ ନାହିଁ କାହିଁକି ? ବ୍ୟବସାୟୀ, ପୁଞ୍ଜିବିନିଯୋଗକାରୀ, ମଧ୍ୟବିତ୍ ବହୁ ମାତ୍ରାରେ ମାଲେସିଆ ସରକାରଙ୍କ ଏ ନିୟନ୍ତ୍ରଣ ବ୍ୟବସ୍ଥାରେ ପ୍ରଥମେ ପ୍ରଥମେ ଅତୃପ୍ତି ପ୍ରକାଶ କରୁଥିଲେ; କିନ୍ତୁ ଏକ୍ଷଣି ସରକାରଙ୍କ ନିୟନ୍ତ୍ରଣ ବ୍ୟବସ୍ଥା ସର୍ବଜନଗ୍ରାହ୍ୟ ହୋଇ ଯାଇଛି ।

ଜାଗତିକ ବ୍ୟବସାୟ ୧୯୯୮ର ପ୍ରଥମାର୍ଦ୍ଧରେ ଯାହା ଏକ ଟ୍ରିଲିୟନ ଡଲାର ହୋଇ ଯାଇଥିଲା ତାହା

କମିବାରେ ଲାଗିଲାଣି । ବିଶ୍ୱବଜାରରେ ୧୯୯୬ରେ ମୁଦ୍ରା ବିନିମୟ ୨୮୦ ଟ୍ରିଲିୟନକୁ ଟପି ଯାଇଥିଲା । ଯାହାକି ବିଶ୍ୱ ଉତ୍ପାଦନର (୨୯ ଟ୍ରିଲିୟନ ଡଲାର ଦଶ ଗୁଣ ଏବଂ ବିଶ୍ୱ ରପ୍ତାନୀର ୪୦ ଗୁଣ) କମ୍ପ୍ୟୁଟର ବ୍ୟବସ୍ଥା ଦ୍ୱାରା ସବୁ ଦେଶ ବିଶ୍ୱବଜାରର ଗତିବିଧି ଅହରହ ଲକ୍ଷ୍ୟକରି ନିଜ ବଜାରକୁ ସୁନିୟନ୍ତ୍ରିତ କରିବା ବ୍ୟବସ୍ଥା କଲେଣି ।

ବର୍ତ୍ତମାନ ବିଭିନ୍ନ ଦେଶର କୌଶଳ ଉଦ୍ଭାବନ ଫଳରେ ବିଶ୍ୱବଜାରରେ ୨ହଜାର ଜମାର ପୁଞ୍ଜି ଆଇ.ଏମ୍.ଏଫ. ଓ ବିଶ୍ୱବ୍ୟାଙ୍କର ନିୟନ୍ତ୍ରଣ ବାହାରେ କାମ କରୁଛି । ୟୁରୋପୀୟ କମନମାର୍କେଟ ଏତେ ବିଚାର ଆଲୋଚନା ପରେ ହୋଇଥିଲେ ମଧ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଟୋନି ବ୍ଲେୟାର ପ୍ରଭୃତି ଏପରି ସ୍ୱଚ୍ଛ ଲଘୁକରଣର ଆବଶ୍ୟକ୍ତା ଉପଲବ୍ଧି କଲେଣି । ବିଶ୍ୱ ବ୍ୟାଙ୍କ ଓ ଅର୍ନ୍ତଜାତୀୟ ମୁଦ୍ରା ପାଣ୍ଠି ଆଦୌ ଦେଶର ଜାତୀୟ ଆବଶ୍ୟକତା ଓ ଲୋକଙ୍କ କ୍ରୟଶକ୍ତିର ଉଚିତ ସମୀକ୍ଷାକରି ବିଶ୍ୱ ବଜାରରେ ଅଗ୍ରସର ହେବା ଜ୍ଞାନ ଆହରଣ କରିପାରୁ ନାହିଁ । ଏହା ସବୁ ଅସୁବିଧାର କାରଣ । ଏହା ଭାରତ ସରକାର ବୁଝି ରଖିବା ଉଚିତ । ଉଦାରୀକରଣ ଓ ଜଗତିକରଣ ପୂର୍ବ ଇତିହାସ ମନେ ପକାଇବା ବିଧି । ତେଣୁ ଲୋକଙ୍କ ଆବଶ୍ୟକତା ଓ ଦେଶୀୟ ବଜାରର ଗତିବିଧିକୁ ଲକ୍ଷ୍ୟକରି ସରକାର ନିଶ୍ଚିତ ଉଦ୍ୟମ ଓ ନିଷ୍ପତ୍ତି ନେବାକୁ ପଡ଼ିବ ଓ ନେବା ବିଧି ମଧ୍ୟ ।

ବ୍ୟବସାୟୀଙ୍କ ମୁହଁକୁ ଚାହିଁ ସେମାନଙ୍କ ସ୍ୱାସ୍ଥ୍ୟ ରକ୍ଷା ନାମରେ ଯଦି ସାଧାରଣ ଲୋକଙ୍କ ସ୍ୱାସ୍ଥ୍ୟ ସୁରକ୍ଷା ବିପନ୍ନ ହୁଏ, ଦେଶର ସାଧାରଣ ନାଗରିକ ସେଥିଯୋଗୁ ଦୁଃଖ ଅସୁବିଧାର ଶିକାର ହୁଅନ୍ତି, ତେବେ ତାଙ୍କୁ ବିଧାତା ମଧ୍ୟ ରକ୍ଷା କରି ପାରିବ ନାହିଁ । ଏଥିପାଇଁ ସମଗ୍ର ସରକାର ସାବଧାନ ହେବା ଉଚିତ ।

ସୁଦୂର ହିମାଳୟ ପାଦଦେଶ ଦାର୍ଜିଲିଂରେ ଲୁଣ ଅଭାବ ହେଲେ ଦେଶର ଶହେ କୋଟି ଲୋକଙ୍କ ଭିତରେ ଚହଳ ପଡ଼େ ଲୁଣ ଅଭାବ । ଯେ କୌଣସି ସରକାର ଏହା ବୁଝି ରଖିବା ଉଚିତ । ଏପରି ଗୋଟାଏ ସମ୍ବାଦ ସରକାରଙ୍କ ସବୁ ପରିଶ୍ରମ, ସବୁ ତପସ୍ୟାକୁ ଶୁଖୁଆ ପୋଡ଼ାରେ ପରିଣତ କରି ଦେଇପାରିବ । ଜନମତର ସରକାର ଲୋକଚେତନା, ଲୋକାପବାଦକୁ ବେଖାତିର କଲେ ତାଙ୍କୁ ବ୍ରହ୍ମା ମଧ ସ୍ଥାନ ଦେଇ ପାରିବେ ନାହିଁ ।

(୧୯୯୮ ନଭେମ୍ବର ୭ ଓ ୨୮ ତାରିଖରେ ''ସମାଜ''ରେ ପ୍ରକାଶିତ ଅଧ୍ୟାପକ କିଶୋରଚନ୍ଦ୍ର ତ୍ରିପାଠୀଙ୍କ ଲିଖିତ ''ସ୍ୱଦେଶୀ ଆନ୍ଦୋଳନ ଓ ସରକାର'' ଶୀର୍ଷକ ଲେଖାର ଉଦ୍ଧୃତସାର) ।



## ଅତୁଳନୀୟ

| | | | | | |
|---|---|---|---|---|---|
| ପରମ ବୈଷ୍ଣବ | - | ପ୍ରହ୍ଲାଦ | ସହିଷ୍ଣୁ | - | ପିତା - ମାତା |
| ପ୍ରଜାପାଳକ | - | ଇକ୍ଷ୍ୱାକୁ | ସମପାଳକ | - | ବିଧାତା |
| ପ୍ରଥିତ ଯଶା | - | ଶ୍ରୀରାମ | ସର୍ବଲକ୍ଷଣ ସମ୍ପନ୍ନ | - | ଶ୍ରୀକୃଷ୍ଣ |
| ଦାର୍ତା | - | ଶିବି | ଉଦାରତା | - | ରବି |
| ଦୁସ୍ତର | - | ସମୁଦ୍ର | ଧର୍ମବୀର | - | ଯଯାତି |
| ବିକ୍ରମ | - | କେଶରୀ | ଯଜ୍ଞକାରୀ | - | ଭରତ |
| ଆଶ୍ରୟ | - | ହିମଗିରି | ଧନୁର୍ଦ୍ଧାରୀ | - | ଅର୍ଜୁନ |
| ଧୀରଚେତା | - | ବସୁନ୍ଧରା | | | |

(ଶ୍ରୀମଦ୍ ଭାଗବତ ପ୍ରଥମ ସ୍କନ୍ଧ, ଦ୍ୱାଦଶାଧ୍ୟାୟରୁ ଗୃହୀତ)

# ମହିଳା କୁଟୀର ଶିଳ୍ପ ଶିକ୍ଷାଶ୍ରମ

ଶ୍ରୀ ସୁଶୀଲ କୁମାର ସେନ୍

**ସ୍ୱର୍ଣ୍ଣଲତାଶ୍ରମ-**

୧୯୦୧ ମସିହାରେ ପୂର୍ବ ବଂଗ ମଇମନ ସିଂ ଜିଲ୍ଲାର ଅଠାରୋବାଡ଼ ଜମିଦାରଙ୍କ କନ୍ୟା ସ୍ୱର୍ଣ୍ଣଲତା ବସୁ ୧୮ବର୍ଷ ବୟସରେ ବିଧବା ହୋଇ ଯିବାରୁ ତୀର୍ଥବାସ ପାଇଁ ତାଙ୍କ ପିତା ମାତା ଶ୍ରୀକ୍ଷେତ୍ର ପୁରୀ କଚେରି ପାଖ ସୁକୁଲବଂଗଳାରେ ଏକ ଏକର ଜମି କିଣିଥିଲେ । ୧୯୦୫ ମସିହାରେ ସେହି ଜମିରେ ଗୋଟିଏ ନୂତନ ଗୃହତିଆରି କରି ଆଉ ପାଞ୍ଚଜଣ ଗରିବ ବଂଗାଳି କାୟସ୍ଥ ବିଧବାଙ୍କ ସହ ସେଠାରେ ରହିବାର ବ୍ୟବସ୍ଥା କରିଥିଲେ । ବହୁବର୍ଷ ଧରି ଏହି ଘରଟି ସ୍ୱର୍ଣ୍ଣଲତା ବିଧବା ଆଶ୍ରମ ନାମରେ ପରିଚିତ ଥିଲା । ସ୍ୱର୍ଣ୍ଣଲତାଙ୍କ ମୃତ୍ୟୁପରେ ତାଙ୍କ ଜାମାତା ୰ ସନତ କୁମାର ରାୟଚୌଧୁରୀ ଶାଶୁଙ୍କର ସେହି ଆଶ୍ରମକୁ ସୁ ପରିଚାଳନା ପାଇଁ ରାମକୃଷ୍ଣ ମିସନ୍ ବେଲୁଡ଼୍ ମଠକୁ ବ୍ରଷ୍ଟି କରିଥିଲେ । ସ୍ୱ ୧୯୩୯ ମସିହାରୁ ସନ ୧୯୪୭ ମସିହା ମଧ୍ୟରେ ପୁରୀ ସ୍ଥିତ ରାମକୃଷ୍ଣ ମିସନ୍ ପ୍ରଥମେ ଏହି ଘରେ ପ୍ରତିଷ୍ଠିତ ହୋଇଥିଲା ।

**ସତ୍ୟର୍ଷି ଶ୍ରୀ ଯୋଗଜୀବନାନନ୍ଦ-**

ସ ୧୯୪୮ ମସିହା ପ୍ରଥମ ଭାଗରେ ସ୍ୱାମୀ ଶ୍ରୀମତ୍ ଯୋଗଜୀବନାନନ୍ଦ ପଶ୍ଚିମବଙ୍ଗ ବାଂକୁଡ଼ା ଜିଲ୍ଲାର ମଜହରପୁର ଗ୍ରାମରେ ସ୍ୱ ପ୍ରତିଷ୍ଠିତ ସତ୍ୟାୟତନ ମହାମନ୍ଦିର ର ପରିଚାଳକ ଥିଲେ । ସେଠାରେ ବ୍ରହ୍ମଣ ଛଡ଼ା ଅନ୍ୟ ସବୁ ଜାତିର ଲୋକେ ଭାରତୀୟ ମାନବ ଧର୍ମ ଶ୍ରମ ମାଧ୍ୟମରେ ଶିକ୍ଷା ଓ ଜାତିବର୍ଣ୍ଣ ନିର୍ବିଶେଷରେ ବୈଦିକ ପଦ୍ଧତିରେ ହୋମ ଯଜ୍ଞ କରୁଥିବାରୁ ବ୍ରାହ୍ମଣମାନେ ଅସୂୟା ପରବଶ ହୋଇ ଆଶ୍ରମ ପରିଚାଳନାରେ ପ୍ରବଳ ବାଧା ସୃଷ୍ଟି କଲେ । ଏହା ସ୍ୱାମିଜୀଙ୍କୁ ବହୁତ ବାଧିଲା । ମର୍ମାହତ ହୋଇ ସ୍ୱାମିଜୀ ଆଶ୍ରମ ଛାଡ଼ି ପୁରୀ ଧାମକୁ ଚାଲିଆସିଲେ । ସତେ ଯେପରି ଏହାଥିଲା ମହିଳା କୁଟୀର ପାଇଁ ଐଶ୍ୱରିକ ଆଶୀର୍ବାଦ ।

ହିନ୍ଦୁ ମହାସଭାର ତତ୍କାଳିନ ସଭାପତି ଶ୍ରୀ ଶ୍ୟାମାପ୍ରସାଦ ମୁଖାର୍ଜୀ, କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ପ୍ରମଥ ନାଥ ବନ୍ଦୋପାଧାୟ ଓ ସ୍ୱର୍ଣ୍ଣଲତା ବସୁ ଙ୍କ ଜାମାତା ସନତ କୁମାର ରାୟ ଚୌଧୁରୀଙ୍କ ଅନୁରୋଧରେ ସ୍ୱାମିଜୀ ପୁରୀର ସେହି ସ୍ୱର୍ଣ୍ଣଲତା ବିଧବାଶ୍ରମର ପରିଚାଳନା ଦାୟିତ୍ୱ ଗ୍ରହଣ କରିଥିଲେ ।

**ମହିଳା କୁଟୀର ର ଜନ୍ମ**

ସ୍ୱାଧୀନତା ଲାଭପରେ ପୂର୍ବ ପାକିସ୍ଥାନର ବହୁଉଦ୍‌ବାସ୍ତୁ ବଙ୍ଗ ଓ ଓଡ଼ିଶାକୁ ଖୁବ ଅସହାୟ ଅବସ୍ଥାରେ ଆସିଯିବାରୁ ସ୍ୱାମିଜୀ କେବଳ ବଂଗାଳୀ କାୟସ୍ଥ ବିଧବାଙ୍କ ପରିବର୍ତ୍ତେ ସବୁ ଜାତି ଓ ଶ୍ରେଣୀର ବିଧବା, ସଧବା ଓ କୁମାରୀ ମହିଳା ମାନଙ୍କୁ ଆଶ୍ରୟ ଦେଇ ଭାରତୀୟ ମାନବ ଧର୍ମ ଧାରାରେ ଆଶ୍ରମ ଚଳାଇବାର ବ୍ୟବସ୍ଥାକଲେ । ସ ୧୯୪୮ ମସିହା ଅକ୍ଟୋବର ମାସରେ ସ୍ୱାମିଜୀ ମାତ୍ର ୫ ବର୍ଷ ପାଇଁ ଆଶ୍ରମ ସମ୍ପତ୍ତିର ସମ୍ପୂର୍ଣ୍ଣ ଦାୟିତ୍ୱ ବହନକରି ୧୬ ଜଣ ମହିଳାଙ୍କୁ ନେଇ ଏକ ଆଶ୍ରମ ପ୍ରତିଷ୍ଠା କଲେ । ତାହାହିଁ ହେଲା ମହିଳା କୁଟୀର ଶିଳ୍ପ ଶିକ୍ଷାଶ୍ରମ ।

**ଆଶ୍ରମର ଲକ୍ଷ୍ୟ-**

ସ୍ୱର୍ଣ୍ଣଲତା ବସୁ ସେତେବେଳେ ୫ ଜଣ ବିଧବାଙ୍କ ଭରଣ ପୋଷଣ ପାଇଁ ମାସକୁ ଏକଶତ ଟଙ୍କା ଜରି ଦେଉଥିଲେ । ସ୍ୱାମିଜୀଙ୍କ ପରିଚାଳନା ବ୍ୟବସ୍ଥାରେ ପରମ ସନ୍ତୋଷ ଲାଭ କରି ଆଶ୍ରମ ପରିଚାଳନା ପାଇଁ ଏକ କାଳୀନ ୨୦ ହଜାର ଟଙ୍କା ଦାନ କରିବାକୁ ମନ କରିବାରୁ ସ୍ୱାମିଜୀ ସ୍ୱର୍ଣ୍ଣଲତାଙ୍କୁ ବୁଝାଇ କହିଲେ ଯେ କୁଟୀର ଶିଳ୍ପ ମାଧ୍ୟମରେ ସ୍ୱାବଲମ୍ବନ ଶୀଳ, ସଂଘବଦ୍ଧ, ଜୀବନ ଯାପନ ହିଁ ଆଶ୍ରମର ଲକ୍ଷ୍ୟ । ଏଣୁ ସ୍ୱର୍ଣ୍ଣଲତାଙ୍କ ବିପୁଳଦାନ ସ୍ୱାମିଜୀ ଗ୍ରହଣ କଲେ ନାହିଁ ।

ସ୍ୱାମୀଜୀ ଥିଲେ ଏକନିଷ୍ଠ ଜାତୀୟବାଦୀ । ୧୯୦୫ ମସିହାରେ ବଙ୍ଗ ଭଙ୍ଗ ଆନ୍ଦୋଳନରେ ସେଥିଲେ ଋଷି ଅରବିନ୍ଦଙ୍କର ସହକର୍ମୀ । ଭାରତୀୟ ସବୁଧର୍ମ ଶାସ୍ତ୍ର- ବେଦ, ଉପନିଷଦ, କୋରାନ୍, ବାଇବେଲ ଓ ତ୍ରିପିଟକ ଇତ୍ୟାଦିରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ଜଣେ ସୁବକ୍ତା, କବି, ସାହିତ୍ୟିକ, କୃଷି ଓ ଶିଳ୍ପରେ ବିଶାରଦ ଥିଲେ । ସବୁ ମଣିଷ ଭିତରେ ମାନବିକତାର ପୂର୍ଣ୍ଣ ପ୍ରତିଷ୍ଠା ତାଙ୍କର ଧ୍ୟେୟ ଥିଲା । ତାଙ୍କ ଦୃଷ୍ଟିରେ ଧନୀ, ଗରିବ, ଶିକ୍ଷିତ ଅଶିକ୍ଷିତ, ଦୁର୍ବଳ ସବଳ ସମସ୍ତେ ସମାନ ଓ ପରସ୍ପର ପରିପୂରକ ଅଟନ୍ତି । ଧନୀ, ଧନରେ ବଳିୟାନ ଥିଲେ ମଧ ନିର୍ଦ୍ଧନର କର୍ମଶକ୍ତି କୌଣସି ଅଂଶରେ ନ୍ୟୁନ ନୁହେ । କୁଶଳୀକର୍ମୀ ଗଠନ ସ୍ୱାମିଜୀଙ୍କର ଏହି ଆଭିମୁଖ୍ୟକୁ ବରେଣ୍ୟ ଜନନାୟକ ଡକ୍ଟର ମହତାବ ଡକ୍ଟର ରାଧାନାଥ ରଥ ସଂଗ୍ରାମୀ ସାରଳା ଦେବୀ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଋଷିପ୍ରତିମ ଆଚାର୍ଯ୍ୟ ହରିହର, ହୃଦୟ ବଲ୍ଲଭ ଦେ, ଭାବଗ୍ରାହୀ ମିଶ୍ର ଓ ସଂଗ୍ରାମୀ ଗଦାଧର ଦତ୍ତ ପ୍ରମୁଖ ବହୁ ବିଶିଷ୍ଟ ବ୍ୟକ୍ତି ସମ୍ମାନ କରୁଥିଲେ । ୧୯୪୯ ମସିହାରେ ବଡ଼ଲାଟ୍ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ, ରାଜ୍ୟପାଳ କୈଳାସନାଥ କାଟଜୁ ବଂଗଳାର ରାଜ୍ୟପାଳ ନିତ୍ୟାନନ୍ଦ କାନୁନଗୋ, ବିଶ୍ୱନାଥ ଦାଶ ଓ ଆସଫ ଅଲ୍ଲି ପ୍ରମୁଖ ମାନ୍ୟଗଣ୍ୟବ୍ୟକ୍ତିମାନେ ଏହି ଆଶ୍ରମକୁ ଆସି ଅନ୍ତେବାସୀ ଉଦ୍‌ବାସ୍ତୁ ଓ ଅସହାୟା ମହିଳାମାନଙ୍କର ଶ୍ରମ ଲବ୍ଧ କୃଷି ଉଦ୍ୟାନ, ଏମ୍ବ୍ରୋୟଡରୀ ବ୍ୟାଟି-କ୍ଲଥକଟିଙ୍ଗ ଚମଡାକାମ ଓ ବିବିଧ କୁଟୀର ଶିଳ୍ପର ଭୂୟସୀ ପ୍ରଶଂସା ପୂର୍ବକ ଆଶ୍ରମ ପରିଚାଳନାକୁ ସମୁତ୍ସାହିତ କରାଇଥିଲେ ।

**ଦୀକ୍ଷା ଗ୍ରହଣ** - କଟକ ଗୀତାଜୟନ୍ତୀ ଉତ୍ସବରେ ଓ ନାନା ସ୍ଥାନରେ ସ୍ୱାମିଜୀଙ୍କର ଓଜସ୍ୱିନୀ ବକ୍ତୃତା ଶୁଣି ମୁଁ ତାଙ୍କପ୍ରତି ଆକୃଷ୍ଟ ହୋଇଥିଲି । କଟକରେ ତାଙ୍କ ଠାରୁ ଦୀକ୍ଷା ଗ୍ରହଣ କରି, ଯାବତ୍‌ଜୀବନ ତାଙ୍କ ପ୍ରଦର୍ଶିତ ଆଦର୍ଶରେ ଚଳିବା ପାଇଁ ମନ ସ୍ଥିର କରିନେଲି ।

**ମହିଳା ସମବାୟ ସମିତି** - ସ୍ମ ୧୯୫୧ ମସିହାରେ ସ୍ୱାମିଜୀ ଏହି ମହିଳା କୁଟୀରରେ ମହିଳା ସମବାୟ ସମିତି ଗଠନ କଲେ । ସ୍ମ ୧୯୫୩ ମସିହାରେ ମହତାବ ବାବୁଙ୍କ ଅନୁରୋଧ କ୍ରମେ ଶିଳ୍ପ ବିଭାଗରୁ ପାଞ୍ଚ ହଜାର ଟଙ୍କା ଋଣ ଗ୍ରହଣ କରି ୫ ଗୋଟି ସିଙ୍ଗର ସିଲେଇ ମେସିନ୍ କିଣିଲେ ।

**ସ୍ୱାମୀଜୀଙ୍କ ଦେହରକ୍ଷା** - ସ୍ମ ୧୯୫୫ ମସିହା ମାର୍ଚ୍ଚ ତା ୨୮ ରିଖରେ ୮୫ ବର୍ଷ ବୟସରେ ସ୍ୱାମିଜୀ ଏହି ମହିଳା କୁଟୀରରେ ଶେଷ ନିଃଶ୍ୱାସ ନେଇ ସମାଧିସ୍ଥ ହେଲେ । ତାଙ୍କର ଅନ୍ତିମ ଇଚ୍ଛାନୁଯାୟୀ ତାଙ୍କ ମର ଶରୀରକୁ ବାକ୍ରୁଡା ଆଶ୍ରମକୁ ନିଆଗଲା । ତାଙ୍କର ଲିଖିତ ନିର୍ଦ୍ଦେଶାନୁଯାୟୀ ମନ୍ତ୍ରଯୁକ୍ତ ହୋମ ମାଧମରେ ସମବେତ ଅଗଣିତ ଶିଷ୍ୟ, ଶିକ୍ଷକ, ପ୍ରଶିଷ୍ୟ ଓ ଭକ୍ତମାନେ ମର ଶରୀରକୁ ଅଗ୍ନିଦେବଙ୍କୁ ସମର୍ପଣ କରିଥିଲେ ।

**ଦରପତ୍ର** - ସ୍ୱାମୀଜୀଙ୍କ ଅନ୍ତେ ଆଶ୍ରମରେ ଥିବା ୨୫/୩୦ ଜଣ ମହିଳାଙ୍କୁ ଚଳାଇବାର କୌଣସି ବାଟ ନପାଇ ଆଶ୍ରମ ବନ୍ଦ ହୋଇଯିବାର ଅବସ୍ଥା ଉପୁଜିଲା । ସରକାରୀ ବା ଅନ୍ୟ କୌଣସି ଧନୀ ଲୋକଙ୍କ ସାହାଯ୍ୟ ନ ନେଇ ଆଶ୍ରମଟି ଶୃଙ୍ଖଳିତ ପରିଚାଳିତ ହେଉଥିବା ଦେଖି ସ୍ୱର୍ଣ୍ଣଲତାଙ୍କ ଜାମାତା ଶାଶୁଙ୍କର ପୁରୀରେ ଥିବା ସମସ୍ତ ଧର୍ମଭି ମହିଳା ଆଶ୍ରମକୁ ଦରପତ୍ର କରିଦେଲେ । ସ୍ୱାମୀଜୀଙ୍କ ପଟ୍ଟ ଶିଷ୍ୟ ସ୍ୱର୍ଗତି ଗଦାଧର ଦତ୍ତ ପରିଚାଳନା ସମିତିର ସଭାପତି ଓ ମୁଁ ସମ୍ପାଦକ ଦାୟିତ୍ୱରେରହିଲୁ । ସ୍ମ ୧୯୫୬ ମସିହାରୁ ଅଦ୍ୟାବଧି ଗୁରୁଦେବଙ୍କ ନିର୍ଦ୍ଦେଶ ମତେ ମୁଁ ଆଶ୍ରମକୁ ଯଥା ସାଧ ଚଳାଇ ଆସୁଅଛି । ସ୍ମ ୧୯୪୫ରୁ ମ ୧୯୪୯ ପର୍ଯ୍ୟନ୍ତ ପ୍ରତିମାସରେ କଲିକତା ରେଡିଓ ଷ୍ଟେସନରେ ଗୀତା ପାଠ କରି ମୁଁ ପାଉଥିବା ପାରିଶ୍ରମିକକୁ ଆଶ୍ରମର ଶିଳ୍ପ ଶିକ୍ଷା ପାଇଁ ଦାନକରୁଥିଲି । ଝିଅମାନଙ୍କ ତିଆରି ସୁନ୍ଦର ସୁନ୍ଦର ଜିନିଷମାନ କଟକ ଓ କଲିକତାରେ ବିକ୍ରୟର ବ୍ୟବସ୍ଥା କରିଥିଲି । ଭୂଷଣ୍ଡପୁର କଲୋନୀର ୧୫ଟି ଉଦ୍‌ବାସ୍ତୁ ଝିଅ ଏଠାରେ ଚଳୁଥିଲେ ।

**ସ୍ୱର୍ଣ୍ଣସମ୍ବତ୍ସର** - ୧୯୫୫ ମସିହାର ଶେଷ ଭାଗରେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଆଶ୍ରମର

ଝିଅମାନଙ୍କୁ କର୍ମଭିତ୍ତିକ ଉପାର୍ଜନକ୍ଷମ କରିବା ପାଇଁ ଖଦୀ ସ୍କିମ୍‌ରେ ତିଆସିଲି ଓ ସାବୁନ ତିଆରିପାଇଁ ଆର୍ଥିକ ସାହାଯ୍ୟ ଓ କୁଶଳୀ ଶିକ୍ଷକ ଯୋଗାଇ ଦେଇଥିଲେ । ସେହି ଆର୍ଥିକ ସାହାଯ୍ୟରେ ଆଶ୍ରମରେ ଓ୍ୟାର୍କସେଡ୍ ତିଆରି ହେଲା । ୧୯୫୬ ମସିହାଟି ଆଶ୍ରମର ସ୍ୱର୍ଣ୍ଣସମ୍ବତ୍ସର କହିଲେ କିଛି ଅତୁକ୍ତି ହେବନାହିଁ । ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ପୋଷ୍ଟମ୍ୟାନ ପୋଷାକ ତିଆରି ଆଶ୍ରମରେ ଦେଖି ଓ ଆଶ୍ରମର ପରିବେଶ ଓ ଶିଳ୍ପ କଳାଦେଖି ବହୁତ ଖୁସି ହୋଇଥିଲେ । ଆମର ସୌଭାଗ୍ୟ ଯେ ଆମେ ତାଙ୍କଠାରୁ ପ୍ରଶଂସା ପତ୍ର ପାଇଥିଲୁ । ସେହିବର୍ଷ କେନ୍ଦ୍ର ସମାଜ ମଂଗଳ ବୋର୍ଡର ଅଧ୍ୟକ୍ଷା ଦୁର୍ଗାବାଇ ଦେଶମୁଖ ଓ ତାଙ୍କ ସ୍ୱାମୀ କେନ୍ଦ୍ର ଅର୍ଥମନ୍ତ୍ରୀ ଚିନ୍ତାମଣି ଦେଶମୁଖ ଓଡ଼ିଶାକୁ ଆସି ଓଡ଼ିଶାରେ ସମାଜ ମଂଗଳ ବୋର୍ଡ ଗଠନ ତଥା ନାରୀ ଶିଶୁ କଲ୍ୟାଣ କାର୍ଯ୍ୟ ଚଳାଇବା ନିମନ୍ତେ ମହିଳା କର୍ମୀଙ୍କୁ ଖବର କାଗଜ ମାଧମରେ ଆହ୍ୱାନ କରିଥିଲେ । କିନ୍ତୁ କେହି ଆସିଲେ ନାହିଁ । ସେତେବେଳେ ମୁଁ ସେ ଦୁହିଁଙ୍କୁ ପୁରୀ ମହିଳା ଆଶ୍ରମକୁ ନିମନ୍ତ୍ରଣ କରି ଆଶ୍ରମର ୧୫ ଜଣ ମହିଳା କର୍ମୀଙ୍କୁ ସେହିକାମ ପାଇଁ ବରାଦ କରିଥିଲି । ଓଡ଼ିଶାରେ ସମାଜ ମଂଗଳ ଯୋଜନାକୁ ପ୍ରାଣ ପ୍ରତିଷ୍ଠା କରିବାରେ ଏହା ହିଁ ପ୍ରଥମ ଅବଦାନ । ଏଥିପାଇଁ ଆମେ ଗର୍ବିତ । ସେତେବେଳର ସେହି ମହିଳାକର୍ମୀମାନଙ୍କ ଭିତରୁ କେତେଜଣ ଗେଜେଟେଡ୍ ଅଫିସର ହୋଇ ଏବେ ଅବସର ନେଲେଣି । ଦୁର୍ଗାବାଇ ଦେଶମୁଖ ପ୍ରତି ବର୍ଷ ଆଶ୍ରମକୁ ଦଶହଜାର ଟଙ୍କା ଦେଉଥିଲେ । ପୁଣି ୨୦ଜଣ ମହିଳାଙ୍କ ରହିବା ଓ ଶିଳ୍ପ ଶିଖିବାର ବ୍ୟବସ୍ଥା କରିଥିଲେ । ପ୍ରତିବର୍ଷ ଦିଲ୍ଲୀରେ ଅନୁଷ୍ଠିତ ପ୍ରଦର୍ଶନୀରେ ଆମ ମହିଳା ଆଶ୍ରମର ଷ୍ଟଲ ଖୋଲିବା ବ୍ୟବସ୍ଥା କରାଇଲେ। କେନ୍ଦ୍ର ପୁନର୍ବସତି ମନ୍ତ୍ରୀ ମେହେର ଚାନ୍ଦଖାନା ଓଡ଼ିଶାରେ ଉଦ୍‌ବାସ୍ତୁମାନଙ୍କର ଥଇଥାନ ବ୍ୟବସ୍ଥା ଦେଖିବାକୁ ଆସି ଆମ ମହିଳାଆଶ୍ରମ ପରିଦର୍ଶନ କରିଥିଲେ ଓ ଆଶ୍ରମର ଜୀବନ ଯାତ୍ରାରେ ଖୁସିହୋଇ ୩୦ ଜଣ ଉଦବାସ୍ତୁ ଝିଅମାନଙ୍କ ପାଇଁ ମାସିକ ୬୦ ଟଙ୍କା କରି ୩ ବର୍ଷ ପାଇଁ ଷ୍ଟାଇପେଣ୍ଡ ବ୍ୟବସ୍ଥା କରିଥିଲେ । ଗୃହ ସଂପ୍ରସାରଣ ପାଇଁ ୧୦ ହଜାର ଟଙ୍କା, ଭୂଷଣ୍ଡପୁର ଉଦ୍‌ବାସ୍ତୁ କଲୋନୀରେ ଝିଅମାନଙ୍କ ଆତ୍ମ ନିଯୁକ୍ତି ପାଇଁ ଦେଢ଼ ଲକ୍ଷ ଟଙ୍କା ସାହାଯ୍ୟ ଦେଇଥିଲେ । ଡାକ୍ତରଖାନାର ନର୍ସ ଓ ଡାକ୍ତରଙ୍କ ପୋଷାକ ପୁଲିସ ଓ ପିଅନ ପୋଷାକ ସରକାରୀ ଅର୍ଡର ଅନୁଯାୟୀ ୨ ବର୍ଷକାଳ ଆମେ ଯୋଗାଇଛୁଁ । ଆମେରିକା ରାଷ୍ଟ୍ରଦୂତ ଏଲସଓ୍ୱାଥ ଭିନ୍ ସସ୍ତ୍ରୀକ ଅଶ୍ରମକୁ ଆସି ଖୁସି ହୋଇ, ଗୁଣ୍ଡ ଦୁଧ, ବାଜରା, ମକା ଗୁଣ୍ଡ, ତେଲ ଓ ଲହୁଣି ଇତ୍ୟାଦି ଆମର ଏହି ଆଶ୍ରମ ତଥା ବିଧବା ଶ୍ରମ, ଅନାଥାଶ୍ରମ ଓ ନିକାତ୍‌କ ନାରୀ ଶିକ୍ଷା ଆଶ୍ରମକୁ ଦାନର ବ୍ୟବସ୍ଥା କରିଥିଲେ । ଦୀର୍ଘ ୧୦ ବର୍ଷ ଧରି ଏହି ସାହାଯ୍ୟ ମିଳିଥିଲା । ଖ୍ରୀ ୧୯୫୭ ମସିହାରେ କେନ୍ଦ୍ର ହସ୍ତଶିଳ୍ପ ବୋର୍ଡର ଚେୟାରମ୍ୟାନ୍ କମଳା ଦେବୀ ଚଟ୍ଟୋପାଧାୟ ଆଶ୍ରମକୁ ଆସି ଦୁଇବର୍ଷ ପାଇଁ ୧୦ ଜଣ ଝିଅଙ୍କୁ ଉନ୍ନତ ସିଲାଇ ଓ ବୁଣାଇ ଶିକ୍ଷାପାଇଁ ଷ୍ଟାଇପେଣ୍ଡ ମଞ୍ଜୁର କରିଥିଲେ । ପୁରୀ ବନ୍ଦୀଶାଳାରୁ ୫ ଜଣ କଏଦୀଙ୍କୁ ମୁଁ ମହିଳା ଆଶ୍ରମକୁ ଆଣି ଶିଳ୍ପଶିକ୍ଷକ ରୂପେ ନିଯୁକ୍ତି କରାଉଥିଲି । ଝିଅମାନଙ୍କୁ ସେମାନେ ସତରଞ୍ଜି ଓ ଗାଲିଚ଼ା ତିଆରି ଶିଖାଉଥିଲେ । ଖୁସିର କଥା ଯେ, ପରବର୍ତ୍ତୀ ସମୟରେ ସେମାନଙ୍କୁ ବୈଷୟିକ ଜୀବନ ଯାପନର ବ୍ୟବସ୍ଥାକରାଯାଇଥିଲା । ଦିଲ୍ଲୀରେ ଆମର ଗୋଟିଏ ଏମ୍ପୋରିୟମ ଥିଲା । ଖ୍ରୀ ୧୯୫୯ରେ ଆଶ୍ରମର ସଂପ୍ରସାରଣ ପାଇ ୨ ଲକ୍ଷ ଟଙ୍କା ମିଳିଥିଲା ।

**ଅସହିଷ୍ଣୁତା** - ଏହି ସବୁ ଜୟଯାତ୍ରାକୁ ସହିନପାରି, ସନତବାବୁଙ୍କ ମୃତ୍ୟୁପରେ ତାଙ୍କର ଉତ୍ତରାଧିକାରୀମାନେ ପୁରୀର କେତେକ ବଂଗାଳୀଙ୍କ ସହଯୋଗରେ ଆଶ୍ରମ ବିରୁଦ୍ଧରେ ଦେଓ୍ୱାନୀ ମୋକଦ୍ଦମା ଦାୟର କରିଥିଲେ । ଦୀର୍ଘ ୧୨ ବର୍ଷଧରି ମୋକଦ୍ଦମା ଚାଲିଲା, ହାଇକୋର୍ଟ ପର୍ଯ୍ୟନ୍ତଗଲା ।

**ସତ୍ୟର ବିଜୟ** - ଖ୍ରୀ ୧୯୭୨ ମସିହାରେ ମାନ୍ୟବର ପ୍ରଧାନ ବିଚାରପତି ଶ୍ରୀଯୁକ୍ତ ଗତିକୃଷ୍ଣ ମିଶ୍ର

ପୁରୀ ଜଜକୋର୍ଟର ନୂତନ ସୌଧ ଉଦ୍‌ଘାଟନ ପାଇଁ ଆସିଥିବା ଅବସରରେ ଆଶ୍ରମ ସମ୍ପର୍କରେ ସମସ୍ତ ଖବର ଟିକିନିଖି ସଂଗ୍ରହ କରିଥିଲେ । ତାଙ୍କର ହୃଦ୍‌ବୋଧ ହେଲା ଯେ ଏହି ଆଶ୍ରମ କାହାରି ଚାନ୍ଦା ଉପରେ ନିର୍ଭର କରେ ନାହିଁ, ଭିକ୍ଷା କରେ ନାହିଁ । ମହିଳାମାନଙ୍କୁ ଭାରତୀୟ ଆଶ୍ରମ ଭାବଧାରାରେ ସୁଶିକ୍ଷିତ କରାଇଥାଏ । ଏହି ପରିପ୍ରେକ୍ଷୀରେ ମାନ୍ୟବର ହାଇକୋର୍ଟ ଆଶ୍ରମକୁ ସ୍ୱର୍ଣ୍ଣଲତା ଟ୍ରଷ୍ଟର ଅଧିକାରୀ ରୂପେ ସାବ୍ୟସ୍ତକଲେ । କେବଳ ସେତିକି ନୁହେଁ ଟ୍ରଷ୍ଟକୁ ତେର ହଜାର ଟଙ୍କା କ୍ଷତି ପୂରଣ ଧାର୍ଯ୍ୟ କଲେ ।

**କୃତିତ୍ୱ** - ଆଶ୍ରମରେ ତାଲିମ ନେଇଥିବା ଜଣେ ମହିଳା ଏବେ ପୁରୀ କେନ୍ଦ୍ରୀୟ ବିଦ୍ୟାଳୟରେ ଶିକ୍ଷିକା ଅଛନ୍ତି । ଆଶ୍ରମର ତାଲିମକୁ ସରକାର ସ୍ୱୀକୃତି ଦେଇଛନ୍ତି । ଗୃହରକ୍ଷୀ ଯୋଜନାରେ ସର୍ବ ପ୍ରଥମେ ଆଶ୍ରମର ୨୨ ଜଣ ଝିଅ ନିଯୁକ୍ତି ପାଇଥିଲେ । ୧୯୭୦ ରୁ ୧୯୭୫ ମଧ୍ୟରେ ଦିଲ୍ଲୀ ବମ୍ବେ ଏବଂ କଲିକତାକୁ ଏହି ଆଶ୍ରମର ଛାତ୍ରୀମାନେ ଉଚ୍ଚତମ ତାଲିମ ପାଇଁ ଯାଇଥିଲେ । ସେମାନଙ୍କର ଚାକିରି ଓ ବିଭାଘରରସୁବିଧା କରାଯାଇପାରିଛି । ଏବେ ବି ଅସହାୟା ଅବସ୍ଥାରେ ପଡିଥିବା ଝିଅମାନଙ୍କୁ ଉଦ୍ଧାର କରି ପୁଲିସ ଏହି ଆଶ୍ରମକୁ ଛାଡୁଛନ୍ତି । କଠିନ୍ ରୋଗାକ୍ରାନ୍ତ ମହିଳାମାନେ ଡାକ୍ତରଖାନାରେ ସ୍ଥାନ ନପାଇ ଆଶ୍ରମରେ ଆଶ୍ରୟ ନେଇପାରୁଛନ୍ତି । ଗାଁଆ ଗହଳର କେହି କେହି ଝିଅ ବୋହୂ ପାରିବାରିକ ଅଶାନ୍ତି ସହି ନପାରି ଅସହାୟ ଅବସ୍ଥାରେ ପଳାଇ ଆସୁଥିବାରୁ ସେମାନଙ୍କୁ ଆଶ୍ରମରେ ରଖାଯାଇ ପୁଣି ତାଙ୍କ ଘରେ ପହଞ୍ଚାଇ ଦିଆଯାଉଛି । ବିବାହ - ବିବାଦ ଗ୍ରସ୍ତ ଝିଅମାନଙ୍କୁ ବିଚାର ଶେଷ ହେବାଯାଏ ନିରାପଦରେ ରହିବା ପାଇଁ ଅଦାଲତ ଏହି ଆଶ୍ରମକୁ ପଠାଉଛନ୍ତି ।

ସ୍ୱ ୧୯୮୦ ମସିହାରେ ଜଣେ ଗରିବ ଲୋକ ଆଶ୍ରମକୁ ଲଗାଇ ମୁଖ୍ୟ ରାସ୍ତା କଡରେ ଚାହା ଦୋକାନଟିଏ କରିଥିଲା । ଏହାକୁ ଅନଧିକାର ଦଖଲ କହି ପୁରୀ ପୌରସଂସ୍ଥା ଉଚ୍ଛେଦ୍ ନୋଟିସ ଦେଇଥିଲେ । ସେତେବେଳେ ରାଜ୍ୟପାଳ ଥାଆନ୍ତି, ଶ୍ରୀଯୁକ୍ତ ଭଗବତ୍ ଦୟାଳଶର୍ମା । ଆମ୍ଭେମାନେ ତାଙ୍କୁ ଏହା ଜଣାଇଲୁ । ମାନ୍ୟବର ରାଜ୍ୟପାଳ ଏହାର ସୁବିଚାର କରି ଆଶ୍ରମପାଖ ରାସ୍ତାକଡରେ ଖାଲି ସ୍ଥାନରେ - ଅସ୍ଥାୟୀ ଷ୍ଟଲ କରିବା ପାଇଁ ଅନୁମତି ଦେବାକୁ ଜିଲ୍ଲାପାଳଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏହାଦ୍ୱାରା ଏହି ଅଂଚଳରେ ବହୁ ବିଦେଶୀ ଓ ସାଧାରଣ ଲୋକଙ୍କର ପ୍ରଭୂତ ଉପକାର ହେଉଛି । ଚଲାପଥର ନିର୍ଜନତା ଆଉ ନାହିଁ । ଅସାମାଜିକ ଲୋକଙ୍କର ଦୌରାତ୍ମ୍ୟ ମଉଳି ଯାଇଛି ।

**ସମ୍ବଳ** - ଆଶ୍ରମ ପରିସରରେ ଥିବା ଦୁଇଶହ ବର୍ଷର ପୁରାତନ ଘରଗୁଡିକ ଜୀର୍ଣ୍ଣ ସଂସ୍କାର କରି ୫୦ଟି ପରିବାରକୁ ସ୍ୱଳ୍ପଭଡ଼ାରେ ଥଇଥାନ କରିଛୁ । ପଶ୍ଚିମ ବଂଗ ଗ୍ରାମମାନଙ୍କରୁ ଅସୁଥିବା ଯାତ୍ରୀମାନଙ୍କ ରହଣିପାଇଁ ବ୍ୟବସ୍ଥା ରହିଛି । ସିଲାଇ ଓ ବୁଣାବୁଣି ପୂର୍ବପରି ଚାଲିଛି ଏହି ସବୁ ଆୟକୁ ସମ୍ବଳକରି ଏହି ଆଶ୍ରମ ଓ ବାଙ୍କୁଡାସ୍ଥିତ କେନ୍ଦ୍ରୀୟ ସତ୍ୟାୟତନ ମହାମନ୍ଦିରର ପରିଚାଳନା କରାଯାଉଛି ।

**ଜାତୀୟ କାର୍ଯ୍ୟକ୍ରମ** - ପୁରୀ ସର୍ବୋଦୟ ମେଳା, ଅଲୋଡା ବ୍ୟକ୍ତିଙ୍କ ଶବସଂସ୍କାର କଳ୍ପେ ଗଠିତ ଶ୍ରୀସଂସ୍କାର ସମିତି, ବୌଦ୍ଧ ଦର୍ଶନ ପ୍ରଚାର କଳ୍ପେ ଗଠିତ ବୋଧି ଚକ୍ରର ଅଧିବେଶନ ଏହି ଆଶ୍ରମରେ ନିୟମିତ ଅନୁଷ୍ଠିତ ହେଉଛି । ଗାନ୍ଧୀ ଜୟନ୍ତୀ, ସହୀଦ ଦିବସ, ସାଧାରଣତନ୍ତ୍ର ଦିବସ, ଆଚାର୍ଯ୍ୟ ହରିହର ଜୟନ୍ତୀ, ଓ ସର୍ବୋଦୟ ମେଳାଭଳି ଜାତୀୟ କାର୍ଯ୍ୟକ୍ରମରେ ଆଶ୍ରମ ଭାଗନେଉଛି । ସମାଜ ସେବୀମାନଙ୍କୁ ଉପାୟନ ପ୍ରଦାନ କରୁଛି । ସିଂହଳରୁ ଆନୀତ ଏକ ବୋଧି ଦ୍ରୁମ ଆଶ୍ରମଉଦ୍ୟାନରେ ରୋପଣ କରାଯାଇଛି । ସତ୍ୟର୍ଷି ଶ୍ରୀ ଶ୍ରୀ ଯୋଗଜୀବନାନନ୍ଦଙ୍କ ସହଜ, ସରଳ, ମହାନ ଆଦର୍ଶ - "ବହୁଜନ ସୁଖାୟ, ବହୁଜନ ହିତାୟ"ରେ ଅନୁପ୍ରାଣିତ ହୋଇ ଦେଶ ଓ ଦଶର କଲ୍ୟାଣର ବ୍ରତନେଇ ପ୍ରତ୍ୟାଶା ନ ରଖି ସେହି ମନୀଷୀଙ୍କର ଶିଷ୍ୟ ବା ଶିଷ୍ୟା ଭାବରେ

ଆମ୍ଭେମାନେ ଆଶ୍ରମକୁ ଚଳାଉଅଛୁ । ମୋର ସହଧର୍ମିଣୀ ଶ୍ରୀମତୀ ବିଜଳୀ ସେନ୍ ପୂର୍ଣ୍ଣ ପ୍ରାଣରେ ସହଯୋଗିତା କରୁଛନ୍ତି ।

**ପରିଚାଳନା କମିଟି** ଏହି ଅନୁଷ୍ଠାନକୁ ଚଳାଇବାପାଇଁ ଏକ ପରିଚାଳନା କମିଟି ଅଛି । ଶ୍ରୀମତୀ କ୍ଷମା ଘୋଷ୍ (ଶାନ୍ତିନିକେତନ) ଅଧ୍ୟକ୍ଷା, ଡାକ୍ତର ଶ୍ରୀମତୀ ବେଲାରାଣୀ ଦତ୍ତ ଉପାଧ୍ୟକ୍ଷା, ଶ୍ରୀମତୀ ବିଜଳୀ ସେନ୍ କୋଷାଧ୍ୟକ୍ଷା ଓ ପରିଚାଳିକା, ମୁଁ ନିଜେ ସଂପାଦକ, କନକଲତା ବାରିକ, ଆଶାଲତା ଦତ୍ତ, ସରଳା ସିହ୍ନା, କଳ୍ପନା ଭଟ୍ଟାଚାର୍ଯ୍ୟ, ରବିନାରାୟଣ ମିଶ୍ର, ରଘୁନାଥ ମାଳ ବୋଲପୁରର ସାଧନା ଚାଟାର୍ଜି, କଟକର ଶୋଭନା ବୋଷ, ଜଟଣୀର ଅଞ୍ଜନା ଦତ୍ତ, ଖଡଗପୁରର ଅସୀମ ସେନ୍ ଓ ମୁମ୍ବାଇର କଳ୍ପନା ଚୌଧୁରୀ ସଦସ୍ୟ ଅଛନ୍ତି ।

ଆମର ସୀମିତ ସମ୍ବଳ ମଧ୍ୟରେ ୭ ଶହ ବାସ୍ତୁହରା ତଥା ପୁଲିସ ଓ ବିଚାର ଅଦାଲତରୁ ପ୍ରେରିତ ୩ ଶହ ମହିଳାଙ୍କୁ ଉଚ୍ଚ ଶିକ୍ଷା ଦିଆଇ ଥଇଥାନ କରାଇ ପାରିଛୁ ।

ଅସହାୟା ନିରାଶ୍ରୟା ତଥା ଆତ୍ମନିଯୁକ୍ତି ପାଇଁ ଆଗ୍ରହୀ ଝିଅ ବୋହୂମାନଙ୍କ ପାଇଁ ଏହି ମହିଳା କୁଟୀରକୁ ଏକ ନିର୍ଭରଯୋଗ୍ୟ ପ୍ରତିଷ୍ଠାନରେ ପରିଣତ କରାଇ ପାରିଥିବାରୁ ଆମ୍ଭେମାନେ ପରମ ସନ୍ତୋଷ ଲାଭ କରୁଛୁ ।

ଆଚାର୍ଯ୍ୟ ହରିହର ଛତ୍ର, ପୁରୀ

## ଅଶୋକ ଚକ୍ରରେ ବୌଦ୍ଧ ଦର୍ଶନ

ଆମ ଜାତୀୟ ପତାକାରେ ଥିବା ଅଶୋକଚକ୍ରରେ ୨୪ ଟି ଅର ଅଛି ଏହା ବୌଦ୍ଧଅଷ୍ଟାଙ୍ଗ ମାର୍ଗର ପ୍ରତୀକ । ସେ ସବୁ ହେଲା -

୧. **ସମ୍ୟକ ଦୃଷ୍ଟି** - କଳ୍ପନା ପ୍ରସୂତ ମିଥ୍ୟା ଧାରଣାରୁ ଦୂରରେ ରହି ଅନୁଭବ ଓ ବାସ୍ତବତା ସହ ସୁ ସମ୍ପର୍କ ରକ୍ଷା ।

୨. **ସମ୍ୟକ ସଂକଳ୍ପ** - କାମ, କ୍ରୋଧ, ଲୋଭ, ହିଂସା ବିବର୍ଜିତ ସଂକଳ୍ପ ।

୩. **ସମ୍ୟକ ବାଣୀ** - ମିଥ୍ୟା, ଚୁଗୁଲି, କଟୁକ୍ତି, ଓ କୁଭାଷା ପରିହାର ।

୪. **ସମ୍ୟକ କର୍ମାନ୍ତ** - ହିଂସା, ଚୋରୀ, ବ୍ୟଭିଚାର ନିଶାସେବନ ଓ ଜୁଆଖେଳ - ପଞ୍ଚ ଶାରୀରିକ ପାପ ବର୍ଜନ ।

୫. **ସମ୍ୟକ ଆଜୀବିକା** - ଅନ୍ୟର କ୍ଷତି ବା ଅନ୍ୟାୟ ନ ହେବା ଅସ୍ତ୍ର ଶସ୍ତ୍ର, ଜୀବ, ମାଂସ, ମଦ ଓ ବିଷ ବ୍ୟବସାୟ ନ କରିବା ।

୬. **ସମ୍ୟକ ବ୍ୟାୟାମ** - କୁଅଭ୍ୟାସ ଓ କୁପ୍ରବୃତ୍ତି ପରିହାର ଉତ୍ତମ ପ୍ରବୃତ୍ତି ଗ୍ରହଣ, ଓ ଏହାର ଅଭିବୃଦ୍ଧିପାଇଁ ପ୍ରଚେଷ୍ଟା ।

୭. **ସମ୍ୟକ ସ୍ମୃତି** - (କ) କାୟାନୁପଶ୍ୟା - **ଶାରୀରିକ କାର୍ଯ୍ୟ** ସତର୍କତାର ସହିତ କରିବା, (ଖ) ବେଦନାନୁପଶ୍ୟା - ସୁଖ ଦୁଃଖ ଆଦି ବେଦନା ପ୍ରତି ସତର୍କତା, (ଗ) ଚିତ୍ତାନୁପଶ୍ୟା - ରାଗ, ଦ୍ୱେଷ, ମୋହ, ପରିହାର, (ଘ) ଧର୍ମାନୁପଶ୍ୟା - କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଆଳସ୍ୟ ଔଦ୍ଧତ୍ୟ, କୁକର୍ମ ମାତ୍ସର୍ଯ୍ୟ ପଶ୍ଚାତାପ ଓ ସଂଶୟାଦି ମନର ଧର୍ମ ପ୍ରତି ସତର୍କତା ।

୮. **ସମ୍ୟକ ସମାଧି** - ଚାରିସ୍ମୃତି ଓ ଚାରି ସମ୍ୟକ ବ୍ୟାୟାମ - ଏହି ଆଠଟି ଯାକ ଧର୍ମ ପାଳନ ପୂର୍ବକ ଚିତ୍ତଶୁଦ୍ଧ ଭାବନା ।

**ଏହି ଅଷ୍ଟାଙ୍ଗ ମାର୍ଗ + ପ୍ରତ୍ୟେକକୁ ଉପଲବ୍ଧି (୮) + ପ୍ରତ୍ୟେକ ଆଚରଣ କରିବା (୮) = ଏହିପରି ୨୪ଟିକୁ ୨୪ଟି ଅରରୂପେ ପ୍ରତୀକାତ୍ମକ ରୂପାୟନ କରାଯାଇଛି ।**

**(୩୦.୪.୯୯ ତାରିଖ "ପ୍ରଜାତନ୍ତ୍ର"ରେ ପ୍ରକାଶିତ ଶ୍ରୀ ରାମଚନ୍ଦ୍ର ମହାନ୍ତିଙ୍କ ଲିଖିତ ଶୀଳ, ସମାଧି ଓ ପ୍ରଜ୍ଞା, ନିର୍ବାଣ ପ୍ରାପ୍ତିର ତିନୋଟି ସୋପାନ ଶୀର୍ଷକ ଲେଖାର ଉଦ୍ଧୃତସାର ।)**

# ଶ୍ରୀଲଙ୍କାରେ ସର୍ବୋଦୟ

ଶ୍ରୀ ସୁରଜିତ ମହାନ୍ତି

୧୯୯୮ ଜୁଲାଇ ମାସରେ ଗାନ୍ଧୀ ପ୍ରତିଷ୍ଠାନରୁ ସମ୍ମାନ ପ୍ରାପ୍ତ ଏ.ଟି. ଆର୍ଯ୍ୟରତ୍ନେଙ୍କ ଆମନ୍ତ୍ରଣ କ୍ରମେ ଭାରତରୁ ଆମେ ସତର ଜଣ ପ୍ରତିନିଧି ଉଡାଜାହାଜ ଯୋଗେ କଲମ୍ବୋ ଯାଇଥିଲୁ । ଓଡିଶାରୁ ଆମେ ଥିଲୁ ଛ ଜଣ - ଅଧ୍ୟାପକ ସଦାନନ୍ଦ ମିଶ୍ର, ଅରୁଣାଞ୍ଚଳ ପ୍ରଦେଶରେ ଶିକ୍ଷକତା କରୁଥିବା ଶ୍ରୀ ବିଜୟ ଦାସ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ଅଧ୍ୟାପକ କମରୁଦ୍ଦିନ ଖାଁ, ଏହି ଦଳରେ ଥିଲେ । ଜାମ୍ମୁ, ନାଗପୁର, ଓ ବିଶ୍ୱଭାରତୀରୁ ପ୍ରତିନିଧି ଯାଇଥିଲେ । ପ୍ଲେନ୍‌ରେ ଆମକୁ ଘଣ୍ଟାକରୁ ଅଧିକ ସମୟ ଲାଗିଲା । ସେ ଅଞ୍ଚଳରେ ସର୍ବୋଦୟର ପ୍ରଧାନ ମହକୁମା ମୋରାଟୁଆରେ ପହଂଚି ପୂର୍ବ ବ୍ୟବସ୍ଥିତ ଅତିଥି ନିବାସରେ ରହିଲୁ । ନିବାସଟି ଆଧୁନିକ ରୁଚି ସଂପନ୍ନ । ଖାଦ୍ୟପେୟର ବ୍ୟବସ୍ଥା ଆମକୁ ବହୁତ ଭଲ ଲାଗିଲା ।

ସର୍ବୋଦୟ ଓ ଅହିଂସା ଉପରେ ତିନି ଦିନ ବ୍ୟାପୀ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହେଲା । ବିଭିନ୍ନ ଦେଶରୁ ପ୍ରତିନିଧି ଆସିଥିଲେ । ଇଂରାଜୀ ଜାଣି ନଥିବା ପ୍ରତିନିଧିମାନଙ୍କ ପାଇଁ ଦୋଭାଷି ରହିଥିଲେ ।

ସେଠାରେ ସ୍ୱଳ୍ପ ଦିନ ରହିବା ମଧ୍ୟରେ ପ୍ରାୟ ଅର୍ଦ୍ଧଶତାଧିକ ଗାଁ ବୁଲିବାର ବ୍ୟବସ୍ଥା ଥିଲା । ଆମେ ଯାହାଅନୁଭବ କଲୁ ସେହି ଗ୍ରାମଗୁଡିକୁ ନେଇ ସର୍ବୋଦୟ ଦୃଷ୍ଟିରୁ ସେମାନେ ଏକ ସଘନ ଅଂଚଳ ଗଢିଛନ୍ତି । ବାଲବାଡି, ମୂକ ବଧିର ବିଦ୍ୟାଳୟ, ସାଧାରଣ ଶିକ୍ଷାନୁଷ୍ଠାନ ବ୍ୟତୀତ ଅଂଚଳର ଉନ୍ନୟନ ପାଇଁ ଜଳସେଚନ, ବିଦ୍ୟୁତ, କୃଷି, ଗୋଷ୍ଠୀ ଉନ୍ନୟନ କେନ୍ଦ୍ର ଇତ୍ୟାଦି ଅତ୍ୟନ୍ତ ଶୃଙ୍ଖଳିତ ଓ ବ୍ୟବସ୍ଥିତ ଢଙ୍ଗରେ ପରିଚାଳିତ ହେଉଅଛି ।

ନିଜର ଦୁଃଖ ସୁଖ ଆଲୋଚନା ପାଇଁ ସ୍ଥାନେ ସ୍ଥାନେ ଗୋଷ୍ଠୀ କେନ୍ଦ୍ରମାନ ରହିଅଛି । ଉଚ୍ଚ ଶିକ୍ଷିତ ବୈଷୟିକ ତାଲିମପ୍ରାପ୍ତ ବ୍ୟକ୍ତିମାନେ ଯୋଗ୍ୟତା ଅନୁରୂପ କାର୍ଯ୍ୟ ହାତକୁ ନେଇଛନ୍ତି ।

ଜାପାନ, ଥାଇଲାଣ୍ଡ ଓ ଆମେରିକା ଭଳି ଧନାଢ୍ୟ ଦେଶରୁ କୋଟ କୋଟି ଟଙ୍କା ଆର୍ଥିକ ସହାୟତା ମିଳୁଛି । ଗାଁ ଲୋକେ ଉଚ୍ଚନୀଚ ଭେଦ ଉର୍ଦ୍ଧ୍ୱରେ । ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି ଦରକାର ପଡିଲେ ସାଧାରଣ ଚାକରର କାମ କରିବାକୁ ଆଦୌ କୁଣ୍ଠିତ ବା ଲଜ୍ଜିତ ହେଉନାହିଁ । ଗାନ୍ଧୀ, ବିନୋବାଙ୍କ ଫଟୋ ଚିତ୍ର ଗୋଷ୍ଠୀ କେନ୍ଦ୍ରରେ ଦେଖିବାକୁ ପାଇଲୁ ।

ସିଂହଳ ଏକ ଚା,ରବରର ଦେଶ । ନଈ, ନାଳ, ଫୁଲ, ଫଳ ଓ ସବୁଜିମାରେ ପରିବେଶ ବହୁତ ଆକର୍ଷଣୀୟ । ବୌଦ୍ଧ ମନ୍ଦିରର ପ୍ରାଚୁର୍ଯ୍ୟ । ମନ୍ଦିରର ପୁରୋହିତ ବା ସଂଚାଳକମାନେ ଅତ୍ୟନ୍ତ ମହାର୍ଘ ଜୀବନ ଯାପନ କରୁଛନ୍ତି । କିଛି ହିନ୍ଦୁ ଦେବ ମନ୍ଦିର ଅଛି । ମାତ୍ର ଆମ ପୁରାଣ ବର୍ଣ୍ଣିତ ରାବଣ ସମ୍ବନ୍ଧରେ ସେଠାରେ କୌଣସି ଚିହ୍ନ ବର୍ଣ୍ଣ ନାହିଁ । ସେ ଦିଗରେ ଲୋକେ ସଂପୂର୍ଣ୍ଣ ଅଜ୍ଞ । ସିଂହଳୀମାନଙ୍କ ନାମ ଓ ସାଙ୍ଗିଆ ଆମ ଭାରତ ପରି । ପରିଷ୍କୃତି ପ୍ରତି ସେମାନେ ଏତେ ସଚେତନ ଯେ କାଛରେ ହାତ ମାରିବାକୁ ଆଦୌ ପସନ୍ଦ କରନ୍ତି ନାହିଁ ।

ସିଂହଳରେ ଯେଉଁ ଗୃହ ଯୁଦ୍ଧ ଚାଲିଛି ଆମେ ତାର କୌଣସି ପ୍ରଭାବ ଅନୁଭବ କଲୁ ନାହିଁ ବରଂ ଏଲ୍. ଟି. ଟି. ଇ. ର, କେତେକ ପ୍ରମୁଖ କର୍ମକର୍ତ୍ତା ଆମ ସହିତ ଅଂତରଂଗ ଆଲୋଚନା କରିଥିଲେ ।

ଆମର କଥା ଅଛି - ଲଙ୍କାରେ ହରିଶବ୍ଦ । ସର୍ବୋଦୟ ଭାବନା ଅହିଂସକ ସମାଜ ପ୍ରତିଷ୍ଠା କଲେ

ନିଶ୍ଚୟ ଏକ କଠିନ ଓ ସାଧୁ ଉଦ୍ୟମ ବୋଲି ଉପଲବ୍ଧି,
କରି ଆମେ ଆମ ଦେଶକୁ ବାହୁଡିଲୁ । ଜୟ ଜଗତ ।

ସର୍ବୋଦୟ ମେଳା ସଦସ୍ୟ,
ଘୋଡା ବଜାର,
ପୁରୀ

ଭୟାଂ ଇତି ଭାରତ
ବିଦ୍ୟାରେ ଯେ ରତ
ସେଇ ଭାରତ

## ହେ ! ଶହୀଦ ବିଜୟୀ

ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ

ବକ୍ଷର ହାଡ଼ ଦେଇ ମାଟିର ଏ ବୁକୁରେ
କୀରତି ଯେ ସରଚିଲ
ଗଢିଗଲ ଇତିହାସ ମୀନାର
ଶବମୁଖେ ଢାଳିଦେଇ ଜୀବନର ଅମୀୟ
ଛାତି ତଳେ ଭରିଦେଲ ଶକତିର ଜୁଆର ।୧।

ବେଦନାର ହିମାଳୟ ଚୁରି ତୁମ ଚରଣେ
ତମସାର ରାତିତୀରେ ଆଲୋକର ଆଭାସ
ମରଣର କାରାଗାର ତଳେ ଦେଲ ଛଟାଇ
ଆଲୋକିତ କରି ଏଇ ମାଟି ଆଉ ଆକାଶ ।୨।

ପ୍ରିୟ ଜନ ଆଖିତଳେ ନୀରଧାର ଅଜାଡି
ଶୁଣିଲ ଯେ ସଂଗୀନେ ବନ ବିଥି ଗୀତିକା
ରକ୍ତର ମଉସୁମୀ ଉଷର ଏ ମାଟିରେ
ଢାଳିଦେଇ ଲେଖିଗଲ ଶାନ୍ତିର ଲିପିକା ।୩।

ମରଣର ପରପାରୁ ଆଣିଦେଲ ଜୀବନ
ପୁରାତନ ମାଟି ତଳୁ ନୂତନର ଫସଲ
ଧରଣୀର ଜୟଗାନେ ଲେଖିଗଲ କବିତା
ମୃତ୍ୟୁର ଛନ୍ଦରେ ତୋଳି ନବ ଗଜଲ ।୪।

କୁତ୍ସିତ ମୁଖେ ତୁମେ ବୋଳିଦେଲ ସୁଷମା
ପରାଜିତ ଭାଲେ ଦେଲ ବିଜୟର ଗରବ
ଅନ୍ତିମ ନିଶ୍ୱାସେ ପୋଡି ଦେଲ ଧରାର
ଯାହା କିଛି ଦୈନ୍ୟ ଜାତନାର ପରବ ।୫।

ଜୀବନକୁ ଜାଳି ତୁମେ ଗଢିଗଲ ଆମକୁ
ଆଉ ଆମ ନଭ ଛୁଆଁ କୀରତିର ମୀନାର
ସମ୍ମାନ ଦିଅ ତାରେ ଭଲ ପାଅ ତାହାକୁ
ଖୋଲି ଦେଇ ତୁମ ହୃଦ ଦୁଆର .... ।୬।

ବନ୍ଦନା ଆଜି ତାର ତେଣୁ ଏଇ ଶୁଭବାସରେ
ଘେନି କୋଟି ଅନ୍ତର ସଂଚିତ ଶ୍ରଦ୍ଧାର ପ୍ରଣତି

ହେ ! ସଂଗ୍ରାମୀ - ବଂଧୁଯେତେ ଝାସ ଦେଇ ମୁକ୍ତିର ତୀର୍ଥରେ
ମୃତ୍ୟୁକୁ ବରିନେଲ
ଇତିହାସେ ଲେଖିଗଲ ମୁକ୍ତିର ଜୟନ୍ତୀ
ତୁମେ ମୃତ୍ୟୁଞ୍ଜୟୀ !
ଏ ମାଟିର ଶହୀଦ ବିଜୟୀ ......

(୩୦.୧.୯୪ ଶହୀଦ ଦିବସ ସମାବେଶରେ ପଠିତ)

ଶିକ୍ଷକ
ପୁରୀ ଜିଲ୍ଲାସ୍କୁଲ

### ସବୁ ଆମିଷ

ଜଳଂ ଜଳଚରୈଃ ମିଶ୍ରଂ ଦୁଗ୍ଧ ଗୋମାଂସ ନିସ୍ୱତ
ଅନ୍ନାଦି ମେଦ ଯାତାନି ନିରାମିଷଂ କଥଂ ଭବେତ

# ଅଭିମତ

ସର୍ବୋଦୟ ମେଳା ଅନୁକୂଲ୍ୟରେ ଅନୁଷ୍ଠିତ ବିଭିନ୍ନ କାର୍ଯ୍ୟକ୍ରମରେ ବହୁ ସଜ୍ଜନ ଭାଗନେଇ ମୂଲ୍ୟବାନ ବକ୍ତବ୍ୟ ପ୍ରଦାନ କରିଛନ୍ତି । ସେଥିରୁ କେତୋଟି ଏଥିରେ ସନ୍ନିବେଶ କରୁଛୁ । ..................... ସମ୍ପାଦକ

୧ - **ଶ୍ରୀ ରମାକାନ୍ତ ପଟ୍ଟନାୟକ** ଅବସରପ୍ରାପ୍ତ କେନ୍ଦ୍ର ପ୍ରଶାସନିକ ଅଧିକାରୀ - କେନ୍ଦ୍ର ଅର୍ଥମନ୍ତ୍ରୀ ଡଃ ମନମୋହନ ସିଂହ ଆମେରିକର ଉଚ୍ଚ ପ୍ରଶଂସକ । ମୁଦ୍ରାସ୍ଥିତିକୁ କମାଇବା ଆଳରେ ମୁକ୍ତବାଣିଜ୍ୟ ଦ୍ୱାରା ଅର୍ଥନୀତିକୁ ସେ ଯେପରି ପ୍ରଭାବିତ କରାଉଛନ୍ତି, ତଦ୍ୱାରା ଗରିବ ଜନସାଧାରଣ ଆଦୌ ଉପକୃତ ହେବେ ନାହିଁ । ବିଭିନ୍ନ ଦେଶର ଅର୍ଥନୀତିକୁ ମୋଡା ମୋଡି କରିଦେବାର କୌଶଳ ଆମେରିକାକୁ ଭଲରୂପେ ଜଣା । ଆମସମ୍ବାଦପତ୍ର ସ୍ୱାଧୀନ ନୁହଁନ୍ତି । ସରକାରଙ୍କ ସପକ୍ଷରେ ଯେଉଁସବୁ ଲେଖା ପ୍ରକାଶ ପାଏ, ତହିଁରେ ଟଙ୍କାର କରାମତି ଥାଏ । ଏକଦା ଚୀନ୍ ଦେଶରେ ଭୟାବହ ମୁଦ୍ରସ୍ଥିତି ଥିଲା । ଶ୍ରୀ ଭି.ପି. ମେନନ୍ ଚୀନ୍ ଗସ୍ତରେ ଥିବାବେଳେ ଭାରତୀୟ ମୁଦ୍ରାବିନିମୟରେ ଯେଉଁ ବିପୁଳ ପରିମାଣ ଚୀନ୍ ମୁଦ୍ରା ଆଣିଲେ ତାହା ତାଙ୍କୁ ବିସ୍ମୟାଭିଭୂତ କରାଇଥିଲା । ସଂପ୍ରତି ଭାରତରେ ସେହି ଅବସ୍ଥା ଘଟିବାକୁ ଯାଉଛି । ସ୍ୱଦେଶୀ ଓ ସ୍ୱାବଲମ୍ବନ ଏହାର ଏକମାତ୍ର ପ୍ରତିକାର (୧୦.୧୦.୯୩) ମୁକ୍ତ ବିଚାରମଞ୍ଚ ।

୨ - **ପ୍ରଫେସର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ** କୁଳପତି ଶ୍ରୀ ବିହାର ପୁରୀ-ଗାନ୍ଧିଜୀଙ୍କ ସମଗ୍ର ଜୀବନ ଦର୍ଶନ ବହୁ ଅମୂଲ୍ୟ ଅକୃତ୍ରିମ ସମ୍ପଦରେ ଭରା । ସେ ଜଣେ ଆଦର୍ଶ ଶିକ୍ଷକ ଥିଲେ । ଇଂରାଜୀ ଭାଷାରେ ପ୍ରବୀଣ ଥିଲେ ମଧ ପାଶ୍ଚାତ୍ୟ ସଂସ୍କୃତି ତାଙ୍କୁ ପ୍ରଭାବିତ କରାଇପାରି ନଥିଲା । ଶିକ୍ଷା, ସୃଷ୍ଟି ସ୍ଥିତି ବାଲୟ କରିଦେଇପାରେ । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ମୌଳିକ ଶିକ୍ଷାରେ ଏହି ତତ୍ତ୍ୱଥିଲା । ଲବଣ ସତ୍ୟାଗ୍ରହର ରହସ୍ୟ - ସାମାନ୍ୟ ମୁଠାଏଲୁଣରେ ପ୍ରଚଣ୍ଡ ବଣିକ ଶକ୍ତି ଭାରତରୁ ଲୋପ ପାଇଯିବାର ବିଶ୍ୱାସ ଗାନ୍ଧିଜୀଙ୍କ ସହକର୍ମୀମାନେ ମଧ ଭେଦ କରିପାରିନଥିଲେ । ସ୍ୱାଧୀନତାକୁ ରକ୍ଷାକରିବା ଭଳି ଯୋଗ୍ୟତା ଆମର ଆସିନାହିଁ । ବହୁ ବିଦେଶୀ ରାବଣ ଆମଦେଶରେ ଅନୁପ୍ରବେଶ କରିବାରେ ଲାଗିଛନ୍ତି । ସେଥିପ୍ରତି ସଦା ସତର୍କ ରହିବାକୁ ପଡିବ । (ଗାନ୍ଧି ଜୟନ୍ତୀ ୨.୧୦.୯୫)

୩ - **ଅଧ୍ୟାପକ ବୈଷ୍ଣବ ଚରଣ ପରିଡା** ସାମ୍ୟବାଦ ଆନ୍ଦୋଳର ଯୁଗ ପୁରୁଷ ଲେନିନ୍ ମହାତ୍ମାଗାନ୍ଧୀଙ୍କୁ ଜଣେ ମହାନ୍ ବିପ୍ଳବୀ କହି ସମ୍ମାନ ଜଣାଇଥିଲେ । ର୍ୟାଡିକାଲ ଡେମୋକ୍ରାଟିକ୍ ପାର୍ଟିର ପ୍ରତିଷ୍ଠାତା ୰ ମାନବେନ୍ଦ୍ର ରାୟ ଗାନ୍ଧିଜୀଙ୍କୁ ରକ୍ଷଣଶୀଳ ସାମନ୍ତବାଦୀ ପ୍ରଥାର ରକ୍ଷକ ବୋଲି ଯେଉଁ କଟୂକ୍ତି କରିଥିଲେ ବିପ୍ଳବୀ ଲେନନ୍ ତାକୁ କାଟିଦେଇଥିଲେ । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ରଚନାତ୍ମକ କାର୍ଯ୍ୟକ୍ରମ ନିରୁପଦ୍ରବ ବିପ୍ଳବର ବାର୍ତ୍ତାବହ - (ସର୍ବୋଦୟ ମେଳା ୧୨.୦୨.୯୬)

୪ - **ଶ୍ରୀ ସୁରେଶ ଚନ୍ଦ୍ର ନାୟକ,** ଅଧିବକ୍ତା ଗାନ୍ଧି, ଗୋପବନ୍ଧୁ ଆଜି ଆମ ଗହଣରେ ଥିଲେ ବହୁତ ଦହଗଞ୍ଜ ହେଉଥାନ୍ତେ । ଯେଉଁ ମନ୍ତ୍ରୀ, ବ୍ୟବସ୍ଥାପକ ଲୋକପ୍ରତିନିଧିମାନେ ସମାଜକୁ ସୁଧାରନ୍ତେ, ଦୁର୍ନୀତି ଗ୍ରସ୍ତ, ହୋଇ ପଡିବାରୁ ସେମାନଙ୍କ ଉପରେ ଅଙ୍କୁଶ ଲଗାଇବା ପାଇଁ ସମ୍ବିଧାନ ସଂଶୋଧନ ଆବଶ୍ୟକ - (ଗୋପବନ୍ଧୁ ଶ୍ରାଦ୍ଧ ୧୬.୦୬.୯୬)

ଶିଳ୍ପ ବାଣିଜ୍ୟ କ୍ଷେତ୍ରରେ ଅନ୍ତର୍ରାଷ୍ଟ୍ରୀୟ ସହଯୋଗ ଓ ଜ୍ଞାନ କୌଶଳ ଆହରଣକୁ ଉପେକ୍ଷା କରାଗଲେ ଚଳିବନାହିଁ । ତେବେ ଦେଶକୁ ବିକିଦେବା ପରିସ୍ଥିତି ସର୍ବଥା ବର୍ଜନୀୟ । (ମୁକ୍ତ ବିଚାରମଞ୍ଚ ୧୦.୧୦.୯୩)

୫. **ସୁଷମା ପାଣିଗ୍ରାହୀ :** ଅବସରପ୍ରାପ୍ତ ମଣ୍ଡଳ

ଶିକ୍ଷାନିରୀକ୍ଷିକା - ଗାନ୍ଧୀବାଦ ଏକ ଔଷଧ । ରୁଚୁ ନରୁଚୁ ରୋଗୀକୁ ଖୁଆଇ ବାକୁ ପଡ଼ିବ । (ଗୋପବନ୍ଧୁ ଜୟନ୍ତୀ ୯.୧୦.୧୯୯୭)

**୬. ଶ୍ରୀ ଉପେନ୍ଦ୍ର ମିଶ୍ର :** ଶିକ୍ଷାବିତ୍ - ଆମେରିକାର ଜଣେ ବୈଜ୍ଞାନିକଙ୍କ ମତରେ ଚିନି ଓ ମଇଦା ହୃଦରୋଗର କାରଣ । ବହୁ ପୂର୍ବରୁ ମହାତ୍ମାଗାନ୍ଧୀ ଚକିପେଷା ଅଟା ଓ ଗୁଡ଼ର ବ୍ୟବହାର ପ୍ରତି ଗୁରୁତ୍ୱ ଦେଉଥିଲେ । ମନ୍ତ୍ରୀ ଓ କଟୁଆଳର ପୁଅ ମଧ୍ୟରେ ଥିବା ବ୍ୟବଧାନ ହ୍ରାସ କରିବାକୁ ହେଲେ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ମୌଳିକ ଶିକ୍ଷା ଓ ଆର୍ଥିକ ସମାନତାର ବିଚାର ଉପରେ ଗୁରୁତ୍ୱ ଦିଆଯିବା ଉଚିତ୍ । ଗାନ୍ଧୀ ବିନୋବାଙ୍କ ଗ୍ରାମୀଣ ଚିନ୍ତାଧାରା ଶାସନରେ ପ୍ରତିଫଳିତ ହେଉଥିଲେ ନକ୍ସଲ ଆନ୍ଦୋଳନ ମୁଣ୍ଡଟେକି ନଥାନ୍ତା ।(ଗାନ୍ଧୀଜୟନ୍ତୀ ୨.୮.୯୪ ଓ ଭୂଜୟନ୍ତୀ ୧୧.୯.୯୬)

**୭. ଶ୍ରୀ ସୁନ୍ଦର ଲାଲ ବହୁଗୁଣା :** ପରିବେଶବିତ୍ ସିମେଣ୍ଟ ଆଲୁମିନିୟମ, ଏପରିକି କାଗଜକଳରେ ମଧ୍ୟ ପରିବେଶ ପ୍ରଦୂଷିତ ହୋଇଥାଏ । ବଡ଼ ବଡ଼ ନଦୀବନ୍ଧ ଦ୍ୱାରା ଯେଉଁ ଶିଳ୍ପ ସମୃଦ୍ଧିର ଡିଣ୍ଡିମ ପିଟାଯାଉଛି, ତଦ୍ୱାରା ଧନୀ ଅଧିକ ଧନୀ ହେଉଛି । ଗରିବୀ ବଢ଼ିବାରେ ଲାଗିଛି । ବିଜ୍ଞାନ ଧରିତ୍ରୀର ଦୁଷ୍ମନ ନୁହେଁ । ଏହାର ଅପପ୍ରୟୋଗ ଧରିତ୍ରୀର ଶତ୍ରୁ ହୋଇଯାଇଛି । ଏବର ଲୋକ ପ୍ରତିନିଧିମାନେ ଏକଥା ଚିନ୍ତା ନକରି ୫ ବର୍ଷ ପାଇଁ ଧରିତ୍ରୀର ରାଜା ହେବାକୁ କଳେ ବଳେ କୌଶଳେ ଗାଦୀମାଡି ବସୁଛନ୍ତି । ବିଶ୍ୱର ବିନାଶ ନୁହେଁ ବିକାଶ ଯୋଜନାରେ ନିଜକୁ ସାମିଲ କରିବାରେ ହିଁ ଆମର ଯଥାର୍ଥ ସାର୍ଥକତା ।(ନବକୃଷ୍ଣ ଜୟନ୍ତୀ ୨୩.୧୧.୯୬)

୮. ପ୍ରାଧ୍ୟାପକ ସୁରେଶ ଚନ୍ଦ୍ର ମିଶ୍ର - ମଣିଷର ମେରୁଦଣ୍ଡ ଧରିତ୍ରୀ ସହିତ ଲମ୍ବ ତେଣୁ ମେରୁ ଓ ସୁଷୁମ୍ନା ସେହିପରି ସିଧା ଓ ସଳଖ ରଖିବା ଦ୍ୱାରା ଉନ୍ନତ ଭାବ ଗ୍ରହଣ କରି ମସ୍ତିଷ୍କ ପୁଷ୍କଳ ହୋଇଥାଏ । ଜାତୀୟ ପୁଷ୍ପ ପଦ୍ମର ପଞ୍ଚମହାଭୂତ ସହ ସମ୍ପର୍କ ଅଛି । ଯୋଗସାଧନାର ଅଙ୍ଗ ଓ ମସ୍ତିଷ୍କକୁ ପୁଷ୍କଳ ରଖିବା ପାଇଁ ଉଦ୍ଦିଷ୍ଟ ପଦ୍ମାସନ ପଦ୍ମରୁ ସୃଷ୍ଟି । ରାବଣର ନିଧନ ପରେ ପତ୍ନୀ, ଭ୍ରାତା ଓ ବୀର ହନୁମାନ ପ୍ରମୁଖଙ୍କ ଗହଣରେ ମର୍ଯ୍ୟାଦା ପୁରୁଷ ଶ୍ରୀରାମଚନ୍ଦ୍ର ଅଯୋଧ୍ୟା ଫେରୁଥିବା ବେଳେ ରଥରେ କର ଯୋଡି ବସିଥିଲେ ।

ଏହାର ତତ୍ତ୍ୱ ବୁଝାଇ ସେ କହିଥିଲେ ଯେ ବର୍ଷକରେ ମାସେ ଉପବାସ । (ଷଡ଼ଜୟନ୍ତୀ ଓ ଏକାଦଶୀ) ବ୍ରାହ୍ମ ମୁହୂର୍ତ୍ତରେ ଗାତ୍ରୋତ୍‌ଥାନ, ବେଦାନୁରାଗ । (ସମସ୍ତ ଉନ୍ନତ ପୁସ୍ତକ ବେଦ ପଦ୍‌ଦବାଚ୍ୟ) ଜୀବନରେ ଏକ ସହସ୍ର ଚନ୍ଦ୍ର ଦର୍ଶନ । (ଜୀବନ କାଳ ୮୪ ବର୍ଷ), ମିଷ୍ଟାନ୍ନ ବିତରଣ (ପ୍ରସନ୍ନ ଚିତ୍ତରେ ବୁଭୁକ୍ଷୁଙ୍କୁ ଆହାର) ଓ ପାତିବ୍ରତ୍ୟ (ଅନୁଷ୍ଠାନ, ବିଦ୍ୟା ଓ ପରିବାର ପ୍ରିୟତା) ଭଳିଗୁଣଗୁଡ଼ିକ ପଲ୍ଲୀ ବାସୀଙ୍କର ଥିବାରୁ ସେମାନଙ୍କୁ ସେ ପ୍ରଣାମ ଜଣାଇ ଆସୁଛନ୍ତି ।

ମହାତ୍ମାଗାନ୍ଧୀ ଏହି ସବୁ ମାନବୀୟ ଗୁଣରେ ପରିପୂର୍ଣ୍ଣ ଥିବାରୁ ନମସ୍ୟ ଅଟନ୍ତି ।

ପକ୍ଷାନ୍ତରେ ପଶୁପକ୍ଷୀମାନଙ୍କର ମେରୁଦଣ୍ଡ ଭୂମିସହ ସମାନ୍ତର ଥିବାରୁ ସେମାନଙ୍କ ଠାରେ ଦିବ୍ୟ ଭାବନା ଜାଗ୍ରତ ହୁଏ ନାହିଁ । ଈଶ୍ୱରଙ୍କ ସୃଷ୍ଟିରେ ମନୁଷ୍ୟ ଦିବ୍ୟଜ୍ଞାନର ଅଧିକାରୀ ହୋଇଥିଲେ ହେଁ ପଶୁତୁଲ୍ୟ ଆଚରଣ କରି ଭ୍ରଷ୍ଟ ହେଉଛି । ଆଶଙ୍କା ହେଉଛି ଯେ ଆଉ ଦଶ ପନ୍ଦର ବର୍ଷ ଭିତରେ ଭାରତ ବୁଡ଼ିଯିବ । ପରବର୍ତ୍ତୀ ସମୟରେ ଯେଉଁ ନବଭାରତ ଆସିବ ଦିବ୍ୟ ଭାବନାଯୁକ୍ତ ନବଯୁବକମାନେ ହିଁ ତାହା ଭୋଗ କରିବେ । (ଶହୀଦ୍ ଦିବସ ୩୦.୦୧.୯୭)

**୯. ଶ୍ରୀ ଇନ୍ଦୁଭୂଷଣ ମିଶ୍ର ଶିକ୍ଷାବିତ** - ଏକ ତ ଦେଶ ଅଧା ଲଙ୍ଗଳା ଥିଲା । ଏବେ ଚଳଚ୍ଚିତ୍ର ଓ ଦୂରଦର୍ଶନ ମାଧ୍ୟମରେ ପୂରା ଲଙ୍ଗଳା ସଂସ୍କୃତିର ଜୟଯାତ୍ରା ଚାଲିଛି । ବିକାଶ ଯୋଜନା ନାଁରେ ଚାଲିଥିବା କବନ୍ଧ ଓ ମାଦକ୍ଷୀ କାଗଜ ଚାଷକୁ ପ୍ରତିହତ କରିବା ପାଇଁ ଗଣତନ୍ତ୍ର ପ୍ରେମୀମାନେ ଆଗେଇ ଆସନ୍ତୁ । (ସର୍ବୋଦୟ ମେଳା ୧୨.୦୨.୯୭)

**୧୦. ଶ୍ରୀ ଭିକାରି ଚରଣ ସାହୁ** ସମାଜସେବୀ ଶିକ୍ଷକ - ଗୋପବନ୍ଧୁ ଦେବଲୋକରୁ ପ୍ରେରିତ ହୋଇଥିଲେ । ଦମ, ଶୌଚ, ଇନ୍ଦ୍ରିୟ ନିଗ୍ରହଧୀ, ବିଦ୍ୟା, ସେବା, ସତ୍ୟ ଓ ଅକ୍ରୋଧାଦି ବିବିଧ ଗୁଣରେ ଆଚରଣ ସିଦ୍ଧ ପୁରୁଷରୂପେ ଯଥାର୍ଥ ପୁଣ୍ୟାତ୍ମା ଥିଲେ । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ''ଉତ୍କଳମଣି'' ଆଖ୍ୟାଦେଇ ଗୋପବନ୍ଧୁଙ୍କ ଅବମୂଲ୍ୟାୟନ କରିଛନ୍ତି । ଗୋପବନ୍ଧୁ ଯଥାର୍ଥ ଭାରତର ମଣିଥିଲେ । (ଗୋପବନ୍ଧୁ ଜୟନ୍ତୀ ୯.୧୦.୯୬)

**୧୧. ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ** - ଅତିରିକ୍ତ ଜିଲାପାଳ । ନେତାଜୀଙ୍କ ଜନ୍ମ ଓ ବାଲ୍ୟଜୀବନ କଟକରେ ଅତିବାହିତ ହୋଇଥିବା ସତ୍ତ୍ୱେ ସେ କେବଳ କଟକିଆ ନଥିଲେ । ତାଙ୍କର ସାରା ଜୀବନ ଭାରତପାଇଁ ଉତ୍ସର୍ଗୀକୃତ ଥିଲା । ମହାତ୍ମା ଗାନ୍ଧୀଙ୍କ ଅହିଂସା ମନ୍ତ୍ର ଓ ସୁଭାଷଙ୍କର ସଶସ୍ତ୍ର ସଂଗ୍ରାମ କେହି କାହାକୁ କମ୍ ନଥିଲା । ଭାରତର ସ୍ୱାଧୀନତା ଥିଲା ଉଭୟଙ୍କର କାମ୍ୟ । ସୁଭାଷ ହିଁ ଗାନ୍ଧୀଙ୍କୁ ଜାତିର ଜନକ ଆଖ୍ୟା ଦେଇଥିଲେ । ତେଣୁ ସୁଭାଷଙ୍କୁ ବଡ଼ ବା ଗାନ୍ଧିଜୀଙ୍କୁ ଛୋଟ କରିବାକୁ ଯେଉଁ ତୁଳନାତ୍ମକ ଅହେତୁକ ବିଚାର କେହି କେହି କରନ୍ତି, ତଦ୍ୱାରା ସେମାନେ ଉଭୟଙ୍କୁ ଅସମ୍ମାନ କରିଥାନ୍ତି । (ନେତାଜୀ ଜୟନ୍ତୀ ୨୩.୦୧.୯୭)

**୧୨. ଶ୍ରୀ ଶରତ ଚନ୍ଦ୍ର ରାଉତରାୟ** ବରିଷ୍ଠ ଅଧିବକ୍ତା - ପରମ ଶହୀଦ ମହାତ୍ମାଗାନ୍ଧୀଙ୍କ ନୀତିରୁ ଦେଶ କ୍ରମେ ବିଚ୍ୟୁତ ହୋଇଯାଉଛି । ସାଂସ୍କୃତିକ ଅବକ୍ଷୟ ଅତୀବ ଉଦ୍‌ବେଗଜନକ । ଦେବାଦେବୀମାନଙ୍କ ଛବିଥିବା ପ୍ଲେଟରେ ନିର୍ବିଚାରରେ ମାଛ ମାଂସ ଖିଆଯାଉଛି । ତ୍ୟାଗୀ ସଂଗ୍ରାମୀମାନେ ନିଜ ପରିବାର ଓ ପରିଜନଙ୍କୁ ଏଡିଦେଇ ସଂଗ୍ରାମ ରୂପ କଣ୍ଟକିତ ପଥକୁ ବରଣ କରି ନେଇଥିଲେ । ସେମାନେ ନମସ୍ୟ । ଆର୍ଯ୍ୟ ସଂସ୍କୃତି ସଂପନ୍ନ ଭାରତରୁ ଭଲଟକ ଗ୍ରହଣ କରିନେବା ପାଇଁ ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କ ଉପଦେଶ ସର୍ବଥା ପାଳନୀୟ । (ଶହୀଦ ଦିବସ ୩୦.୦୧.୯୭)

**୧୩. ପ୍ରଫେସର ୰ କ୍ଷେତ୍ରମୋହନ ଶତପଥୀ** - ଚିନ୍ତାଶୀଳ ବ୍ୟକ୍ତିମାନେ ଗାନ୍ଧୀ ବିଚାର ଉପରେ ବିଚାର ବିମର୍ଶ କରୁଥିବା ଆନନ୍ଦର କଥା । ସବୁ ସମସ୍ୟାକୁ ଗାନ୍ଧୀ ବିଚାର ସମାଧାନ କରି ପାରିବ । ଯୋଜନାକାରୀମାନେ ଜନଗଣଙ୍କ ଆର୍ଥିକ ଅବସ୍ଥାକୁ ବିଚାରକୁ ନ ନେଇ ସମସ୍ତଙ୍କପାଇଁ ଏକାପ୍ରକାର ଯୋଜନା କରୁଥିବାରୁ ପ୍ରଗତି ଆଶାନୁରୂପ ହେଉନାହିଁ । (ସର୍ବୋଦୟ ମେଳା ୧୨.୦୨.୯୭)

**୧୪. ଶ୍ରୀ ଅଜୟ କୁମାର ଜେନା** ବିଧାୟକ - ଆଗେ ଗାନ୍ଧୀବାଦ ଓ ମାର୍କସ ବାଦର ତୁଳନାତ୍ମକ ବିଚାର ଛାତ୍ରନେତାମାନେ କରୁଥିଲେ । ବୌଦ୍ଧିକ କ୍ଷୁଧା ମେଣ୍ଟାଇବାପାଇଁ ଗାନ୍ଧୀବାଦ ହିଁ ଏକମାତ୍ର ଗତି । ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତେ ଏହା ମାନିବାକୁ ବାଧ । (ସର୍ବୋଦୟ ମେଳା ୧୨.୦୨.୯୭)

**୧୫. ଅଧ୍ୟାପକ ବିଶ୍ୱରଞ୍ଜନ** - ଗୋପବନ୍ଧୁଙ୍କ ଆଦର୍ଶ ଅନୁସୃତ ହେଉଥିଲେ ତସ୍କରମାନେ ଆଜି ମନ୍ତ୍ରୀ ବା ବିଧାୟକ ହୋଇ ନଥାନ୍ତେ । ସାଂପ୍ରତିକ ସମାଜରେ ଭୌତିକ ବିଭବ ଭରପୂର ଥିବାବେଳେ ଧର୍ମ ଓ ହୃଦୟବତ୍ତାର ଘୋର ଅଭାବ ପରିଲକ୍ଷିତ ହେଉଛି । (୧୬.୦୬.୯୬ ଗୋପବନ୍ଧୁ ଶ୍ରାଦ୍ଧ)

**୧୬. ପ୍ରଫେସର ଶତ୍ରୁଘ୍ନ ନାଥ** - ହୃଦୟକୁ ହଳାହଳ ପୂର୍ଣ୍ଣ କରି ବଚନରେ ମଧୁରତା ପ୍ରକାଶ ଦ୍ୱାରା ସାରା ବିଶ୍ୱ ଭୟାନକ ଘଡିସନ୍ଧି ମଧ୍ୟରେ ଗତି କରୁଛି । ସଂଘର୍ଷ, ପ୍ରତିହିଂସା, ବିଦ୍ୱେଷ, ଶଠତା ଓ ପ୍ରତାରଣାପୂର୍ଣ୍ଣ ଲୁଣ୍ଠନରେ ସାରା ବିଶ୍ୱଜର୍ଜରିତ । ଭଗବାନ ବୁଦ୍ଧଙ୍କ ଶାନ୍ତି ମୈତ୍ରୀର ବାଣୀ ସୁଦୂର ପରାହତ । ଏହି ପରିପ୍ରେକ୍ଷୀରେ ଦେଶ ତଥା ବିଶ୍ୱକୁ ରକ୍ଷା କରିବାପାଇଁ ସର୍ବୋଦୟ ପନ୍ଥୀମାନେ ଯଥାର୍ଥ ମାର୍ଗ ଦର୍ଶନ କରାନ୍ତୁ । (ସର୍ବୋଦୟ ମେଳା ୧୨.୦୨.୯୫)

**୧୭. ଶ୍ରୀ କରୁଣାକର ପଟ୍ଟନାୟକ** ଜିଲ୍ଲାପାଳ

- ଶତାବ୍ଦୀ ପୁରୁଷ ମହାତ୍ମା ଗାନ୍ଧୀ ଗାଁ ଗାଁ ବୁଲି ଲୋକଙ୍କ ସମସ୍ୟା ଉପଲବ୍ଧି କରୁଥିଲେ । ନୂଆ ଖାଲିରେ ଦେଖା ଦେଇଥିବା ଉତ୍କଟ ସାଂପ୍ରଦାୟିକ ଦଙ୍ଗା ତାଙ୍କରି ପଦଯାତ୍ରା ବଳରେ ହିଁ ପ୍ରଶମିତ ହୋଇଥିଲା । ଗାନ୍ଧୀ ନୀତିକୁ ଛାଡି ଆମେ ଅବାଟରେ ଯାଉଥିବାରୁ ସର୍ବତ୍ର ବିଶୃଙ୍ଖଳା । ଏପରିକି ଘରେ ବା ସମାଜରେ ମୂଲ୍ୟବୋଧର ଅଭାବ । ଭବିଷ୍ୟତ ପାଇଁ ଆମେ କ'ଣ ଛାଡିଯାଉଛୁ ଚିନ୍ତା କରିବା ଉଚିତ । (ଗାନ୍ଧୀ ଜୟନ୍ତୀ ୦୨.୧୦.୯୫)

୧୮. **ଶ୍ରୀ ରାଜକିଶୋର ନାୟକ** - ଖଦୀବୋର୍ଡ ସଭାପତି -ଭାରତରେ ବିଦେଶୀ କମ୍ପାନୀମାନଙ୍କ ଅବାଧ ପ୍ରବେଶ ଇଷ୍ଟଇଣ୍ଡିଆ କମ୍ପାନୀଠାରୁ ଅଧିକ କ୍ଷତିକାରକ । ଆମ ବିକାଶୋନ୍ମୁଖୀ ଯୋଜନାରେ ଅନ୍ୟ କଥା ଦୂରେ ଥାଉ ଗାଁ ଗୁଡିଆ ଘର ମଧ ଲୋପ ପାଇଯାଇଛି । ଆମ ଗ୍ରାମବହୁଳ ଦେଶପକ୍ଷରେ ଏହା ଅତୀବ କ୍ଷତିକାରକ । ଆତ୍ମ - ଶକ୍ତି ଜାଗରଣ ଏହାର ଏକମାତ୍ର ପ୍ରତିକାର (ସର୍ବୋଦୟ ମେଳା ୧୨.୦୨.୯୪)

୧୯. **ଶ୍ରୀ ରାମ ଚନ୍ଦ୍ର ପ୍ରଧାନ ଅଧିବକ୍ତା** - ବା'ଙ୍କ ମରନୀୟତା ବାପୁଙ୍କୁ ବଡ଼ କରିଛି । (କସ୍ତୁରବା ଶ୍ରାଦ୍ଧ ୨୨.୦୨.୯୮)

୨୦. **ଗୌରୀମଣି ଦେବୀ** : ଅବସର ପ୍ରାପ୍ତ ଶିକ୍ଷିକା - ଅଳଙ୍କାର ମୋହ ତ୍ୟାଗ କରି ଲୋତକପୂର୍ଣ୍ଣ ଚକ୍ଷୁରେ କସ୍ତୁରବା ଦକ୍ଷିଣ ଆଫ୍ରିକାରୁ ବିଦାୟନେଇ ସ୍ୱଦେଶକୁ ଫେରିବାପରେ ଜନସେବା ଓ ସ୍ୱାଧୀନତା ସଂଗ୍ରାମ ପାଇଁ ଯାହା ସବୁ କରିଗଲେ ତଦ୍ୱାରା ତାଙ୍କୁ ଲୋକମାତାର ସମ୍ମାନ ମିଳିଲା । (କସ୍ତୁରବା ଶ୍ରାଦ୍ଧ ୨୨.୦୨.୯୮)

୨୧. **ଡଃ ଯୁଧିଷ୍ଠିର ଦୀକ୍ଷିତ** - ସର୍ବୋଦୟ ମେଳା କମିଟିର ପ୍ରାକ୍ତନ ସଭାପତି-ଆଗେ ବଡ଼ମାନଙ୍କ ପାଖେ ଛିଡା ହେବାକୁ ପିଲାଏ ଡରୁଥିଲେ । ଏବେ ଆଉ ନାହିଁ । (କସ୍ତୁରବା ଶ୍ରାଦ୍ଧ ୨୨.୦୨.୯୮)

୨୨. **ଶ୍ରୀ ସଦାନନ୍ଦ ସାମନ୍ତ ସିଂହାର : ଅଧିବକ୍ତା** - ଅର୍ଥନୀତିକ ସ୍ୱାଧୀନତା ପାଇଁ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଅପରିହାର୍ଯ୍ୟ । (କ୍ରାନ୍ତି ଦିବସ ୦୯.୦୮.୯୭)

୨୩. **ଶ୍ରୀ ଗୋକୁଳ ମୋହନରାୟ** - ଚୂଡ଼ାମଣି ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ-ପରମ ଶହୀଦ ମହାତ୍ମା ଗାନ୍ଧୀ କୋଟି କୋଟି ଜନଗଣଙ୍କ ହୃଦୟ ସିଂହାସନର ଯଥାର୍ଥ ଦେବତା ଥିଲେ । ତାଙ୍କୁ ହରାଇ ଆମେ ଭାଗ୍ୟ ହୀନ ହୋଇ ଯାଇଛୁ । (ଶହୀଦ ଦିବସ ୩୦.୦୧.୮୮)

୨୪. **ଶ୍ରୀ କୃଷ୍ଣ ଚନ୍ଦ୍ର ରଥ** - ପ୍ରଧାନ ଶିକ୍ଷକ କ୍ଷେତ୍ରବାସୀ ଏକାଡେମୀ, ନିରାକାରପୁର - ବିଜ୍ଞାନ ଓ ଆତ୍ମଜ୍ଞାନର ବିକାଶ ସାଧନ ହିଁ ବାସ୍ତବ ଗାନ୍ଧୀବାଦ ବୋଲି ସନ୍ଥ ବିନୋବା ଯାହା କହିଛନ୍ତି, ତାହା ଅକ୍ଷରେ ଅକ୍ଷରେ ସତ । (ଗାନ୍ଧୀ ଜୟନ୍ତୀ ୦୨.୧୦.୮୮)

୨୫. **ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ମହାପାତ୍ର** ଡି. ଏ. ଭି. କଲେଜ ନିରାକାରପୁର - ପରର ଦୁଶ୍ଚିନ୍ତା ନକରି ହୃଦୟ ଜୟ କରିବାରେ ସାର୍ଥକତା ରହିଛି । ମହାତ୍ମା ଗାନ୍ଧୀଙ୍କ ଦୃଢ଼ମନୋବଳ ଓ ଆଧ୍ୟାତ୍ମିକତା ପାଖରେ ବିଲାତର ରାଜା ଓ ପ୍ରଶାସକମାନେ ନତମସ୍ତକ ହୋଇ ଯାଇଥିଲେ । ଉଗ୍ରବାଦର ପ୍ରଶମନ ପାଇଁ ଗାନ୍ଧିଜୀଙ୍କ ପରି ମହାପୁରୁଷଙ୍କର ଆବିର୍ଭାବ ମର୍ମେ ମର୍ମେ ଅନୁଭବ କରାଯାଉଛି । (ଗାନ୍ଧୀଜୟନ୍ତୀ ୦୨.୧୦.୮୮)

୨୬. **ଶ୍ରୀମତୀ ପ୍ରତିମା ମିଶ୍ର** ରାଜ୍ୟ ସମାଜ ମଙ୍ଗଳ ବୋର୍ଡ ସଦସ୍ୟା - ଝିଅମାନେ ଆଦର୍ଶ ଗୃହିଣୀ ହେବା ଲକ୍ଷ୍ୟରେ ଦୈନନ୍ଦିନ ଖର୍ଚ୍ଚରୁ ଅପବ୍ୟୟ ବନ୍ଦ କରି ରେଡକ୍ରସ ଭଳି ସମାଜ ସେବୀ ସଂସ୍ଥାକୁ ଦାନ କରିବାକୁ ଶିଖନ୍ତୁ । ମା ରମା ଦେବୀଙ୍କର ଯାଦୁକରୀ ପ୍ରଭାବ ଘର କୋଣରେ ଆବଦ୍ଧ ଝିଅ ବୋହୂମାନଙ୍କୁ ସଂଗ୍ରାମକୁ ଟାଣି ଆଣି ପାରିଥିଲା । (କସ୍ତୁରବା ଶ୍ରାଦ୍ଧ ୨୨.୦୨.୯୫ ଓ ମା ରମା ଦେବୀଙ୍କ ଶ୍ରାଦ୍ଧ ୨୨.୦୭.୯୬)

୨୭. **୰ ଉଦୟନାଥ ଆଚାର୍ଯ୍ୟ** ଶିକ୍ଷା ବିତ୍ - ଧୂଳିରୁ ଧାନ ସଂଗ୍ରହ ତତ୍ତ୍ୱଉପରେ ସମଗ୍ର ଗାନ୍ଧୀ ଦର୍ଶନ

ଆଧାରିତ (ସର୍ବୋଦୟ ମେଳା ୧୨.୦୨.୮୫)

୨୮. **ଶ୍ରୀ ଦାମୋଦର ମହାପାତ୍ର** ଅବସର ପ୍ରାପ୍ତ ପ୍ରଧାନଶିକ୍ଷକ - ବୃହତ୍ ଶକ୍ତିମାନଙ୍କର ମଣିଷ ମାରଣ ପ୍ରତିଦ୍ୱନ୍ଦିତା ବିରୁଦ୍ଧରେ ଜାତିସଂଘ ମାଧ୍ୟମରେ ଦୃଢ଼ ବିଚାର ପ୍ରକଟ କରା ନଗଲେ ସୃଷ୍ଟି ଧ୍ୱଂସ ପାଇଯିବ । (ଜାତିସଂଘ ଦିବସ ୨୪.୧୦.୮୭)

୨୯. ୰ **ଡକ୍ଟର ସତ୍ୟବାଦୀ ମିଶ୍ର** ଶିକ୍ଷାବିତ୍ ଓ ସ୍ୱାଧୀନତା ସଂଗ୍ରାମୀ - **ବିଦେଶୀ** ଶାସକ ତଥା ବିଜାତୀୟ **ସଂସ୍କୃତିର** ଯୁଗପତ **ଅପସାରଣ ସତ୍ୟାଗ୍ରହ** ସଂଗ୍ରାମର ଏକ ଯୁଗାନ୍ତକାରୀ ପଦକ୍ଷେପ । **ସତ୍ୟାଗ୍ରହ** ସବୁ ସମସ୍ୟାର ସମାଧାନ କରିପାରିବ । **ଏଥିରେ ଭଙ୍ଗୁର** ଶରୀର ଓ ଅବିନାଶୀ **ଆତ୍ମାର** ନିଗୂଢ଼ ତତ୍ତ୍ୱନିହିତ ।

୩୦. **ଅଧ୍ୟାପକ ନିହାର ରଞ୍ଜନ ପଟ୍ଟନାୟକ** - ନିଃସ୍ୱାର୍ଥପର ସେବା ହିଁ ମା ରମା ଦେବୀଙ୍କ ଆତ୍ମାକୁ ତୃପ୍ତ କରିପାରିବ । (ରମାଦେବୀ ଶ୍ରାଦ୍ଧ ୨୨.୦୭.୯୪)

୩୧. **ଡଃ ଶ୍ରୀମତୀ ବେଲାରାଣୀ ଦତ୍ତ** - ରାଜନୀତି ଏବେ ସଂପୂର୍ଣ୍ଣ ପ୍ରତାରଣା ପୂର୍ଣ୍ଣ ଓ ବକ୍ତୃତା ସର୍ବସ୍ୱ ହୋଇ ପଡିଛି । ଶ୍ରୀମାଙ୍କ ବାଣୀ "କଥା ନୁହେଁ କାମ" ସମସ୍ତଙ୍କର ଧ୍ୟେୟ ହେଉ । (ତିଳକ ଶ୍ରାଦ୍ଧ ୦୧.୦୮.୯୪)

୩୨. **ଡଃ ରାଧାକାନ୍ତ ମହାପାତ୍ର** - ଗାନ୍ଧୀ ତ୍ୟାଗୀ ଥିଲେ ମାତ୍ର ବାବାଜୀ ନଥିଲେ । ଏହାର ଦୃଢ଼ ତତ୍ତ୍ୱ ଅନୁଧାନ ସାପେକ୍ଷ । (ଶହୀଦ ଦିବସ ୩୦.୦୧.୯୮)

୩୩. **ହରିହର ବାହିନୀପତି** - **ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଅନୁପ୍ରବେଶ ସାମ୍ବିଧାନିକ ଧର୍ଷଣ । (ମୁକ୍ତ ବିଚାର ମଞ୍ଚ ୧୦.୧୦.୯୩)**

୩୪. **ଶ୍ରୀମତୀ ପ୍ରମିଳା ଆଚାର୍ଯ୍ୟା ପ୍ରତିଷ୍ଠାତ୍ରୀ ଶ୍ରୀ**ଯା ମହିଳା ସମିତି, **ପୁରୀ** - **ନେବା ପାଇଁ ଯେତେ** ଚିନ୍ତା ହେଉଛି, ବିନିମୟରେ **ଦେବାକଥା** କେହି ବିଚାରୁ ନାହାନ୍ତି । ଦେଶକୁ **ଶୋଷଣ ମୁକ୍ତ** କରାଇବାକୁ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଆବଶ୍ୟକ । (**ମୁକ୍ତ**, ବିଚାରମଞ୍ଚ ୧୦.୧୦.୯୩)

୩୫. **ଶ୍ରୀମତୀ ରମା ଦେବୀ ଦ୍ୱାରକାପୁରୀ** - ଏବେ ସମାଜସେବା ସରକାରୀ ସ୍ତରରେ କେନ୍ଦ୍ରୀଭୂତ ହୋଇଥିବାରୁ **ସ୍ୱଧର୍ମ ନଷ୍ଟ** ହୋଇଯାଉଛି । (ମୁକ୍ତ ବିଚାର ମଞ୍ଚ ୧୦.୧୦.୯୩)

୩୬. **ଶ୍ରୀ ଦିବାକର ତ୍ରିପାଠୀ** - ଜାତୀୟ ସମ୍ମାନ ପ୍ରାପ୍ତ ଶିକ୍ଷକ-ମୁକ୍ତ ବାଣିଜ୍ୟ ଶାରୀରିକ ଓ ମାନସିକ ଉଭୟର କ୍ଷତି ସାଧନ କରିବ । (ମୁକ୍ତ ବିଚାରମଞ୍ଚ ୧୦.୧୦.୯୩)

୩୭. **ଶିବ ପ୍ରସାଦ ଶର୍ମା** - ସର୍ବୋଦୟ ମେଳା ପଦଯାତ୍ରୀ-ରାମମନ୍ଦିରରେ ରାଚନ୍ଦ୍ରଙ୍କ ପୂଜା ନହୋଇ ତାଙ୍କ **ଆଦର୍ଶକୁ ହତ୍ୟା** କରାଯାଉଛି । (ସର୍ବୋଦୟ ମେଳା ୧୨.୦୨.୯୧)

୩୮. **ଶ୍ରୀ ବସନ୍ତ ବୋଷ** ଚାରପୁର - ଲୋକଙ୍କ ଆଗରେ କୌଣସି **ଆଦର୍ଶ** ରହୁ ନଥିବାରୁ ରାମଚନ୍ଦ୍ରଙ୍କ ଅପେକ୍ଷା ରାବଣକୁ ସେମାନେ ଅଧିକ ସମ୍ମାନ ଦେଉଛନ୍ତି । (ସର୍ବୋଦୟ ମେଳା ୧୨.୦୨.୯୧)

୩୯. **ବୃନ୍ଦାବନ ପାତ୍ର** - ପ୍ରାକ୍ତନ ଭୂ-ଦାନ ନିବେଦକ ଓ ବିଧାୟକ । ସନ୍ଥ ବିନୋବାଙ୍କ ଅଭୂତପୂର୍ବ ପ୍ରଚଣ୍ଡ ଭୂଦାନ ଯାତ୍ରା ସମାଜରୁ ଠକିଖିଆ ଖଟିଖିଆ ଭେଦର ବିଲୋପ ଦିଗରେ ମହତ୍ତ୍ୱ ପୂର୍ଣ୍ଣ କାମ କରିଛି । ଏକ ଦେଶ ଓ ଏକ ପତାକାର ମହତ୍ତ୍ୱ ତଦ୍ୱାରା ଉପଲବ୍ଧ ହେଲା । ଘରେ ଘରେ ସର୍ବୋଦୟ ପାତ୍ରର ସ୍ଥାପନ ବେଦୋକ୍ତ **"ଦାନଂ ସମ୍ବିଭାଗଃ" ମନ୍ତ୍ରର ପ୍ରତୀକ । (ଭୂ-ଜୟନ୍ତୀ ୧୧.୯.୯୩)**

୪୦. **ଶ୍ରୀ ପ୍ରଭାକର ମହାପାତ୍ର : ପ୍ରାଧାନଶିକ୍ଷକ - ସୃଷ୍ଟିର କ୍ଷୟ ପୂରଣ, ସମାଜର ଋଣ ପରିଶୋଧ ତଥା ଶରୀର ଶୁଦ୍ଧି ହିଁ ଯଥାର୍ଥ ଯଜ୍ଞ, ଦାନ ଓ ତପ ବୋଲି ଗୀତା ପ୍ରବଚନରେ** ଯାହା ବୁଝାଇ ଦିଆଯାଇଛି ତାହା **ଅନୁସରଣୀୟ** । (ଭୂ-ଜୟନ୍ତୀ ୧୧.୯.୯୩)

**୪୧. ଶ୍ରୀ ଭଗବାନ ପାତାଳସିଂହ ମହାପାତ୍ର :** ସମାଜସେବୀ - ଜ୍ଞାନ, ବିଜ୍ଞାନ, ଦାନ, ଦୟା, ଦାକ୍ଷିଣ୍ୟରେ ଗୋପବନ୍ଧୁ ପରିପୂର୍ଣ୍ଣ ଏକକ । (ଗୋପବନ୍ଧୁ ଜୟନ୍ତୀ ୯.୧୦.୮୭)

**୪୨. ପଣ୍ଡିତ ବୈକୁଣ୍ଠନାଥ ପ୍ରତିହାରୀ -** ସ୍ୱାଧୀନତା ସଂଗ୍ରାମୀ - ଗୋପବନ୍ଧୁ ଜୟପୁରୀ ଶୁଦ୍ଧ ସୁବର୍ଣ୍ଣ ଥିଲେ । ତାଙ୍କ ବିରଚିତ କବିତାରେ କୃତ୍ରିମତା ନଥିଲା । (ଗୋପବନ୍ଧୁ ଜୟନ୍ତୀ ୯.୧୦.୮୭)

**୪୩. ନୟନା ମାଝି :** ସର୍ବୋଦୟ କର୍ମୀ - ବିଜାପୁର । ସରକାରୀ କର୍ମଚାରୀମାନେ କୁକୁଡାମାରି ଭୋଜି କରିବାରେ ସମସ୍ତ ଉନ୍ନୟନ ଯୋଜନାକୁ ଭଣ୍ଡୁର କରି ଚାଲିଛନ୍ତି । (ସର୍ବୋଦୟ ମେଳା ୧୨.୨.୯୧)

**୪୪. ଶ୍ରୀ ଶରତ ଚନ୍ଦ୍ର ମହାପାତ୍ର -** ଶ୍ରୀଜଗନ୍ନାଥ ସଂସ୍କୃତି ଗବେଷକ । ଲଜ୍ଜା,ଘୃଣା, ଭୟ, ଶଙ୍କା, ଜୁଗୁପ୍ସା, କୁଳ, ଶ୍ରୀମାନ - ଅଷ୍ଟପାଶରୁ ମୁକ୍ତ ଗୋପବନ୍ଧୁ ବଦ୍ଧଜୀବ ନଥିଲେ । ପାଶମୁକ୍ତ ସଦାଶିବ ଥିଲେ । (ଗୋପବନ୍ଧୁ ଶ୍ରାଦ୍ଧ ୫.୭.୯୭)

**୪୫. ଶ୍ରୀ ବ୍ରହ୍ମାନନ୍ଦ ରାଉତ :** ଜିଲାପାଳ - ସରଳଜୀବନ ଓ ଉଚ୍ଚ ଚିନ୍ତାର ପ୍ରତୀକ ମହାତ୍ମାଗାନ୍ଧୀ ତତ୍‌କ୍ଷଣାତ ବୁଦ୍ଧିରେ ବହୁ ଜଟିଳ ସମସ୍ୟା ସମାଧାନ କରିପାରୁ ଥିଲେ । (ଗାନ୍ଧୀଜୟନ୍ତୀ ୨.୧୦.୯୭)

**୪୬. ଶ୍ରୀ ସଦାଶିବ ମିଶ୍ର -** ଶିକ୍ଷକ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଏକାଡ଼େମୀ - ଗୋପବନ୍ଧୁଙ୍କ କବିତାରେ ଏକଜାତି ତତ୍ତ୍ୱ, ଓ ରାଷ୍ଟ୍ରୀୟତା ବୋଧର ନିଛକ ଚିତ୍ର ରହିଛି । (ଗୋପବନ୍ଧୁ ଜୟନ୍ତୀ ୯.୧୦.୯୭)

**୪୭. ଡାଃ ଦେବଦତ୍ତ ମିଶ୍ର -** ଗଣମାଧ୍ୟମରେ ହତ୍ୟାକାଣ୍ଡ ରାହାଜାନି, ଧର୍ଷଣ ଇତ୍ୟାଦିକୁ ଯେତେ ପ୍ରାଧାନ୍ୟ ଦିଆଯାଉଛି ଜାତୀୟ ଚରିତ୍ର ଗଠନପାଇଁ ଅନୁରୂପ ସ୍ଥାନ ରହୁ ନାହିଁ । ସଂପ୍ରତି ଜୀବକୁ କଲମି କରିବାର ବିଜ୍ଞାନ, ସୃଷ୍ଟିକୁ ବିଭ୍ରାଟ ଓ ବିଷମୟ କରିଦେବ । (ଶହୀଦ ଦିବସ ୩୦.୧.୯୮)

**୪୮. ଶ୍ରୀ ଉପେନ୍ଦ୍ର ମହାନ୍ତି :** ସ୍ୱାଧୀନତା ସଂଗ୍ରାମୀ - ସ୍ୱାଧୀନ ଭାରତର ଆପତକାଳୀନ କଟକଣାକୁ ବିରୋଧ କରି ମାଳତୀ ଦେବୀ (ନୁମା) ପ୍ରମାଣ କରିଗଲେ ଯେ ସଂଗ୍ରାମର କେବେ ଅନ୍ତ ନାହିଁ । (ନୁମାଙ୍କ ଚିତାଭସ୍ମ ବିସର୍ଜନ ସମାବେଶ ୨୫.୩.୯୮)

**୪୯. ଶ୍ରୀ ଗଙ୍ଗାଧର ମହାପାତ୍ର :** ପ୍ରାକ୍ତନମନ୍ତ୍ରୀ - ଶାନ୍ତିନିକେତନରେ ପ୍ରଥମ ଛାତ୍ରୀରୂପେ ଗୃହୀତ ହୋଇ ଝିଅମାନେ ପଢୁନଥିବ ପରମ୍ପରା ମାଳତୀ ସେନ (ନୁମା) ହିଁ ଭଙ୍ଗ କରିଥିଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପତ୍ନୀ ହୋଇ ମଧ୍ୟ ସ୍ୱାମୀଙ୍କ ମାଧ୍ୟମରେ ପ୍ରତିଷ୍ଠାବତୀ ହେବାକୁ ସେ ଆଦୌମନ ବଳାଇନାହାନ୍ତି । ଅନ୍ତିମ ଶଯ୍ୟାରେ ପଡ଼ିଥିବା ବସ୍ଥାରେ କେନ୍ଦ୍ରାପଡ଼ାରେ ନାରୀ ନିର୍ଯ୍ୟାତନା ଶୁଣି ସେ ଯେପରି ଉଚ୍ଚାଟ ହୋଇ ଉଠୁଥିଲେ ମନେ ହେଉଥିଲା ସତେ ଯେପରି ସାଲିସ ବିହୀନ ସଂଗ୍ରାମପାଇଁ ସେ ଥିଲେ ଏକାନ୍ତ ଭାବରେ ଏକକ । (ଚିତାଭସ୍ମ ବିସର୍ଜନ ସମାବେଶରେ ପୁରୋଧା ୨୫.୩.୯୮)

**୫୦. ଡଃ ବିବୁଧ ରଞ୍ଜନ -** ପଲ୍ଲୀ ଉନ୍ନତି ଓ ଗ୍ରାମ ସଙ୍ଗଠନଭଳି ବଡ଼ ବଡ଼ କଥା ସହରରେ କହିବା ଅପେକ୍ଷା ଗାଁ ଲୋକଙ୍କ ପାଖକୁ ଯାଇ ସ୍ୱାବଲମ୍ବନ ନୀତିରେ ଚଳିବାକୁ ପ୍ରବର୍ତ୍ତାଇଲେ ଅଧିକ କାର୍ଯ୍ୟ ହେବ । (ଗୋପବନ୍ଧୁ ଶ୍ରାଦ୍ଧ ୨୩.୬.୯୮)

**୫୧. ଶ୍ରୀ ଲକ୍ଷ୍ମୀକାନ୍ତ ମହାନ୍ତି -** ଅବସରପ୍ରାପ୍ତ ପ୍ରଶାସନିକ ଅଫିସର - ପିଲାମାନଙ୍କୁ ସଜାଡିବାରେ ପିତାମାତାଙ୍କର ଆଗେ ଯେଉଁ କର୍ତ୍ତବ୍ୟଥିଲା ଏବେ ଆଉନାହିଁ । (ଶହୀଦ ଦିବସ ୩୦.୧.୯୮) ବୟସ ହୋଇ ନଥିଲେ ମଧ୍ୟ ସମାଜସେବୀମାନଙ୍କୁ ପେନ୍‌ସନ ଦିଆଯାଇ ରାଜସ୍ୱକୁ ଭାରାକ୍ରାନ୍ତ କରାଯାଉଛି । ବିଦେଶୀ ସରକାରଙ୍କ ଅନ୍ୟାୟ ଆଦେଶକୁ ମାନି ନ ନେଇ ଡେପୁଟି କଲେକ୍ଟର ଗୋପବନ୍ଧୁ ଚୌଧୁରୀ ଓ ବିଦେଶୀ ପ୍ରଶାସନର ଉପର୍ଯ୍ୟୁପରି ତାଗିଦା ସତ୍ତ୍ୱେ "ସମାଜ" ସମ୍ପାଦକ ଅସହଯୋଗୀ ଗୋପବନ୍ଧୁଙ୍କୁ ମାନହାନି

ମୋକଦ୍ଦମାରୁ ନିର୍ଦ୍ଦୋଷ ଖଲାସ କରି ଖୋର୍ଦ୍ଧାର ତରୁଣ ମ୍ୟାଜିଷ୍ଟ୍ରେଟ ନେତାଜୀ ସୁଭାଷଙ୍କ ଅନୁଜ ସୁରେଶ ଚନ୍ଦ୍ର ବୋଷ ନୌକରୀକୁ ଗୋଡରେ ଆଡ଼େଇ ଦେଇ ପ୍ରଶାସନରେ ଯେପରି ବିସ୍ମୟ ଓ ଆଲୋଡନ ସୃଷ୍ଟିକରିଥିଲେ ଏବର ପ୍ରଶାସକବର୍ଗ ତହିଁରୁ ଶିକ୍ଷା ଲାଭ କରି ମର୍ଯ୍ୟାଦାବାନ ହୁଅନ୍ତୁ ୨୩.୧.୯୭ । **୫୨. ବୋଧିପ୍ରିୟ ରାଧାକୃଷ୍ଣ ସାହୁ** - ଅଧକ୍ଷ ବୋଧିଚକ୍ର ଓ ସ୍ତ୍ରୀ ସଂସ୍କାର ସମିତି - ଶହୀଦ ବର୍ଗ ଆମର ନମସ୍ୟ । ଆମେ ଆଜିଯେଉଁ ସୁଖ ଭୋଗ କରୁଛୁ ତାହା ସେମାନଙ୍କ ଆତ୍ମ - ବଳୀଦାନରୁ ହିଁ ସମ୍ଭବପର ହୋଇଛି - (ଶହୀଦ ଦିବସ ୩୦.୧.୯୮)

**୫୩. ଶ୍ରୀ ଦୀନବନ୍ଧୁ ମହାନ୍ତି** : ପ୍ରଧାନ ଶିକ୍ଷକ - ସମ୍ପଦ ଓ ବିଭବ ବୁଦ୍‌ବୁଦ ପରି । ମାତ୍ର ସତ୍ୟସନ୍ଧ ଗାନ୍ଧିଜୀଙ୍କ କଳ୍ପିତ ସଭ୍ୟତା ଚିର ଜାଜ୍ୱଲ୍ୟମାନ ।

**୫୪. ଶ୍ରୀମତୀ ଗୀତା ପ୍ରଧାନ** : ଶିକ୍ଷିକା ଖଜୁରିଆ - ସୁଭାଷଙ୍କ ଭଳି ବୀରପୁରୁଷଙ୍କୁ ଜନ୍ମ ଦେଇ ଭାରତମାତା ଧନ୍ୟ ହୋଇଛି ।

**୫୫. ଶ୍ରୀ ଶଶିଭୂଷଣ ମିଶ୍ର** : ଶିକ୍ଷକ ଖଜୁରିଆ - ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଆସନ୍ନ - ପ୍ରସ୍ତୁତ ରହନ୍ତୁ ।

**୫୬. ଶ୍ରୀ ପୂର୍ଣ୍ଣଚନ୍ଦ୍ର ସୁଆର** : ଶିକ୍ଷକ - ନେତାଜୀଙ୍କଠାରେ ଜାତୀୟତା ଓ ଆଧ୍ୟାତ୍ମିକତା କ୍ଷୀର ନୀର ପରି ମିଶିଯାଇଥିଲା ।

**୫୭. ଶ୍ରୀ ଏକାଦଶୀ ଜେନା** : ପ୍ରଧାନ ଶିକ୍ଷକ ଖଜୁରିଆ - କର୍ତ୍ତବ୍ୟ ପରାୟଣତା ହିଁ ନେତାଜୀଙ୍କ ପ୍ରତି ଯଥୋଚିତ ସମ୍ମାନ - ୨୩.୧୧.୯୭ ନେତାଜୀ ଜୟନ୍ତୀ ।

**୫୮. ଅଧ୍ୟାପିକା ସତ୍ୟଭାମା ଦାସ** - ସଂହତି ଓ ସାର୍ବଭୌମତ୍ୱ ପାଇଁ ତାସକେଣ୍ଟ ଠାରେଶାସ୍ତ୍ରୀଜୀଙ୍କ ଆତ୍ମବଳୀଦାନ ଉତ୍ତର ପୀଢ଼ୀ ପାଇଁ ନିଶ୍ଚିତ ପ୍ରେରଣା ଦାୟକ । (ଗାନ୍ଧୀ-ଶାସ୍ତ୍ରୀ ଜୟନ୍ତୀ ୨.୧୦.୯୫)

**୫୯. ଶ୍ରୀ ପୋଳଚନ୍ଦ୍ର ପଟ୍ଟନାୟକ** - ଉପଶିକ୍ଷା ନିର୍ଦ୍ଦେଶକ - ସମାଜସେବା ମାଧ୍ୟମରେ ପୂର୍ଣ୍ଣ ବ୍ୟକ୍ତିତ୍ୱର ଅଧିକାରୀ ପଣ୍ଡିତ ଗୋପବନ୍ଧୁ ଜନମାନସକୁ ପ୍ରଭାବିତ କଲାପରି ଜୀବନ୍ତ ସାହିତ୍ୟ ସୃଷ୍ଟି କରି ଯାଇଛନ୍ତି । (ଗୋପବନ୍ଧୁ ଶ୍ରାଦ୍ଧ ୨୮.୬.୯୫)

**୬୦. ଶ୍ରୀ ଗୋପୀନାଥ ଦାସ** : ସ୍ୱାଧୀନତା ସଂଗ୍ରାମୀ - ସ୍ୱରଚିତ କବିତାରେ ପଣ୍ଡିତ ଗୋପବନ୍ଧୁ, ସାରା ସୃଷ୍ଟି ଓ ସ୍ରଷ୍ଟାଙ୍କର ସତ୍ତା ଉପଲବ୍ଧି କରିଛନ୍ତି । (ଗୋପବନ୍ଧୁ ଶ୍ରାଦ୍ଧ ୧୬.୬.୯୭)

**୬୧. ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର** - ଶ୍ରୀଅରବିନ୍ଦ ଦର୍ଶନର ଗବେଷକ - ପୁଞ୍ଜିପତି ଓ ସର୍ବହରାଙ୍କ ମଧ୍ୟରେ ପୂର୍ଣ୍ଣ ସେତୁ ପ୍ରତିଷ୍ଠା, ସାଂଗଠନିକ ଦକ୍ଷତା, ପ୍ରଶାସନିକ ଦୃଢ଼ତା, ଓ ନିଃସ୍ୱାର୍ଥପର ଲୋକସେବା ନବକୃଷ୍ଣ ଚୌଧୁରୀଙ୍କ ଜୀବନର ଉଲ୍ଲେଖନୀୟ ବିଭାଗ, (ନବଜୟନ୍ତୀ ୨୩.୧୧.୯୭)

**୬୨. ଶ୍ରୀ ଗଣେଶ୍ୱର ମହାପାତ୍ର** : ସର୍ବୋଦୟ ମେଳାର ଅଧକ୍ଷ - ରସ୍କିନ ଓ ଗାନ୍ଧିଜୀଙ୍କର ଚିନ୍ତାଧାରାକୁ ବିନୋବା ହିଁ ପ୍ରସାର ମୁଖୀ କରାଇଥିଲେ । ସର୍ବୋଦୟ କର୍ମୀମାନେ ନିଜେ ଦୁର୍ନୀତିମୁକ୍ତ ରହିଲେ ଯାଇ ବିଭିନ୍ନ କ୍ଷେତ୍ରରେ ଦେଖା ଦେଇଥିବା ଦୁର୍ନୀତି ଓ ଅତ୍ୟାଚାରକୁ ପ୍ରତିହତ କରାଯାଇ ପାରିବ । (ଭୂ ଜୟନ୍ତୀ ୧୧.୯.୯୬) ସାନ ବଡ଼ ପାଞ୍ଚ ଆଙ୍ଗୁଠିର ଐକ୍ୟ ବଦ୍ଧତା ଯୋଗୁଁ ଯେପରି ବଜ୍ରମୁଷ୍ଟିର ଉଦଭବ ହୋଇଥାଏ ବଳ ବୟସ ନିର୍ବିଶେଷରେ ସମସ୍ତଙ୍କ ଐକାନ୍ତିକ ସହଯୋଗ ଦୃଢ଼ ଗ୍ରାମ ସ୍ୱରାଜ୍ୟସୃଷ୍ଟିକରି ପାରିବ । (ଗାନ୍ଧିଜୟନ୍ତୀ ୨.୧୦.୯୭)

**୬୩. ଶ୍ରୀମତୀ ମନୋଜିନୀ ମହାନ୍ତି** : ଶିକ୍ଷିକା - କ୍ଷେତ୍ରରେ ଅନ୍ନଦାନ ଓ ହାଟରେ ଅର୍ଥଦାନର ବହୁତ ମହତ୍ତ୍ୱ ଅଛି । କଳିଯୁଗର ଯଥାର୍ଥ ବାମନ ସନ୍ଥ ବିନୋବା, ଖଟିଖିଆ - ଠକିଖିଆ ବ୍ୟବସ୍ଥାର ବିଲୋପପାଇଁ ଭୂଦାନ ଆନ୍ଦୋଳନ ମାଧ୍ୟମରେ ଅହିଂସକ ବିପ୍ଳବ ସୃଷ୍ଟିକରିଯାଇଛନ୍ତି । (ଭୂ-ଜୟନ୍ତୀ ୧୧.୯.୯୬)

୬୪. ଶ୍ରୀ ବିନାୟକ ମିଶ୍ର - ଅସି ଅପେକ୍ଷା ମସିର କରାମତି ବେଶୀ, ଗୋପବନ୍ଧୁ ପ୍ରମାଣ କରିଯାଇଛନ୍ତି । ତାଙ୍କ ବିରଚିତ କବିତାରେ କୃତ୍ରିମତା ନଥିଲା-ହାର୍ଦ୍ଦିକ ଅନୁଭୂତିର ନିଚ୍ଛକ ପରିପ୍ରକାଶଥିଲା । (ଗୋପବନ୍ଧୁ ଜୟନ୍ତୀ ୯.୧୦.୯୬)

୬୫. ଶ୍ରୀ ଶୁକଦେବ ରାଉତ ପ୍ରାକ୍ତନ ପୌରସଂସ୍ଥା ସଦସ୍ୟ - ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ କଂଗ୍ରେସ ଅଫିସରେ ଜନ ସାଧାରଣଙ୍କୁ ସାକ୍ଷାତ ଦେବାରେ ବହୁତ ସୁଖ ପାଉଥିଲେ । ଘର ପୋଡ଼ି ଯାଉଥିବା ବେଳେ ଛାତ୍ର ସମାଜ ମଉଜ ମଜଲିସରେ ନମାତି ଦେଶର ସୁରକ୍ଷା ପାଇଁ କାମ କରିବାକୁ ତାଙ୍କର ପରାମର୍ଶ ପାଳନୀୟ । (ନବ ଜୟନ୍ତୀ ୨୩.୧୧.୯୫)

୬୬. ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ମିଶ୍ର : ସଂପାଦକ ଉତ୍କଳ ସମାଜ - ବ୍ୟବସ୍ଥାପକ ଗୋପବନ୍ଧୁ ବିଦେଶୀ ସରକାରଙ୍କ ପାଖେ ଆତ୍ମ ସମର୍ପଣ ନକରି ଯେପରି ପ୍ରତିବାଦ କରୁଥିଲେ ଏବର ସାଂସଦ ଓ ବିଧାୟକମାନଙ୍କର ସେ ସତ୍ ସାହସ ନାହିଁ । (ଗୋପବନ୍ଧୁ ଶ୍ରାଦ୍ଧ ୧୬.୭.୯୬)

୬୭. ଶ୍ରୀ ଦିଲ୍ଲୀପ କୁମାର ପଲାଇ : ଶିକ୍ଷକ - ଚାଲିଚଳଣ ଓ ଖାଦ୍ୟପେୟକୁ ବିଦେଶୀ ଢଙ୍ଗ ଗ୍ରାସ କରିଯାଉଥିବା ଉଦ୍‌ବେଗଜନକ ।

୬୮. ଶ୍ରୀ ଜଳଧର ସାହୁ ଶିକ୍ଷକ - ମହାପୁରୁଷଙ୍କ ନାମ ନେଇ ନିଜକୁ ପ୍ରତିଷ୍ଠାବାନ କରାଇବାର ଅପଚେଷ୍ଟା ନିନ୍ଦନୀୟ । (ତିଳକ ଶ୍ରାଦ୍ଧ ୧.୮.୯୬)

୬୯. ୰ ପ୍ରଫେସର ରାଜକିଶୋର ରାୟ - ସ୍ୱାଧୀନତା ସଂଗ୍ରାମର ରୋମାଞ୍ଚକର ଘଟଣା ତଥା ଦୁର୍ବଳ ପ୍ରାଣରେ ଶତ ସିଂହର ବିକ୍ରମ ଭରି ଦେଉଥିବା ସଂଗ୍ରାମ ଗୀତି ପାଠ୍ୟ ପୁସ୍ତକରେ ସ୍ଥାନିତ ହେବା ଉଚିତ (କ୍ରାନ୍ତି ଦିବସ ୯.୮.୮୭) ଋଷ୍ଟରେ ଶ୍ରୀ ଚୈତନ୍ୟ ଓ ବୀର ସୁରେନ୍ଦ୍ର ସାଏଙ୍କ ଉପରେ ଗବେଷଣା କରାଯାଉଛି । ଅଥଚ ଖାଦ୍ୟ ଶସ୍ୟରେ ଭିକ୍ଷୁକ ନହୋଇ "ଜୟ-କିଶାନ, ଜୟ-ଯବାନ" ଧ୍ୱନୀର ପ୍ରବର୍ତ୍ତକ ଲାଲବାହାଦୂରଙ୍କୁ ଆମେ ଭୁଲିଯାଉଛୁ । ଏହା ବେଦନା ଦାୟକ । (ଗାନ୍ଧୀ ଶାସ୍ତ୍ରୀ ଜୟନ୍ତୀ ୨.୧୦.୮୭)

୭୦. ଶ୍ରୀ ଗଙ୍ଗାଧର ମିଶ୍ର : ବରିଷ୍ଠ ସର୍ବୋଦୟ କର୍ମୀ ଜଟଣୀ - ଆଉ ବୋଧହୁଏ ଦେଖା ସାକ୍ଷାତ ହେବ ନାହିଁ । ସବୁ ସାଙ୍ଗ ସାଥୀ ଛାଡ଼ିଯାଉଛନ୍ତି । ସମସ୍ତଙ୍କୁ ମୋର ନମସ୍କାର । ଆମେ ଘଣ୍ଟା ପିଟୁଥିବା । କେବେ ହେଲେ ତ ଲୋକେ ଚେଇଁବେ । (୧୨.୨.୯୯ ସର୍ବୋଦୟ ମେଳାକୁ ବାର୍ତ୍ତା)

୭୧. ଶ୍ରୀ ଜୟକୃଷ୍ଣ ମହାନ୍ତି : ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ - ସଂପାଦକ ଆଚାର୍ଯ୍ୟ ହରିହର ସ୍ମୃତି ସଂସଦ (ପୁରୀ ସର୍ବୋଦୟ ମେଳାକୁ ତାଙ୍କୁ ମୁଖ୍ୟ ଅତିଥିଭାବରେ ଆମନ୍ତ୍ରଣ କରାଯାଇଥିବା ପରିପ୍ରେକ୍ଷୀରେ ) ପୁରୀ ସର୍ବୋଦୟ ମେଳା ବ୍ୟବସ୍ଥା ତ ପୁରୀ ବାସୀମାନେ କରନ୍ତି । ଆଗେ ଆମେ ପୁରୀରେ ଥାଇ କରୁଥିଲୁ ତମେ ଅତିଥି ହେଉଥିଲ । ଏବେ ତମେ ପୁରୀରେ ଥାଇ ଆମମାନଙ୍କୁ ଅତିଥି କରିବ, ଏ ତ ଠିକ୍ କଥା । ତେବେ ସେଥିରେ ପୁଣି ମୁଖ୍ୟ ଗୌଣ ବିଚାର କରୁଛ କାହିଁକି ? ତୁଳସୀ ପତ୍ରକେ ସାନ ବଡ଼ ବିଚାର ନରଖିଲା ଭଳି ତମ ପାଇଁ ତ ସବୁ ଅତିଥି ସମାନ (୧.୨.୯୯)

୭୨. ୰ କସ୍ତୁରି ଚରଣ ନାୟକ : ସ୍ୱାଧୀନତା ସଂଗ୍ରାମୀ ଓ ସର୍ବୋଦୟ ମେଳାର ପ୍ରତିଷ୍ଠାତା ବ୍ୟବସ୍ଥାପକ - ପୁରୀରେ ସର୍ବୋଦୟ ବିଚାରମଞ୍ଚ ଯଦି ଠିକ୍‌ଭାବରେ ଚାଲିପାରନ୍ତା, ଏକ ନିତ୍ୟ କାର୍ଯ୍ୟ ହୁଅନ୍ତା । ମୁଁ ପୁରୀରେ ଗାନ୍ଧୀତତ୍ତ୍ୱପ୍ରଚାର କେନ୍ଦ୍ର ସଞ୍ଚାଳନ । କରୁଥିବା ବେଳେ ନୀଳକଣ୍ଠ, ନିରଞ୍ଜନ, ବିଶ୍ୱରଞ୍ଜନ, କୃଷ୍ଣ, ଦୁର୍ଗା ପ୍ରମୁଖ ନିୟମିତ ଆସୁଥିଲେ । ଖବର ଦେଲେ ସର୍ବୋଦୟ ମେଳାକୁ ସେମାନେ ଆସନ୍ତେ । ସର୍ବୋଦୟରେ ବିଭିନ୍ନ ମତବାଦର ଲୋକେ ରହିବେ । ସେମାନଙ୍କୁ ଆଗ୍ରାହ୍ୟ ନ କରି ସମ୍ମାନ ଦେବାକୁ ହେବ । (୨୬.୧.୯୦)

# ଲୋକମାତା କସ୍ତୁରବା

## ସ୍ମରଣ ଦିବସ - ଫେବୃୟାରୀ - ୨୨

କସ୍ତୁରବାଈ ମହାତ୍ମା ଗାନ୍ଧୀଙ୍କ ସହଧର୍ମିଣୀ । ଗୁଜୁରାଟ ପୋରବନ୍ଦରରେ ୧୮୬୯ ଏପ୍ରିଲରେ ତାଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ଗୋକୁଳ ଦାସ ଓ ବୋଉ ବ୍ରଜ କୁଅଁର ବାବର । ତେର ବରଷରେ ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କୁ ସେ ବିଭା ହୋଇଥିଲେ । ଝିଅମାନେ ସେତେବେଳେ ପାଠ ପଢୁ ନଥିଲେ । ତେଣୁ ଆଜିକାଲି ଯାହାକୁ ପାଠ କୁହାଯାଉଛି କସ୍ତୁରବାଈ ସେ ପାଠ ପଢିନଥିଲେ । ତେବେ ତାଙ୍କ ବୋଉ ଓ ସ୍ୱାମୀ ଗାନ୍ଧୀଜୀଙ୍କ ସମ୍ପର୍କରେ ଆସି ସେ ବହୁତ କିଛି ଜ୍ଞାନ ଲାଭ କରିଥିଲେ ।

ବାରିଷ୍ଟରୀ କରିବାକୁ ଦକ୍ଷିଣ ଆଫ୍ରିକା ଗଲାବେଳେ ପତ୍ନୀ କସ୍ତୁରବାଈଙ୍କୁ ସଙ୍ଗରେ ସେଠାରେ ନେଲେ ସେଠାରେ କଳାଗୋରା ଭେଦ ଅତି ଉତ୍‌କଟଥିଲା ମଣିଷର ମୂଲ୍ୟବୋଧ ଓ ସମ୍ମାନ ପ୍ରତିଷ୍ଠାପାଇଁ ଗାନ୍ଧି ସେଠାରେ ପ୍ରଥମ କରି ଏକ ସଂଗ୍ରାମ ଆରମ୍ଭ କଲେ । ତାହାକୁ କୁହାଗଲା ସତ୍ୟାଗ୍ରହ । ସତ୍ୟ ଅହିଂସା ଉପରେ ଏହା ଆଧାରିତ ଥିଲା । କସ୍ତୁରବାଈ, ମହିଳା ସତ୍ୟାଗ୍ରହୀଙ୍କ ନେତୃତ୍ୱ ନେଇ ତିନିମାସ କାରାଦଣ୍ଡ ଭୋଗକଲେ । ସୁଦୂର ଭାରତର ଏକ ଅଖ୍ୟାତ ଗାଁର ବୋହୂଟିଏ ମାନବୀୟ ଉଜ୍ଜତ ରକ୍ଷା ପାଇଁ ସୁଦୂର ଦକ୍ଷିଣ ଆଫ୍ରିକାରେ କାରାଦଣ୍ଡ ଭୋଗ କରିବା ଏକ ଅଭୂତପୂର୍ବ ଘଟଣା । ସାରା ଜଗତରେ ଏହା ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ଦକ୍ଷିଣ ଆଫ୍ରିକାରେ ଫିନିକ୍‌ସ ନାମକ ସ୍ଥାନରେ ଆଶ୍ରମଟିଏ କରି ଗାନ୍ଧୀ-ଦମ୍ପତି ରହୁଥିଲେ । ସେଠାରେ ରୋଗୀ ଓ ଆହତମାନଙ୍କ ସେବା, ରନ୍ଧାବଢ଼ା, ଚକିପେଷା ଜାତି-ଧର୍ମ-ନିର୍ବିଶେଷରେ ଅତିଥିମାନଙ୍କ ମଳମୂତ୍ର ସଫାଇ ନିର୍ବିକାର ଚିତ୍ତରେ ସମ୍ପୂର୍ଣ୍ଣ କରିବାରେ କସ୍ତୁରବାଙ୍କର ଲେଶ ମାତ୍ର ସଙ୍କୋଚ ପ୍ରକଟ କରିନାହାନ୍ତି । ଜଣେ ଆଦର୍ଶ ସର୍ବୋଦୟ କର୍ମୀଭାବରେ ନିଜକୁ ପ୍ରସ୍ତୁତ ରଖିବା ବ୍ରତ ନେଇ ନିଜର ସମସ୍ତ ଅଳଙ୍କାର ତ୍ୟାଗ କଲେ । ଏପରିକି ସେଠାରେ ଗାନ୍ଧୀ ଦମ୍ପତିଙ୍କୁ ମିଳିଥିବା ସମସ୍ତ ଅଳଙ୍କାର ଓ ଉପଢୌକନକୁ ଜନ ସେବା ପାଇଁ ଉତ୍ସର୍ଗ କରିଦେଇ ଆସିବାବେଳେ ମୋହ ତାଙ୍କୁ କବଳିତ କରିପାରିଲା ନାହିଁ । ୧୯୦୬-୧୯୧୩, ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ ସଫଳ ହେଲା ।

ଭାରତକୁ ଫେରି ଗାନ୍ଧୀ-ଦମ୍ପତି ୧୯୧୭ରେ ଆହମ୍ମଦାବାଦ ସ୍ଥିତ ସାବରମତୀ ନଦୀ କୂଳରେ ସତ୍ୟାଗ୍ରହ ଆଶ୍ରମ ପ୍ରତିଷ୍ଠା କଲେ । ସାଧନାରେ ସିଦ୍ଧିଲାଭ କରି କୋଟି ଜନମାନସରେ ଗାନ୍ଧୀ ହେଲେ ବାପୁ (ବାପା) ଓ କସ୍ତୁରବାଈ ହେଲେ ବା (ମା) । ୧୯୧୭ରେ ଚମ୍ପାରଣରେ ନୀଳଚାଷୀଙ୍କ ସତ୍ୟାଗ୍ରହ, ୧୯୩୦ ମାର୍ଚ୍ଚ ୧୨ ରୁ ଆୟମାରମ୍ଭ ଲବଣ ସତ୍ୟାଗ୍ରହ, ଆଇନ ଅମାନ୍ୟ ଆନ୍ଦୋଳନ, ବିଦେଶୀ ବସ୍ତ୍ର ନିଶା ଓ ଅସ୍ପୃଶ୍ୟତା ବର୍ଜନ, ଗାଁ ଗାଁ ରେ ମହିଳା ମାନଙ୍କ ଜାଗରଣ, ୧୯୩୯ରେ ରାଜକୋଟ ସତ୍ୟାଗ୍ରହ ତଥା ୧୯୪୨ ଅଗଷ୍ଟ ୯ ଭାରତର ଅନ୍ତିମ ସ୍ୱାଧୀନତା ସଂଗ୍ରାମ 'ଭାରତ ଛାଡ଼' ରେ ଭାଗ ନେଇ କସ୍ତୁରବା ବହୁବାର କାରାବରଣ କରିଛନ୍ତି ।

ତାଙ୍କର ଅନ୍ତିମ କାରାବାସ ଥିଲା ଆଗାଖାଁ ପ୍ରାସାଦ । ସେଠାରେ ତାଙ୍କ ସ୍ୱାମୀ ମହାତ୍ମାଗାନ୍ଧୀ ଓ ବହୁ ନେତୃସ୍ଥାନୀୟ ବ୍ୟକ୍ତ ବନ୍ଦୀଥିଲେ । ସେମାନଙ୍କ ଭିତରେ ଥିଲେ ମହାଦେବ ଦେଶାଇ - ଗାନ୍ଧୀଙ୍କର ଏକାନ୍ତ ଅନୁରକ୍ତ ସଚିବ । ଗାନ୍ଧୀଜୀଙ୍କର କଥା ଓ କାମକୁ ନିର୍ଭୁଲ ଭାବରେ ଯେ ଲୋକଲୋଚନକୁ ଆଣି ପାରୁଥିଲେ ସେ ହେଉଛନ୍ତି ମହାଦେବ । କସ୍ତୁରବା ତାଙ୍କୁ ନିଜ ପୁଅଠାରୁ

ଅଧିକ ଭଲ ପାଉଥିଲେ । ୧୯୪୨ ଅଗଷ୍ଟ ୧୫ରେ ସେହିଠାରେ ମହାଦେବଙ୍କର ଆକସ୍ମିକ ପରଲୋକ ହୋଇଗଲା । ସେ ବର୍ଷ କୃତ୍ରିମଦୁର୍ଭିକ୍ଷରେ ଦେଶରେ ଶହ ଶହ ସଂଖ୍ୟାରେ ଲୋକ ପ୍ରାଣହରାଇବାରୁ ବନ୍ଦୀଶାଳାରେ ଗାନ୍ଧୀ ବହୁତ ବିଚଳିତ ହୋଇ ପଡ଼ିଲେ । ଡ଼ିସେମ୍ବର ୩୧ ତାରିଖରେ ବଡ଼ଲାଟଙ୍କୁ ଜଣାଇ ଗାନ୍ଧୀ ଏକୋଇଶ ଦିନ ଅନଶନ କରି ଯେପରି ଭାବରେ ଇଉରିମିଆରୁ ବଞ୍ଚିଗଲେ ତାହା ଚିକିତ୍ସା ଜଗତରେ ବିସ୍ମୟ ସୃଷ୍ଟି କରିଥିଲା ।

ଏହି ଦୁଇଟି ଘଟଣାରେ କସ୍ତୁରବା ଏପରି ଭାଙ୍ଗିପଡ଼ିଲେ ଯେ ତାଙ୍କର ହୃଦ୍‌ରୋଗ ଦେଖାଦେଲା । ଶେଷକୁ ସ୍ୱାମୀଙ୍କ କୋଳରେ ମୁଣ୍ଡରଖି ସନ୍ଧ୍ୟା ଘ ୭.୩୫ ରେ ତାଙ୍କର ଜୀବନ ଦୀପ ନିର୍ବାପିତ ହୋଇଗଲା । ସେଦିନ ଥିଲା ୧୯୪୪ ଫେବୃୟାରୀ ୨୨ ତାରିଖ ମହାଶିବରାତ୍ରୀ । ମାଲଭାଇମାନେ ତାଙ୍କ ଶବକୁ ଚିତାଗ୍ନିରେ ସ୍ଥାପନ କଲେ । ପାଞ୍ଚପଟ କାଚ ଚୁଡ଼ି ତାଙ୍କ ପେଟରେ ରଖାଗଲା । ଦାହକ୍ରିୟା ସମ୍ପନ୍ନ ହେବା ପରେ ଦେଖାଗଲା ଯେ, ଚୁଡିତକ ଅକ୍ଷତ ରହିଛି । ଗୁଜୁରାଟର ପ୍ରଥାନୁଯାୟୀ ଏହା ମହାସତୀତ୍ୱର ନିଦର୍ଶନ ।

ଯଥାର୍ଥ କହିବାକୁ ଗଲେ ଆଜକୁ ଶତାଧିକ ବର୍ଷତଳର ଏକ ଅଖ୍ୟାତ ଗ୍ରାମର ଅପାଠୋଇ ଝିଅଟିଏ ନିଜର ସାଧନା ଓ ସିଦ୍ଧିବଳରେ କିପରି ପ୍ରଖ୍ୟାତ ହୋଇପାରେ, କସ୍ତୁରବା ଥିଲେ ତହିଁର ଜ୍ୱଳନ୍ତ ଉଦାହରଣ । ଜୀବନ ଜଞ୍ଜାଳ ଭିତରେ ଥାଇ ମଧ ଆତ୍ମଶକ୍ତିରେ ବଳୀୟାନ କସ୍ତୁରବା ଜନନୀ, ଜାୟା, ସଙ୍ଗିନୀ, ଭଗିନୀ ଓ ବୀରା ରମଣୀ ଭାବରେ ଅର୍ଦ୍ଧନାରୀଶ୍ୱର ତତ୍ତ୍ୱର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ସାରା ଜଗତକୁ ମହକାଇ ନିଜ ନାମର ସାର୍ଥକତା କରିଯାଇଛନ୍ତି ।

ଆସନ୍ତୁ ତାଙ୍କୁ ସ୍ମରଣ କରି ଧନ୍ୟ ହେବା । ତାଙ୍କପରି ଲୋକମାତଙ୍କ ଆବିର୍ଭାବ କାମନା କରିବା ।

୧୯୪୭ ମସିହା ନଭେମ୍ବର ୨୮ ତାରିଖ ଶୁକ୍ରବାର କସ୍ତୁରବାଙ୍କ ସାହସିକତାକୁ ତାରିଫ କରି ଗାନ୍ଧିଜୀ କହିଥିଲେ - "ଏହା ମୋର ଦୁର୍ଭାଗ୍ୟ ଯେ ଏତିକି ବେଳକୁ କସ୍ତୁରବା ନାହାନ୍ତି । ଯଦି ସେ ବଞ୍ଚିଥାଆନ୍ତେ ଆଜି ମହିଳାମାନେ ଯାହା ବା କିଛି ଗୌରବ ଅର୍ଜନ କରିଛନ୍ତି ତାହା କସ୍ତୁରବାଙ୍କ ସାହସ ଓ ପବିତ୍ରତା ଯୋଗୁଁ ସଂଭବ ହୋଇଛି । ତାଙ୍କର ଶିକ୍ଷାଗତ ଯୋଗ୍ୟତା ନଥିଲା । କିନ୍ତୁ ଜଣେ ନାରୀଙ୍କର ଯେଉଁ ସୁଗୁଣ ଆବଶ୍ୟକ ତାହା ତାଙ୍କ ଠାରେ ଭର୍ତ୍ତି ହୋଇ ରହିଥିଲା । ଦେଶର ସେହି ସୁଗୁଣର ଭିତ୍ତିଭୂମି ଉପରେ ମୁଁ ଓ ଭାରତ ଗଢି ଉଠିଛି ଏହା କହିବାକୁ ମୁଁ କୁଣ୍ଠିତ ନୁହେଁ ଯେ କେହି ଏହି ଋଣ ପରିଶୋଧ କରିପାରିବେ ନାହିଁ ।"

("ସମାଜ" ୧୭.୧୨.୯୭)

ବାପୁଜୀଙ୍କ ମତରେ

### ସାତଟି ସାମାଜିକ ପାତକ

| | | |
|---|---|---|
| ୧. | ତତ୍ତ୍ୱହୀନ | ରାଜନୀତି |
| ୨. | ବିବେକହୀନ | ବିଳାସ |
| ୩. | ଶ୍ରମ ହୀନ | ସଂପତ୍ତି |
| ୪. | ମାନବତାହୀନ | ବିଜ୍ଞାନ |
| ୫. | ନୀତିହୀନ | ବ୍ୟବସାୟ |
| ୬. | ତ୍ୟାଗହୀନ | ପୂଜା |
| ୭. | ଚରିତ୍ରହୀନ | ଶିକ୍ଷା |



# ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
# ଓଡ଼ିଶା, ଭୁବନେଶ୍ୱର

## ଆମର ଆଭିମୁଖ୍ୟ :

୧. ଓଡ଼ିଶାରୁ ନିରକ୍ଷରତା ଦୂରୀକରଣ ପାଇଁ ଆମେ ସଂକଳ୍ପବଦ୍ଧ ।

୨. ସାକ୍ଷରତା ହିଁ ସଫଳତାର ଚାବିକାଠି । ଲୋକମାନଙ୍କ ଭିତରେ ସାକ୍ଷରତା ସଂପର୍କରେ ସଚେତନତା ସୃଷ୍ଟି କରିବା ଲାଗି ଆମର ଉଦ୍ୟମ ଅବ୍ୟାହତ ।

୩. ଅଣସାକ୍ଷରମାନଙ୍କୁ ସାକ୍ଷର କରିବା ପାଇଁ ପ୍ରାଥମିକ ପୁସ୍ତକଠାରୁ ଆରମ୍ଭ କରି ସାକ୍ଷରତା ପରବର୍ତ୍ତୀ ଓ ନିରନ୍ତର ଶିକ୍ଷା ଉପଯୋଗୀ ଶତାଧିକ ପୁସ୍ତକ ଆମେ ପ୍ରକାଶ କରିଛୁ ।

୪. ସରଳ ଭାଷା ଓ ସାବଲୀଳ ଶୈଳୀରେ ରଚିତ ଆମ ଦେଶର ଅର୍ଦ୍ଧଶତାଧିକ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନୀ ପୁସ୍ତିକା ଆମେ ପ୍ରକାଶ କରିଛୁ ।

୫. ଦେଶର ଅଣସାକ୍ଷରମାନଙ୍କ ମଧ୍ୟରେ ପାଠ ପଢ଼ିବା ଲାଗି ଆଗ୍ରହ ସୃଷ୍ଟି କରିବା ପାଇଁ ପ୍ରଚାରପତ୍ର, ପ୍ରାଚୀର ପତ୍ର, ସଂଗୀତ କ୍ୟାସେଟ୍, ଦୂରଦର୍ଶନରେ ପ୍ରସାରଣ ଉପଯୋଗୀ ଛୋଟ ଛୋଟ ଚଳଚିତ୍ର ଆମେ ନିର୍ମାଣ କରିଛୁ ।

୬. ଅଣସାକ୍ଷରମାନଙ୍କୁ ଦେଢ଼ ଶହରୁ ଦୁଇଶହ ଘଣ୍ଟା ମଧ୍ୟରେ ଲେଖି ପଢ଼ି ପାରିଲା ଭଳି ଶିକ୍ଷା କିପରି ଦିଆଯାଇପାରିବ, ସେ ବିଷୟରେ ଆମେ ସାଧନ କର୍ମୀମାନଙ୍କୁ ତାଲିମ ଦେବାର ବ୍ୟବସ୍ଥା କରିଛୁ ।

୭. ଏଡ୍‌ସ ଏ ଯୁଗର ମହାମାରୀ । ଏହାର ଆଶୁଚିକିତ୍ସା ପାଇଁ କୌଣସି ଫଳପ୍ରଦ ଔଷଧ ବାହାରି ନାହିଁ । ଏଡ୍‌ସ ରୋଗ ଯେପରି ନ ବ୍ୟାପେ, ସେଥିପାଇଁ ଲୋକଙ୍କୁ ସଚେତନ କରିବାରେ ଆମେ କର୍ମରତ ।

୮. ପ୍ରାକୃତିକ ପରିବେଶ ଉପରେ ଆମର ଭବିଷ୍ୟତ ନିର୍ଭରଶୀଳ । ପରିବେଶ ସୁରକ୍ଷା ପାଇଁ ଲୋକଙ୍କ ଚେତନା ଜାଗ୍ରତ କରିବା ଜନଶିକ୍ଷା ସାଧନକେନ୍ଦ୍ରର ଅନ୍ୟତମ ଆଭିମୁଖ୍ୟ ।

୯. ଜନ ସଂଖ୍ୟା ନିୟନ୍ତ୍ରଣ ଓ ମହିଳାମାନଙ୍କ ମଧ୍ୟରେ ପ୍ରଜନନ ସ୍ୱାସ୍ଥ୍ୟ ଶିକ୍ଷା ପାଇଁ ଜନ ସଂଖ୍ୟା ଶିକ୍ଷା ବିଭାଗ ତରଫରୁ ବିଭିନ୍ନ କାର୍ଯ୍ୟକ୍ରମ ଆମେ ଗ୍ରହଣ କରିଛୁ ।

୧୦. ଅଣସାକ୍ଷର ଆଦିବାସୀମାନଙ୍କୁ ସାକ୍ଷର କରିବା ଲାଗି ଆମେ ସାନ୍ତାଳୀ ଓ ଦ୍ୱିଭାଷୀ ପ୍ରାଥମିକ ପୁସ୍ତକ ଏବଂ ସାକ୍ଷରତା ପରବର୍ତ୍ତୀ ପୁସ୍ତକ ପ୍ରକାଶ କରିଛୁ ।

ନିରକ୍ଷରତା ଏ ଶତାବ୍ଦୀର ସବୁଠାରୁ ବଡ଼ ଅଭିଶାପ । ଆସନ୍ତୁ; ଆମେ ସମସ୍ତେ ମିଳିମିଶି ଏ ଅଭିଶାପରୁ ଆମ ଦେଶକୁ ମୁକ୍ତ କରିବା ।

ନିର୍ଦ୍ଦେଶକ
**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**



# ପୁରୀ ଜିଲ୍ଲା ସାକ୍ଷରତା ସମିତି, ପୁରୀ

ପୁରୀ ଜିଲ୍ଲା ସାକ୍ଷରତା ସମିତି ଆନୁକୂଲ୍ୟରେ ୧୫ ରୁ ୩୫ ବର୍ଷ ବୟସର ପ୍ରାୟ ୧ ଲକ୍ଷ ୧୨ ହଜାର ନିରକ୍ଷରଙ୍କୁ ସାକ୍ଷର କରିବା ପାଇଁ ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ କାର୍ଯ୍ୟକାରୀ କରାଯାଉଛି । ସମସ୍ତ ତାଲିମ କାର୍ଯ୍ୟ ସମାପ୍ତ ହୋଇଛି । ପାଠ୍ୟୋପକରଣ ଶିକ୍ଷାର୍ଥୀମାନଙ୍କୁ ଯୋଗାଇ ଦିଆଯାଇ ପାଠ୍ୟଦାନ କାର୍ଯ୍ୟକ୍ରମ ତା ୧.୪.୯୮ ରିଖରୁ ଆରମ୍ଭ କରାଯାଇଅଛି ।

ଏହି ମହାନ ଜାତୀୟ କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ମୁଁ ଆମ ଜିଲ୍ଲାର ସମସ୍ତ ଲୋକ ପ୍ରତିନିଧି, ସମାଜସେବୀ ଶିକ୍ଷାବିତ୍ ଛାତ୍ର, ଛାତ୍ରୀ, ଯୁବବନ୍ଧୁ, ସ୍ୱେଚ୍ଛାସେବୀ ସଂଗଠନ ଓ ମହିଳା ସମିତି ସ୍ୱେଚ୍ଛାସେବୀ ସହାୟକ/ ସହାୟିକାମାନଙ୍କର ଆନ୍ତରିକ ସାହାଯ୍ୟ ସହଯୋଗ କାମନା କରୁଛି ।

**'ସବୁଜ ସୁନ୍ଦର ସାକ୍ଷର ।**
**ହେଉ ପୁରୀ ଜିଲ୍ଲା ଆମର ।।''**

**ଉମାକାନ୍ତ ମହାନ୍ତି**
ସଂପାଦକ
ଜିଲ୍ଲା ସାକ୍ଷରତା ସମିତି, ପୁରୀ
ସାକ୍ଷରତା ନିୟନ୍ତ୍ରଣ କକ୍ଷ,
ଟେଲିଫୋନ ନଂ ୨୬୨୦୫

**ପ୍ରଦୀପ୍ତ କୁମାର ମହାପାତ୍ର**
ଆଇ.ଏ.ଏସ୍.
ଜିଲ୍ଲାପାଳ ଓ ଅଧ୍ୟକ୍ଷ,
ଜିଲ୍ଲା ସାକ୍ଷରତା ସମିତି, ପୁରୀ

# ଖୋରଧା କେନ୍ଦ୍ର ସମବାୟ ବ୍ୟାଙ୍କ ଲିଃ.

## ମୁଖ୍ୟ କାର୍ଯ୍ୟାଳୟ ଖୋରଧା

ଫୋନ୍ - ୨୦୨୦୯ | ଫ୍ୟାକ୍ସ - ୦୬୭୫୫ - ୨୦୯୨୭

### ବିଶେଷ ଆକର୍ଷଣ

- ସମସ୍ତ ପ୍ରକାର ଜମା ଉପରେ ବାର୍ଷିକ ୦.୫% ଅଧିକ ସୁଧହାର । ସମିତି / ମିନିବ୍ୟାଙ୍କରେ ଜମା ରଖିଲେ କେନ୍ଦ୍ର ସମାବାୟ ଅପେକ୍ଷା ଅଧିକ ୦.୫% ସୁଧ ମିଳିଥାଏ ।
- ଏକ ଲକ୍ଷ ଟଙ୍କା ବ୍ୟକ୍ତିଗତ ଜମା ବୀମା ଦ୍ୱାରା ସୁରକ୍ଷିତ ।
- ଓଡ଼ିଶା ସରକାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ।
- ୧୬ ଗୋଟି ଶାଖା ଓ ୪ଗୋଟି ସଂପ୍ରସାରିତ ଶାଖା ଜରିଆରେ ବ୍ୟାଙ୍କିଙ୍ଗ ସୁବିଧା ।
- ୬୪ଗୋଟି ସେବା ସମବାୟ ସମିତି / ମିନିବ୍ୟାଙ୍କ ମାଧମରେ ଜମା ସଂଗ୍ରହ ଓ କୃଷି / ଅଣକୃଷି ଋଣ ଲଗାଣ ।
- ସମସ୍ତଙ୍କର ଉନ୍ନତି ସାଧନ ଆମର ଲକ୍ଷ୍ୟ

**ଆମର ସ୍ୱତନ୍ତ୍ରତା** : ମହିଳା ବ୍ୟାଙ୍କ : ଖୋରଧା, ଭୁବନେଶ୍ୱର, ମହିଳାମାନଙ୍କ ଦ୍ୱାରା, ମହିଳାମାନଙ୍କ ପାଇଁ ଓ ଓଡ଼ିଶାର ପ୍ରଥମ ଭ୍ରାମ୍ୟମାଣ ମହିଳାବ୍ୟାଙ୍କ, ଭୁବନେଶ୍ୱର । ଏହି ବ୍ୟାଙ୍କ ସମସ୍ତ ପ୍ରକାର ବ୍ୟାଙ୍କିଙ୍ଗ୍ ସୁବିଧା ଯୋଗାଉଥାଏ ।

**ଆମର ଅଗ୍ରାଧିକାର** : କୃଷି ଋଣ ବ୍ୟତୀତ ଆତ୍ମନିଯୁକ୍ତି ପାଇଁ ଉତ୍ପାଦନ ଭିତ୍ତିକ ଋଣ ସହାୟତା ।

**ସ୍ୱତନ୍ତ୍ର ଆକର୍ଷଣ** : ଲକର ଓ ଡ୍ରାଫ୍ଟ ସୁବିଧା ।

### ପ୍ରଚଳିତ ସୁଧର ହାର

| | | | | | |
|---|---|---|---|---|---|
| ୧. | ଚଳନ୍ତି ଜମା | ୦.୫୦% | ୫. | ୩୦ ଦିନରୁ ୪୫ ଦିନ | ୮.୫୦% |
| ୨. | ସଞ୍ଚୟ ଜମା | ୫.୦୦% | ୬. | ୪୬ ଦିନରୁ ୧୭୯ ଦିନ | ୧୦.୫୦% |
| ୩. | ଦୈନିକ ଜମା | ୫.୦୦% | ୭. | ୧୮୦ ଦିନରୁ ୧ ବର୍ଷ ମଧ୍ୟରେ | ୧୧.୦୦% |
| | ସ୍ଥାୟୀ ଜମା | | ୮. | ୧ ବର୍ଷରୁ ୨ ବର୍ଷ ମଧ୍ୟରେ | ୧୧.୫୦% |
| ୪. | ୧୫ ଦିନରୁ ୨୯ ଦିନ | ୫.୫୦% | ୯. | ୨ ବର୍ଷ ଓ ତଦୂର୍ଦ୍ଧ | ୧୨.୫୦% |

**ବିପିନ ବିହାରୀ ପଟ୍ଟନାୟକ**
ସଂପାଦକ

**ଭାଗିରଥୀ ବଡ଼ଜେନା (ମିଟୁ)**
ସଭାପତି

**କିଶାନ କ୍ରେଡ଼ିଟ୍ କାର୍ଡ଼ର ସୁଯୋଗ ନିଅନ୍ତୁ**

"ଜୟ ତୁ ସମବାୟ"

ଅଂଶୀଦାରଙ୍କ ଗର୍ବ ଆମର ଗୌରବ
ଅଂଶୀଦାରଙ୍କ ତୃପ୍ତି ଆମର ସଂକଳ୍ପ ।

---

*With Best Complements from :*

## Hotel May Fair, Puri

---

*With Best Complements from :*

## PURI HOTEL, PURI

# ଶ୍ରୀ ସଂସ୍କାର ସମିତି, ପୁରୀ

## (ରେଜିଷ୍ଟ୍ରୀ ନଂ ୧୯୧୨-୧୯/୮୮-୮୯)

## ନିବେଦନ

ଶ୍ରୀକ୍ଷେତ୍ର ପୁରୀରେ ପ୍ରାଣତ୍ୟାଗ କଲେ ସଦ୍‌ଗତି ପ୍ରାପ୍ତ ହେବା ବିଶ୍ୱାସରେ ବହୁ ବ୍ୟକ୍ତି ଜୀବନର ଅନ୍ତିମ ପର୍ଯ୍ୟାୟରେ ପୁରୀ ଆସି ଶେଷ ନିଃଶ୍ୱାସ ତ୍ୟାଗ କରିଥାନ୍ତି । ଅନେକ ସମୟରେ ବହୁ ଅସହାୟ, ନିଃସଙ୍ଗ ଓ ରୋଗଗ୍ରସ୍ତ ତୀର୍ଥଯାତ୍ରୀ ବ୍ୟକ୍ତିଙ୍କର ଶବ ଯଥାରୀତି ସତ୍କାର କରାଯାଇ ନପାରି ପୁରୀରେ ଏକ ସମସ୍ୟା ସୃଷ୍ଟି କରିଥାଏ । ଏହି କଠିନ ସମସ୍ୟାର ଯଥା ସମ୍ଭବ ସମାଧାନ ପାଇଁ ବୋଧପ୍ରିୟ ରାଧାକୃଷ୍ଣ ସାହୁଙ୍କ ଅଧ୍ୟକ୍ଷତାରେ ଶ୍ରୀସଂସ୍କାର ସମିତି ଗଠିତ ହୋଇ ୧୩.୬.୮୮ ସରକାରଙ୍କ ଦ୍ୱାରା ଯଥାବିଧି ପଞ୍ଜୀକୃତ ହୋଇଛି । ଇତି ମଧ୍ୟରେ ସମିତି ଆନୁକୂଲ୍ୟରେ ୮୧ ଗୋଟି ଶବ ସ୍ୱର୍ଗଦ୍ୱାର ଶ୍ମଶାନରେ ସତ୍କାର କରାଯାଇଛି । ୧୩୩ ଜଣ ସମିତିର ସଦସ୍ୟ ଶ୍ରେଣୀଭୁକ୍ତ ହୋଇଛନ୍ତି । ଆଜୀବନ ସଦସ୍ୟ ଶୁଳ୍କ ମାତ୍ର ଏକଶତ ଟଙ୍କା ରଖାଯାଇଛି । ସମିତିର ସଞ୍ଚିତ ହିସାବ ପୁରୀ ଅର୍ବାନ କୋ-ଅପରେଟିଭ ବ୍ୟାଙ୍କରେ ଖୋଲାଯାଇଅଛି ।

ଏହି ଦାନ କେବଳ ଶବ ସଂସ୍କାର ପାଇଁ ଉପଯୋଗ ହେଉଥିବାରୁ ପୁଣ୍ୟାର୍ଥୀ ବନ୍ଧୁମାନଙ୍କୁ ସମିତି ନିବେଦନ କରନ୍ତି କି ଅଧିକରୁ ଅଧିକ ସଂଖ୍ୟାରେ ସେମାନେ ସମିତିର ସଦସ୍ୟ ଶ୍ରେଣୀଭୁକ୍ତ ହେବାକୁ ମୁକ୍ତ ହୃଦୟରେ ଆଗେଇ ଆସନ୍ତୁ ।

ସମିତିର ବ୍ୟବହାର ପାଇଁ ପୁରୀ ରେଡ଼କ୍ରସ ସଂସ୍ଥା ଗୋଟିଏ ଷ୍ଟ୍ରେଚର ଓ ପୌରସଂସ୍ଥା ଗୋଟିଏ ଆମ୍ବୁଲାନ୍ସ କାର ଦାନ କରିଛନ୍ତି । ପୁରୀ ସହରର ସର୍ବସାଧାରଣଙ୍କୁ ସମିତି ଅନୁରୋଧ କରନ୍ତି କି, କୌଣସି ସ୍ଥାନରେ ବେୱାରିସ ଶବ ଦୃଷ୍ଟିଗୋଚର ହେଲେ ମହିଳା କୁଟୀରସ୍ଥିତ ସମିତି ସେବା କେନ୍ଦ୍ର ସଂଚାଳକ ଶ୍ରୀ ସୁଶୀଳ କୁମାର ସେନ୍‌ଙ୍କୁ ସଂ ୨୩୦୪୨ ଟେଲିଫୋନ ମାଧ୍ୟମରେ ସାନୁଗ୍ରହ ଜଣାନ୍ତୁ । ଶବ ବହନ କରି ସଂସ୍କାର କରିବାକୁ ଧର୍ମ ମଣୁଥିବା ଆଗ୍ରହୀ ବନ୍ଧୁମାନେ ସଂଚାଳକଙ୍କ ପାଖେ ନାମ ତାଲିକାଭୁକ୍ତ କରାଇବାକୁ ସମିତି ଅନୁରୋଧ କରୁଛନ୍ତି ।

ସମସ୍ତ ପ୍ରକାର ଦାନ ସମିତିର ମୁଦ୍ରିତ ରସିଦରେ ସ୍ୱୀକୃତ ହେଉଛି ।

**ଦାନ ଓ ସଭ୍ୟ ଶୁଳ୍କ ଗ୍ରହଣ କରିବା ସ୍ଥାନ**

ଶ୍ରୀ ଚନ୍ଦ୍ରଶେଖର ନାୟକ
ମାର୍କଣ୍ଡେଶ୍ୱର ସାହି, ଯମୁନା ଲେନ୍, ପୁରୀ
ଫୋନ : ୨୪୩୨୯

ଶ୍ରୀ ରାଧାକୃଷ୍ଣ ସାହୁ
ବୋଧ ନିକେତନ, ନୂଆଗଡ଼ ବସ୍ତି, ପୁରୀ
ଫୋନ : ୨୨୪୦୭

ଶ୍ରୀ ସୁଶୀଳ କୁମାର ସେନ୍
ମହିଳାକୁଟୀର କଚେରୀ ରୋଡ଼, ପୁରୀ
ଫୋନ : ୨୩୦୪୨

(ଶ୍ରୀ ସଂସ୍କାର ସମିତି ଦ୍ୱାରା ପ୍ରଚାରିତ ୧.୬.୯୯)

---

## ଭଜ ଏଣିକି

ମନମୋହନ ଗାନ୍ଧୀର ବାଣୀକି ଭଜ ଏଣିକି
ଢାଡିଲାଗି ଛାତି ପାତିଲା ବନ୍ଧୁକ ଆଗରେ ମୁକତିଡାଣିକି ।୦।
ସତ୍ୟ ଅହିଂସାର ବାଣୀ ପ୍ରଚାରିଲେ
ମାନବଙ୍କୁ ମୁକ୍ତି ବାଟ ଦେଖାଇଲେ
ଚରଖାରେ ରକ୍ଷା କଲେ ସେ ପରୀକ୍ଷା
(ତାଙ୍କୁ) ଚକ୍ର ସୁଦର୍ଶନ ମଣିକି ... ଭଜ ଏଣିକି ।୧।
ଛୁଆଁ ଅଛୁଆଁର ଭେଦଗଲେ ଭୁଲି
ହରିଜନ ସେବା କଲେ ବୁଲିବୁଲି
ସ୍ୱରାଜ ସଂଗ୍ରାମୀ ଫଉଜ ଗଢ଼ିଲେ
ନବଜାଗରଣ ଆଣିକି ... ଭଜ ଏଣିକି ।୨।
ଯାରବାଣୀ ଶୁଣି ବ୍ରିଟିଶ କେଶରୀ
ଏ ଦେଶରୁ ଗଲେ ଆପେ ଅପସରି
ଦେଖିଲେ ମୁକୁଟ ଭାରତ ସମ୍ରାଟ
ଯାଙ୍କୁ ସ୍ୱାଧୀନ ଭାରତ ଭଣିକି ... ଭଜ ଏଣିକି ।୩।
ଦେଶର କଲ୍ୟାଣ ବିଶ୍ୱର କଲ୍ୟାଣ
ସର୍ବୋଦୟ ଭାବହୃଦେ ଭରାଜାଣ
ପ୍ରେମମୟ ଶାନ୍ତି ପଥେ ଐକ୍ୟଗତି
ଭାରତ ପାରିଲେ ଜିଣିକି ... ଭଜ ଏଣିକି ।୪।

(ଭଜନ -ନାୟକାଣି ଡିହର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବଳରାମ ପାଣ୍ଡବ)

## ଓଡ଼ିଆ ଜାତୀୟତା ଓ ଓଡ଼ିଶା ହସ୍ତଶିଳ୍ପର ପ୍ରତୀକ

# ଉତ୍କଳିକା

## ହସ୍ତଶିଳ୍ପ ଓ ହସ୍ତତନ୍ତ ବାସ୍ତୁର ଅପୂର୍ବ ସମ୍ଭାର ଆଉଥରେ ଉତ୍କଳିକା ବୁଲି ଦେଖିବାକୁ ଆମର ବିନମ୍ର ନିବେଦନ




*Utkalika*
ORISSA STATE EMPORIUMS
O. S. C. H. C.
**Bhubaneswar**

**ଆମର ଶାଖା**

ଓଡ଼ିଶା ବାହାରେ : ନୂଆଦିଲ୍ଲୀ, କଲିକତା (ଗରିଆହାଟ ଓ ବିମାନ ଅବତରଣ କେନ୍ଦ୍ର), ବାଙ୍ଗାଲୋର୍, ପୁନା, ଚେନ୍ନାଇ ହାଇଦ୍ରାବାଦ୍, ଏବଂ ନିକଟରେ ଖୋଲିବାକୁ ଯାଉଛି ପାନାଜୀ (ଗୋଆ)

ଓଡ଼ିଶା ଭିତରେ : ଭୁବନେଶ୍ୱର (ମାର୍କେଟ୍ ବିଲ୍ଡିଂ), ବ୍ରହ୍ମପୁର, ଜୟପୁର, ସମ୍ବଲପୁର, କଟକ, ରାଉରକେଲା (ଉଦିତ୍‌ନଗର ଓ ସେକ୍ଟର - ୫), ପୁରୀ (ସମୁଦ୍ର କୂଳ ଓ ଗ୍ରାଣ୍ଡ ସେଣ୍ଟର୍) ।

**ଆର୍ଯ୍ୟକୁମାର ଜ୍ଞାନେନ୍ଦ୍ର**
ଅଧ୍ୟକ୍ଷ
ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମ ଲିଃ,
୪୭୫, ସହୀଦ ନଗର
ଭୁବନେଶ୍ୱର - ୭୫୧୦୦୭
ଦୂରଭାଷ - ୫୧୦୧୮୩, ୫୧୧୮୮୫

# ଦ୍ରୁତ ଶିଳ୍ପାୟନ ପଥେ ଓଡ଼ିଶା



* ଓସ୍‌ୱାଲ କମ୍ପାନୀ ଦ୍ୱାରା ପରାଦୀପ ଠାରେ ବାର୍ଷିକ ୧.୯୮ ନିୟୁତ ଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଏକ ଫସ୍‌ଫେଟିକ୍ ରାସାୟନିକ ସାର କାରଖାନାର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ।
* ରାୟଗଡ଼ାଠାରେ ଉତ୍କଳ ଆଲୁମିନା ଇଣ୍ଟରନ୍ୟାସନାଲ୍ ଲିମିଟେଡ୍‌ପକ୍ଷରୁ ୪୦୦ କୋଟି ଟଙ୍କା ବ୍ୟୟରେ ଏକ ଆଲୁମିନା ପ୍ରକଳ୍ପର ନିର୍ମାଣକାର୍ଯ୍ୟ ଆରମ୍ଭ କରାଯାଇଛି ।
* ଦାମନଯୋଡ଼ିସ୍ଥିତ ନାଲ୍‌କୋ ଆଲୁମିନାର ସଂପ୍ରସାରଣ କାର୍ଯ୍ୟ ଦ୍ରୁତଗତିରେ ଆଗେଇ ଚାଲିଛି ।
* ଯାଜପୁର ଜିଲ୍ଲାର ଦୁବୁରୀଠାରେ ନୀଳାଚଳ ଇସ୍ପାତ ନିଗମ ପକ୍ଷରୁ ୧୫୧୦ କୋଟି ଟଙ୍କା ବ୍ୟୟରେ ଏକ ବୃହତ୍ ଇସ୍ପାତ କାରଖାନା ନିର୍ମାଣକାର୍ଯ୍ୟ ଆଗେଇ ଚାଲିଛି ।
* ପାରାଦୀପ ଠାରେ ୮,୨୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ଇଣ୍ଡିଆନ୍ ଅଏଲ୍ କର୍ପୋରେସନ୍ ଏବଂ କୁଏତ୍ ପେଟ୍ରୋଲ୍ କର୍ପୋରେସନ୍‌ର ମିଳିତ ସହଯୋଗରେ ବାର୍ଷିକ ୯ ନିୟୁତ ଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଏକ ତୈଳ ବିଶୋଧନାଗାରର ନିର୍ମାଣକାର୍ଯ୍ୟ ତ୍ୱରାନ୍ୱିତ କରାଯାଉଛି ।
* ଗୋପାଳପୁରଠାରେ ଟିସ୍‌କୋ ଦ୍ୱାରା ସର୍ବାଧିକ ବାର୍ଷିକ ୧୦ ନିୟୁତଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଏକ ଇସ୍ପାତ୍ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ।
* ଆଦିତ୍ୟ ଆଲୁମିନିୟମ୍ (ହିଣ୍ଡାଲ୍‌କୋ) ଦ୍ୱାରା ରାୟଗଡ଼ା ଜିଲ୍ଲାର କଂସାରୀଗୁଡ଼ା ଠାରେ ଏକ ଆଲୁମିନିୟମ୍ ପ୍ରକଳ୍ପ ଏବଂ ସମ୍ବଲପୁର ଜିଲ୍ଲାର ଲପଙ୍ଗା ରେଳଷ୍ଟେସନ୍ ସନ୍ନିକଟସ୍ଥ ବମଲାଇ ଠାରେ ଆଲୁମିନିୟମ୍ ସ୍ମେଲଟର୍ କାରଖାନାର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି ।
* ଷ୍ଟେରଲାଇଟ୍ ଇଣ୍ଡଷ୍ଟ୍ରୀଜ୍ (ଇଣ୍ଡିଆ) ଲିମିଟେଡ୍‌ଙ୍କ ଦ୍ୱାରା କଳାହାଣ୍ଡି ଜିଲ୍ଲାରେ ଏବଂ ଝାରସୁଗୁଡ଼ା ଜିଲ୍ଲାରେ ଆଲୁମିନିୟମ୍ ସ୍ମେଲଟର୍ ଏବଂ କ୍ୟାପଟିଭ ପାୱାରପ୍ଲାଣ୍ଟ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି ।





**ଓଡ଼ିଶା ସରକାର**

**ସୂଚନା ଓ ଲୋକ ସଂପର୍କ ବିଭାଗ**

# ସର୍ବୋଦୟ ମେଳା ଅର୍ଦ୍ଧଶତାବ୍ଦୀ ବିବରଣୀ

ମହାତ୍ମାଗାନ୍ଧୀଙ୍କ ନିଧନର ଚତୁର୍ଦ୍ଦଶାହ ୧୨.୨.୪୮ ତାରିଖ ଗୁରୁବାର ତାଙ୍କ ପବିତ୍ର ଚିତାଭସ୍ମ ଭାରତର ବିଭିନ୍ନ ତୀର୍ଥ କ୍ଷେତ୍ରରେ ବିସର୍ଜନ କରାଯିବାର ସମ୍ବାଦ ସରକାରୀ ସ୍ତରରେ ପ୍ରଚାରିତ ହୋଇଯିବାରୁ ଅଭୂତପୂର୍ବ ଶୋକାକୁଳିତ ପରିବେଶରେ ଚିତାଭସ୍ମକୁ ସ୍ୱାଗତ କରିବା ପାଇଁ ସର୍ବତ୍ର ଜନଜାଗୃତି ପ୍ରକାଶ ପାଇଥିଲା ।

ପୁରୀ କଂଗ୍ରେସ କମିଟି ଏଥିପାଇଁ ୮ ତାରିଖରୁ ୧୨ ତାରିଖ ଯାଏଁ ଏକ ପାଞ୍ଚଦିନିଆ କାର୍ଯ୍ୟକ୍ରମ ଧାର୍ଯ୍ୟ କରିଥିଲେ । ପ୍ରଭାତଫେରି, ଗାନ୍ଧୀ ଅନୁଶାସନ ଆବୃତ୍ତି, ଭଜନ, କୀର୍ତ୍ତନ, ସମବେତ ପ୍ରାର୍ଥନା ଓ ଦରିଦ୍ର ନାରାୟଣ ଭୋଜନ, ସୂତ୍ରଯଜ୍ଞ ଓ ପତାକା ଉତ୍ତୋଳନର ସୁସମାବେଶରେ ଦଶାହ ଠାରୁ ଚତୁର୍ଦ୍ଦଶାହ ପର୍ଯ୍ୟନ୍ତ କାର୍ଯ୍ୟକ୍ରମ ପାଳିତ ହୋଇଥିଲା । ୧୨ ତାରିଖରେ ଏକ ସ୍ୱତନ୍ତ୍ର ଟ୍ରେନ ଯୋଗେ ବିଶିଷ୍ଟ ଗାନ୍ଧୀବାଦୀ ସ୍ୱାଧୀନତା ସଂଗ୍ରାମୀ ରାଜ୍ୟପାଳ ଡକ୍ଟର କୈଳାସ ନାଥ କାଟ୍‌ଜୁ, ମୁଖ୍ୟମନ୍ତ୍ରୀ ✓ ହରେକୃଷ୍ଣ ମହତାବ, ରାଜସ୍ୱମନ୍ତ୍ରୀ ✓ ନବକୃଷ୍ଣ ଚୌଧୁରୀ, ପୁଣ୍ୟାତ୍ମା ✓ ଗୋପବନ୍ଧୁ ଚୌଧୁରୀ ଓ ପୁରୀ ଜିଲ୍ଲା କଂଗ୍ରେସ ସଭାପତି ✓ ଲୋକନାଥ ମିଶ୍ର ପ୍ରମୁଖଙ୍କ ଗହଣରେ ସୁସଜ୍ଜିତ ଭସ୍ମ-ତାମ୍ର କଳସ ନେଇ ୧୨ ତାରିଖ ସକାଳେ ପୁରୀରେ ପହଞ୍ଚିବା ପରେ ରାଜ୍ୟପାଳଙ୍କ ସହ ଅଗଣିତ ଜନତା ପଦଯାତ୍ରାରେ ଷ୍ଟେସନରୁ ମହୋଦଧିକୁ ଆସି ଭସ୍ମକୁ ବିସର୍ଜନ ଦେଇଥିଲେ ।

ପରବର୍ତ୍ତୀ ସମୟରେ ଏହି ସ୍ମୃତିର ସମ୍ମାନାର୍ଥେ ପ୍ରତିବର୍ଷ ସେହି ଫେବୃୟାରୀ ୧୨ ତାରିଖରେ ବିସର୍ଜନ ସ୍ଥଳ ମହୋଦଧିର ତଟବର୍ତ୍ତୀ ଗାନ୍ଧୀ ଘାଟ ନାମରେ ବିଦିତ ସରକାରୀ ଜମିରେ ସର୍ବୋଦୟ ମେଳା ଅନୁଷ୍ଠିତ ହୋଇ ଆସୁଛି । ✓ ଗୋପବନ୍ଧୁ ଚୌଧୁରୀଙ୍କ ମାର୍ଗଦର୍ଶନରେ ଧାର୍ଯ୍ୟ କାର୍ଯ୍ୟକ୍ରମ - ସକାଳେ ସମବେତ ପ୍ରାର୍ଥନା ପରେ ସଫାଇ, ସୂତ୍ରଯଜ୍ଞ, ଭଜନ, ଗାନ୍ଧୀ ସାହିତ୍ୟ ପାଠ ଓ ସମବେତ କର୍ମୀମାନଙ୍କ କର୍ମାନୁଭୂତି ଉପରେ ବିଚାର ବିମର୍ଶ କରାଯାଇ ମହାତ୍ମାଗାନ୍ଧୀଙ୍କୁ ଯେଉଁ ମୁହୂର୍ତ୍ତରେ ହତ୍ୟା କରାଯାଇଥିଲା, ଠିକ୍ ସେହି ସଂଧ୍ୟା ଘ୫.୧୭ ମିନିଟ୍‌ରେ ସର୍ବଧର୍ମ ପ୍ରାର୍ଥନା ଅନୁଷ୍ଠିତ ହୋଇ ମେଳା ସାଙ୍ଗ ହେଉଛି । ପୁରୀ ସହରବାସୀ ତଥା ବହୁ ସହିଚ୍ଛୁ ମେଳାର ସୁନିର୍ବାହ କଳ୍ପେ ମୁକ୍ତ ହସ୍ତରେ ଦାନ କରୁଛନ୍ତି । ସେହି ଦାନରେ ମେଳାଯାତ୍ରୀମାନଙ୍କ ଆପ୍ୟାୟନର ବ୍ୟବସ୍ଥା କରାଯାଉଛି ।

ପ୍ରଥମ କେତେବର୍ଷ ଶ୍ରୀ ଶରତ ଚନ୍ଦ୍ର ମହାରଣା, ମା' ରମା ଦେବୀ ଅନ୍ନପୂର୍ଣ୍ଣା ମହାରାଣା, ✓ ଆଚାର୍ଯ୍ୟ ହରିହର, ✓ ପଣ୍ଡିତ କୃପାସିନ୍ଧୁ ହୋତା, ✓ ବ୍ରଜମୋହନ ସିଂ (ଚାଟୁବାବୁ), ଶ୍ରୀ ମନମୋହନ ଚୌଧୁରୀ, ଫକୀର ମିଶ୍ର ପ୍ରମୁଖଙ୍କ ନେତୃତ୍ୱରେ ବହୁ ସର୍ବୋଦୟ କର୍ମୀ ପଦଯାତ୍ରାରେ ମେଳାକୁ ଆସୁଥିଲେ । ବିଶେଷତଃ ୧୯୩୪ ମଇ ମାସ ୯ ତାରିଖରେ ମହାତ୍ମାଗାନ୍ଧୀ ପୁରୀରୁ ଆରମ୍ଭ କରିଥିବା ହରିଜନ ପଦଯାତ୍ରାରେ ଯେଉଁସବୁ ଗ୍ରାମରେ ଅବସ୍ଥାନ କରିଥିଲେ, ସେହି ଗ୍ରାମ ଗୁଡିକୁ ଲକ୍ଷ୍ୟରେ ରଖି ମେଳାଯାତ୍ରୀମାନେ ପଦଯାତ୍ରାରେ ଆସି ସେହି ସ୍ଥାନରେ ରହୁଥିଲେ ଓ ମହାତ୍ମାଗାନ୍ଧୀଙ୍କ ପରିକଳ୍ପିତ ଗ୍ରାମ ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କରୁଥିଲେ ।

ସର୍ବଶ୍ରୀ ଜୟକୃଷ୍ଣ ମହାନ୍ତି, ଯଦୁମଣି ଦାଶ, ସୁରଜିତ ମହାନ୍ତି, ✓ ପଦ୍ମଚରଣ ସାମନ୍ତସିଂହାର, ✓ କଣ୍ଢୁରି ଚରଣ ନାୟକ, ✓ ରାମଚନ୍ଦ୍ର ଗୋଛିକାର ✓ ରଘୁନାଥ ବାରିକ ପ୍ରମୁଖ ଆଦ୍ୟରୁ ଏହି ମେଳା ବ୍ୟବସ୍ଥାପନା କରୁଥିଲେ ।

୧୯୮୩ ମସିହାରୁ ମେଳାର ସମସ୍ତ କାର୍ଯ୍ୟ ବିବରଣୀ ଲିପିବଦ୍ଧ ହୋଇ ଏକ ଇତିହାସ ସୃଷ୍ଟି କରିଛି । ସେହି ସମୟରୁ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଚନ୍ଦ୍ରଶେଖର ନାୟକ ସଂପାଦକ ଦାୟିତ୍ୱରେ ଅଛନ୍ତି । ପ୍ରତିବର୍ଷ ମେଳାରେ ଏକ ପରିଚାଳନା କମିଟି ଗଠିତ ହେଉଛି । କମିଟିର ଅଧକ୍ଷ ଆଗ୍ରହୀ ବନ୍ଧୁମାନଙ୍କୁ ନେଇ କମିଟି ଗଠନ କରୁଛନ୍ତି । କମିଟିର ବୈଠକ ନିୟମିତ ବସି ଏହି ମେଳା ମାଧମରେ ବିଭିନ୍ନ ଜାତୀୟପର୍ବ ପାଳନ ପୂର୍ବକ ସର୍ବୋଦୟ ବାର୍ତ୍ତା ପ୍ରଚାର କରାଯାଉଛି ।

**ପର୍ବ ପାଳନ** - ସାଧାରଣତଃ ଗୋପବନ୍ଧୁ, ମା' ରମା ଦେବୀ, ଶହୀଦବର୍ଗ, ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ, ସର୍ବୋଦୟ ବାଦୀ ମୁଖ୍ୟମନ୍ତ୍ରୀ ୰ନବକୃଷ୍ଣ ଚୌଧୁରୀ, ଲୋକମାତା କସ୍ତୁରବା, ନେତାଜୀ ସୁଭାଷ, ସ୍ୱରାଜ୍ୟ ମନ୍ତ୍ରର ଜନ୍ମଦାତା ଲୋକମାନ୍ୟ ତିଳକ ତଥା ମହାତ୍ମାଗାନ୍ଧୀ, ଶାନ୍ତିଦୂତ ଲାଲ ବାହାଦୁର, ଆଚାର୍ଯ୍ୟ ବିନୋବାଙ୍କ ସ୍ମୃତି ଦିବସ ମେଳା ଆନୁକୂଲ୍ୟରେ ପ୍ରତିପାଳିତ ହୋଇ ଦେଶର ଭବିଷ୍ୟତ ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷିକାଙ୍କ ଗହଣରେ ସର୍ବୋଦୟ ବାର୍ତ୍ତା ପ୍ରଚାର କରୁଛୁ ।

ସଂପୃକ୍ତ ଶିକ୍ଷାନୁଷ୍ଠାନର ଶିକ୍ଷକ ଶିକ୍ଷିକା ତଥା ସର୍ବୋଦୟ ମେଳା କମିଟିର ସଦସ୍ୟ ସଦସ୍ୟା ବର୍ଗଙ୍କ ବ୍ୟତୀତ ଏହି କାର୍ଯ୍ୟକ୍ରମରେ ସର୍ବଶ୍ରୀ ଇଂ. ମଧୁସୂଦନ ନନ୍ଦ ପ୍ରଭାକର ମିଶ୍ର, ସାଂସଦ ବ୍ରଜକିଶୋର ତ୍ରିପାଠୀ, ଗଦାଧର ମିଶ୍ର, ବିନାୟକ ମିଶ୍ର ପ୍ରଫୁଲ୍ଲ ପଟ୍ଟନାୟକ ଅଧିବକ୍ତା ବିଶ୍ୱନାଥ ଷଡଙ୍ଗୀ, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ସ୍ୱାଧୀନତା ସଂଗ୍ରାମୀ ଭବାନୀଚରଣ ପଟ୍ଟନାୟକ, ଗୋବିନ୍ଦ ତ୍ରିପାଠୀ, ଯଦୁମଣି ଜେନା ଓ ଭଗବାନ ପ୍ରତିହାରୀ ପ୍ରମୁଖ ବହୁ ସଜ୍ଜନ ଅଂଶ ଗ୍ରହଣ କରିଛନ୍ତି । ଏହି କାର୍ଯ୍ୟକ୍ରମରେ ବାଗ୍ମିତା, କ୍ୱିଜ ଭଳି ପ୍ରତିଯୋଗିତା ମାନ ଅନୁଷ୍ଠିତ ହୋଇ ୩୩୨ ଜଣ ଛାତ୍ର ଛାତ୍ରୀଙ୍କୁ ପୁରସ୍କୃତ କରାଯାଇଛି ।

**ସର୍ବୋଦୟ ସାହିତ୍ୟ ପାଠ** - ସର୍ବୋଦୟ ମେଳାରେ ଗାନ୍ଧୀ ବିନୋବାଙ୍କ ମୂଳଲେଖା ପାଠ ଏକ ଅପରିହାର୍ଯ୍ୟ କାର୍ଯ୍ୟକ୍ରମ । ସାଧାରଣତଃ ସର୍ବୋଦୟ ସିଦ୍ଧାନ୍ତ, ଶ୍ରମ ଓ ସମତା, ପ୍ରାକୃତିକ ଚିକିତ୍ସା, ଲୋକମାତା କସ୍ତୁରବାଙ୍କ ତ୍ୟାଗ, ଆର୍ଥିକ ସମାନତା, ମଦ୍ୟ ନିଷେଧ, ଶିଶୁମାନଙ୍କୁ ଉପଦେଶ, ବିବାହ ବିଚାର, ସତ୍ୟାଗ୍ରହ ରହସ୍ୟ, ନାରୀ ସମାଜ ପ୍ରତି, ଯୌତୁକ ନିରୋଧ, ପୁରୀରୁ ହରିଜନ ପଦଯାତ୍ରା ଏହି କାର୍ଯ୍ୟକ୍ରମରେ ସ୍ଥାନ ପାଉଥିଲା ।

ଯେଉଁ ବନ୍ଧୁବର୍ଗ ଏହି କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଛନ୍ତି ସେମାନେ ହେଲେ ସର୍ବଶ୍ରୀ ନିତ୍ୟାନନ୍ଦ ମିଶ୍ର, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଫକୀର ମିଶ୍ର, ଦାମୋଦର ମହାପାତ୍ର, ଗୋପାଳ ପ୍ରସାଦ ଦାସ, ବୃନ୍ଦାବନ ତ୍ରିପାଠୀ, ଦେବ ପ୍ରସାଦ ମିଶ୍ର, ଶକ୍ତି ଶେଖର ଦାସ, ହରମୋହନ ସିଂହ ସାମନ୍ତ, ଶିବ ପ୍ରସାଦ ଜେନା, କୁଳମଣି ମହାପାତ୍ର, ରଘୁନାଥ ମିଶ୍ର, ମନମୋହନ ସାହୁ, ଗୌରକୃଷ୍ଣ ଦାସ, ଗୌରୀମଣି ଦେବୀ, ରାମଚନ୍ଦ୍ର ପ୍ରଧାନ ଓ ୰ ମୁକୁନ୍ଦ ମିଶ୍ର ପ୍ରମୁଖ ।

**ଭଜନ ଗାନ** - ସର୍ବୋଦୟ ମେଳାରେ ନିୟମିତ ଭଜନଗାନ କରାଯାଉଛି । ପାର୍ବତୀ ସ୍ୱାଇଁ, ଶାନ୍ତି ଲତା ନାୟକ, ଶକ୍ତି ଶେଖର ଦାସ ଓ ମହିଳା କୁଟୀରର ଅନ୍ତେବାସିନୀମାନେ ମୁଖ୍ୟତଃ ଭାଗ ନେଇ ଆଧାତ୍ମିକ ପରିବେଶର ମୂର୍ଚ୍ଛନା ସୃଷ୍ଟି କରୁଛନ୍ତି ।

**ସୂତ୍ରଯଜ୍ଞ** - ସ୍ୱାଧୀନତା ସଂଗ୍ରାମରେ ଚରଖା ଥିଲା ଅହିଂସକ ଆୟୁଧ । ମହାତ୍ମାଗାନ୍ଧୀ ଚରଖାକୁ ଗ୍ରାମ୍ୟ ଶିଳ୍ପରୂପୀ ସୌର ଜଗତର ସୂର୍ଯ୍ୟ ଆଖ୍ୟା ଦେଇଥିଲେ । ମହାତେଜୀୟାନ ସୌରଶକ୍ତିର ବିଲୋପରେସମଗ୍ର ସୌରଜଗତ ଅନ୍ଧକାରଗ୍ରସ୍ତ ହେଲା ଭଳି ବିଦେଶୀ ସରକାର ସୂତାକଟା ଓ ଲୁଗାବୁଣା ଉଦ୍ୟୋଗକୁ ଲୋପ କରାଇଦେବାରୁ ଗ୍ରାମ୍ୟଧନ୍ଦା ଲୁପ୍ତ ପ୍ରାୟ ହୋଇ ଗ୍ରାମ

ପ୍ରଧାନ ଭାରତକୁ ଶ୍ରୀହୀନ କରିଦେଇଥିଲା । ଗାନ୍ଧିଜୀ ଦୃଢ ସାହସିକ ମତବ୍ୟକ୍ତ କରିଥିଲେ, ଯେ ବିଦେଶୀ ବସ୍ତ୍ର ଭାରତର ଭୋକିଲା ଲୋକଙ୍କ ମୁହଁରୁ ଅନ୍ନ ଛଡାଇ ନେଉଛି । ଚରଖାର ସୂତାଖିଅରେ ସ୍ୱରାଜ୍ୟ ଝୁଲୁଛି । ଏହି ବାଣୀରେ ପୁରପଲ୍ଲୀ ଅଭିମନ୍ତ୍ରିତ ହେଲା ଓ ଲକ୍ଷ ଲକ୍ଷ ସଂଖ୍ୟାରେ ଚରଖାର ଗୁଂଜରଣ ବିଦେଶୀ ଶାସନକୁ ହାତରେ ନ ମାରି ଭାତରେ ମାରିଦେଲା ।

ସ୍ୱରାଜ୍ୟର ଏହି ସାଧନକୁ ବଞ୍ଚାଇ ରଖି ଯେଉଁ ନିଷ୍ଠାପର କର୍ମୀମାନେ ମେଳାକୁ ଆସି ସୂତ୍ରଯଜ୍ଞରେ ଭାଗ ନେଇଛନ୍ତି, ସେମାନଙ୍କ ମଧ୍ୟରେ ଥିଲେ ୰ ବ୍ରଜ ମୋହନ ସିଂ, ଅମର ନାଥ ଚଟ୍ଟୋପାଧ୍ୟାୟ, ଅନ୍ନପୂର୍ଣ୍ଣା ମହାରାଣା, ୰ ମଙ୍ଗଳା ସେନଗୁପ୍ତ, ଇନ୍ଦିରା ଚଟ୍ଟୋପାଧ୍ୟାୟ, ନିତ୍ୟାନନ୍ଦ ମିଶ୍ର, ୰ ଫକୀର ସାହୁ, ୰ ପୂର୍ଣ୍ଣଚନ୍ଦ୍ର ବେହେରା ପ୍ରମୁଖ ପୁରୀ ଜନ ମଙ୍ଗଳ ସମିତିର ସଦସ୍ୟ ବୃନ୍ଦ, ୰ ଜନାର୍ଦ୍ଦନ ପଟ୍ଟନାୟକ, ୰ କଣ୍ଢୁରି ଚରଣ ନାୟକ, ସରସ୍ୱତୀ ଦେବୀ, ଜ୍ୟୋତ୍ସ୍ନାରାଣୀ ମହାନ୍ତି, ମୁକ୍ତେଶ୍ୱର ବେଉରିଆ ଓ ୰ ରଘୁନାଥ ବାରିକ ପ୍ରମୁଖ ।

ଆଗେ ଖଦୀ କର୍ମୀମାନେ ନିଜ ହାତକଟା ସୂତାର ଅଞ୍ଜଳି ମେଳାରେ ଉତ୍ସର୍ଗ କରୁଥିଲେ । ଶରୀରଶ୍ରମର ପ୍ରତୀକ ଏହି ଦାନକୁ ଉତ୍କଳ ସର୍ବୋଦୟ ମଣ୍ଡଳ ବା ଗାନ୍ଧୀ ସ୍ମାରକ ନିଧି ଭଳି ରଚନାତ୍ମକ ସଂସ୍ଥାକୁ ଦାନ କରାଯାଉଥିଲା । ପରବର୍ତ୍ତୀ ସମୟରେ ସୂତ୍ରଯଜ୍ଞ ଲବ୍ଧ ସୂତାକୁ ଏକାଠି କରି ଗୋପବନ୍ଧୁ ଦରିଦ୍ର ନାରାୟଣ ସେବାସଂଘକୁ ଦାନ କରାଯାଇ ବିନିମୟରେ ମିଳିଥିବା ଖଦୀବସ୍ତ୍ରକୁ ଜଣେ ରିକ୍ସା ଚାଳକ ସାମାନ୍ତ୍ରିଙ୍କୁ ଦାନ କରାଯାଇଥିଲା ।

**ଶ୍ରମ ଦାନ** - ଏହି କାର୍ଯ୍ୟକ୍ରମ ଛଟିଖିଆ ଠକିଖିଆ ଭେଦ ଲୋପ କରିବାରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଲାଭ କରୁଥିବାରୁ ସର୍ବୋଦୟ ମେଳା ଏହାକୁ ଗୁରୁତ୍ୱ ଦିଅନ୍ତି । ପୁରୀ ସହରସ୍ଥିତ ଉତ୍ତରଦ୍ୱାର ପରିବା ମାର୍କେଟ, ଦକ୍ଷିଣଦ୍ୱାର ପେଚ୍ଛନଳା, ବଡ ଡାକ୍ତରଖାନା ପରିସର, ଶ୍ରୀ ଲୋକନାଥ, ମାର୍କଣ୍ଡେଶ୍ୱର, ଶ୍ୱେତଗଙ୍ଗା ଓ ନରେନ୍ଦ୍ର ପାଠ, ଗାନ୍ଧୀଘାଟ, ଗୋପବନ୍ଧୁଙ୍କର ନାଗପୁର ବଢ଼ାଟ ବିଭିନ୍ନ ଦିବସରେ ସଫା କରାଯାଇଛି । ଏହି କାର୍ଯ୍ୟକ୍ରମରେ ବିଭିନ୍ନ ଶିକ୍ଷାନୁଷ୍ଠାନର ଛାତ୍ରଛାତ୍ରୀ ତଥା ମେଳାକମିଟି ସଦସ୍ୟ ବର୍ଗଙ୍କ ସମେତ ୰ ପଦ୍ମଚରଣ ସାମନ୍ତସିଂହାର, ୰ ବ୍ରଜବନ୍ଧୁ ମିଶ୍ର, ୰ ବ୍ରହ୍ମାନନ୍ଦ ମହାନ୍ତି, ୰ କଣ୍ଢୁରି ଚରଣ ନାୟକ, କେନ୍ଦ୍ରାପଡାର ସ୍ୱାଧୀନତା ସଂଗ୍ରାମୀ ୰ ଦୁର୍ଯ୍ୟୋଧନ ପଣ୍ଡା, ବାଲେଶ୍ୱରର ଶ୍ରୀ ରବୀନ୍ଦ୍ର ମୋହନ ଦାସ, ଡାକ୍ତର ମୋହନ ଦାଶ, ପ୍ରଫେସର ସର୍ବେଶ୍ୱର ଦାଶ, ଭିକାରି ଚରଣ ସାହୁ, ୰ ଦାଶରଥି ମହାନ୍ତି, ପ୍ରହ୍ଲାଦ କୁମାର ସିଂ, ବାଳକୃଷ୍ଣ ନନ୍ଦ, ପୂର୍ଣ୍ଣଚନ୍ଦ୍ର ବାରିକ, ଗୋବିନ୍ଦ ତ୍ରିପାଠୀ, ଭଗବାନ ମହାନ୍ତି, ରମାକାନ୍ତ କର, ପଟାମୁଣ୍ଡାଇର ହାଡିବନ୍ଧୁ ଦାସ ପ୍ରମୁଖ ଅଂଶ ଗ୍ରହଣ କରିଛନ୍ତି ।

**ସଦିଚ୍ଛା ଓ ସମ୍ମାନ** - ସଂଗ୍ରାମୀ ଓ ସମାଜ ସେବୀମାନଙ୍କୁ ସମ୍ମାନ, ସଦିଚ୍ଛା ଓ ଆଶିଷ ପ୍ରଦାନକୁ ଆମେ ଏକ ନୀତି ସ୍ୱରୂପ ଗ୍ରହଣ କରିଛୁ । ଦକ୍ଷିଣ ଆଫ୍ରିକାରେ କଳାଗୋରା ଭେଦର ଉଚ୍ଛେଦ ସାଧନ ପାଇଁ ମହାତ୍ମାଗାନ୍ଧୀ ସେଠାରେ ଅହିଂସକ ସଂଗ୍ରାମ ଚଳାଇ ଆନ୍ତର୍ଜାତିକ କ୍ଷେତ୍ରରେ ବିସ୍ମୟ ଓ ଆଲୋଡନ ସୃଷ୍ଟି କରିଥିଲେ । ସେଠାକାର ନିଗ୍ରୋ ନେତା ନେଲ୍‌ସନ୍ ମାଣ୍ଡେଲା ସେହି ଆନ୍ଦୋଳନକୁ ଜାରି ରଖି ଦୀର୍ଘ ୨୭ ବର୍ଷ କାରାଦଣ୍ଡ ଭୋଗ କରି ବିପୁଳ ବିଜୟ ଲାଭକଲେ । କଳାଗୋରା ଭେଦଭାବ ଉଠିଲା । ସମ୍ବିଧାନ ବଦଳିଲା । ଶ୍ରୀଯୁକ୍ତ ମାଣ୍ଡେଲା ବିପୁଳ ଭୋଟରେ ବିଜୟୀ ହୋଇ ରାଷ୍ଟ୍ରପତି ପଦ ମଣ୍ଡନ କଲେ । ଦେଶ ବିଦେଶରୁ ତାଙ୍କୁ ବିପୁଳ ସଦିଚ୍ଛା ଓ ସମ୍ମାନ ମିଳିଲା । ଆମେମାନେ ଏହି ଅବସରରେ ସେଠାରେ ଅବସ୍ଥାପିତ ଭାରତୀୟ ଦୂତାବାସ ମାଧ୍ୟମରେ ତାଙ୍କୁ ସଦିଚ୍ଛା ଜ୍ଞାପନ କଲୁ ।

ଡେଲାଙ୍ଗ ବ୍ଲକ ହରିରାଜପୁର ମେଳଣରେ ଶ୍ରୀ ପ୍ରଶାନ୍ତ କୁମାର ହରିଚନ୍ଦନ ଗୋଟିଏ ସ୍ୱର୍ଣ୍ଣ ଲକେଟ୍ ପାଇଥିଲେ । ଏହାକୁ ନିଜେ ଆତ୍ମସାତ୍ ନ କରି ସେଠାରେ ପ୍ରତିଷ୍ଠିତ ସୂଚନା କେନ୍ଦ୍ରରେ ଜମା ଦେଇଥିଲେ ଓ ତାହା ହଜାଇଥିବା ଲୋକକୁ ଠାବ କରି ଫେରାଇ ଦିଆଯାଇଥିଲା । ଏଥିପାଇଁ ଶ୍ରୀମାନ ପ୍ରଶାନ୍ତ କୁମାରଙ୍କୁ ଆମେମାନେ ସାଧୁତା ପୁରସ୍କାର ପ୍ରଦାନ କରିଥିଲୁ ।

ଶ୍ରୀ କାଳିଆ ମଲ୍ଲିକ ପୁରୀରେ ଜଣେ ରିକ୍ସା ଚାଳକ । ଏକଦା ପୁରୀ ସମୁଦ୍ର କୂଳରେ ଅବ୍ୟବସ୍ଥିତ ଭାବରେ ବୁଲୁଥିବା ଦୁଇଟି ଝିଅଙ୍କୁ ପୁରୀ ଟାଉନ୍ ଥାନାରେ ପହଂଚାଇ ନିରାପତ୍ତା ଯୋଗାଇଥିଲା ଓ ପରେ ଝିଅ ଦୁଇଟିଙ୍କୁ ତାଙ୍କ ଅଭିଭାବକମାନେ ଆସି ନେଇପାରିଥିଲେ । ଏଥିପାଇଁ ଶ୍ରୀ ମଲ୍ଲିକଙ୍କର ଉନ୍ନତ ବିଚାରକୁ ପ୍ରଶଂସା ଜଣାଇ ତାଙ୍କର ଉନ୍ନତି କାମନା କରିଥିଲୁ ।

ଶ୍ରୀ ଲଲାଟ କିଶୋର ପୃଷ୍ଟି ଖୋର୍ଦ୍ଧାର ଅଦୂରବର୍ତ୍ତୀ ଗଙ୍ଗପଡା ଗ୍ରାମର ଅଧିବାସୀ । ସେ ଜଣେ ନିଃସ୍ୱାର୍ଥପର କୁଷ୍ଠ ସେବକ । ପ୍ରତିମାସରେ କୁଷ୍ଠ ରୋଗୀମାନଙ୍କୁ ସମବେତ କରାଇ ଔଷଧ, ଖାଦ୍ୟ ଓ ବିଦାକି ଦିଅନ୍ତି । ସରକାରଙ୍କ ବିନା ସାହାଯ୍ୟରେ ସାଧାରଣ ଚାନ୍ଦା ଉପରେ ସେ ବ୍ରତଚଳା ପରି କୁଷ୍ଠ ସେବା କରିଆସୁଥିବାରୁ ମେଳାର ସଂପାଦକଙ୍କ ସହ ସଦସ୍ୟ ଶ୍ରୀ ସୁଶୀଲ କୁମାର ସେନ ତାଙ୍କ ଗ୍ରାମକୁ ଯାଇ ସମବେତ କୁଷ୍ଠୀମାନଙ୍କ ଗହଣରେ ତାଙ୍କୁ ସଦିଚ୍ଛାପତ୍ର ପ୍ରଦାନ କରିଥିଲେ । ଶ୍ରୀମତୀ ବିଜଳୀ ସେନଙ୍କ ପ୍ରଦତ୍ତ ଉପାୟନ ତାଙ୍କୁ ପ୍ରଦାନ କରାଯାଇଥିଲା ।

ଶ୍ରୀମାନ କ୍ରିଷ୍ଣା ରେଡ୍ଡି ୧୩ ବର୍ଷ ବୟସ୍କ ପୁରୀରେ ଏକ ସାଇକେଲ ଦୋକାନର କର୍ମୀ । ସଂଗୀତା ନାମ୍ନୀ ଏକ ସାତବର୍ଷର ଶିଶୁକୁ ଟ୍ରକ୍ ଦୁର୍ଘଟଣାରୁ ବଞ୍ଚାଇ ପାରିଥିବା ଯୋଗୁଁ ତାଙ୍କୁ ସେବାପରାୟଣତା ପୁରସ୍କାର ଦେଇଛୁ ।

ଶ୍ରୀ ନାରାୟଣ ବେହେରା ଖୋର୍ଦ୍ଧା ଜିଲ୍ଲା ଚଟୁଆ ଗ୍ରାମ ନିବାସୀ ଜଣେ ମାଧ୍ୟମିକ ଶିକ୍ଷକ । ନିଜ ଉଦ୍ୟମରେ ଗାଁକୁ ସେ ସଂପୂର୍ଣ୍ଣ ନିଶାମୁକ୍ତ କରାଇଥିବାରୁ ତାଙ୍କୁ ସଦିଚ୍ଛାପତ୍ର ପ୍ରଦାନ କରିଛୁ ।

ଶ୍ରୀମାନ ଦଳାଇ ଦିଗ୍‌ଦର୍ଶୀ ପାଇକରାୟ ଡେଲାଙ୍ଗ ବ୍ଲକ କଲ୍ୟାଣପୁର ପ୍ରାଥମିକ ବିଦ୍ୟାଳୟର ଛାତ୍ର । ଗାଁ ପୋଖରୀରେ ବୁଡି ଯାଉଥିବା ଏକ ଶିଶୁର ଜୀବନ ରକ୍ଷା କରିଥିବାରୁ ତାଙ୍କୁ ପୁରସ୍କାର ସହ ଆଶିଷପତ୍ର ପ୍ରଦାନ କରିଛୁ । ଶ୍ରୀ ଜଗବନ୍ଧୁ ହେମ୍ବ୍ରମ୍ ରାଉରକେଲାସ୍ଥିତ ଗୋପବନ୍ଧୁ ବେଲଫେୟାର ଟ୍ରଷ୍ଟର ଜଣେ ସଦସ୍ୟ । କୌଣସି ବ୍ୟକ୍ତି ନିଃବଂଶ ହୋଇ ନିଜଘରେ ପ୍ରାଣତ୍ୟାଗ କଲେ ତାର ପ୍ରେତାତ୍ମା ଗ୍ରାମବାସୀଙ୍କୁ ନାନା ଭାବରେ ହଇରାଣ କରିବ ବୋଲି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ମୃତ୍ୟୁସହ ସଂଗ୍ରାମରତା ଏକ ବୁଢ଼ୀକୁ ତାର ଗାଁ ହାତୀ ବନ୍ଧାରେ ମରିବାକୁ ନ ଦେଇ ଗାଁ ଲୋକେ ବାହାରେ ନେଇ ପକାଇଦେଇ ଆସିଥିଲେ । ଶ୍ରୀ ହେମ୍ବ୍ରମ୍ ସନ୍ଧାନ ନେଇ ଏକାକୀ ସେହି ବୁଢ଼ୀଟିକୁ କାନ୍ଧରେ ବହନ କରି ଚିକିତ୍ସାର ବ୍ୟବସ୍ଥା କରାଇଥିଲେ । ବୁଢୀଟିର ଜୀବନ ରକ୍ଷା ହେଲା । ଏହି ନିଃସ୍ୱାର୍ଥପର ସେବାପରାୟଣତା ପାଇଁ ତାଙ୍କୁ ୯୬ ମସିହାର ସର୍ବୋଦୟମେଳାରେ ସଦିଚ୍ଛାସହ ଉପାୟନ ପ୍ରଦାନ କରାଯାଇଥିଲା । ବାଟ ଖର୍ଚ୍ଚ ବାବଦକୁ ସେ ଆମ ଠାରୁ କୌଣସି ଅର୍ଥ ଗ୍ରହଣ ନ କରି ମେଳାପାଣ୍ଠିକୁ ଏକଶତ ଟଙ୍କା ଦାନ କରିଥିଲେ । ଆମେମାନେ ଅତ୍ୟନ୍ତ ଦୁଃଖର ସହିତ ଜଣାଉଛୁ କି ଶ୍ରୀ ହେମ୍ବ୍ରମ୍‌ଙ୍କର ଇତି ମଧ୍ୟରେ ଏକ ଟ୍ରକ୍ ଦୁର୍ଘଟଣାରେ ପରଲୋକ ହୋଇଯାଇଛି ।

ବନ୍ତଳା ମହାବିଦ୍ୟାଳୟର ଛାତ୍ର ଶ୍ରୀଭୁବନ ବେହେରା ୧୧ ଫୁଟ ଜଳ ପ୍ରବାହିତ ବଉଳା ନଦୀରେ ଦୁର୍ଘଟଣାଗ୍ରସ୍ତ ହୋଇ ଭାସିଯାଉଥିବା ୧୧ ବର୍ଷର ଝିଅ ସସ୍ମିତା ପ୍ରଧାନର ଜୀବନ ରକ୍ଷା କରିଥିବାରୁ ତାଙ୍କୁ

୧୯୯୬ର ସର୍ବୋଦୟ ମେଳାରେ ସାହସିକତା ପୁରସ୍କାର ପ୍ରଦାନ କରାଯାଇଛି ।

ବଲଙ୍ଗା ଅଦୂରବର୍ତ୍ତୀ ରୂପଦେଇପୁର ଗ୍ରାମର ବାଳକ ଅନୀଲ ମିଶ୍ର କୂଅରେ ପଡିଯାଇଥିବା ଜ୍ୟୋତିନାମକ ଏକ ଅଢ଼େଇ ବର୍ଷର ଶିଶୁର ଜୀବନ ରକ୍ଷା କରିଥିବାରୁ ତାଙ୍କୁ ୧୯୯୭ ମସିହା ସର୍ବୋଦୟ ମେଳାରେ ଆଶିଷ ପତ୍ର ପ୍ରଦାନ କରାଯାଇଛି ।

ବର୍ଷିୟସୀ ସର୍ବୋଦୟ ନେତ୍ରୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରାଣାଙ୍କୁ ତାଙ୍କ ସଂଗ୍ରାମ ଓ ସେବାପରାୟଣତାକୁ ସମ୍ମାନ ଜଣାଇ ମାନପତ୍ର ଓ ଉପାୟନ ପ୍ରଦାନ କରାଯାଇଛି ।

ସ୍ଵ ବେଲ ତିଆଡି ପୁରୀ ଦୋଳମଣ୍ଡପ ସାହି ନିବାସୀ ଜଣେ ନିଷ୍ଠାପର ଏକକ ନିଶା ନିବାରଣ କର୍ମୀ । ସେ ନିୟମିତ ଖଦୀଧାରୀ ଓ ଜଣେ ଅଣବନ୍ଦୀ ସ୍ଵାଧୀନତା ସଂଗ୍ରାମୀ ଥିଲେ । ସରକାରଙ୍କ ଠାରୁ ସେ କୌଣସି ଆର୍ଥିକ ଦାନର ଆଶା ରଖି ନଥିଲେ । ବିଶ୍ଵକବି ରବୀନ୍ଦ୍ର ନାଥଙ୍କ ବିଚାରର ନିଛକ ପରିପ୍ରକାଶ ''ଏକ୍ଲା ଚ଼ଲୋ''ର ସତେଯେପରି ସେ ଥିଲେ ପ୍ରତୀକ । ୧୯୯୬ର ସର୍ବୋଦୟ ମେଳାରେ ତାଙ୍କୁ ମାନପତ୍ର ଓ ଉପାୟନ ପ୍ରଦାନ କରାଯାଇଛି ।

୧.୧୦.୯୭ରେ ନରଣଗଡ଼ ବାଳିକା ଉଚ୍ଚ ବିଦ୍ୟାଳୟର ଛାତ୍ରୀ ସାଗରିକା ପଟ୍ଟନାୟକ ଅଦୂରବର୍ତ୍ତୀ ଟ୍ରେନ ଲାଇନ ଅତିକ୍ରମ କରୁଥିବା ବେଳେ ସହସା ଦୁର୍ଘଟଣାଗ୍ରସ୍ତ ହେବାରୁ ତାଙ୍କର ସହପାଠିନୀ ଟୁନୀ ଭୋଇ ତାର ଜୀବନ ରକ୍ଷା କରିଥିଲା ୧୯୯୮ ସର୍ବୋଦୟ ମେଳାରେ ଟୁନୀଙ୍କୁ ସାହସିକତା ପୁରସ୍କାର ପ୍ରଦାନ କରାଯାଇଛି ।

ଭାରତର ଅନ୍ତିମ ସ୍ଵାଧୀନତା ସଂଗ୍ରାମ ''ଭାରତଛାଡ଼''ରେ ଭାଗନେଇ ଶ୍ରୀ ଅଲେଖ ପାତ୍ର ପୁରୀ ବନ୍ଦୀଶାଳାରେ ଥିବାବସ୍ଥାରେ ସହବନ୍ଦୀ ଲୋକନାଥ ସେନାପତିଙ୍କ ସହ ଅନ୍ତର୍ହିତ ହୋଇ ତାରା ପ୍ରଶାସନରେ ଆତଙ୍କ ଓ ଆଲୋଡ଼ନ ସୃଷ୍ଟି କରିଥିଲେ । ସେ ଏବେ ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି । ବରଗଡ ଜିଲ୍ଲା ପାଇକମାଳ ସ୍ଥିତ ନିସର୍ଗ ନିବାସରେ ରହୁଛନ୍ତି ।

ବର୍ଷିୟାନ ସ୍ଵାଧୀନତା ସଂଗ୍ରାମୀ ମୌଳିକ ଗୁରୁତ୍ବ ପୋଖତ ସାମ୍ବାଦିକ, ସର୍ବୋଦୟ କର୍ମୀ ଶ୍ରୀ ଫକୀର ମିଶ୍ର ସଂପ୍ରତି ବାର୍ଦ୍ଧକ୍ୟ ଜନିତ ଅସୁସ୍ଥତାରେ ଶଯ୍ୟାଶାୟୀ ।

ନବରଙ୍ଗପୁର ଅଞ୍ଚଳରେ ବହ୍ନିକନ୍ୟାରୂପେ ଘରେ ଘରେ ପରିଚିତା ସ୍ଵାଧୀନତା ସଂଗ୍ରାମୀ ରବିସିଂ ମାଝିଙ୍କ ପୁତ୍ରବଧୂ ଶ୍ରୀମତୀ ନୟନା ମାଝି ବିଜାପୁର ସେବା କେନ୍ଦ୍ରରେ ରହି ମୂକ, ଦୁର୍ବଳ ଶଙ୍କିତ ଆଦିବାସୀଙ୍କ ପ୍ରାଣରେ ସିଂହ ବିକ୍ରମ ଭରିଦେଉଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ସରକାରୀ ପ୍ରଶାସନର ଦୁର୍ନୀତି ନିବାରଣରେ ତାଙ୍କର ସାହସିକ ଉଦ୍ୟମ ଅନସ୍ଵୀକାର୍ଯ୍ୟ । କବିଗୁରୁଙ୍କ ''ଏକାଲାଚଲ'' ଆହ୍ଵାନକୁ ସତେ ଯେପରି ସେ ବ୍ରତ କରିଛନ୍ତି ।

ଏହି ଉତ୍ସର୍ଗୀକୃତ କର୍ମୀତ୍ରୟଙ୍କୁ ୧୯୯୮ ସର୍ବୋଦୟ ମେଳାରେ ସମ୍ମାନିତ କରାଯାଇଛି ।

ଦୀର୍ଘ ୧୫ ବର୍ଷ ଧରି ସର୍ବୋଦୟ ମେଳାର କାର୍ଯ୍ୟ ବିବରଣୀକୁ ସ୍ଵ-ହସ୍ତଲିପିରେ ଲିପିବଦ୍ଧ କରିଆସିଥିବା ଗାୟତ୍ରୀ ଦେବୀଙ୍କୁ ଶୁଭାଶିଷ, ପୁରୀଜିଲ୍ଲାପାଳଙ୍କ ଅଫିସ କର୍ମଚାରୀ ସହଯୋଗୀ ସର୍ବଶ୍ରୀ ରାମଚନ୍ଦ୍ର ମହାନ୍ତି, ବଂଶୀଧର ପୃଷ୍ଟି, ଓ ଦେବେନ୍ଦ୍ର କୁମାର ଦାସ, ଉପଖଣ୍ଡ ସୂଚନାଧିକାରୀ ଶ୍ରୀ ରକ୍ଷକ କୁମାର ନାୟକଙ୍କୁ ସଦିଚ୍ଛା ଜ୍ଞାପନ କରାଯାଇଛି ।

ସମସ୍ତ ଉପାୟନ ମହିଳା କୁଟୀରର ସଞ୍ଚାଳିକା ଶ୍ରୀମତୀ ବିଜଳୀ ସେନ ପ୍ରଦାନ କରୁଛନ୍ତି ।

# ବିଶେଷ କାର୍ଯ୍ୟକ୍ରମ :

୧ ) ସ୍ୱାଧୀନତା ସଂଗ୍ରାମର ୪୦କ ବାର୍ଷିକୀ ଅବସରରେ ଦିଲ୍ଲୀରେ ଶହୀଦ ଭବନ ନିର୍ମାଣ କଲ୍ପେ ଉପଯୋଗ ପାଇଁ ଶହୀଦାମାନଙ୍କର ବଳିଦାନ ପୀଠରୁ ସରକାରୀ ସ୍ତରୀୟ ମୃତ୍ତିକା ସଂଗ୍ରହ କାର୍ଯ୍ୟକ୍ରମରେ ପୁରୀ ଜିଲାକୁ ବଞ୍ଚିତ କରାଯାଇଥିବାରୁ ଗଭୀର କ୍ଷୋଭ ପ୍ରକାଶ କରାଯାଇଛି ।

୨ ) ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ୰ ସତ୍ୟବାଦୀ ନନ୍ଦ ୧୯୮୯ ବର୍ଷର ସର୍ବୋଦୟ ମେଳାରେ ସନ୍ଥ ବିନୋବାଙ୍କ ଲିଖିତ ''ଗୀତା ପ୍ରବଚନ''ର ନବ ପ୍ରକାଶିତ ଓଡିଆ ସଂସ୍କରଣ ଉନ୍ମୋଚନ କରିଛନ୍ତି ।

୩) ଜାତୀୟ ପର୍ବପର୍ବାଣୀ ପାଳନର ବିବରଣୀକୁ ସମ୍ବାଦପତ୍ରମାନେ ସମୁଚିତ ଧ୍ୟାନ ଦେଉ ନଥିବାରେ ୧୯୯୦ର ସର୍ବୋଦୟ ମେଳାରେ ଗଭୀର କ୍ଷୋଭ ପ୍ରକାଶ କରାଯାଇଛି ।

୪ ) ଉତ୍କଳ ସର୍ବୋଦୟ ମଣ୍ଡଳର ସଂପାଦକ ଶ୍ରୀ ଶିବ ପ୍ରସାଦ ଜେନା ସର୍ବୋଦୟ ମିତ୍ରମାନଙ୍କ ପାଇଁ ଉପସ୍ଥାପନ କରିଥିବା ଏକ ନିଷ୍ପତ୍ର ୧୯୯୦ର ସର୍ବୋଦୟ ମେଳାରେ ସର୍ବସମ୍ମତି କ୍ରମେ ଗୃହୀତ ହୋଇଛି ।

୫ ) ଆଚାର୍ଯ୍ୟ ହରିହର ଛକରେ ଖୋଲାଯାଇଥିବା ମଦ ଦୋକାନକୁ ଉଠାଇ ନେବା ପାଇଁ ଆମ୍ଭେମାନେ ୧୯୯୧ର ସର୍ବୋଦୟ ମେଳାରେ ଦାବି ଉପସ୍ଥାପନ କରିଥିଲୁ । ଆନନ୍ଦର କଥା ଯେ ସେଠାରୁ ମଦ ଦୋକାନଟି ଉଠିଯାଇଛି ।

୬) ପୁରୀର କାନ୍ଥ ବାଡରେ କେହି ଅସହିଷ୍ଣୁ ବ୍ୟକ୍ତି ମହାତ୍ମାଗାନ୍ଧୀଙ୍କ ପ୍ରତି ଅଶାଳୀନ ଭାଷା ପ୍ରୟୋଗ କରି ଲେଖା ଲେଖି କରିବାରେ ଉତ୍ତେଜନା ପ୍ରକାଶ ପାଇଥିଲା । ୰ ଉଦୟ ନାଥ ଆଚାର୍ଯ୍ୟଙ୍କ ପୌରୋହିତ୍ୟରେ ୧୩.୪.୯୧ରେ ଅନୁଷ୍ଠିତ ବୈଠକରେ ଏକ ନିନ୍ଦା ପ୍ରସ୍ତାବ ଗ୍ରହଣ କରି ସାଂପ୍ରଦାୟିକ ସଂପ୍ରୀତି ଓ ଭାଇଚାରା ବଜାୟ ରଖିବାକୁ ନିବେଦନ କରିଛୁ ।

୭) ୧୭.୩.୯୧ରେ ଜନସେବୀ ଶ୍ରୀ ହରିହର ବାହିନୀପତିଙ୍କ ପୌରୋହିତ୍ୟରେ ଏକ ନିଶା ବିରୋଧୀ ସମାବେଶ ଅନୁଷ୍ଠିତ କରାଇ ପୁରୀକୁ ନିଶାମୁକ୍ତ ରଖିବା ପାଇଁ ଜିଲା କର୍ତ୍ତୃପକ୍ଷଙ୍କୁ ଦାବିପତ୍ର ଦେଇଛୁ ।

୮) ବହୁରାଷ୍ଟ୍ରୀୟ କଂପାନୀମାନଙ୍କର ଦେଶରେ ଅବାଧ ପ୍ରବେଶ ଦ୍ୱାରା ଅର୍ଥନୀତିରେ ଦେଖାଦେଇଥିବା ସଂକଟର ମୁକାବିଲା ପାଇଁ ''ବିଦେଶୀ ଋଣଯନ୍ତାରେ ଭାରତ'' ଶୀର୍ଷକ ସର୍ବୋଦୟ ମଣ୍ଡଳଙ୍କ ପ୍ରକାଶିତ ପୁସ୍ତିକା ବହୁ ସଂଖ୍ୟାରେ ପୁରୀରେ ପ୍ରଚାର କରାଯାଇଛି ।

୯) ଗାନ୍ଧୀଘାଟସ୍ଥିତ ନିର୍ମାଣ ନିବାସ ଓ ସର୍କିଟ ହାଉସ୍‌ର ମଇଳାଟାଙ୍କି ଉଠାଇନେବା ପାଇଁ ଆମେ ଦାବି କରିଥିଲୁ । ତାହା ଅକାମୀ କରାଯାଇ ପାରିଛି ।

୧୦) ଗାନ୍ଧୀଘାଟକୁ ଲାଗି ନିର୍ମିତ ନିର୍ମାଣ ନିବାସରେ ରହୁଥିବା ପଦସ୍ଥ ବ୍ୟକ୍ତିମାନେ ମଦ୍ୟପାନ କରୁଥିବାରୁ ସେହି ଗର୍ହିତାଚରଣକୁ ବନ୍ଦ ରଖିବା ଦିଗରେ ଆମେମାନେ ଦୃଢ଼ ଦାବି ଉପସ୍ଥାପନ କରିଛୁଁ ।

୧୧) ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଶ୍ରୀ ରାଜୀବ ଦୀକ୍ଷିତଙ୍କୁ ସ୍ୱାଗତ ଜଣାଇବା ପାଇଁ ୧୨.୯.୯୨ରେ ଉତ୍କଳ ହିନ୍ଦୀ ବିଦ୍ୟାପୀଠରେ ଏକ ମନୋଜ୍ଞ ସମାବେଶ ଅନୁଷ୍ଠିତ ହୋଇଥିଲା । ଶ୍ରୀ ଦୀକ୍ଷିତ ସ୍ୱାଧୀନତା ବଞ୍ଚାଅ ଆନ୍ଦୋଳନ ଉପରେ ବହୁ ତଥ୍ୟ ସମ୍ବଳିତ ଉଦ୍‌ବୋଧନ ଦେଇଥିଲେ ।

୧୨) ପୁରୀ ଗୋପବନ୍ଧୁ ଭବନରେ ୧୦.୧୦.୯୩ ତାରିଖରେ ପୁରୀର ଚିନ୍ତାଶୀଳ ନାଗରିକମାନେ ସମବେତ ହୋଇ GATT ଚୁକ୍ତିଜନିତ

ପ୍ରସଙ୍ଗ ଉପରେ ବିଚାର ବିମର୍ଶ କରିଥିଲେ । ବର୍ଷିୟାନ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଗୋପୀନାଥ ଦାସଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଏହି ସମାବେଶରେ ଭାରତ ସରକାରଙ୍କ ବିତ୍ତ ମନ୍ତ୍ରଣାଳୟର ଅବସରପ୍ରାପ୍ତ ପ୍ରମୁଖ କର୍ମକର୍ତ୍ତା ଶ୍ରୀ ରମାକାନ୍ତ ପଟ୍ଟନାୟକ, ସମାଜସେବୀ ଶ୍ରୀ ହରିହର ବାହିନୀପତି, ରାଜ୍ୟ ସମାଜ ମଙ୍ଗଳ ବୋର୍ଡର ସଦସ୍ୟା ଶ୍ରୀମତୀ ପ୍ରତିମା ମିଶ୍ର, ପୁରୀ ଆଇନ ମହାବିଦ୍ୟାଳୟର ସଂପାଦକ ଶ୍ରୀ ସୁରେଶ ଚନ୍ଦ୍ର ନାୟକ, ବୋଧିପ୍ରିୟ ରାଧାକୃଷ୍ଣ ସାହୁ, ଅଧିବକ୍ତା ବନମାଳୀ ସୂଆର ଶ୍ରୀ ଶରତ ଚନ୍ଦ୍ର ରାଉତରାୟ, ଶ୍ରୀୟା ମହିଳା ସମିତିର ଅଧକ୍ଷା ଶ୍ରୀମତୀ ପ୍ରମିଳା ଆଚାର୍ଯ୍ୟ, ପ୍ରଫେସର ସର୍ବେଶ୍ୱର ଦାଶ ଶିକ୍ଷକ ଶ୍ରୀ ଦିବାକର ତ୍ରିପାଠୀ ଓ ଶ୍ରୀ ସାରଦା ଚରଣ ମହାନ୍ତି ପ୍ରମୁଖ ଆଲୋଚନରେ ଅଂଶ ଗ୍ରହଣ କରି ମୁକ୍ତ ବାଣିଜ୍ୟର ଭୟାବହତା ଉପରେ ଉଦ୍‌ବେଗ ପ୍ରକାଶ କରିଥିଲେ । ସବୁଠାରୁ ବିସ୍ମୟର କଥା ଯେ ମୁକ୍ତ ବାଣିଜ୍ୟ ନୀତି ସପକ୍ଷରେ କୌଣସି ସରକାରୀ ସ୍ପଷ୍ଟୀକରଣ ପ୍ରକାଶ ପାଉ ନଥିବାରୁ ଏଥିପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା ।

୧୩) ଦାବି ହାସଲ ପରିପ୍ରେକ୍ଷୀରେ ବିଭିନ୍ନ ସଂସ୍ଥା ଓ ସଂଘ ସଂଘର୍ଷ ସମିତିମାନ ଗଢୁଛନ୍ତି । ସଂଘର୍ଷ ଶବ୍ଦଟି ହିଂସାସୂଚକ ହେଉଥିବାରୁ ତାହା ବଦଳରେ କ୍ରିୟାନୁଷ୍ଠାନ ଶବ୍ଦଟି ସମୀଚୀନ ବୋଲି ଆମେମାନେ ମତବ୍ୟକ୍ତ କରିଛୁ ।

୧୪) ଗାନ୍ଧୀଘାଟ ଭଳି ଏକ ପବିତ୍ର ପୀଠରେ ସର୍ବ ପ୍ରଥମ ବେଳାଭୂମି ମହୋତ୍ସବକୁ ବିରୋଧ କରି ସର୍ବଶ୍ରୀ ମନମୋହନ ଚୌଧୁରୀ, ପ୍ରଫେସର ସର୍ବେଶ୍ୱର ଦାଶ, ଶିବ ପ୍ରସାଦ ଜେନା ଓ ଅଶ୍ୱିନୀ ଗୌତମ ଗାନ୍ଧୀଘାଟର ପ୍ରବେଶ ପଥରେ ସତ୍ୟାଗ୍ରହ କରି ଗିରଫ ହୋଇଥିଲେ । ଏହାର ପ୍ରତିକ୍ରିୟା ସ୍ୱରୂପ ପରବର୍ତ୍ତୀ ବେଳାଭୂମି ମହୋତ୍ସବ ଆଉ ଗାନ୍ଧୀଘାଟରେ ଅନୁଷ୍ଠିତ ହେଉ ନାହିଁ ।

୧୫) ବିନୋବା ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଏକ ରାଜ୍ୟସ୍ତରୀୟ କାର୍ଯ୍ୟକ୍ରମ ପ୍ରଣୟନ ପାଇଁ ଶ୍ରୀ ନରହରି ସ୍ୱାଇଁଙ୍କ ଆବାହକତ୍ୱରେ ଭୁବନେଶ୍ୱର ଭୀମଟାଙ୍ଗିସ୍ଥିତ ଜନକଲ୍ୟାଣ ସମିତି ଗୃହରେ ୨୦.୧୧.୯୪ ତାରିଖରେ ଅନୁଷ୍ଠିତ ସମାବେଶରେ ସଂପାଦକ ଶ୍ରୀ ନାୟକ ଓ ସଦସ୍ୟ ଶ୍ରୀ ସୁଶୀଲ କୁମାର ସେନ ଯୋଗ ଦେଇଥିଲେ ।

୧୬) ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ପୌରୋହିତ୍ୟରେ ୧୯୯୫ ମସିହାର ସର୍ବୋଦୟ ମେଳାରେ ବିଶ୍ୱବାଣିଜ୍ୟ ସଂସ୍ଥା ଉପରେ ବିଚାର ବିମର୍ଶ କରାନଯାଇ ପାର୍ଲାମେଣ୍ଟର ବିନା ସମ୍ମତିରେ ୧୯୯୫ ଜାନୁୟାରୀରୁ ସେହି ସଂସ୍ଥାର ନିର୍ଦ୍ଧାରଣକୁ ଭାରତ ସରକାର କାର୍ଯ୍ୟକାରୀ କରାଇଥିବାରୁ ଔଷଧ ଓ ବିହନ ବଜାର ଉପରେ ବିଦେଶୀ କଂପାନୀମାନଙ୍କର ଯେଉଁ ଆଖିବୁଜା ଶୋଷଣ ଚାଲିବ ତହିଁରେ ଉଦ୍‌ବେଗ ପ୍ରକଶ କରାଯାଇଥିଲା । ଏହାର ପ୍ରତିକାର କଳ୍ପେ ବିଦେଶୀ ପ୍ରଭୁତ୍ୱକୁ ପ୍ରତିହତ କରାଇ ଗ୍ରାମ ସ୍ୱରାଜ୍ୟ ପ୍ରତିଷ୍ଠା ଲକ୍ଷ୍ୟରେ ଦେଶର ନବ ଯୁବକମାନଙ୍କୁ ମେଳାରେ ଆହ୍ୱାନ କରାଯାଇଥିଲା । ଏ ଦିଗରେ ଆଗ୍ରହୀ ଯୁବକ ଯୁବତୀମାନଙ୍କୁ ତାଲୀମ ଦେବା ପାଇଁ ଅଖିଳ ଭାରତ ସର୍ବସେବା ସଂଘକୁ ଅନୁରୋଧ କରାଯାଇଥିଲା ।

୧୭) ୬.୧୨.୯୫ ତାରିଖରେ ସିଂହଦ୍ୱାର ସ୍ଥିତ ଗୋପବନ୍ଧୁ ପୀଠରେ ଶ୍ରୀ ଲକ୍ଷ୍ମୀକାନ୍ତ ମହାନ୍ତିଙ୍କ ପୌରୋହିତ୍ୟରେ ସଂପ୍ରୀତି ସମାବେଶ ଅନୁଷ୍ଠିତ ହୋଇଥିଲା । ଶ୍ରୀସୁଶୀଳ କୁମାର ସେନ ଓ ଶୁକଦେବ ରାଉତଙ୍କ ନେତୃତ୍ୱରେ ଗାନ୍ଧୀଘାଟରୁ ସଂଗୃହୀତ ମୃତ୍ତିକା ଭଜନ କୀର୍ତ୍ତନ ପରିବେଶରେ ସେଠାକୁ ଅଣାଯାଇଥିଲା । ଶ୍ରୀ ସତ୍ୟନାରାୟଣ ସମିତିର ସଦସ୍ୟ ଶ୍ରୀ କେଳୁଚରଣ ସାହୁ ଓ ବାବାଜୀ ପଟ୍ଟନାୟକଙ୍କ ଆନୁକୂଲ୍ୟରେ ୧୨ ଘଣ୍ଟିଆ ଉପବାସ ପାଳନ କରିଥିବା ଡାଃ ଯୁଧିଷ୍ଠିର ଦୀକ୍ଷିତ, ଅଶୋକ କୁମାର ମିଶ୍ର, ବନମାଳି ସାହୁ,

ରାମଚନ୍ଦ୍ର ପ୍ରଧାନ, ବାମନ ଚନ୍ଦ୍ର ଦାସ, ଗଣେଶ୍ୱର ମହାପାତ୍ର ଓ ଗଙ୍ଗାଧର ମିଶ୍ର ପ୍ରମୁଖଙ୍କ ପାଇଁ ପ୍ରଦାନକର ବ୍ୟବସ୍ଥା ହୋଇଥିଲା । ଜାନୁୟାରୀ ୩୦ ତାରିଖରେ ସଂପାଦକ ଶ୍ରୀ ନାୟକ ଓ ତାଙ୍କ କନ୍ୟା ମୀରା ବାରାଣସୀରେ ଅନୁଷ୍ଠିତ ଗାନ୍ଧୀଶ୍ରାଦ୍ଧ ସଭାରେ ସଂଗୃହୀତ ମୃତ୍ତିକାକୁ ନେଇ ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା ମୃତ୍ତିକା ସହ ଯୋଗ କରିଥିଲେ । ଏହି ମିଶ୍ରିତ ମୃତ୍ତିକାରୁ ଆଂଶିକ ସେମାନେ ପୁରୀକୁ ଆଣି ସଂହତି ଓ ସଂପ୍ରୀତି ଲକ୍ଷ୍ୟରେ ନିଜ ନିଜ ଘରବାଡିରେ ରୋପିତ ବୃକ୍ଷମୂଳରେ ଦେବା ପାଇଁ ଆଗ୍ରହୀ ବନ୍ଧୁମାନଙ୍କୁ ବିତରଣ କରିଥିଲେ ।

୧୮) ୧୯୯୫ର ଗାନ୍ଧୀଜୟନ୍ତୀ ଦିବସରେ ଅନୁଷ୍ଠିତ ସମାବେଶରେ ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ପଣ୍ଡିତ ବୈକୁଣ୍ଠନାଥ ପ୍ରତିହାରୀ ସମବେତ ସମସ୍ତଙ୍କୁ ଗ୍ରାମ ସ୍ୱରାଜ୍ୟ ସଂକଳ୍ପ ପାଠ କରାଇଥିଲେ ।

୧୯) ସ୍ୱାଧୀନତା ଓ ସାଧାରଣତନ୍ତ୍ର ଦିବସରେ ପୁରୀ ସିଂହଦ୍ୱାରରେ ବିଭିନ୍ନ ରାଜନୀତିକ ଦଳମାନେ ପୃଥକ୍ ପୃଥକ୍ ପତାକା ଉତ୍ତୋଳନ କରୁଥିବାରୁ ସଂହତି ଓ ସଦ୍‌ଭାବନାର ପ୍ରତୀକ ସ୍ୱରୂପ ଦଳମତ ନିର୍ବିଶେଷରେ ଗୋଟିଏ ସ୍ଥାନରେ ପତାକା ଉତ୍ତୋଳନ ପାଇଁ ଆମେମାନେ ଯୋଗସୂତ୍ର ରକ୍ଷା କରିଆସିଛୁ । ତାହା କାର୍ଯ୍ୟକାରୀ ହୋଇ ନଥିଲେ ମଧ୍ୟ ଆମେ ନିରାଶ ହୋଇ ନାହୁଁ ।

୨୦) ୧୯୯୬ ମସିହା କ୍ରାନ୍ତି ଦିବସରେ ପ୍ରଫେସର ଶତ୍ରୁଘ୍ନ ନାଥ ଓ ମନ୍ମଥ ନାଥ ଦାସ ପ୍ରମୁଖଙ୍କ ଆବାହକତ୍ୱରେ ଭୁବନେଶ୍ୱରରେ ଅନୁଷ୍ଠିତ ଭ୍ରଷ୍ଟାଚାର ବିରୋଧ ସମ୍ମିଳନୀରେ ଆମେ ପ୍ରତିନିଧିତ୍ୱ କରିଛୁ ।

୨୧) ୧୫.୧୦.୯୬ ତାରିଖରେ ରାଷ୍ଟ୍ରୀୟ ଗ୍ରାମୀଣ ମଜଦୁର ପରିଷଦ ଆନୁକୂଲ୍ୟରେ ପୁରୀରେ ଅନୁଷ୍ଠିତ ଏକ ନାଗରିକ ସଭାରେ ରାଜସ୍ଥାନର ବିଶିଷ୍ଟ ସମାଜ ସେବିନୀ ଶ୍ରୀମତୀ ଅରୁଣା ରାୟ ସମାଜର ବିଭିନ୍ନ ସ୍ତରରେ ଦେଖାଦେଇଥିବା ବିପତ୍ତି ସଂପର୍କରେ ଉଦ୍‌ବୋଧନ ଦେଇଥିଲେ । ଏହି ସଭାରେ ଆମେମାନେ ପ୍ରତିନିଧିତ୍ୱ କରିଥିଲୁ । ଶ୍ରୀ ଗଣେଶ୍ୱର ମହାପାତ୍ର ଆଲୋଚନାର ଅଂଶ ଗ୍ରହଣ କରିଥିଲେ ।

୨୨) ବିଶିଷ୍ଟ ପରିବେଶବିତ୍ ମାଗାସେସେ ପୁରସ୍କାର ପ୍ରାପ୍ତ ଶ୍ରୀ ସୁନ୍ଦରଲାଲ ବହୁଗୁଣା ପୁରୀ ଆସିଥିବା ଅବସରରେ ୨୩.୧୧.୯୬ ତାରିଖରେ ପୁରୀ ଜିଲା ସ୍କୁଲରେ ଏକ ବିଶେଷ ସମାବେଶରେ ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲୁ । ପୁରୀର ସୁନ୍ଦର ବେଳାଭୂମିକୁ ପ୍ରଦୂଷଣ ମୁକ୍ତ କରିବାକୁ ଅହିଂସକ କାର୍ଯ୍ୟାନୁଷ୍ଠାନ ଗ୍ରହଣ ପାଇଁ ସେ ପୁରୀବାସୀଙ୍କୁ ଆହ୍ୱାନ ଜଣାଇଥିଲେ ।

୨୩) ଜଗତ୍‌ସିଂହପୁର ଅଞ୍ଚଳରୁ ଏକ ୩୫ ଜଣିଆ ସାଇକେଲ ଯାତ୍ରୀ ଶ୍ରୀ ନିରାକାର ବେହୁରାଙ୍କୁ ନେତୃତ୍ୱରେ ପ୍ରଜ୍ଞାସାଥୀ ଅଭିଯାନରେ ୧୯୯୭ ବର୍ଷର ସର୍ବୋଦୟ ମେଳାକୁ ଆସିଥିଲେ । ସେମାନଙ୍କୁ ଆମେ ସ୍ୱାଗତ ଜଣାଇଥିଲୁ ।

୨୪) ୧୯୯୭ ଅପ୍ରେଲ ୭ ଓ ୮ ତାରିଖରେ ବରଗଡ ଜିଲା ପାଇକମାଳଠାରେ ରାଜ୍ୟସ୍ତରୀୟ ସର୍ବୋଦୟ ସମ୍ମିଳନୀ ଓ ମହାରାଷ୍ଟ୍ରର ଭୂଷାଭାଲ ଅଦୂରବର୍ତ୍ତୀ ସାକେଗାଁଓ ଠାରେ ୧୯୯୭ ମଇ ୧୫,୧୬ ଓ ୧୭ ତାରିଖରେ ଅନୁଷ୍ଠିତ ଅଖିଳ ଭାରତ ସର୍ବୋଦୟ ସମାଜ ସମ୍ମିଳନୀରେ ଆମେମାନେ ପ୍ରତିନିଧିତ୍ୱ କରିଥିଲୁ । ଭାରତର ବିଭିନ୍ନ ସ୍ଥାନରୁ ବହୁ ଉତ୍ସର୍ଗୀକୃତ କର୍ମୀ ସର୍ବଶ୍ରୀ ନାରାୟଣ ଦେଶାଇ, ପ୍ରଫେସର ଠାକୁର ଦାସ ବଙ୍ଗ,ଶ୍ରୀ ରାଧାକୃଷ୍ଣ ବାଜାଜ, ରାଜୀବ ଦୀକ୍ଷିତ, ଶ୍ରମତୀ ଉଷା ବେନ୍, ମଧୁକର ରାଓ ଚୌଧୁରୀ, ସବାଇସିଂ, ଶ୍ରୀ ସିଦ୍ଧରାଜ ଧଡ୍ଢା, ଶ୍ରୀ ବ୍ରହ୍ମଦେବ ଶର୍ମା ଓ ସଭାପତି ଡକ୍ଟର ଦ୍ୱାରକା ନାଥ ଯୋଶୀ ପ୍ରମୁଖଙ୍କ ଗ୍ରାମ ସ୍ୱରାଜ୍ୟ ଆଧାରିତ ବର୍ଣ୍ଣିତ

ଅନୁଭୂତି ଓ ଉଦ୍‌ବୋଧନ ବିଶେଷ ଶିକ୍ଷଣୀୟ ଓ ପ୍ରେରଣା ଦାୟକ ହୋଇଥିଲା ।

୨୫) ବର୍ଷୀୟସୀ ସ୍ୱାଧୀନତା ସଂଗ୍ରାମୀ ସର୍ବୋଦୟ ନେତ୍ରୀ ୰ ମାଳତୀ ଦେବୀଙ୍କ ଚିତାଭସ୍ମ ତାଙ୍କ ଏକାଦଶାହରେ ରାମଧୂନ ସଂକୀର୍ତ୍ତନ ଯାତ୍ରାରେ ପୁରୀର ବହୁ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଗହଣରେ ନେଇ ବିଶିଷ୍ଟ ସର୍ବୋଦୟବାଦୀ ଆଚାର୍ଯ୍ୟ ଶ୍ରୀ ଗଙ୍ଗାଧର ମିଶ୍ର ୨୫.୩.୯୮ ତାରିଖରେ ମହୋଦଧିରେ ବିସର୍ଜନ କରିଛନ୍ତି ।

୨୬) ୧୯୯୫ ମଇ ୨୫ ତାରିଖରେ ପୁରୀ ବଗଲା ଧର୍ମଶାଳାରେ ଅନୁଷ୍ଠିତ ଉତ୍କଳ ସର୍ବୋଦୟ ମଣ୍ଡଳ ଆନୁକୂଲ୍ୟରେ ଅନୁଷ୍ଠିତ ଗ୍ରାମ ସ୍ୱରାଜ୍ୟ ସମ୍ମେଳନ ଓ ଅକ୍ଟୋବର ୧୩ ତାରିଖରୁ ୩ ଦିନ ବ୍ୟାପି ରାଉରକେଲା ଗାନ୍ଧୀଶାନ୍ତି ପ୍ରତିଷ୍ଠାନ ଆନୁକୂଲ୍ୟରେ ଅନୁଷ୍ଠିତ ଶାନ୍ତି ସେବା ଶିବିରରେ ଆମେ ସହଯୋଗିତା ପ୍ରଦାନ କରିଛୁ ।

୨୭) ଗତ ୧୯୯୮ ଫେବୃୟାରୀ ୧୨ ତାରିଖରେ ସର୍ବୋଦୟ ମେଳାର ଅର୍ଦ୍ଧଶତାବ୍ଦୀ ପୂର୍ତ୍ତି ସମାରୋହ ଅଖିଳଭାରତ ସର୍ବସେବା ସଂଘର ଅଧକ୍ଷ ଶ୍ରୀ ନାରାୟଣ ଦେଶାଇଙ୍କ ମୁଖ୍ୟ ଅତିଥିତ୍ୱରେ ସୁସଂପନ୍ନ ହୋଇଛି । ଏହି ଉପଲକ୍ଷେ ପୁରୀ ପୌରପାଳ ଶ୍ରୀ ସୁରେନ୍ଦ୍ର ଦାସଙ୍କ ଆନୁକୂଲ୍ୟରେ ଗାନ୍ଧୀଘାଟରେ ମଞ୍ଚ ପ୍ରସ୍ତୁତି ଓ ଆନୁଷଙ୍ଗିକ ସୁବିଧା ସୁଯୋଗ ପ୍ରଦାନ ଦ୍ୱାରା ଅତିଥିବର୍ଗଙ୍କୁ ସ୍ୱାଗତ କରାଇବାରେ ପୁରୀ ପୌରସଂସ୍ଥା ଆଦୌ କାର୍ପଣ୍ୟ କରିନାହାନ୍ତି ।

୨୮) କେନ୍ଦ୍ର ସରକାର ୧୯୯୭ ନଭେମ୍ବର ୨୭ ତାରିଖରେ ଦେଶୀଲୁଣ ଉପରେ କଟକଣା ଜାରୀ କରି ଆଇଓଡ଼ିନ ମିଶ୍ରିତ ଲୁଣକୁ ବାଧ୍ୟତା ମୂଳକ କରିଥିବାରୁ ପ୍ରୋକ୍ତ ଅବାଞ୍ଛିତ କଟକଣା ଉଠାଇ ନେବାପାଇଁ ଜିଲ୍ଲାପାଳଙ୍କ ମଧ୍ୟବର୍ତ୍ତିତାରେ କେନ୍ଦ୍ର ସରକାରଙ୍କୁ ୧୯.୬.୯୮ରେ ଦାବି ପତ୍ର ଦେଇଛୁ ।

୨୯) ସୁନ୍ଦରଗଡ ଜିଲ୍ଲା ଉସମାଥାନା କୁଳଟା ଗ୍ରାମାପଞ୍ଚାୟତ ସଦସ୍ୟା ମଦ୍ୟ ବର୍ଜନ ଆନ୍ଦୋଳନର ନେତ୍ରୀ ଉର୍ମିଳା କୁଅଁର ମଦ୍ୟ ବ୍ୟବସାୟୀଙ୍କ ଦ୍ୱାରା ନିହତ ହୋଇଥିବାରୁ ବର୍ବରୋଚିତ ହତ୍ୟାକାଣ୍ଡର ତୀବ୍ର ନିନ୍ଦା କରିଛୁ ।

୩୦) ମନ୍ତ୍ରୀ, ବିଧାୟକ ଓ ସାଂସଦମାନଙ୍କ ପେନ୍‌ସନ ସେମାନେ ୬୦ ବର୍ଷ ବୟସରେ ଉପନୀତ ହେବାପରେ ଲାଗୁ କରାଯିବା ନେଇ ରାଜ୍ୟ ଉଚ୍ଚନ୍ୟାୟାଳୟରେ ଏକ ଜନସ୍ୱାର୍ଥ ମାମଲା ରୁଜୁ କରିଛୁ ।

୩୧) ୧୯୯୮ ନଭେମ୍ବର ୯ ଓ ୧୦ ତାରିଖରେ କାନପୁରଠାରେ ଅନୁଷ୍ଠିତ ଅଖିଳଭାରତ ସର୍ବସେବା ସଂଘ ଅଧିବେଶନରେ ସର୍ବଶ୍ରୀ ସୁଶୀଲ କୁମାର ସେନ ଓ ଚନ୍ଦ୍ରଶେଖର ନାୟକ ପ୍ରତିନିଧିତ୍ୱ କରିଛନ୍ତି ।

## ମେଳାର ପୁରୋଧା :

୧୯୮୫ ମସିହାଠାରୁ ୧୯୯୮ ଯାଏଁ ଯଥାକ୍ରମେ ସର୍ବଶ୍ରୀ ଯଦୁମଣି ଦାଶ, ଶକ୍ତି ଶେଖର ଦାସ, ୰ ପଦ୍ମ ଚରଣ ମାସନ୍ତସିଂହାର, ରବୀନ୍ଦ୍ର ମୋହନ ଦାସ, ମନମୋହନ ଚୌଧୁରୀ, (ଦୁଇଥର) ଅମର ନାଥ ଚଟ୍ଟୋପାଧ୍ୟାୟ, ବିଶ୍ୱନାଥ ପଟ୍ଟନାୟକ, (ଆସ୍କା) ଅଲେଖ ପାତ୍ର, ଗଙ୍ଗାଧର ମିଶ୍ର (ଜଟଣୀ), ରାଜକିଶୋର ନାୟକ,(ଖଦୀ ବୋର୍ଡର ସଭାପତି), ପ୍ରଫେସର ଶତ୍ରୁଘ୍ନ ନାଥ, ଶିକ୍ଷାବିତ୍ ଇନ୍ଦୁଭୂଷଣ ମିଶ୍ର, ଅଧ୍ୟାପକ ୰ କ୍ଷେତ୍ର ମୋହନ ଶତପଥୀ ମେଳାରେ ପୌରୋହିତ୍ୟ, କରିଛନ୍ତି । ସେମାନଙ୍କ ଉନ୍ନତ ସର୍ବୋଦୟ ବିଚାର ଧାରା ମେଳାର ମହତ୍ୱକୁ ବର୍ଦ୍ଧନ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

## ପରିଚାଳନା କମିଟି :

ମେଳାର ସୁଶୃଙ୍ଖଳ ବ୍ୟବସ୍ଥାପନ ପାଇଁ ପ୍ରତିବର୍ଷ ଏକ ପରିଚାଳନା କମିଟି ମେଳାରେ ଗଠିତ ହୋଇଥାଏ । ଏଥିରେ ଯେଉଁମାନେ ଅଧ୍ୟକ୍ଷତା କରି ଆସିଛନ୍ତି ସେମାନେ ହେଲେ ✓ ପଦ୍ମଚରଣ ସାମନ୍ତସିଂହାର (୧୯୮୩-୯୧), ଶ୍ରୀମତୀ ଗୌରାମଣି ଦେବୀ (୧୯୯୨), ଡାଃ ଯୁଧିଷ୍ଠିର ଦୀକ୍ଷିତ (୧୯୯୩-୯୫), ଅବସର ପ୍ରାପ୍ତ ଶିକ୍ଷାମଣ୍ଡଳ ପରିଦର୍ଶକ ଶ୍ରୀ ଗଣେଶ୍ୱର ମହାପାତ୍ର (୧୯୯୬-୯୮)। ଶ୍ରୀ ଚନ୍ଦ୍ରଶେଖର ନାୟକ ୧୯୮୩ ମସିହାଠାରୁ ସଂପାଦକ ପଦରେ ରହିଆସିଛନ୍ତି ।

**ସାନିଧ** - ଇତି ମଧ୍ୟରେ ଯେଉଁ ସଜ୍ଜନବର୍ଗ ମେଳାକୁ ଆସି ସେମାନଙ୍କ ମୂଲ୍ୟବାନ ବିଚାର ଉପସ୍ଥାପନ କରିଛନ୍ତି ସେମାନଙ୍କ ମଧ୍ୟରେ ଅଛନ୍ତି ✓ ଗୋପବନ୍ଧୁ ଚୌଧୁରୀ, ✓ ନବକୃଷ୍ଣ ଚୌଧୁରୀ, ✓ ଆଚାର୍ଯ୍ୟ ହରିହର, ✓ ପଣ୍ଡିତ କୃପାସିନ୍ଧୁ ହୋତା, ✓ ଲୋକନାଥ ମିଶ୍ର (ପଙ୍କ ବାବୁ), ✓ ବିଶ୍ୱନାଥ ପରିଡା, ✓ ମା' ରମାଦେବୀ, ଅନ୍ନପୂର୍ଣ୍ଣା ମହାରାଣା, ମନମୋହନ ଚୌଧୁରୀ, ବିଶ୍ୱନାଥ ପଟ୍ଟନାୟକ, ଅଲେଖ ପାତ୍ର (ପାଇକମାଳ), ✓ ମୁକୁନ୍ଦ ମିଶ୍ର, ✓ କାର୍ତ୍ତିକ ଚନ୍ଦ୍ର ନାଥଶର୍ମା (ଚଉଦକୁଲାଟ), ଫକୀର ମିଶ୍ର, ଡାଃ ତୁଙ୍ଗବିଦ୍ୟା ଦେବୀ, ରତନ ଦାସ, ଶାନ୍ତି ଦେବୀ, ଅଧ୍ୟାପକ ସର୍ବେଶ୍ୱର ଦାଶ, ଗୋଲୋକ ଚନ୍ଦ୍ର ଦାସ, ଗୋଲକ ଚନ୍ଦ୍ର ପାତ୍ର, ଭଗବାନ ନାଥ, ✓ ବ୍ରଜ ମୋହନ ସିଂ (ଚାଟୁ ବାବୁ), ଶ୍ରୀ ଶରତ ଚନ୍ଦ୍ର ମହାରଣା, ✓ ବୃନ୍ଦାବନ ଚନ୍ଦ୍ର ଜେନା (ଜୟପୁର), ବୃନ୍ଦାବନ ତ୍ରିପାଠୀ (ବଡଚଣା), ଅମର ନାଥ ଦେ (କାନାଡା), ✓ କ୍ଷେତ୍ରବାସୀ ପତି, (ସର୍ବୋଦୟ ମଣ୍ଡଳ, କଟକ), ଅଧ୍ୟାପକ କର୍ମଦେବ ମହାରଣା, ଶକୁନ୍ତଳା ଦାସ (ଭୁବନେଶ୍ୱର), ଶିବ ପ୍ରସାଦ ଜେନା, ✓ ସତ୍ୟବାଦୀ ନନ୍ଦ, କୁନ୍ତଳା ବିଶ୍ୱାଳ, ପାର୍ବତୀ ସ୍ୱାଇଁ (ବେରବୋଇ), ଦେବେନ୍ଦ୍ର କୁମାର ଦାସ, ରବୀନ୍ଦ୍ର ମୋହନ ଦାସ (ବାଲେଶ୍ୱର), ବୋଧପ୍ରିୟ ରାଧାକୃଷ୍ଣ ସାହୁ, ଗୋପାଳ ପ୍ରସାଦ ଦାସ, ପ୍ରହ୍ଲାଦ କୁମାର ସିଂ (ଗାନ୍ଧୀ ସ୍ମାରକ ନିଧି), ✓ ଫକୀର ସାହୁ (ଚନ୍ଦନପୁର) ଡ଼ାଃ ସରସ୍ୱତୀ ସ୍ୱାଇଁ, ତ୍ରିଲୋଚନ ମହାପାତ୍ର (କୁଦିଆରୀ), ନାରାୟଣ ଦାସ (ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ) ✓ ହରମୋହନ ପଟ୍ଟନାୟକ (ଢେଙ୍କାନାଳ), ଗୋପାଳକୃଷ୍ଣ ପାଠୀ, (ଦିଗପହଣ୍ଡି), ରବି ଦାଶ (ଚାରପୁର, କଟକ), ପ୍ରହ୍ଲାଦ ଭୋଇ (ନିମାପଡା) ରବି ପଟ୍ଟନାୟକ (କେଉଁଝର), ବ୍ରଜସୁନ୍ଦର ଦାସ (ଅନୁଗୁଳ), ବଭ୍ରୁବାହନ ପରିଡା (ନାବଡା), ଗୌର କୃଷ୍ଣ ଦାସ (ତେନ୍ତୁଳିଆପଡା) ଗୌରଶ୍ୟାମ ସାମନ୍ତରାୟ, ଗୋବିନ୍ଦ ତ୍ରିପାଠୀ, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଚନ୍ଦ୍ର ଶେଖର ମହାପାତ୍ର (ସାମ୍ବାଦିକ), ବିଶ୍ୱମ୍ଭର ପରିଡା, ବ୍ରଜ କିଶୋର ତ୍ରିପାଠୀ (ସାଂସଦ) ସୁରେନ୍ଦ୍ର କୁମାର ବେହେରା (ପ୍ରଗତିଶୀଳ ପାଠଚକ୍ର) ପୁରୀ, ଗଙ୍ଗାଧର ମହାପାତ୍ର, ✓ ଜନାର୍ଦ୍ଦନ ପଟ୍ଟନାୟକ, ଓ ଇନ୍ଦିରା ଚଟ୍ଟୋପାଧ୍ୟାୟ ପ୍ରମୁଖ ।

**ଶୋକାଞ୍ଜଳି** : କାଳଚକ୍ରର ଆବର୍ତ୍ତନରେ ଆମମାନଙ୍କର ବହୁ ସମଧର୍ମୀ ଓ ଶୁଭେଚ୍ଛୁ ପରଲୋକ ଗମନ କରିଛନ୍ତି । ୧୯୮୩ରୁ ୯୮ ବର୍ଷ ମଧ୍ୟରେ ଯେଉଁମାନଙ୍କର ଦେହାନ୍ତ ହୋଇଛି ସେମାନେ ହେଲେ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ କୋରାପୁଟର ସ୍ୱାଧୀନତା ସଂଗ୍ରାମୀ ରାଧାକୃଷ୍ଣ ବିଶ୍ୱାସ ରାୟ, ସୁନାମଣି ଦେବୀ, ମାନବବାଦୀ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ , ଗୋପ ଅଞ୍ଚଳର ସଂଗ୍ରାମୀ ନାରାୟଣ ଦାସ ଓ ବ୍ରଜବନ୍ଧୁ ମିଶ୍ର, ସର୍ବୋଦୟ ନେତ୍ରୀ ମା'ରମା ଦେବୀ, ବ୍ରଜ ମୋହନ ସିଂ (ଚାଟୁବାବୁ), ବୋଲଗଡ଼ର ଗୋଲାମ ମୁସ୍ତାଫା ଖାଁ, ଭାସ୍କର ପରିଡ଼ା, ପିପିଲିର ଜୟକୃଷ୍ଣ ସ୍ୱାଇଁ, ଗୋପର ପ୍ୟାରୀମୋହନ ସ୍ୱାଇଁ (ଏରବଙ୍ଗ) ଶଶୀଭୂଷଣ ମିଶ୍ର (ସତ୍ୟବାଦୀ), ପୂର୍ବତନ ବାଚସ୍ପତି ନନ୍ଦ କିଶୋର ଦାସ,

ଡ଼ଃ ହରେକୃଷ୍ଣ ମହତାବ, ମଧୁସାଗର ବିଦ୍ୟାପୀଠର ପ୍ରାଣ ପ୍ରତିଷ୍ଠାତାଚିନ୍ତାମଣି ସ୍ୱାଇଁ, ରାମଚନ୍ଦ୍ର ଜେନା, ବିଶିଷ୍ଟ ଗାନ୍ଧୀବାଦୀ ଆର୍. ଆର୍. ଦିବାକର, ବିଶିଷ୍ଟ କଂଗ୍ରେସ ନେତା ଓ ସ୍ୱାଧୀନତା ସଂଗ୍ରାମୀ ଲୋକନାଥ ମିଶ୍ର (ପଙ୍କ ବାବୁ), ଭଗୀରଥ ଦାସ, ଆର୍ତ୍ତବନ୍ଧୁ ମହାନ୍ତି, ଗୋପୀନାଥ ଦାସ (ଭଦ୍ରକ) , ଉଦୟ ନାଥ ଜେନା (ପାରିକୁଦ), ଲକ୍ଷ୍ମଣ ମହାରାଣା (ଓଡ଼ଗାଁ) ସତ୍ୟବାଦୀ ନନ୍ଦ, ରାଧାଶ୍ୟାମ ମହାରାଜ (ଯାଆଁଳା), ଯୁଧିଷ୍ଠିର ବାରିକ ଓ ଚନ୍ଦ୍ରଶେଖର ମହାନ୍ତି (ପୁରୀ), କସ୍ତୁରୀ ଚରଣ ନାୟକ (ବେରବୋଇ), ଯୁଗଳ କିଶୋର ପାଣିଗ୍ରାହୀ (ପାରଳାଖେମୁଣ୍ଡି) , ରାଜକୃଷ୍ଣ ବୋଷ, ଜଗନ୍ନାଥ ମିଶ୍ର (ପୁରୀ) ଡ଼ାଃ କୁଳମଣି ମହାପାତ୍ର, କାର୍ତ୍ତିକ ଚନ୍ଦ୍ର ନାଥ ଶର୍ମା (ଚଉକୁଲାଟ), ମଧୁସୂଦନ ନନ୍ଦ, ସଦାଶିବ ମିଶ୍ର ଓ ପଦ୍ମଚରଣ ସାମନ୍ତସିଂହାର (ପୁରୀ), ନିଶାମୁକ୍ତି ଆନ୍ଦୋଳନରେ ମଦ୍ୟପର ଶିକାର ହୋଇଥିବା କୋରାପୁଟର ତାଡ଼ିଙ୍ଗି ପୁରୁଟା, ପୂରଣଲାଲ ଅଗ୍ରୱାଲା, କ୍ରୀଡ଼ା ଉପିନିର୍ଦ୍ଦେଶକ ଦାଶରଥି ପ୍ରଧାନ, ହରିହର ମିଶ୍ର (ଗୋରୁଆଳ, ପୁରୀ), ରବି ପଟ୍ଟନାୟକ, ଶ୍ରୀନାଥ ପ୍ରଧାନ (କରମଳା), ହରେକୃଷ୍ଣ ବିଶ୍ୱାଳ, ଉତ୍ସାବତୀ ପାତ୍ର, ଏକକ ନିଶାନିବାରଣ କର୍ମୀ ବେଙ୍କ ତିଆଡ଼ି (ପୁରୀ), ସ୍ୱାଧୀନତା ସଂଗ୍ରାମୀ ନରସିଂହ ତ୍ରିପାଠୀ, ରାଧାଶ୍ୟାମ ଦାସ, ରଘୁନାଥ ବାରିକ, ବିଦଗ୍ଧ ଜନନାୟକ ବିଜୁ ପଟ୍ଟନାୟକ, ରାଉରକେଲାର ବିଶିଷ୍ଟ ସମାଜସେବୀ ଜଗବନ୍ଧୁ ହେମ୍ବ୍ରମ୍, ଖଦୀ କର୍ମୀ ଜନାର୍ଦ୍ଦନ ପଟ୍ଟନାୟକ (ବୋଲଗଡ଼), ଦାମୋଦର ନାୟକ (ସତ୍ୟବାଦୀ) ରାମଚନ୍ଦ୍ର ଗୋଛିକାର (ପୁରୀ), ପ୍ରଶାନ୍ତ ମହାନ୍ତି, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସୁଧୀର ଘୋଷ, ବଂଶୀଧର ଗରାବଡୁ (ଭୁବନେଶ୍ୱର) ପାର୍ବତୀ ଗିରି ଓ ମଦନ ମୋହନ ସାହୁ (ପାଇକମାଳ), ପ୍ରଭାବତୀ ଦେବୀ, ଡକ୍ଟର ରାଧାନାଥ ରଥ, ପଣ୍ଡିତ ରଘୁନାଥ ମିଶ୍ର, ରାମକୃଷ୍ଣ ମିଶ୍ର, ଯୌର ଶଙ୍କର ପଟ୍ଟନାୟକ, ରାଧାଚରଣ ଦାସ, ପ୍ରଫେସର କ୍ଷେତ୍ରମୋହନ ଶତପଥୀ, ବୃନ୍ଦାବନ ଚନ୍ଦ୍ର ଜେନା, ମନୋରମା ମହାନ୍ତି, ଉଦୟନାଥ ଷଡଙ୍ଗୀ । ସେ ସମସ୍ତଙ୍କ ପାଇଁ ତଥା ମହାରାଷ୍ଟ୍ରର ଭୟାବହ ଭୂମିକମ୍ପରେ ଓ ବାରିପଦା ନିଗମାନନ୍ଦ ଭକ୍ତ ସମ୍ମିଳନୀରେ ଭୟାବହ ଅଗ୍ନିଦୁର୍ଘଟଣା ଯୋଗୁଁ ପ୍ରାଣ ହରାଇଥିବା ବ୍ୟକ୍ତିମାନଙ୍କ ପାଇଁ ଆମେମାନେ ଶୋକାଞ୍ଜଳି ନିବେଦନ କରିଅଛୁଁ ।

**ପୁସ୍ତକ ପ୍ରକାଶ :** ୧୯୯୫ ବର୍ଷର ସର୍ବୋଦୟ ମେଳାରେ 'ସର୍ବୋଦୟ ଉପାସନା' ନାମକ ଏକ ପୁସ୍ତିକା ମେଳା ଆନୁକୂଲ୍ୟରେ ପ୍ରକାଶିତ ହୋଇଛି । ବୋଧିପ୍ରିୟ ରାଧାକୃଷ୍ଣ ସାହୁ ଏହାର ଶୁଭ ଉନ୍ମୋଚନ କରିଛନ୍ତି । ବିଭିନ୍ନ ଧର୍ମ ଗ୍ରନ୍ଥର ସାରତତ୍ତ୍ୱ, ଧର୍ମଗୁରୁମାନଙ୍କ ବାଣୀ, ସର୍ବଧର୍ମ ପ୍ରାର୍ଥନା, ଆହାର ମନ୍ତ୍ର ଓ ଭଜନ ଆଦିର ସୁସମାବେଶରେ ଏହି ସଂକଳନଟି ବହୁତ ଆଦୃତ ହୋଇଛି । ଏଥିରେ ଉତ୍ସାହିତ ହୋଇ ଆମେମାନେ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଛୁ । କୋରାପୁଟର ବିଶିଷ୍ଟ ସର୍ବୋଦୟ କାର୍ମୀ ସ୍ୱାଧୀନତା ସଂଗ୍ରାମୀ ଜନାବ ମହମ୍ମଦବାଜି ୧୯୯୭ ବର୍ଷର ସର୍ବୋଦୟ ମେଳାରେ ଏହାର ଶୁଭ ଉନ୍ମୋଚନ କରିଛନ୍ତି ।

**ବିବରଣୀ ସଂକଳନ :** ସର୍ବୋଦୟ ମେଳାର ସମସ୍ତ ଧାରାବାହିକ କାର୍ଯ୍ୟ - ବିବରଣୀ ୧୯୮୩ ମସିହାରୁ ଲିପିବଦ୍ଧ ରହିଛି । ଏଥିରେ ଯେଉଁମାନେ ସ୍ୱୟଂସେବା ଦାନ କରିଛନ୍ତି ସେମାନେ ହେଲେ ବେ ଗ୍ମା, ମୀରା ଓ ଗାୟତ୍ରୀ । ସର୍ବୋଦୟ ମେଳା ସେମ ଙ୍କର ଦୀର୍ଘ ନିରାମୟ ଜୀବନ ଓ ଉତ୍ତରୋତ୍ତର ଉନ୍ନତି କ ମନା କରୁଛି ।

**ଗାନ୍ଧୀଘାଟ :** ମହାତ୍ମାଗାନ୍ଧୀଙ୍କ ଚିତାଭସ୍ମ ବିସର୍ଜନ ସ୍ମୃତିରେ ଓ ଖାତା ନଂ ୮୯ ଓ ପ୍ଲଟ ୨୯୬ରେ ନ ବର୍ଣ୍ଣ ଭୁକ୍ତ ଏ୩-୪୦୦ ଡେ ଜମି ସରକାର ଦାନ କ ଓ ତାହା ''ଗାନ୍ଧୀସ୍ମୃତି ମନ୍ଦିର'' ନାମରେ ସ ରୀ

ରେକର୍ଡରେ ଦରଜ ଅଛି । ଏହି ପ୍ରାଚୀରାବୃତ୍ତ ପୀଠଟି ଗାନ୍ଧୀଘାଟ ନାମରେ ବିଦିତ । ରାଜ୍ୟପାଳ ଡଃ. କାଟ୍‌ଜୁ ଓ ତତ୍‌କାଳୀନ ପୌରପାଳ ଶ୍ରୀଗଙ୍ଗାଧର ମହାପାତ୍ରଙ୍କୁ ନେଇ ୧୯୪୮ରେ ପୀଠର ଉନ୍ନୟନ ପାଇଁ ଏକ କମିଟି ଗଠିତ ହୋଇଥିଲା । ସେଠାରେ ଉପାସନା ମନ୍ଦିର ଓ ପାଠାଗାର ପାଇଁ ପ୍ରସ୍ତାବ ଥିଲା । ପରବର୍ତ୍ତୀ ସମୟରେ ରାଜ୍ୟପାଳ କୁମାର ସ୍ୱାମୀ ରାଜାଙ୍କ ଉଦ୍ୟମରେ ମାନ୍ଦ୍ରାଜରେ ବ୍ରୋଞ୍ଜନିର୍ମିତ ଏକ କ୍ଷୁଦ୍ରାବୟବ ଗାନ୍ଧୀ ମୂର୍ତ୍ତି ପୀଠରେ ପ୍ରତିଷ୍ଠିତ ହେଲା ।୨୬.୪.୯୦ରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ୨ ଲକ୍ଷ ୭୪ ହଜାର ଟଙ୍କା ସରକାରୀ ବ୍ୟୟରେ ଶିଳ୍ପୀ ଶ୍ରୀ ବିପ୍ର ଚରଣ ମହାନ୍ତିଙ୍କ ଦ୍ୱାରା ନିର୍ମିତ ୧୨ ଫୁଟ ଉଚ୍ଚତା ବିଶିଷ୍ଟ ମହାତ୍ମାଗାନ୍ଧୀଙ୍କ ଐତିହାସିକ ଲବଣ ସତ୍ୟାଗ୍ରହ ଦାଣ୍ଡି ଯାତ୍ରା ମୁଦ୍ରାର ଏକ ପୂର୍ଣ୍ଣାବୟବ ବ୍ରୋଞ୍ଜ୍ ମୂର୍ତ୍ତି ପୀଠରେ ସ୍ଥାପନ କଲେ । ପୂର୍ବ ପ୍ରତିଷ୍ଠିତ କ୍ଷୁଦ୍ର ମୂର୍ତ୍ତିଟି ପୁରୀ ପୌରପାଳିକା ଦପ୍ତର ପରିସର ମଧ୍ୟରେ ସୁରକ୍ଷିତ ରହିଲା ।

ପଣ୍ଡିତ ଜବାହରଲାଲ ଓ ଆଚାର୍ଯ୍ୟ ହରିହରଙ୍କ ଚିତାଭସ୍ମ ମଧ୍ୟ ଏହି ଠାରେ ମହୋଦଧିରେ ବିସର୍ଜିତ ହୋଇଛି ।

ଅତୀତରେ ଏହି ପୀଠରେ ବହୁତ ଝାଉଁ ଗଛ ଥିଲା । ଗାନ୍ଧୀ ପ୍ରତିମୂର୍ତ୍ତି ପାଖକୁ ଯିବା ପାଇଁ ସୁଦୃଶ୍ୟ ପଥ ଥିଲା । ପୀଠର ବହୁଭାଗ ତୃଣାଚ୍ଛାଦିତ ହୋଇଥିଲା । ମାତ୍ର ତତ୍ତ୍ୱାବଧାନ ଅଭାବରୁ ଏହାଏକ ମୁକ୍ତ କ୍ରୀଡାପ୍ରାନ୍ତର, ଆବର୍ଜନା ସ୍ଥଳୀ ଓ ଯଦୃଚ୍ଛାଚରଣ ପୀଠରେ ପର୍ଯ୍ୟବେଶିତ ହୋଇଛି । ଏହି ଜାତୀୟ ପୀଠଟିର ଉନ୍ନତି ବିଧାନ ଓ ସୁରକ୍ଷା ପାଇଁ ପୁରୀ ପ୍ରଶାସନ, ପୌରସଂସ୍ଥା, ନଗର ଉନ୍ନୟନ ମନ୍ତ୍ରୀ ଓ ସର୍ବୋପରି ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆମେମାନେ ବହୁବାର ଆକର୍ଷଣ କରିଆସିଛୁ । ଅଥଚ ସବୁ ବ୍ୟର୍ଥ ହୋଇଛି । ପ୍ରତ୍ୟକ୍ଷ କ୍ରିୟାନୁଷ୍ଠାନ ପାଇଁ ଆମେମାନେ ସଚେତନ ନାଗରିକମାନଙ୍କ ଦୃଷ୍ଟି ଆକର୍ଷଣ କରୁଅଛୁଁ ।

**ଆର୍ଥିକ ସ୍ଥିତି :** ୧୯୮୩ ମସିହାରେ ମାତ୍ର ଟ୩୬୨-୪୦ ସମ୍ବଳଥିବା ସତ୍ତ୍ୱେ ଏବେ ତାହା ଟ୮୪୮୩-୦୦ରେ ପହଞ୍ଚିଛି । ୧୯୮୩ରୁ ୧୯୯୮ ଶେଷ ସୁଦ୍ଧା ସର୍ବମୋଟ ଜମା ଟ ୫୫,୩୫୨-୩୨ ରୁ ବ୍ୟୟ ଟ ୫୧,୬୫୫-୫୦ ଯାଇ ଅବଶିଷ୍ଟ ଟ ୩୬୯୬-୮୨ ପଇସା ମେଳାପାଣ୍ଠିରେ ଗଚ୍ଛିତ ଅଛି । ମେଳାର ସଞ୍ଚିତ ହିସାବ ପୁରୀ, ଅର୍ବାନ କୋ ଅପରେଟିଭ ବ୍ୟାଙ୍କ୍‌ରେ ରହିଛି । ପ୍ରତିବର୍ଷ ସୁବିସ୍ତୃତ ସମୀକ୍ଷିତ ହିସାବ ମେଳା ପରିଚାଳନା କମିଟିରେ ମଞ୍ଜୁର ହୋଇ ମେଳାରେ ଉପସ୍ଥାପନ ପୂର୍ବକ କାୟମ କରାଯାଉଛି ।

ଜାତୀୟ ପର୍ବ ପାଳନ ଉପଲକ୍ଷେ ଅନୁଷ୍ଠିତ ବିଭିନ୍ନ ପ୍ରତିଯୋଗିତାରେ ପୁରସ୍କାର, ସମାଜସେବୀମାନଙ୍କୁ ଉପାୟନ ପ୍ରଦାନ, ସାହସିକତା ଓ ସଦିଚ୍ଛା ପୁରସ୍କାର ଓ ଉତ୍କଳ ସର୍ବୋଦୟ ମଣ୍ଡଳକୁ ସାମୟିକ ଚାନ୍ଦା, ମୁଖ୍ୟତଃ ମେଳାଯାତ୍ରୀମାନଙ୍କ ଆପ୍ୟାୟନରେ ପ୍ରମୁଖ ବ୍ୟୟ ବହନ କରାଯାଉଛି ।

ପୁରୀସହର ତଥା ବାହାରର ବହୁ ସଶ୍ରଦ୍ଧ ମିତ୍ର ଓ ସଂସ୍ଥା ସର୍ବୋଦୟ ପାଣ୍ଠିକୁ ନିୟମିତ ମୁକ୍ତମନରେ ଅର୍ଥଦାନ କରୁଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ମେଳା କମିଟିର ସଦସ୍ୟ ସଦସ୍ୟାମାନଙ୍କ ବ୍ୟତୀତ ସର୍ବଶ୍ରୀ

**ବୋଧପ୍ରିୟ ରାଧାକୃଷ୍ଣ ସାହୁ, ଗରୁ ଇଷ୍ଟେଟ୍, ବିଶ୍ୱନାଥ ରାଓ, ବାମ ଦେବ ମିଶ୍ର, ଜ୍ୟୋତିପ୍ରକାଶ ମିଶ୍ର, ସରଳା ଦାସ, ଶରତ କୁମାର ବେହୁରା, ଶୈଳବାଳା ସାମନ୍ତସିଂହାର, ପ୍ରତିହାରୀ ନିଯୋଗ, ଭଗବାନ ପ୍ରତିହାରୀ, ଶଙ୍କର ଲାଲ ଅଗ୍ରବାଲ, ପ୍ରଶାନ୍ତ କୁମାର ମହାନ୍ତି, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଯଦୁ ଦାସ, ବୈଦ୍ୟନାଥ ପଟ୍ଟଆରୀ, ଏସ. ମେସର୍ସ ତାରିଆ, ଆନନ୍ଦ ଷ୍ଟୋର, ମଦନ ମୋହନ ସେନାପତି, ପରୀକ୍ଷିତ ସାହୁ, ଜଗନ୍ନାଥ ଅପ୍‌ଟିକାଲ୍‌ସ, ଚାନ୍ଦୁରାମ କାଳୁରାମ, ଭାରତୀ**

ଭବନ, ଡାକ୍ତର ମୋହନ ଦାଶ, ଜନତା ମେଡିକାଲ, ବିମଳା ଗୁପ୍ତ, ଭକ୍ତ ଜଗାବଳିଆ, ବିରଞ୍ଚି ନାରାୟଣ ପଟନାୟକ, ମଦନଲାଲ ଅଗ୍ରୱାଲା, ମହେଶ ଚନ୍ଦ୍ର ଅଗ୍ରୱାଲା, ଗଜାନନ ଅଗ୍ରୱାଲା, ହରିହର ପୂଜାପଣ୍ଡା, ଆରୋଗ୍ୟ ମେଡିକାଲ ଷ୍ଟୋର, ଶଶିଭୂଷଣ ନାୟକ, ସୀତାରାମ ଅଗ୍ରୱାଲା, ପ୍ରେମମାଳା ମହାନ୍ତି, ଲାବଣ୍ୟବତୀ ମିଶ୍ର, ଲୀଳାବତୀ ମିଶ୍ର, କାନନ ମହାନ୍ତି, ଗଙ୍ଗାଧର ମିଶ୍ର, ଜଟଣୀ, ଦେବେନ୍ଦ୍ର କୁମାର ଦାସ, ସୁଷମା ପାଣିଗ୍ରାହୀ, ଶଙ୍କର ପରିଡା, ନାରାୟଣ ମିଶ୍ର, ଆଡଭୋକେଟ, ମନମୋହନ ସାହୁ, ଚନ୍ଦନପୁର, ନାରାୟଣ ମିଶ୍ର, ବାସେଳୀ ସାହି, ଗୌରକୃଷ୍ଣ ଦାସ, ତେନ୍ତୁଳିଆପଡା, ବିଶ୍ୱନାଥ ଷଡଙ୍ଗୀ, ରଚିତା ଦାସ, ଶ୍ୟାମସୁନ୍ଦର ଗୋଛିକାର, କଲରସେଡ୍, ରବୀନ୍ଦ୍ର କୁମାର ଦାସ, ଶରତ ଚନ୍ଦ୍ର ରାଉତରାୟ, ସୁରେଶ ଚନ୍ଦ୍ର ନାୟକ, ଶ୍ରୀମତୀ ପୌର୍ଣ୍ଣମାସୀ ବାରିକ, ଗୋବିନ୍ଦ ତ୍ରିପାଠୀ, ସୋମନାଥ ମହାପାତ୍ର, ଭାଟପଡା, ସତ୍ୟନାରାୟଣ ମହାପାତ୍ର, ଦିବାକର (ଜୀବନ) ଶତପଥୀ, ସୁଆର ମହାସୁଆର ନିଯୋଗ ଗୋପବନ୍ଧୁ ଜେନା, ଅନିସୁର ରହମାନ, କୃଷ୍ଣ ପ୍ରକାଶ, ମହେଶ୍ୱର ମହାନ୍ତି, ନଟବର ସାହୁ, ଗଙ୍ଗାଧର ପଣ୍ଡା, ୰ ମଧୁସୂଦନ ନନ୍ଦଙ୍କ ପରିବାର, କାଶୀନାଥ ମିଶ୍ର, ବିବେକାନନ୍ଦ ମିଶ୍ର, ଭୁବନେଶ୍ୱରୀ ମିଶ୍ର, ବୀଣା ଦାସ, ଏମାର ମଠ, ନୀଳାଚଳ କ୍ୟାବିନ ସଂଘ, ଲୁଗାପଟିର ବ୍ୟବସାୟୀ ବୃନ୍ଦ, ଗୋପବନ୍ଧୁ ଭବନ, ପୁରୀ, କୁନ୍ତଳା କୁମାରୀ ଆଚାର୍ଯ୍ୟ, ରାଧାନାଥ ଭୋଳ, କୁମାର ହାଲଦାର ନୀଳାଚଳ ନାରୀ ଶିକ୍ଷାଶ୍ରମ, ଦାମୋଦର ମହାପାତ୍ର ବ୍ରଜରାଜ ସାହୁ, ଜଗନ୍ନାଥ ବଲ୍ଲଭ ମଠ, ସ୍ୱର୍ଗଦ୍ୱାର ବ୍ୟବସାୟୀ ବୃନ୍ଦ, ମହିଳା କୁଟୀରର ଅନ୍ତେବାସୀ ବୃନ୍ଦ, ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟର ଶିକ୍ଷିକା ବୃନ୍ଦ, ଅକ୍ଷୟ କୁମାର ମହାନ୍ତି, ସ୍ୱର୍ଣ୍ଣଲତା ମିଶ୍ର, ଗୋପବନ୍ଧୁ ଦରିଦ୍ର ନାରାୟଣ ସେବାସଂଘ, ଡାଃ ଶ୍ରୀମତୀ ନିରୂପମା ମିଶ୍ର, ଇଂ. ଧର୍ମୁ ପ୍ରସାଦ ମିଶ୍ର, ଡାଃ ଶ୍ରୀମତୀ ବେଲାରାଣୀ ଦଭ, ପ୍ରମିଳା ଆଚାର୍ଯ୍ୟ, ୰ ରାମକୃଷ୍ଣ ମିଶ୍ର (ଗାନ୍ଧୀ)ଙ୍କ ପରିବାର, ୰ ସୌରଶଙ୍କର ପଟ୍ଟନାୟକଙ୍କ ପରିବାର, ନାରୀସେବାସଂଘ ସଦନ, ବିଦ୍ୟୁତ ଲତା ରଥ କୃଷ୍ଣ ଚନ୍ଦ୍ର ପଣ୍ଡା, ରାମକୃଷ୍ଣ ଦାସମହାପାତ୍ର (ଟିକିପୁଅ) ।

ଏହି ଅବସରରେ ଆମେ ସମସ୍ତଙ୍କୁ ସାଧୁବାଦ ଓ କୃତଜ୍ଞତା ଜଣାଇ ଆଶା ପ୍ରକାଶ କରୁଛୁଁ ଯେ ସର୍ବୋଦୟ ମେଳାକୁ ବଞ୍ଚାଇ ରଖିବା ପାଇଁ ସେମାନଙ୍କର ଅକୁଣ୍ଠିତ ସହଯୋଗ ଅବ୍ୟାହତ ରହିବ ।

**ଉପସଂହାର** : ସର୍ବୋଦୟ ମେଳାର ଦୀର୍ଘ ମିଆଦୀ ଏହି ସ୍ୱଚ୍ଛ ବିବରଣୀଟି ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପରିପ୍ରେକ୍ଷୀରେ ବିରାଟ ସେତୁବନ୍ଧରେ ଗୁଣ୍ଡିଚିମୁଷାର ଦାନ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ସର୍ବୋଦୟ ମେଳାକୁ ଉଦ୍‌ଜୀବିତ ରଖାଇବା ଲକ୍ଷ୍ୟରେ ଏହି ବିବରଣୀ ନିଶ୍ଚିତ ମାର୍ଗ ଦର୍ଶନ କରିବ । ଏହି ଅବସରରେ ସର୍ବୋଦୟ ମେଳାର ବିଶେଷ ସମାରୋହ ତଥା ବର୍ଷକୁ ବର୍ଷ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ସମବେତ ଉତ୍ସର୍ଗୀକୃତ କର୍ମୀ, ମିତ୍ର, ଶୁଭେଚ୍ଛୁ ଓ ସହଯୋଗୀମାନଙ୍କୁ ସାଧୁବାଦ, ସ୍ୱାଗତ ଓ କୃତଜ୍ଞତା ଜ୍ଞାପନ କରୁଅଛୁ ।

ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ ।<br>
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖ ଭାଗ୍‌ଭବେତ୍ ।<br>
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

ସର୍ବୋଦୟ ମେଳା କମିଟି, ପୁରୀ<br>
ତା ୧୨.୨.୯୯

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ<br>
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ, ପୂର୍ଣ୍ଣମେବା ବଶିଷ୍ୟତେ<br>
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

# ଗାଁକୁ ଚାଲ

**ସୁଷମା ପାଣୀଗ୍ରାହୀ**

ସ୍ୱାଧୀନତା ଲାଭର ଅର୍ଦ୍ଧଶତାବ୍ଦୀ ବିତି ଯାଇଥିଲେ ମଧ ମହାତ୍ମା ଗାନ୍ଧୀଙ୍କ ମନର ସ୍ୱରାଜ୍ୟ - ସମସ୍ତଙ୍କ ପାଇଁ ବସ, ବାସ ଓ ଗ୍ରାସର ସଂସ୍ଥାନ ଅଦ୍ୟାପି ହାସଲ ହୋଇ ପାରି ନାହିଁ । ପୂର୍ଣ୍ଣ ସ୍ୱରାଜ୍ୟ ଲକ୍ଷ୍ୟନେଇ ବିଶିଷ୍ଟ ଗାନ୍ଧୀ ବାଦୀ ସନ୍ଥ ବିନୋବା ଦେଶ ସାରା ପଦଯାତ୍ରା କରିଥିଲେ । ଏହା ହିଁ ଥିଲା ସର୍ବୋଦୟ ବିଚାର ପ୍ରଚାରର ଭିତ୍ତିଭୂମି । ଖଟିଖିଆ - ଠକିଖିଆ ଉତ୍କଟ ଭେଦର ବିଲୋପ ପାଇଁ ଏହା ମନ୍ତ୍ରବତ୍ କାମକଲା । କାଳଚକ୍ରର ଆବର୍ତ୍ତନରେ ଗାନ୍ଧୀଗଲେ, ବିନୋବା ମଧ ଗଲେ । ଯେଉଁମାନଙ୍କ ହାତରେ ଦେଶର ଭାଗ୍ୟ ଡ଼ୋରି ପଡ଼ିଲା ସେମାନେ ଗ୍ରାମଭିତ୍ତିକ ଭାରତର ଆତ୍ମାକୁ ଚିହ୍ନିନପାରି ସହର ଭିତ୍ତିକ ଯୋଜନା ଗଢ଼ିବାକୁ ଲାଗିଲେ । ଫଳରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ସାମାଜିକ ବ୍ୟବସ୍ଥାରେ ଶ୍ରେଣୀ ବିଭାଗ, ଦାରିଦ୍ର୍ୟ, ବେକାରୀ, ଜନ ବିସ୍ଫୋରଣ ତଥା ବହୁରାଷ୍ଟ୍ରୀୟ କମ୍ପାନିମାନଙ୍କ ଉତ୍ପାତ ବଢ଼ିବାର ଲାଗିଲା ଯୋଜନାକାରୀମାନେ ଅନ୍ତକୂଳ ନପାଇ ଜଳକାଙ୍କ ପରି ଚାହିଁ ରହିବା ହିଁ ସାର ହେଲା ।

ଏଣୁ ସର୍ବୋଦୟ ଆନ୍ଦୋଳନକୁ ଉତ୍ତରୋତ୍ତର ପ୍ରସାର ଲକ୍ଷ୍ୟରେ ଅଖିଳ ଭାରତ ସର୍ବସେବା ସଂଘକ ଅଂଶୀଦାର ସର୍ବୋଦୟ ସମାଜ ଗ୍ରାମ ସ୍ୱରାଜ୍ୟ କଥା କହୁଛନ୍ତି । ଗାଁକୁ ଚାଲ ଚାଷୀ ମୂଲୀଆଙ୍କ ସଙ୍ଗେ ଜଣେ ହୋଇ ମିଶିଯାଅ, ଆତ୍ମ ନିର୍ଭରଶୀଳ ହୁଅ, ଗାଁ ଶିଳ୍ପକୁ ଲୋପ ନକରି ମାର୍ଜିତ ରୂପରେ ବଢ଼ାଅ, ଗାଁ କଳି ଗାଁରେ ନିସ୍ତରି କର । ଲାଞ୍ଚ ଦିଅନାହିଁ କି ଲାଞ୍ଚ ନିଅ ନାହିଁ । ଲାଞ୍ଚଖୋରକୁ ବସାଇ ଉଠାଇ ଦିଅ ନାହିଁ । ଅନୀତି ଓ ଅନ୍ୟାୟକୁ ବରଦାସ୍ତ କର ନାହିଁ, ଗାଁର କୋଠ ପାଣ୍ଠି ଗଢ଼ି ଗାଁ ଉନ୍ନତି କନେ ବ୍ୟୟ କର ।

ଗାଁର ଜଳ, ଜଙ୍ଗଲ, ଗାଁର ହେଉ ଅସଂଖ୍ୟ ସାନ ସାନ ଉତ୍ପାଦନକାରୀଙ୍କ ଦାନା ମାରୁଥିବା ଲୋହର ବା ପେପସିର ମାଲ ଓ ଜମିକୁ ବିଗାଡୁଥିବା ରାସାୟନିକ ସାର ବର୍ଜନ କର, ଖୋସାମତ ନ କରି ହକ୍ କଥା କହ ନିଶା ରାକ୍ଷସକୁ ପାଖରେ ପୂରାଇ ଦିଅନାହିଁ । ବିଦେଶୀ ଦାତବ୍ୟ ସଂସ୍ଥାର ଦାନ ଗ୍ରହଣ କର ନାହିଁ । ବିଭିନ୍ନ ଧର୍ମ ଓ ଗୋଷ୍ଠୀର ଲୋକଙ୍କ ସଙ୍ଗେ ସଖ୍ୟ ସ୍ଥାପନ ପୂର୍ବକ ଜାତୀୟ ସଂପ୍ରୀତି ବଢ଼ାଅ ।

ବୀର ସୈନିକ, ଚରିତ୍ରବାନ ଶିକ୍ଷକ ଓ ସୃଷ୍ଟିରକ୍ଷାକାରୀ **ବୈଜ୍ଞାନିକମାନଙ୍କୁ ସମ୍ମାନ ଦିଅ - ଏହି କାର୍ଯ୍ୟଯୋଜନା ଗ୍ରାମ ସ୍ୱରାଜ୍ୟ ପଥରେ ମାଇଲଖୁଣ୍ଟ ପରି ।**

**ଆମ ପବିତ୍ର ମାତୃଭୂମିର ଯୁଗଯୁଗର ଐତିହ୍ୟ ଓ ସଂସ୍କୃତିକୁ ଆଖିଆଗରେ ରଖି ସହରରେ ବସି ଗାଁ କଥା ଚିନ୍ତା କରିବା କଳ୍ପନା ବିଳାସ ପରିତ୍ୟାଗ କରି, ଚାଲ ଗାଁକୁ ଯିବା । ବାପୁଜୀଙ୍କ ପରିକଳ୍ପିତ ରାମରାଜ୍ୟ ସେତୁବନ୍ଧରେ ଗୁଣ୍ଡିଚିମୁଷାର କାମ ଦେଇ ଜୀବନକୁ ସାର୍ଥକ କରିବା ।**

**ଅବସର ପ୍ରାପ୍ତ ଶିକ୍ଷା ମଣ୍ଡଳ ନିରୀକ୍ଷକ**
**ପୁରୀ**

## ସଭା ଓ ସଭାସଦ

ନ ସା ସଭା ଯତ୍ର ନ ସନ୍ତି ବୃଦ୍ଧା
ବୃଦ୍ଧା ନ ତେ ଯେ ନ କରନ୍ତି ଧର୍ମଂ
ନା ସୋ ଧର୍ମୋ ଯତ୍ର ନ ସତ୍ୟ ମସ୍ତି
ନ ତତ୍ ସତ୍ୟଂ ଯା ଛଳେନାନୁ ବିଦ୍ଧମ୍ ।।

Let me live unseen unknown un
Un Lamented Let me die.
Steol from the world
and not a stone
to be Left till when I Lie

*- Alexander Pope*

## Mother of Prosperity

Where the cow is kept and cared
for civilization advances
Land grows richer, homes grow
better, debts grow fewer

*- Hayne*

Cow the dumb mother of Mankind.

*- Words wortho*

The cow - my dumb mother

*- Leo Tolstoi*

Cow the foster mother of Mankind.

*- Milo Hastings*

Cow the mother of the moon.

*- Babylonian mythology*

Mother of Rudras, Daughter of the venus,
Sister of Aditya Father of neetar.

*- Vedas*

**ଲକ୍ଷ୍ମୀଛଡ଼ା**

ନିତ୍ୟଂ ଛେଦଂ ତୃଣାନାଂ, ଭୂମି ନଖ ଲିଖନଂ
ପାଦୟୋଃ ଅଳ୍ପ ଧୌତଂ, ଦନ୍ତାନାମ୍ ଅଳ୍ପ ଶୌଚଂ
ବସନ ମଳିନତା ବ୍ୟସ୍ତତା ମୂର୍ଦ୍ଧଜାନୀ
ଦ୍ୱେସନ୍ଧ୍ୟେ ଚାପି ନିଦ୍ରା ବିବସନ ଶୟନମ୍
ଗ୍ରାସ - ହାସତି ରେକଂ, ସ୍ୱାଙ୍ଗେ ପୀଠେ ଚ ବାଦ୍ୟେ
ହରତି ଧନପତି, ବାସବ ସ୍ୟା ଚ ଲକ୍ଷ୍ମୀ